# ମହାଭାରତ

## ଶଲ୍ୟ, ସୌପ୍ତିକପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

# ମହାଭାରତ

## ଶଲ୍ୟ ପର୍ବ




ଗୋବିନ୍ଦଚନ୍ଦ୍ର ମହାପାତ୍ର

# ଶଲ୍ୟ ପର୍ବ

## ସୂଚୀ

# ମହାଭାରତ

## ଶଲ୍ୟ ପର୍ବ

### ପ୍ରଥମ ଅଧ୍ୟାୟ

ନାରାୟଣ, ନରୋତ୍ତମ, ନର ଓ ସରସ୍ୱତୀ ଦେବୀଙ୍କୁ ନମସ୍କାର କରି ଇତିହାସ ପୁରାଣ ପ୍ରଭୃତି କୀର୍ତ୍ତନ କରିବ ।

ଜନମେଜୟ କହିଲେ—ହେ ବ୍ରହ୍ମନ୍ ! ସମର ମଧ୍ୟରେ ମହାବୀର କର୍ଣ୍ଣ ଅର୍ଜୁନଙ୍କ ଦ୍ୱାରା ଏହି ପ୍ରକାର ନିପାତିତ ହେଲା ଉତ୍ତାରୁ ଅଲ୍ପାବଶିଷ୍ଟ କୌରବମାନେ କ'ଣ କଲେ ଏବଂ କୁରୁରାଜ ଦୁର୍ଯୋଧନ ପାଣ୍ଡବ ବଳୋତ୍କର୍ଷ ଓ ପାଣ୍ଡବଗଣଦ୍ୱାରା ନିହତ ହେବା ସ୍ୱକୀୟ ସୈନ୍ୟମାନଙ୍କୁ ନିରୀକ୍ଷଣ କରି ଅବା କ'ଣ କଲେ, ଆମ୍ଭେ ଏହା ଶୁଣିବାକୁ ଅତିଶୟ ଅଭିଳାଷୀ ହେଉ-ଅଛୁଁ ; ଅତଏବ ହେ ବିପ୍ରବର ! ଆପଣ ସେହି ବିଷୟ ବର୍ଣ୍ଣନ କରନ୍ତୁ । ପୂର୍ବପୁରୁଷମାନଙ୍କ ଅତି ଉତ୍କୃଷ୍ଟ ଚରିତ ଶୁଣି ଆମ୍ଭେ ତୃପ୍ତ ହେଉ-ନାହୁଁ । ୩ ।

ବୈଶମ୍ପାୟନ କହିଲେ—ହେ ମହାରାଜ ! କର୍ଣ୍ଣ ନିହତ ହେଲାରୁ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯୋଧନ ଶୋକସାଗରରେ ଅତ୍ୟନ୍ତ ମଗ୍ନ ହୋଇ ସକଳ ବିଷୟରେ ହତାଶ ହେଲେ ଏବଂ ହା-କର୍ଣ୍ଣ, ହା-କର୍ଣ୍ଣ ବୋଲି ବାରମ୍ବାର ଶୋକ ପ୍ରକାଶ କରି ହତାବଶିଷ୍ଟ ସ୍ୱଗଣଙ୍କ ସହିତ ସ୍ୱକୀୟ ଶିବିରରେ କଷ୍ଟରେ ପ୍ରବିଷ୍ଟ ହେଲେ । ୪ । ନରପତି କୁଳଶାସ୍ତ୍ର ନିଶ୍ଚିତ ବିବିଧ କାରଣ ଦ୍ୱାରା ତାହାଙ୍କୁ ଉତ୍ତମ ରୂପେ ଆଶ୍ୱାସ ପ୍ରଦାନ କଲେ ସୁଦ୍ଧା ସେ ସୂତପୁତ୍ର ବଧ ବିଷୟ ସ୍ମରଣ କରି କିଛିମାତ୍ର ସୁଖଲାଭ କରିପାରିଲେ ନାହିଁ । ୬ । ପରିଶେଷରେ ସେହି ମହୀପତି ଦୈବ ଓ ଭବିତବ୍ୟକୁ ବଳବାନ ବୋଲି ବିବେଚନା କରି

ସଂଗ୍ରାମ ବିଷୟରେ କୃତନିଶ୍ଚୟ ହୋଇ ପୁନଶ୍ଚ ଯୁଦ୍ଧ ନିମିତ୍ତ ଯାତ୍ରା କଲେ । ୭ । ନୃପଶ୍ରେଷ୍ଠ ଦୁର୍ଯ୍ୟୋଧନ ଯଥାବିଧାନରେ ଶଲ୍ୟଙ୍କୁ ସେନାପତି କରି ହତାବଶିଷ୍ଟ ନରପତିଗଣଙ୍କ ସହିତ ଯୁଦ୍ଧ ନିମିତ୍ତ ନିର୍ଗତ ହେଲେ । ୮ । ହେ ଭରତଶ୍ରେଷ୍ଠ ! ତତ୍ପରେ କୌରବ ଓ ପାଣ୍ଡବ ପକ୍ଷୀୟ ସୈନ୍ୟସମୂହର ସୁରାସୁର ସମର ସଦୃଶ ଅତି ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ୯ । ଶଲ୍ୟଙ୍କ ଦ୍ୱାରା ଅସଂଖ୍ୟ ଶତ୍ରୁ ସୈନ୍ୟ ସଂହାର ଦଶାରେ ଉପସ୍ଥିତ ହେଲାରୁ ଧର୍ମରାଜ ଯୁଧିଷ୍ଠିର ମଧ୍ୟାହ୍ନ ସମୟରେ ତାହାଙ୍କୁ ଓ ସୈନ୍ୟମାନଙ୍କୁ ଯୁଦ୍ଧଶଯ୍ୟାରେ ଶୟନ କରାଇଲେ । ୧୦ । ତଦନନ୍ତର ରାଜା ଦୁର୍ଯ୍ୟୋଧନ ବନ୍ଧୁବିହୀନ ହୋଇ ସମରାଙ୍ଗଣରୁ ପଳାୟନ ପୂର୍ବକ ଶତ୍ରୁ ଭୟରେ ଏକ ଘୋରତର ହ୍ରଦ ମଧ୍ୟରେ ପ୍ରବିଷ୍ଟ ହେଲେ । ୧୧ । ତତ୍ପରେ ସେହି ଦିବସର ଅପରାହ୍ନ ସମୟରେ ବୃକୋଦର, ମହାରଥଗଣ ଦ୍ୱାରା ସେହି ହ୍ରଦକୁ ପରିବେଷ୍ଟନ କରି ଯୁଦ୍ଧ ନିମିତ୍ତ ଦୁର୍ଯ୍ୟୋଧନଙ୍କୁ ଉଚ୍ଚୈଃସ୍ୱରରେ ଆହ୍ୱାନ ପୂର୍ବକ ନିପାତିତ କଲେ । ୧୨ ।

ହେ ରାଜେନ୍ଦ୍ର ! ସେହି ମହା ଧନୁର୍ଦ୍ଧର ନିହତ ହେଲାରୁ ହତାବଶିଷ୍ଟ ତିନିଜଣ ମହାରଥ ଅତିଶୟ କ୍ରୋଧବଶରେ ରାତ୍ରି ସମୟରେ ପାଞ୍ଚାଳ ସୈନ୍ୟମାନଙ୍କୁ ସଂହାର କଲେ । ୧୩ । ପରଦିନ ପୂର୍ବାହ୍ନ ସମୟରେ ଦୁଃଖଶୋକସମନ୍ୱିତ ସଞ୍ଜୟ ଶିବିରରୁ ନିର୍ଗତ ହୋଇ ଦୀନଭାବରେ ନଗର ମଧ୍ୟରେ ପ୍ରବେଶ କଲେ । ୧୪ । ସେହି ସୂତ ଦୁଃଖିତ ଭାବରେ ପୁରରେ ପ୍ରବେଶ କରି କମ୍ପମାନ କଳେବର ହୋଇ ବାହୁଦ୍ୱୟ ଉତ୍ତୋଳନ ପୂର୍ବକ ରାଜଭବନରେ ପ୍ରବିଷ୍ଟ ହେଲେ । ୧୫ । ହେ ନରନାଥ ! ସେହି ସଞ୍ଜୟ ତେତେବେଳେ ଅତିଶୟ ଦୁଃଖିତ ହୋଇ 'ହେ ରାଜନ୍ !' ଏହା କହି ରୋଦନ କଲେ । "ଆହା ସେହି ମହାତ୍ମାଙ୍କ ନିଧନରେ ଆମ୍ଭେମାନେ ବିନଷ୍ଟ ହେଲୁ ଓ ସୈନ୍ୟମାନେ ପାଣ୍ଡବମାନଙ୍କ ଦ୍ୱାରା ହତ ହେବାରୁ ଜଣାଯାଏ ଯେ ବିଧାତା ଅତି ବଳବାନ, ପୌରୁଷ ନିରର୍ଥକ ଅଟେ ।" ୧୬ ।

ହେ ରାଜନ୍ ! ପୁରବାସୀ ନରଗଣ ଅଗ୍ରଭାଗରେ ସଞ୍ଜୟଙ୍କୁ ମହାକ୍ଲେଶରେ ଯୁକ୍ତ ହୋଇଥିବାର ଦେଖି ଅତିଶୟ ଉଦ୍‌ବିଗ୍ନ ହୋଇ 'ହେ ରାଜନ୍' ଏହିପରି କହି ଉଚ୍ଚୈଃସ୍ୱରରେ ରୋଦନ କଲେ । ହେ ନରବର ! ତତ୍ପରେ ସେହି ରାଜପୁରର ଚତୁର୍ଦ୍ଦିଗରେ ବାଳ, ଯୁବା ଓ ବୃଦ୍ଧଗଣ ନରପତିଙ୍କ ନିଧନ ବାର୍ତ୍ତା ଶୁଣି ଆର୍ତ୍ତନାଦ କଲେ । ପରିଶେଷରେ ଦେଖିଲୁଁ, କି ସ୍ତ୍ରୀ,

କ ପୁରୁଷ ସମସ୍ତେ ଶୋକରେ ଅତିଶୟ ପୀଡ଼ିତ ହୋଇ ଉନ୍ମତ୍ତ ଓ ବିଚେତନ ଲୋକ ସଦୃଶ ସେହି ସ୍ଥାନରେ ଧାବମାନ ହେଲେ ।

ସଞ୍ଜୟ ତାଦୃଶ ବିହ୍ୱଳ ହୋଇ ନରପତିଙ୍କ ଗୃହରେ ପ୍ରବେଶ ପୂର୍ବକ ପ୍ରଜ୍ଞାଚକ୍ଷୁ ନରଶ୍ରେଷ୍ଠ ନିଜ ସ୍ୱାମୀଙ୍କୁ ଦର୍ଶନ କଲେ । ହେ ଜନମେ-ଜୟ ! ନିଷ୍ପାପ ଭରତଶ୍ରେଷ୍ଠ ଧୃତରାଷ୍ଟ୍ର ବିଦୁର, ଗାନ୍ଧାରୀ, ପୁତ୍ରବଧୂଗଣ ଓ ଅନ୍ୟାନ୍ୟ ସୁହୃତ୍ ଓ ଜ୍ଞାତିବର୍ଗଦ୍ୱାରା ଚତୁର୍ଦ୍ଦିଗରେ ପରିବେଷ୍ଟିତ ହୋଇ ବସି କର୍ଣ୍ଣଙ୍କ ନିଧନ ବିଷୟ ଚିନ୍ତା କରୁଥିବାର ଦେଖି ସଞ୍ଜୟ ଅପ୍ରସନ୍ନ ଚିତ୍ତରେ ଅତିଶୟ ରୋଦନ କରି ବାକ୍ୟ ହୃଦଗ୍ଧ ବଚନରେ କହିଲେ, ହେ ଭରତକୁଳ ପୁଙ୍ଗବ ନରଶ୍ରେଷ୍ଠ ମହାରାଜା, ଆମ୍ଭେ ସଞ୍ଜୟ ଆପଣଙ୍କୁ ପ୍ରଣାମ କରୁଅଛୁ ; ମଦ୍ରାଧିପତି ଶଲ୍ୟ ସଂଗ୍ରାମରେ ହତ ହୋଇଅଛନ୍ତି ଓ ସୁବଳନନ୍ଦନ ଶକୁନି, ପୁରୁଷସିଂହ ଦୃଢ଼ବିକ୍ରମ କୈତବ୍ୟ ଉଲୂକ ଓ ସଂଶପ୍ତକ ସୈନ୍ୟ ନିକର ନିହତ ହୋଇଅଛନ୍ତି । ଶକ ସେନା ସମୂହ ସମସ୍ତ କାମ୍ବୋଜ ସୈନ୍ୟ ଓ ପାର୍ବତୀୟ ମ୍ଳେଚ୍ଛ ଯବନ ପ୍ରଭୃତି ସୈନ୍ୟଗଣ ନିପାତିତ ହୋଇଅଛନ୍ତି । ୨୭ । ହେ ନରାଧିପ ! ପ୍ରାଚ୍ୟ ପ୍ରତୀଚ୍ୟ ଓ ଦାକ୍ଷିଣାତ୍ୟ ରାଜା ଓ ରାଜପୁତ୍ରଗଣ ସମସ୍ତେ ପ୍ରାଣ ପରିତ୍ୟାଗ କରିଅଛନ୍ତି । ପାଣ୍ଡୁନନ୍ଦନ ଭୀମ ଯେଉଁପରି କହିଥିଲେ, ତଦନୁସାରେ ନରପତି ଦୁର୍ଯ୍ୟୋଧନ ହତ ହୋଇଅଛନ୍ତି । କୁରୁପତିଙ୍କର ଊରୁଭଗ୍ନ ହେଲାରୁ ତାହାଙ୍କର ସର୍ବାଙ୍ଗ ଧୂଳିରେ ଧୂସରିତ ହୋଇଅଛି ଏବଂ ସେ ଭୂମିରେ ଶୟନ କରିଅଛନ୍ତି । ହେ ମହାରାଜ ! ପାଣ୍ଡବପକ୍ଷୀୟ ଧୃଷ୍ଟଦ୍ୟୁମ୍ନ ଅପରାଜିତ ଶିଖଣ୍ଡୀ ନିହତ ହୋଇଅଛନ୍ତି ଓ ଯୁଧାମନ୍ୟୁ ଉତ୍ତମୌଜା, ପ୍ରଭଦ୍ରକଗଣ ଓ ଚେଦି ପାଞ୍ଚାଳ ସୈନ୍ୟସମୂହ ନିସୂଦିତ ହୋଇଅଛନ୍ତି । ୩୧ । ହେ ଭାରତ ! ଆପଣଙ୍କ ସମସ୍ତ ପୁତ୍ରମାନେ ନିହତ ହୋଇଅଛନ୍ତି, ପାଣ୍ଡବପକ୍ଷୀୟ ଦ୍ରୌପଦୀଙ୍କ ପାଞ୍ଚପୁତ୍ର ପ୍ରାଣତ୍ୟାଗ କରିଅଛନ୍ତି । କର୍ଣ୍ଣଙ୍କ ପୁତ୍ର ମହାବଳ ବୃଷସେନ ହତ ହୋଇଅଛନ୍ତି । ୩୨ । ସମସ୍ତ ମନୁଷ୍ୟ ବିନିହତ ଓ ଗଜ-ଯୂଥ ନିସୂଦିତ ହୋଇଅଛନ୍ତି । ରଥୀ ଓ ଅଶ୍ୱକୁଳ ରଣଭୂମିରେ ନିପତିତ ହୋଇଅଛନ୍ତି । ୩୩ ।

ପ୍ରଭୋ ! ପାଣ୍ଡବମାନେ ଆପଣଙ୍କ ସୈନ୍ୟ ଶିବିର ମଧ୍ୟରୁ ଅଳ୍ପମାତ୍ର ଅବଶେଷ ରଖିଅଛନ୍ତି । କୁରୁ ଓ ପାଣ୍ଡବମାନଙ୍କର ଏହି ପ୍ରକୃଷ୍ଟତର ଯୁଦ୍ଧରେ କାଳଦ୍ୱାରା ମୋହିତ ବିଶ୍ୱମଣ୍ଡଳରେ ସ୍ତ୍ରୀ ଲୋକ ମାତ୍ର

ଅବଶିଷ୍ଟ ଅଛନ୍ତି । ପାଣ୍ଡବ ପଞ୍ଚଭ୍ରାତା, କୃଷ୍ଣ ଓ ସାତ୍ୟକି, ଏହି ସପ୍ତ ବ୍ୟକ୍ତି ମାତ୍ର ଶତ୍ରୁ ପକ୍ଷରୁ ଜୀବିତ ଅଛନ୍ତି ଓ ଆପଣଙ୍କ ପକ୍ଷରୁ କୃପାଚାର୍ଯ୍ୟ, କୃତବର୍ମା ଓ ଅଶ୍ୱତ୍ଥାମା ଏହି ତିନି ବ୍ୟକ୍ତି ମାତ୍ର ଅବଶିଷ୍ଟ ଅଛନ୍ତି । ହେ ନୃପଶ୍ରେଷ୍ଠ ! ଅଷ୍ଟାଦଶ ଅକ୍ଷୌହିଣୀ ସଂଖ୍ୟକ ସମବେତ ସୈନ୍ୟବୃନ୍ଦ ମଧ୍ୟରୁ ଏହି ଦଶଜଣ ମହାରଥ କେବଳ ଅବଶିଷ୍ଟ ଅଛନ୍ତି । ଏତଦ୍‌ଭିନ୍ନ ସମସ୍ତ ସୈନ୍ୟ ଇହଲୋକ ପରିତ୍ୟାଗ କରିଅଛନ୍ତି । ହେ ମହାରାଜ ! କାଳ ସ୍ୱୟଂ ଦୁର୍ଯ୍ୟୋଧନଙ୍କୁ ଅଗ୍ରସର କରି ଏହି ପ୍ରବଳ ବୈର ଉତ୍ପାଦନ ପୂର୍ବକ ସମସ୍ତ ଜଗନ୍ମଣ୍ଡଳର ଧ୍ୱଂସ ସାଧନ କଲେ ।

ବୈଶମ୍ପାୟନ କହିଲେ—ହେ ମହାରାଜ ! ରାଜା ଧୃତରାଷ୍ଟ୍ର ସଞ୍ଜୟଙ୍କ ମୁଖରୁ ଏହି ଦାରୁଣ ବାକ୍ୟ ଶୁଣିଲା ମାତ୍ରେ ଅଚେତନ ହୋଇ ଭୂମିରେ ପତିତ ହେଲେ । ନରପତି ଭୂତଳଶାୟୀ ହେବାରୁ ମହାଯଶା ବିଦୁର ମଧ୍ୟ ତାହାଙ୍କ ଦୁଃଖରେ ଆକୃଷ୍ଟ ହୋଇ ପୃଥିବୀରେ ପତିତ ହେଲେ । ଦେବୀ ଗାନ୍ଧାରୀ ଓ ଅନ୍ୟାନ୍ୟ କୁରୁନାରୀଗଣ ହଠାତ୍ ଏହି ନିଷ୍ଠୁର ବାକ୍ୟକୁ ଶୁଣି ଭୂତଳରେ ପତିତ ହେଲେ । ସମସ୍ତ ଭୂପାଳମାନେ ମଧ୍ୟ ଚୈତନ୍ୟ-ଶୂନ୍ୟ ହୋଇ ଭୂମିରେ ପତିତ ହେଲେ । ୪୨ । ତେତେବେଳେ ଜଣାଗଲା ଯେ ଅତି ବିସ୍ତୀର୍ଣ୍ଣ ଚିତ୍ରପଟ ମଧ୍ୟରେ ଏହି ସବୁ ପ୍ରଳାପକାରୀ ଜନକୁଳ ଚିତ୍ରିତ ଭାବରେ ବିନ୍ୟସ୍ତ ହୋଇ ରହିଅଛନ୍ତି ।

ତଦ୍ପରେ ପୁତ୍ରଶୋକରେ ମୂର୍ଚ୍ଛିତ ମହୀପାଳ ଧୃତରାଷ୍ଟ୍ରଙ୍କର ବହୁ କଷ୍ଟରେ ଅଳ୍ପ ଅଳ୍ପରେ ପ୍ରାଣର ସଞ୍ଚାର ହେଲା । ସେ ସଚେତନ ଓ କମ୍ପମାନ କଳେବର ହୋଇ ଅତିଶୟ ଦୁଃଖିତ ହୃଦୟରେ ଦଶଦିଗକୁ ଊର୍ଦ୍ଧ୍ୱ ଦୃଷ୍ଟି ନିକ୍ଷେପ ପୂର୍ବକ ସଞ୍ଜୟଙ୍କୁ ସମ୍ବୋଧନ କରି କହିଲେ, "ହେ ବିଦ୍ୱାନ୍ ! ହେ ମହାପ୍ରାଜ୍ଞ ସଞ୍ଜୟ ! ଆମ୍ଭେ ପୁତ୍ରହୀନ ହୋଇ ଅନାଥ ହେଲୁଁ । ଏତେବେଳେ ତୁମ୍ଭେ ଏକା ଆମ୍ଭର ଗତି ।" ରାଜା ଏହି ବାକ୍ୟ କହି ପୁନଶ୍ଚ ସଂଜ୍ଞାଶୂନ୍ୟ ହୋଇ ଭୂତଳରେ ପତିତ ହେଲେ । ୪୬ । ତତେବେଳେ ସେଠାରେ ଉପସ୍ଥିତ ତାହାଙ୍କର କେତେକ ବାନ୍ଧବ-ମାନେ ରାଜାଙ୍କୁ ପତିତ ହେବାର ଦେଖି ଶୀତଳ ଜଳ ସେଚନ ଓ ବ୍ୟଜନ ସଞ୍ଚାଳନ କଲେ । ୪୭ । ମହୀପାଳ ବହୁତ ବିଳମ୍ବରେ ଆଶ୍ୱାସିତ ହୋଇ ପୁତ୍ର ବିୟୋଗ ହେତୁରୁ ନିତାନ୍ତ କାତରରେ ମୌନାବଲମ୍ବନ କଲେ ଓ କୁମ୍ଭ ମଧ୍ୟରେ ନିକ୍ଷିପ୍ତ ସର୍ପସଦୃଶ ଦୀର୍ଘ ନିଶ୍ୱାସ ପରିତ୍ୟାଗ କଲେ ।

ଯଶସ୍ୱିନୀ ଗାନ୍ଧାରୀ ଓ ଅନ୍ୟାନ୍ୟ କୁରୁନାରୀଗଣ ଓ ସଞ୍ଜୟ ରାଜାଙ୍କୁ ତାଦୃଶ ଶୋକରେ ଆତୁର ହୋଇଥିବାର ନିରୀକ୍ଷଣ କରି ରୋଦନ କଲେ । ନରଶ୍ରେଷ୍ଠ ଧୃତରାଷ୍ଟ୍ର ବାରମ୍ବାର ମୋହଗ୍ରସ୍ତ ହୋଇ ବହୁତ ବିଳମ୍ବରେ ବିଦୁରଙ୍କୁ କହିଲେ, "ହେ ବିଦୁର ! ଏତେବେଳେ ଆମ୍ଭ ମନରେ ଅତ୍ୟନ୍ତ ଭ୍ରମ ଜନ୍ମିଅଛି, ଅତଏବ ଯଶସ୍ୱିନୀ ଗାନ୍ଧାରୀ, ଅନ୍ୟାନ୍ୟ ଅବଳାବୃନ୍ଦ ଓ ଏହି ସମସ୍ତ ବନ୍ଧୁବାନ୍ଧବମାନେ ସମ୍ପ୍ରତି ଏହି ସ୍ଥାନରୁ ଯାଆନ୍ତୁ ।" ବିଦୁର ନରପାଳଙ୍କର ଏହି ଆଦେଶ ପ୍ରାପ୍ତିମାତ୍ରେ ମୁହୁର୍ମୁହୁଃ କମ୍ପମାନ ହୋଇ କ୍ରମେ କ୍ରମେ ସମସ୍ତଙ୍କୁ ସେଠାରୁ ବିଦାୟ ଦେଲେ । ହେ ଭରତଶ୍ରେଷ୍ଠ ! ନାରୀବୃନ୍ଦ ଓ ସୁହୃଦ୍‌ଗଣ ରାଜାଙ୍କୁ ଶୋକରେ ଆତୁର ହୋଇଥିବାର ଦେଖି ସେଠାରୁ ନିର୍ଗତ ହେଲେ । ତତ୍ପରେ ନରେନ୍ଦ୍ର ସଚେତନ ହୋଇ ବାରମ୍ବାର ରୋଦନ କରି ଦୀର୍ଘନିଶ୍ୱାସ ପରିତ୍ୟାଗ କରନ୍ତେ ସଞ୍ଜୟ କୃତାଞ୍ଜଳି-ପୁଟରେ ସୁମଧୁର ବଚନରେ ତାହାଙ୍କୁ ଉତ୍ତମ ଆଶ୍ୱାସନା ଦେଲେ ।

---

## ଦ୍ୱିତୀୟ ଅଧ୍ୟାୟ

ବୈଶମ୍ପାୟନ କହିଲେ—ମହାରାଜ ! ସେଠାରୁ କାମିନୀଗଣ ପ୍ରସ୍ଥାନ କଲାରୁ ଅମ୍ବିକାପୁତ୍ର ମହାରାଜ ଧୃତରାଷ୍ଟ୍ର ଅତିଶୟ ଦୁଃଖିତ ହୋଇ ବିଳାପ କଲେ ଓ ବାରମ୍ବାର କରଦ୍ୱୟ କମ୍ପିତ କରି କଦୁଷ୍ଣ ଓ ଦୀର୍ଘ ନିଶ୍ୱାସ ପରିତ୍ୟାଗ ପୂର୍ବକ ବହୁକ୍ଷଣ ପର୍ଯ୍ୟନ୍ତ ଚିନ୍ତା କରି କହିଲେ, ହେ ସଞ୍ଜୟ ! ଆହା ଏ କି ମହାଦୁଃଖ ଉପସ୍ଥିତ ହେଲା ! ପାଣ୍ଡବମାନେ ଯୁଦ୍ଧରେ ଅକ୍ଷୟ ହୋଇ କୁଶଳରେ ଅଛନ୍ତି, ଏହି କଥା ଆମ୍ଭେ ତୁମ୍ଭ ମୁଖରୁ ଶୁଣିଲୁ । ୩ । ଜଣାଯାଏ ଆମ୍ଭ ହୃଦୟ ବଜ୍ରସାର ସଦୃଶ ଅତିଶୟ କଠିନ । ଅନ୍ୟଥା ସନ୍ତାନମାନେ ନିହତ ହୋଇଥିବାର ଶ୍ରବଣ କରି କାହିଁକି ତାହା ସହସ୍ରଧା ବିଦୀର୍ଣ୍ଣ ନ ହେଲା ? ହେ ସଞ୍ଜୟ ! ଆଜି ପୁତ୍ରମାନଙ୍କ ନିଧନବାର୍ତ୍ତା ଶୁଣି ସେମାନଙ୍କର ବୟଃକ୍ରମ ଓ ବାଲ୍ୟଲୀଳା ସ୍ମରଣ ହେବାରୁ ଆମ୍ଭ ହୃଦୟ ବାରମ୍ବାର ବିଦୀର୍ଣ୍ଣ ହେଉଅଛି । ୫ । ଆମ୍ଭେ ଅନ୍ଧବଶତଃ ଯଦି ସେମାନଙ୍କ ରୂପ ଦେଖି ନାହୁଁ, ତଥାପି ସେ ସମସ୍ତଙ୍କ ଉପରେ ପୁତ୍ରସ୍ନେହଜନିତ ପରମ ପ୍ରୀତି ନିରନ୍ତର ରହିଥାଏ । ୬ । ହେ ନିଷ୍ପାପ ! ସେମାନେ ବାଲ୍ୟ-

ସମୟକୁ ଅତିକ୍ରମ କରି ଯୌବନାବସ୍ଥା ଏବଂ କ୍ରମେ କ୍ରମେ ମଧ୍ୟାବସ୍ଥାକୁ ପ୍ରାପ୍ତ ହୋଇଥିବାର ଶୁଣି ସେତେବେଳେ ଅମ୍ଭେ ଆନନ୍ଦିତ ହୋଇଥିଲୁଁ । ସମ୍ପ୍ରତି ସେହିମାନଙ୍କ ନିଧନ ସମ୍ବାଦ ଓ ବଳବୀର୍ଯ୍ୟ ଐଶ୍ୱର୍ଯ୍ୟ ପ୍ରଭୃତିର ବିନାଶ ବୃତ୍ତାନ୍ତ ଶ୍ରବଣ କରି ପୁତ୍ରବିନାଶଜନିତ ମାନସପୀଡ଼ାରେ ଆକ୍ରାନ୍ତ ହୋଇଅଛୁଁ । ଅତଏବ କଦାପି ଶାନ୍ତିଲାଭ କରି ପାରିବୁ ନାହିଁ । ୮ । ହେ ପୁତ୍ର ରାଜେନ୍ଦ୍ର ! ଆମ୍ଭେ ଏତେବେଳେ ଅନାଥ ହେଉଅଛୁଁ ! ତୁମ୍ଭେ ଆମ୍ଭ ନିକଟକୁ ଆସ ଆସ ! ହେ ମହାବାହୋ ! ତୁମ୍ଭ ବିନା ଅନ୍ୟ କେଉଁମାନଙ୍କୁ ଗତି ରୂପେ ପ୍ରାପ୍ତ ହେବୁଁ ? ୯ । ହେ ତାତ ! ତୁମ୍ଭେ ସମାଗତ ମହୀପାଳମାନଙ୍କୁ ପରିତ୍ୟାଗ କରି ସାମାନ୍ୟ କୁତ୍ସିତ ନରପତିଙ୍କ ସଦୃଶ ନିହତ ହୋଇ କେଉଁ କାରଣରେ ମହୀତଳରେ ଶୟନ କରିଅଛ ? ୧୦ । ହେ ବୀର ! ତୁମ୍ଭେ ଜ୍ଞାତି ଓ ସୁହୃଦ୍ ବ୍ୟକ୍ତିମାନଙ୍କ ଆଶ୍ରୟ ହୋଇ ଏତେବେଳେ ଅନ୍ଧ ବୃଦ୍ଧ ଆମ୍ଭଙ୍କୁ ପରିତ୍ୟାଗ କରି କେଉଁ ଆଡ଼କୁ ଯାଉଅଛ ? ୧୧ । ହେ ରାଜନ୍ ! ତୁମ୍ଭର ଆମ୍ଭଠାରେ ଯେଉଁ ଭକ୍ତି, ପ୍ରୀତି, କୃପା ଓ ମାନ୍ୟ ଥିଲା, ସମ୍ପ୍ରତି ତାହା ସବୁ କେଉଁ ଆଡ଼କୁ ଗଲା ? ତୁମ୍ଭେ ଯୁଦ୍ଧରେ ଅପରାଜିତ ଅଟ, ତେବେ ପାଣ୍ଡବମାନେ ଯୁଦ୍ଧରେ ତୁମ୍ଭଙ୍କୁ କିପରି ବିନାଶ କଲେ ? ୧୨ ।

ଆମ୍ଭେ ଯଥା ସମୟରେ ଶଯ୍ୟାରୁ ଉତ୍ଥିତ ହେବା ସମୟରେ କିଏ ଆମ୍ଭଙ୍କୁ ତାତ ତାତ ବୋଲି ଆହ୍ୱାନ କରିବ ଏବଂ 'ମହାରାଜ ଓ ଲୋକନାଥ' ଏହିପରି ବଚନ ବାରମ୍ବାର କହିବ ? ୧୩ । ହେ କୌରବ୍ୟ ! ତୁମ୍ଭେ ପ୍ରସନ୍ନ ନୟନରେ ଆସି ସ୍ନେହରେ ଆମ୍ଭ କଣ୍ଠ ଧାରଣ ପୂର୍ବକ ଆଲିଙ୍ଗନ କରି 'ଆଜ୍ଞା କରିବା ହେଉନ୍ତୁ' ବୋଲି ଯେଉଁ ବାକ୍ୟ କହୁଥିଲ, ସମ୍ପ୍ରତି ଥରେ ସେହି ସାଧୁ ବାକ୍ୟକୁ ପ୍ରୟୋଗ କର । ୧୪ । ହେ ପୁତ୍ର ! "ଏହି ସସାଗରା ବସୁନ୍ଧରା ମଧ୍ୟରେ ପାଣ୍ଡବମାନଙ୍କର ଯେଉଁପରି ପ୍ରଭୁତ୍ୱ ଆମ୍ଭ-ମାନଙ୍କର ମଧ୍ୟ ସେହିପରି ଅଟେ" ବୋଲି ତୁମ୍ଭେ ଆମ୍ଭଙ୍କୁ କହୁଥିଲ । ଆହୁରି ମଧ୍ୟ ତୁମ୍ଭ ମୁଖରୁ ଶୁଣୁଥିଲୁ ଯେ ଭଗଦତ୍ତ, କୃପାଚାର୍ଯ୍ୟ, ଶଲ୍ୟ, ଅବନ୍ତୀରାଜ, ଜୟଦ୍ରଥ, ଭୂରିଶ୍ରବା, ଶଲ, ସୋମଦତ୍ତ, ବାହ୍ଲିକ, ଅଶ୍ୱତ୍ଥାମା, ଭୋଜରାଜ, ମଗଧରାଜ, ମହାବଳ ବୃହଦ୍‌ବଳ, କାଶିରାଜ, ସୁବଳପୁତ୍ର ଶକୁନି ଓ ବହୁ ସହସ୍ର ମ୍ଳେଚ୍ଛ, ଶକ, ଯବନ ସୈନ୍ୟ କାମ୍ବୋଜେଶ୍ୱର, ସୁଦକ୍ଷିଣ, ତ୍ରିଗର୍ତ୍ତାଧି-ପତି, ପିତାମହ ଭୀଷ୍ମ, ଭରଦ୍ୱାଜ, ଗୌତମ, ଶ୍ରୁତାୟୁ, ଅଚ୍ୟୁତାୟୁ, ବୀର୍ଯ୍ୟଶାଳୀ ଶତାୟୁ, ଜଳସନ୍ଧ, ଆର୍ଯ୍ୟଶୃଙ୍ଗୀ ଅଳାୟୁଧ ରାକ୍ଷସ ମହାବାହୁ

ଅଲମ୍ବୁଷ, ମହାରଥ ସୁବାହୁ, ଏମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଅନେକାନେକ ନରପତିଗଣ ଆମ୍ଭ ନିମିତ୍ତ ପ୍ରାଣ ଆଶା ପରିତ୍ୟାଗ ପୂର୍ବକ ଏହି ମହାଯୁଦ୍ଧରେ ଉଦ୍ୟମଶୀଳ ହୋଇ ଅଛନ୍ତି, ଅତଏବ ଆମ୍ଭେ ରଣଭୂମିରେ ସେହି ସମସ୍ତ ବୀରକୁଳ ଓ ଭ୍ରାତୃଗଣରେ ପରିବେଷ୍ଟିତ ହୋଇ ପାଣ୍ଡବ, ପାଞ୍ଚାଳ, ଚେଦି, ଦ୍ରୌପଦୀଙ୍କ ପୁତ୍ରସମୂହ, ସାତ୍ୟକି, କୁନ୍ତୀ ଭୋଜ ଓ ରାକ୍ଷସ ଘଟୋତ୍କଚ ଏହି-ମାନଙ୍କ ସହିତ ସଂଗ୍ରାମ କରିଇବୁ । ୨୩ । ହେ ମହାରାଜ ! ଏହିମାନଙ୍କ ମଧ୍ୟରୁ ଜଣେ ଯଦି ସୁଦ୍ଧା କ୍ରୁଦ୍ଧ ହେବେ, ତେବେ ଯୁଦ୍ଧରେ ଅଭିମୁଖୀନ ପାଣ୍ଡବମାନଙ୍କୁ ନିବାରଣ କରିପାରିବେ । ୨୪ । ଏହି ସମସ୍ତ ବୀରବୃନ୍ଦ ଏକତ୍ରିତ ହୋଇ ପାଣ୍ଡବମାନଙ୍କ ସହିତ ଶତ୍ରୁତା କରି ସେମାନଙ୍କୁ ପରାଭବ ଦେବା ବିଷୟ ଆଶ୍ଚର୍ଯ୍ୟ ନୁହେଁ ; ହେ ରାଜେନ୍ଦ୍ର ! ଏମାନେ ସମସ୍ତେ ଯଦି ପାଣ୍ଡବମାନଙ୍କ ଅନୁଚରଗଣ ସହିତ ଯୁଦ୍ଧ କରିବେ, ତେବେ ସେହିମାନଙ୍କୁ ନିଶ୍ଚୟ ବିନଷ୍ଟ କରିବେ; ଏହି ବିଷୟରେ ସନ୍ଦେହ ନାହିଁ । ପୁଣି ମହାବୀର କର୍ଣ୍ଣ ଆମ୍ଭ ସହିତ ଏକାଙ୍ଗୀ ସମବେତ ହୋଇ ପାଣ୍ଡବମାନଙ୍କୁ ବିନଷ୍ଟ କରିବେ । ପରିଶେଷରେ ମହାବୀର ନରପାଳବୃନ୍ଦ ମଧ୍ୟ ଆମ୍ଭ ଶାସନାଧୀନ ହୋଇ ରହିବେ । ପାଣ୍ଡବମାନଙ୍କ ପ୍ରଣେତା ମହାବଳ ବାସୁଦେବ କଦାପି କବଚଧାରୀ ହେବେ ନାହିଁ ।

ହେ ସଞ୍ଜୟ ! ଦୁର୍ଯ୍ୟୋଧନ ଆମ୍ଭ ନିକଟରେ ଅନେକବାର ଏହି ବାକ୍ୟସବୁ କହିଥିବାରୁ ଆମ୍ଭେ ତାହାଙ୍କ ପରାକ୍ରମ ଅନୁସାରେ ପାଣ୍ଡବମାନେ ନିହତ ହେବେ ବୋଲି ଜାଣିଥିଲୁ; କିନ୍ତୁ ଯେତେବେଳେ ଆମ୍ଭ ପୁତ୍ରମାନେ ସେହି ସମସ୍ତ ବୀରମଣ୍ଡଳରେ ଅବସ୍ଥିତ ହୋଇ ମୃତ୍ୟୁମୁଖରେ ନିପତିତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ହେ ସଞ୍ଜୟ ! ଶୃଗାଳ ସଦୃଶ ଶିଖଣ୍ଡିର ସମ୍ମୁଖରେ ସିଂହ ସମାନ ମହାପ୍ରତାପଶାଳୀ ଲୋକନାଥ ଭୀଷ୍ମ ପାଣ୍ଡବ ହସ୍ତରେ ସର୍ବଶାସ୍ତ୍ର ଓ ଅସ୍ତ୍ରବିଦ୍ୟାପାରଗ ଦ୍ୱିଜବର ଦ୍ରୋଣାଚାର୍ଯ୍ୟ ନିହତ ହେଲାରୁ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ଯେତେବେଳେ ରଣସ୍ଥଳରେ ଭୂରିଶ୍ରବା, ସୋମଦତ୍ତ ଓ ମହାରାଜ ବାହ୍ଲିକ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ଯେତେବେଳେ ଗଜଯୁଦ୍ଧ ପଣ୍ଡିତ ଭଗଦତ୍ତ ଓ ଜୟଦ୍ରଥ ନିହତ ହେଲେ, ତେତେବେଳେ ଦୈବ

ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୩୪ । ଯେତେବେଳେ ସୁଦକ୍ଷିଣ ଓ ପୁରୁବଂଶୀୟ ଜଳସନ୍ଧ, ଶ୍ରୁତାୟୁ ଓ ଅଚ୍ୟୁତାୟୁ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୩୫ । ଯେତେବେଳେ ସର୍ବଶସ୍ତ୍ରଧାରୀ ଶ୍ରେଷ୍ଠ ମହାବଳ ପାଣ୍ଡ୍ୟରାଜ ଯୁଦ୍ଧରେ ପାଣ୍ଡବମାନଙ୍କ ଦ୍ୱାରା ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୩୬ । ଯେତେବେଳେ ମଗଧରାଜ ମହାବଳ ବୃହଦ୍‌ବଳ ଓ ଧନୁର୍ଦ୍ଧର କୁଳର ଦୃଷ୍ଟାନ୍ତ ସ୍ୱରୂପ ପରାକ୍ରାନ୍ତ ଉଗ୍ରାୟୁଧ ଅବନ୍ତୀରାଜଙ୍କ ପୁତ୍ରଦ୍ୱୟ ତ୍ରିଗର୍ତ୍ତାଧିପତି ଓ ସଂଶପ୍ତକ ସୈନ୍ୟବୃନ୍ଦ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୩୮ । ଯେତେ-ବେଳେ ନରପତି ଅଲମ୍ବୁଷ ଋଷ୍ୟଶୃଙ୍ଗଙ୍କ ପୁତ୍ର ରାକ୍ଷସ ଅଲାୟୁଧ ମଧ୍ୟ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୩୯ । ଯେତେବେଳେ ନାରାୟଣୀ ସେନା ନାମରେ ବିଖ୍ୟାତ ବହୁ ସହସ୍ର ଯୁଦ୍ଧ ଦୁର୍ମଦ ଗୋପାଳ ସୈନ୍ୟବୃନ୍ଦ ଓ ଅସଂଖ୍ୟ ମ୍ଳେଚ୍ଛ ସୈନ୍ୟ ହତ ହେଲେ, ତେତେବେଳେ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୪୦ । ଯେତେବେଳେ ସୁବଳନନ୍ଦନ ଶକୁନି ଓ ମହାବଳ କୈତବ୍ୟ ନିଜ ସୈନ୍ୟ ସହିତ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ୪୧ ।

ଯେତେବେଳେ ସର୍ବଶସ୍ତ୍ରାସ୍ତ୍ରପାରଗ ମହାନୁଭାବ ଇନ୍ଦ୍ରଦେବଙ୍କ ସମାନ ବିକ୍ରମଶାଳୀ ଶୂରବୃନ୍ଦ ଯୁଦ୍ଧରେ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ହେ ସଞ୍ଜୟ ! ଯେତେବେଳେ ନାନା ଦେଶରୁ ସମାଗତ ସମସ୍ତ କ୍ଷତ୍ରିୟ-ମାନେ ନିହତ ହେଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ଯେତେବେଳେ ଯୁଦ୍ଧରେ ଆମ୍ଭର ମହାବଳ ପୁତ୍ର, ପୌତ୍ର, ବୟସ୍ୟ ଓ ଭ୍ରାତୃବୃନ୍ଦ ପ୍ରାଣତ୍ୟାଗ କଲେ, ତେତେବେଳେ ଆଉ ଦୈବ ଅପେକ୍ଷା ପୌରୁଷର ପ୍ରଧାନତା କେଉଁଠାରେ ରହିଲା ? ନରବୃନ୍ଦ ଅଦୃଷ୍ଟକୁ ସଙ୍ଗରେ ନେଇ ଉତ୍ପନ୍ନ ହୁଅନ୍ତି, କିନ୍ତୁ ଯେଉଁ ବ୍ୟକ୍ତି ସୌଭାଗ୍ୟଶାଳୀ ସେହି ବ୍ୟକ୍ତି କେବଳ କଲ୍ୟାଣ ପ୍ରାପ୍ତ ହୁଅନ୍ତି ।

ହେ ସଞ୍ଜୟ ! ଏତେବେଳେ ଆମ୍ଭେ ସ୍ୱକୀୟ ଭାଗ୍ୟରେ ହୀନ ଓ ପୁତ୍ରାଦିବିହୀନ ହୋଇ ବୃଦ୍ଧ ବୟସରେ କେଉଁପରି ଶତ୍ରୁମାନଙ୍କର ବଶବର୍ତ୍ତୀ ହେବୁଁ ? ଆମ୍ଭେ ବିଚାର କରୁଅଛୁଁ ଏତେବେଳେ ଆମ୍ଭ ପକ୍ଷରେ ବନବାସ ବ୍ୟତୀତ ଅନ୍ୟ କିଛିମାତ୍ର ହିତକର ନୁହେଁ । ଆମ୍ଭେ ଏତେବେଳେ ଜ୍ଞାତି ଓ ବନ୍ଧୁମାନଙ୍କୁ ହରାଇଅଛୁଁ, ଅତଏବ କେବଳ ବନ ଗମନ କରିବୁଁ । ଛିନ୍ନ-ପକ୍ଷ ବିହଙ୍ଗ ସଦୃଶ ଆମ୍ଭେ ଯେଉଁ ଅବସ୍ଥାକୁ ପ୍ରାପ୍ତ ହୋଇଅଛୁଁ, ତହିଁରେ ବନଗମନ ବ୍ୟତିରେକେ, ଅନ୍ୟ କୌଣସି ବିଷୟ ଆମ୍ଭର ହିତକର ନୁହେଁ । ହେ ସଞ୍ଜୟ ! ମହାବଳ ଦୁର୍ଯ୍ୟୋଧନ, ଦୁଃଶାସନ, ବିଶସ୍ତ, ବିକର୍ଣ୍ଣ ଓ ଶଲ୍ୟ ପ୍ରଭୃତି ସଂଗ୍ରାମରେ ନିହତ ହୋଇଅଛନ୍ତି । ଯେଉଁ ଭୀମ ଏକାକୀ ଯୁଦ୍ଧରେ ଆମ୍ଭର ଶତପୁତ୍ରମାନଙ୍କୁ ସଂହାର କରିଅଛନ୍ତି ତାହାଙ୍କର ଉଚ୍ଚଧ୍ୱନି କିପରି ଶ୍ରବଣ କରିବୁ ? ସେ ଦୁର୍ଯ୍ୟୋଧନଙ୍କ ବଧରେ ଗର୍ବିତ ହୋଇ ବାରମ୍ବାର ଯେଉଁ ନିଷ୍ଠୁର ବାକ୍ୟସବୁ କହିବେ, ତାହା ଆମ୍ଭେ ଦୁଃଖଶୋକ-ସନ୍ତପ୍ତ ଚିତ୍ତରେ ଶୁଣି ପାରିବୁ ନାହିଁ ।

ବୈଶମ୍ପାୟନ କହିଲେ—ହେ ଭରତଶ୍ରେଷ୍ଠ ! ଅମ୍ବିକାପୁତ୍ର ରାଜା ଧୃତରାଷ୍ଟ୍ର ହତବାନ୍ଧବ ହୋଇ ଏହିପରି ଶୋକସଂତପ୍ତ ଓ ପୁତ୍ରଶୋକଜନିତ ମନୋବ୍ୟଥାରେ ଗ୍ରସ୍ତ ହୋଇ ବାରମ୍ବାର ମୋହପ୍ରାପ୍ତ ହେଲେ । ଅନେକ ସମୟ ପର୍ଯ୍ୟନ୍ତ ବିଳାପ କରି ଦୀର୍ଘ ଓ ଉଷ୍ଣ ନିଶ୍ୱାସ ପରିତ୍ୟାଗ କଲେ ଓ ପରାଜୟ ବିଷୟକୁ ଚିନ୍ତା କରି ମହା ଶୋକାବିଷ୍ଟ ଓ ସନ୍ତପ୍ତ ହୋଇ ଯୁଦ୍ଧର ଯଥାର୍ଥ ବିଷୟ ଜାଣିବାକୁ ପୁନଶ୍ଚ ସଞ୍ଜୟଙ୍କୁ ପଚାରିଲେ । ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଭୀଷ୍ମ ଓ ଦ୍ରୋଣ ହତ ଏବଂ ସୂତପୁତ୍ର ପାତିତ ହେବାର ଶୁଣି ମଦୀୟ ପୁତ୍ରଗଣ କାହାକୁ ସୈନ୍ୟ ପରିଚାଳକ ସେନାପତି ପଦରେ ନିଯୁକ୍ତ କଲେ ? ଆମ୍ଭ ପୁତ୍ରମାନେ ଯେଉଁ ଯେଉଁମାନଙ୍କୁ ସୈନ୍ୟ ପରିଚାଳକ ରୂପେ ନିଯୁକ୍ତ କଲେ, ପାଣ୍ଡବଗଣ ଅବିଳମ୍ବେ ସେମାନଙ୍କୁ ବିନଷ୍ଟ କରିଅଛନ୍ତି । କିରୀଟୀ ତୁମ୍ଭମାନଙ୍କ ସମକ୍ଷରେ ଯୁଦ୍ଧର ଅଗ୍ରରେ ଭୀଷ୍ମଦେବଙ୍କୁ ବିନଷ୍ଟ କଲେ । ୫୮ । ଏହିପରି ନରପତିବୃନ୍ଦ ଓ ତୁମ୍ଭ-ମାନଙ୍କ ସମ୍ମୁଖରେ ମହାନୁଭବ ଦ୍ରୋଣାଚାର୍ଯ୍ୟ ଓ ପ୍ରତାପଶାଳୀ ସୂତପୁତ୍ର କର୍ଣ୍ଣଙ୍କୁ ମଧ୍ୟ ବିନଷ୍ଟ କଲେ । ପୂର୍ବେ ମହାତ୍ମା ବିଦୁର ଆମ୍ଭଙ୍କୁ କହିଥିଲେ ଯେ "ଦୁର୍ଯ୍ୟୋଧନଙ୍କ ଅପରାଧରେ ଏହି ପ୍ରଜାସମୂହ ନଷ୍ଟ ହେବେ ।" ମୂଢ଼ ଲୋକମାନଙ୍କ ମଧ୍ୟରେ କେହି ଭବିଷ୍ୟତ୍ ବିଷୟକୁ ଜାଣି ପାରନ୍ତି ନାହିଁ ।

ଆମ୍ଭ ପକ୍ଷରେ ସେହି କଥା ଯଥାର୍ଥ ହୋଇଅଛି । ସର୍ବଧର୍ମବିଶାରଦ ଧର୍ମାତ୍ମା ବିଦୁର ଯାହା କହିଥିଲେ ତାହାଙ୍କର ସେହି ବାକ୍ୟ ସତ୍ୟ ହେଲା । ହେ ସଞ୍ଜୟ ! ଆମ୍ଭେ ପୂର୍ବେ ଦୈବବଶରେ ଭ୍ରାନ୍ତଚିତ୍ତ ହୋଇ ଯେଉଁ ଅନ୍ୟାୟ କାର୍ଯ୍ୟକୁ ବିବେଚନା କରି ନ ଥିଲୁଁ ତାହାର ଯେଉଁ ଫଳ ହୋଇଅଛି, ତୁମ୍ଭେ ତାହା ପୁନଶ୍ଚ କହ । ୭୩ । କର୍ଣ୍ଣ ନିପାତିତ ହେଲାରୁ ସୈନ୍ୟମାନଙ୍କ ସମ୍ମୁଖରେ କିଏ ରହିଲେ ? କେଉଁ ରଥୀ ଧନଞ୍ଜୟ ଓ କୃଷ୍ଣଙ୍କ ସମ୍ମୁଖକୁ ଧାବମାନ ହେଲେ ? ୭୪ । କେଉଁ ବ୍ୟକ୍ତି ଅବା ଯୁଦ୍ଧାଭିଳାଷୀ ବୀରବର ମଦ୍ରରାଜଙ୍କ ଦକ୍ଷିଣଚକ୍ର ରକ୍ଷା କରିଥିଲେ ଓ କେଉଁ କେଉଁମାନେ ତାହାଙ୍କ ପୃଷ୍ଠଦେଶରୁ ବାମଭାଗ ପର୍ଯ୍ୟନ୍ତ ରକ୍ଷା କରିବା ନିମିତ୍ତ ଯତ୍ନଶୀଳ ହୋଇଥିଲେ ? ୭୫ । ହେ ସଞ୍ଜୟ ! ତାଦୃଶ ସମବେତ ବୀରକୁଳର ସାକ୍ଷାତରେ ମହାବଳ ମଦ୍ରରାଜ ଓ ଆମ୍ଭ ପୁତ୍ର ପାଣ୍ଡବମାନଙ୍କ ଦ୍ୱାରା କିପରି ନିହତ ହେଲେ ? ୭୬ । ଯେଉଁପରି କୌରବମାନଙ୍କର ଏହି ଅତି ଉତ୍କୃଷ୍ଟ ଲୋକକ୍ଷୟ ଘଟଣା ସଂଘଟିତ ହେଲା, ସଂଗ୍ରାମରେ ଆମ୍ଭ ପୁତ୍ର ଦୁର୍ଯ୍ୟୋଧନ ଯେଉଁପରି ପ୍ରାଣତ୍ୟାଗ କଲେ, ଯେଉଁପରି ବଳିଷ୍ଠ ପାଞ୍ଚାଳକୁଳ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ନିହତ ହେଲେ, ଏବଂ ପଞ୍ଚପାଣ୍ଡବ, ବାସୁଦେବ, ସାତ୍ୟକି ଓ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଏମାନେ କିପରି ମୁକ୍ତ ହେଲେ, ଏହି ଯୁଦ୍ଧ ଯେଉଁପରି ନିଷ୍ପନ୍ନ ହେଲା ତାହା ସବୁ ଶୁଣିବାକୁ ଅଭିଳାଷ କରୁଅଛୁଁ । ହେ ସଞ୍ଜୟ ! ତୁମ୍ଭେ ଏହି ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ କରିବାକୁ ଉପଯୁକ୍ତ ଅଟ । ୭୭ ।

---

## ତୃତୀୟ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! କୌରବ ଓ ପାଣ୍ଡବଗଣ ଯୁଦ୍ଧ ନିମିତ୍ତ ପରସ୍ପର ଏକତ୍ରିତ ହେଲାରୁ ଯେଉଁପରି ଅସଂଖ୍ୟ ଜନକ୍ଷୟ ଘଟନା ସଂଘଟିତ ହେଲା ସେହି ବୃତ୍ତାନ୍ତକୁ ସ୍ଥିରମନା ହୋଇ ଶୁଣିବା ହେଉନ୍ତୁ । ୧ । ମହାତ୍ମା ପାଣ୍ଡୁନନ୍ଦନଙ୍କ କର୍ତ୍ତୃକ ସୂତନନ୍ଦନ ନିହତ ହେଲାରୁ ସଂଗୃହୀତ ସୈନ୍ୟବୃନ୍ଦ ବାରମ୍ବାର ପଳାୟନ କଲେ ଏବଂ ସମରଭୂମି ଗଜ ଓ ମନୁଷ୍ୟମାନଙ୍କ ଶରୀରସମୂହରେ ପରିପୂର୍ଣ୍ଣ ହୋଇ ଭୟଙ୍କର ଆକାର

ଧାରଣ କଲି । ଧନଞ୍ଜୟ ଯେଉଁ ଭୟଙ୍କର ସିଂହନାଦ କଲେ, ତାହା ଶ୍ରବଣ କରି ଭବଦୀୟ ପୁତ୍ରମାନଙ୍କ ଅନ୍ତଃକରଣରେ ଅତିଶୟ ଭୟ ପ୍ରବିଷ୍ଟ ହେଲା । କର୍ଣ୍ଣ ନିହତ ହେଲାରୁ ଆପଣଙ୍କ ଯୋଦ୍ଧାମାନଙ୍କ ମଧ୍ୟରେ କାହାର ସୁଦ୍ଧା ପରାକ୍ରମ ପ୍ରକାଶରେ ଓ ସୈନ୍ୟବିନ୍ୟାସ ବିଷୟରେ ବୁଦ୍ଧି ସ୍ଫୁରିଲା ନାହିଁ । ଅଗାଧ ସମୁଦ୍ରରେ ନୌକା ଭଗ୍ନ ହେଲେ ବଣିକ୍-ସମୂହ ଯେଉଁପରି ଭେଳାଶୂନ୍ୟ ହୋଇ ଅପାର ସାଗରକୁ ପାର ହେବା ନିମିତ୍ତ ଇଚ୍ଛା କରି ପ୍ରସ୍ତୁତ ହୁଅନ୍ତି, ସେହିପରି କିରୀଟୀଙ୍କ ଦ୍ୱାରା ଦ୍ୱୀପସଦୃଶ ସୂତପୁତ୍ର ହତ ହେବା ହେତୁରୁ ଶରବିକ୍ଷତ ସୈନ୍ୟବୃନ୍ଦ ଅତ୍ୟନ୍ତ ତ୍ରସ୍ତ ହେଲେ । ସେମାନେ ସିଂହଦ୍ୱାରା ପୀଡ଼ିତ ମୃଗ, ଭଗ୍ନଶୃଙ୍ଗ ବୃଷ, ଓ ଭଗ୍ନଦନ୍ତ ସର୍ପ ସଦୃଶ ଅନାଥ ହୋଇ ନାଥ ଅନ୍ୱେଷଣ କଲେ । ୭ । ପରିଶେଷରେ ସାୟାହ୍ନ ସମୟରେ ଆମ୍ଭେ ସମସ୍ତେ ଅର୍ଜ୍ଜୁନଙ୍କ ଦ୍ୱାରା ପରାସ୍ତ ହୋଇ ସମରଭୂମି ପରିତ୍ୟାଗ କଲୁଁ ।

ସୂତପୁତ୍ର ଓ ଭବଦୀୟ ପୁତ୍ରମାନଙ୍କର ପ୍ରଧାନ ପ୍ରଧାନ ବୀରବୃନ୍ଦ ହତ ହେଲାରୁ ସେମାନେ ବିଧ୍ୱସ୍ତ ଓ ଶାଣିତ ଶରବୃନ୍ଦରେ ଛିନ୍ନକଳେବର ହୋଇ ଭୟରେ ପଳାୟନ କଲେ । ହେ ମହାରାଜ ! ସେମାନେ ସମସ୍ତେ ଭୟରୁ ପଳାୟନପର, ଶସ୍ତ୍ରହୀନ, କବଚଶୂନ୍ୟ ଓ ହତଚୈତନ୍ୟ ହୋଇ ପରସ୍ପରରେ ଆଘାତ କରି ଦଶଦିଗକୁ ଅବଲୋକନପୂର୍ବକ ଧାବମାନ ହେଲେ । "ଭୀମ ଓ ଅର୍ଜ୍ଜୁନ ଆମ୍ଭନିକଟକୁ ନିଶ୍ଚୟ ଧାବମାନ ହେଉଅଛନ୍ତି"—ଏହି ଜ୍ଞାନ କରି କେହି କେହି ଭୂମିରେ ପତିତ ଓ ମୂର୍ଚ୍ଛିତ ହେଲେ । ମହାରଥଗଣ ଭୟ ହେତୁରୁ କେହି ବେଗଗାମୀ ଅଶ୍ୱପୃଷ୍ଠରେ, କେହି ଗଜ ପୃଷ୍ଠରେ, କେହି ଅବା ରଥରେ ଆରୋହଣ କରି ପଦାତିକ-ମାନଙ୍କୁ ପରିତ୍ୟାଗ କଲେ । ସ୍ୟନ୍ଦନବୃନ୍ଦ ପଳାୟମାନ ଗଜଯୂଥଦ୍ୱାରା ଭଗ୍ନ ହେଲା, ଆରୋହିବୃନ୍ଦ ମହାରଥନିକରଦ୍ୱାରା ଓ ପଦାତିକବୃନ୍ଦ ଅଶ୍ୱନିକରଦ୍ୱାରା ଅତିଶୟ ହତ ହେଲେ । ହେ ମହାରାଜ ! ହିଂସ୍ରଜନ୍ତୁ ଓ ତସ୍କର ପ୍ରଭୃତିରେ ପରିପୂର୍ଣ୍ଣ ବନମଧ୍ୟରେ ସହାୟହୀନ ଜନମାନେ ଯେଉଁ-ପରି ଭୀତ ହୁଅନ୍ତି, ସୂତପୁତ୍ର ନିହତ ହେଲାରୁ ଆପଣଙ୍କ ସୈନ୍ୟମାନେ ସେହିପରି ତ୍ରସ୍ତ ହେଲେ । ଗଜଯୂଥ ଆରୋହିଶୂନ୍ୟ ଓ ଛିନ୍ନମୁଣ୍ଡ ହେଲେ । ୧୪ । ତେତେବେଳେ ସମସ୍ତେ ଭୟରେ ଆତୁର ହୋଇ ସମୁଦାୟ ଲୋକଙ୍କୁ ପାର୍ଥ ସ୍ୱରୂପ ଦେଖିଲେ ।

ତଦନନ୍ତର ଭୀମଙ୍କ ଭୟରେ ପଳାୟନପର ସୈନ୍ୟମାନଙ୍କୁ ଦେଖି ଦୁର୍ଯ୍ୟୋଧନ ହାହାକାର କଲେ ଓ ସାରଥିଙ୍କୁ ସମ୍ବୋଧନ କରି କହିଲେ, ହେ ରଥବାହକ ! ଆମ୍ଭେ ଶରାସନ ଧରି ଅଗ୍ରରେ ବସିଥିଲେ ଅର୍ଜୁନ ଆମ୍ଭଙ୍କୁ କଦାପି ପରାଭବ ଦେଇ ପାରିବେ ନାହିଁ; ଅତଏବ ତୁମ୍ଭେ ଶୀଘ୍ର ଅଶ୍ୱମାନଙ୍କୁ ଚଳାଅ । ମହାସାଗର ଯେଉଁପରି କୂଳକୁ ଲଂଘି ନ ପାରେ, ତଦ୍‌ବତ୍ ଆମ୍ଭେ ରଣଭୂମିରେ ଯୁଦ୍ଧ କଲେ କୁନ୍ତୀପୁତ୍ର ଧନଞ୍ଜୟ ଆମ୍ଭଙ୍କୁ କଦାପି ଅତିକ୍ରମ କରିପାରିବେ ନାହିଁ । ଆମ୍ଭେ ଆଜ କୃଷ୍ଣ ଅର୍ଜୁନ ଅଭିମାନୀ ଭୀମ ଓ ଅନ୍ୟାନ୍ୟ ଅବଶିଷ୍ଟ ଶତ୍ରୁମାନଙ୍କୁ ବିନଷ୍ଟ କରି କର୍ଣ୍ଣଙ୍କ ନିକଟରେ ଅଋଣୀ ହେବୁଁ । ସାରଥି କୁରୁ ନରପତିଙ୍କର ଶୂରକର ସଦୃଶ ଏହି ବାକ୍ୟସବୁ ଶୁଣି ସୁବର୍ଣ୍ଣ ଜାଲରେ ଜଡ଼ିତ ଅଶ୍ୱମାନଙ୍କୁ ଧୀରେ ଧୀରେ ଚଳାଇଲେ । ସେତେବେଳେ ଅଶ୍ୱ, ଗଜ ଓ ରଥବିହୀନ ଯେଉଁ ପଞ୍ଚବିଂଶତି ସହସ୍ର ପଦାତିକ ସୈନ୍ୟ ଥିଲେ, ସେମାନେ ମଧ୍ୟ ଧୀରେ ଧୀରେ ଗମନ କଲେ ।

ହେ ନରେନ୍ଦ୍ର ! ଶତ୍ରୁପକ୍ଷରୁ ଭୀମ ଓ ଧୃଷ୍ଟଦ୍ୟୁମ୍ନ ଅତି କ୍ରୋଧରେ ଆକ୍ରାନ୍ତ ହୋଇ ଚତୁରଙ୍ଗ ବଳଦ୍ୱାରା ସେମାନଙ୍କୁ ପରିବେଷ୍ଟନ ପୂର୍ବକ ଶରାଘାତ କଲେ । ସେମାନେ ମଧ୍ୟ ଭୀମସେନ ଓ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ପ୍ରତିଯୁଦ୍ଧ କରିବାକୁ ଉଦ୍ୟତ ହେଲେ । ୨୨ । ସେତେବେଳେ ଅନ୍ୟାନ୍ୟ ଲୋକମାନେ ପାର୍ଥ ଓ ଧୃଷ୍ଟଦ୍ୟୁମ୍ନଙ୍କ ନାମ ଘୋଷଣା କରି ରଣଭୂମିରେ ଅବସ୍ଥିତ ହେବାରୁ ଭୀମ କ୍ରୋଧରେ ଅତିଶୟ ଅଧୀର ହେଲେ । ୨୩ । ଧର୍ମପରାୟଣ ଭୀମ ସ୍ୱୟଂ ରଥରେ ଅବସ୍ଥିତ ହୋଇ ଭୂତଳସ୍ଥିତ ସୈନ୍ୟମାନଙ୍କ ସହିତ ସଂଗ୍ରାମ କରିବାକୁ ଗର୍ହିତ କାର୍ଯ୍ୟ ବୋଲି ବିବେଚନା କରି ଶୀଘ୍ର ରଥରୁ ଅବତରଣ କରି ଗଦାଧାରଣ ପୂର୍ବକ ଯୁଦ୍ଧ କଲେ । ୨୪ । ପରିଶେଷରେ ସେ ନିଜ ଭୁଜବଳକୁ ଆଶ୍ରୟ କରି ସୁବର୍ଣ୍ଣ ପରିଚ୍ଛଦଧାରିଣୀ ଶିକ୍ୟନିର୍ମିତ ଜାତ ଲୌହମୟୀ କାଳାନ୍ତକ ଯମୋପମା ମହତୀ ଗଦାକୁ ଧରି ଦଣ୍ଡପାଣି ଯମଦେବ ସଦୃଶ ଆପଣଙ୍କ ସୈନ୍ୟସମୂହକୁ ପ୍ରହାର କଲେ । ପଦାତିବୃନ୍ଦ ଅତିଶୟ କ୍ରୋଧରେ ଆକ୍ରାନ୍ତ ହୋଇ ପ୍ରାଣ ଓ ବାନ୍ଧବମାନଙ୍କ ଆଶା ପରିତ୍ୟାଗ କରି ଅଗ୍ନିମୁଖରେ ପତନୋନ୍ମୁଖ ପତଙ୍ଗ ସଦୃଶ ଭୀମସେନଙ୍କ ନିକଟକୁ ଧାବିତ ହେଲେ । ସମରମତ୍ତ କ୍ରୋଧାନ୍ଧ ସୈନ୍ୟମାନେ କୃତାନ୍ତ ଦର୍ଶନକାରୀ ଜୀବଗଣ ସଦୃଶ ଭୀମଙ୍କୁ ପ୍ରାପ୍ତ ହେବା ମାତ୍ରେ ବିନଷ୍ଟ ହେଲେ ।

ଭୀମସେନ ଖଡ଼୍‌ଗ ଓ ଗଦାଧାରଣ ପୂର୍ବକ ସମର ମଧ୍ୟରେ ଶ୍ୟେନପକ୍ଷୀ ସଦୃଶ ବିଚରଣ କରି ଆପଣଙ୍କ ପଞ୍ଚବିଂଶତି ସହସ୍ର ସୈନ୍ୟମାନଙ୍କୁ ସଂହାର କଲେ । ମହାବଳ ସତ୍ୟପରାକ୍ରମ ବୃକୋଦର ସେହି ସୈନ୍ୟମାନଙ୍କୁ ସଂହାର ପୂର୍ବକ ଧୃଷ୍ଟଦ୍ୟୁମ୍ନଙ୍କୁ ଅଗ୍ରଗାମୀ କରାଇ ପୁନଶ୍ଚ ସେଠାରେ ଦଣ୍ଡାୟମାନ ହେଲେ । ବୀର୍ଯ୍ୟଶାଳୀ ଅର୍ଜୁନ ରଥ-ସୈନ୍ୟମାନଙ୍କର ଅନୁଗାମୀ ହେଲେ ।୩୦। ମହାରଥ ସାତ୍ୟକି ଓ ମହାବଳ ନକୁଳ, ସହଦେବ ଶକୁନିଙ୍କୁ ସଂହାର କରିବା ଇଚ୍ଛାରେ ହୃଷ୍ଟମନା ହୋଇ ଶୀଘ୍ର ଧାବିତ ହେଲେ ।୩୧। ସେମାନେ ଶାଣିତ ଶରନିକର-ଦ୍ୱାରା ଶକୁନିଙ୍କର ବହୁସଂଖ୍ୟକ ଅଶ୍ୱାରୋହୀ ସୈନ୍ୟମାନଙ୍କୁ ନିହତ କରି ପରିଶେଷରେ ତାହାଙ୍କୁ ଆକ୍ରମଣ କଲେ । ଏହି ସମୟରେ ସେମାନଙ୍କର ପରସ୍ପର ଭୟଙ୍କର ଯୁଦ୍ଧ ହୋଇଥିଲା ।୩୨। ହେ ରାଜନ୍ ! ତହୁଁରେ ଅର୍ଜୁନ ତ୍ରିଭୁବନବିଖ୍ୟାତ ଗାଣ୍ଡିବ ଶରାସନ ବିକ୍ଷେପ ପୂର୍ବକ ରଥୀମାନଙ୍କ ମଧ୍ୟରେ ପ୍ରବେଶ କଲେ ।୩୩। ଯହିଁରେ କୃଷ୍ଣ ସାରଥି, ସେହି ଶ୍ୱେତାଶ୍ୱଯୁକ୍ତ ରଥ ଓ ଯୋଦ୍ଧା ଅର୍ଜୁନଙ୍କୁ ଦେଖି ଆପଣଙ୍କ ସୈନ୍ୟମାନେ ଭୟରେ ଧାବମାନ ହେଲେ ।୩୪।

ପଞ୍ଚବିଂଶତି ସହସ୍ର ପଦାତିକ ସୈନ୍ୟ ଅଶ୍ୱରଥବିହୀନ ଓ ଶରବୃନ୍ଦରେ ଆଚ୍ଛନ୍ନ ହୋଇ ସୁଦ୍ଧା ଅର୍ଜୁନଙ୍କ ପ୍ରତି ଅଗ୍ରସର ହେଲେ ।୩୫। ପାଞ୍ଚାଳମାନଙ୍କ ମହାରଥ ମହାଧନୁର୍ଦ୍ଧର ଶତ୍ରୁଦଳନ ମହାଯଶସ୍ୱୀ ପାଞ୍ଚାଳ ନରପତିଙ୍କ ପୁତ୍ର ଶ୍ରୀମାନ୍ ଧୃଷ୍ଟଦ୍ୟୁମ୍ନ ଭୀମସେନଙ୍କୁ ଅଗ୍ରଗାମୀ କରାଇ ଅବିଳମ୍ବରେ ସେହି ସୈନ୍ୟପୁରୁଷମାନଙ୍କୁ ସଂହାର ପୂର୍ବକ ବିରାଜମାନ ହେଲେ ।୩୬। ଆପଣଙ୍କ ସୈନ୍ୟବୃନ୍ଦ ପାରାବତ ସଦୃଶ ବର୍ଣ୍ଣବିଶିଷ୍ଟ ଅଶ୍ୱଯୁକ୍ତ ଓ ରକ୍ତ-କାଞ୍ଚନ-ନିର୍ମିତ-ଧ୍ୱଜବିଶିଷ୍ଟ ରଥସ୍ଥିତ ସେହି ଧୃଷ୍ଟଦ୍ୟୁମ୍ନଙ୍କୁ ଦେଖି ଭୟରୁ ପଳାୟନ କଲେ ।୩୮। ଯଶସ୍ୱୀ ମାଦ୍ରୀ-ପୁତ୍ର ନକୁଳ ଓ ସହଦେବ ସାତ୍ୟକିଙ୍କ ସହିତ ଶୀଘ୍ରାସ୍ତ୍ର ଗାନ୍ଧାର ରାଜାଙ୍କୁ ଆକ୍ରମଣ କରିବା ନିମିତ୍ତ ତାହାଙ୍କ ପଶ୍ଚାତ୍ ଧାବମାନ ହେଲେ, କିନ୍ତୁ ପାଇଲେ ନାହିଁ ।୩୯। ହେ ମହାରାଜ ! ପରିଶେଷରେ ଚେକିତାନ୍, ଶିଖଣ୍ଡୀ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ଭବଦୀୟ ଅତି ଉତ୍କୃଷ୍ଟ ସୈନ୍ୟମାନଙ୍କ ସଂହାର ପୂର୍ବକ ଶଙ୍ଖ ଧ୍ୱନି କଲେ ।୪୦। ସେମାନେ ସମସ୍ତେ ଆପଣଙ୍କ ସୈନ୍ୟମାନଙ୍କୁ ପରାଙ୍ମୁଖ ହୋଇ ପଳାଇ ଯାଉଥିବାର ଦେଖି ବୃଷଭ

ବୃଷକୁ ଜୟ କରି ଧାବିତ ହେଉଥିଲା ପରି ଧାବମାନ ହେଲେ । ୪୧ । ହେ ମହାରାଜ ! ପାଣ୍ଡୁନନ୍ଦନ ବଳବାନ ସବ୍ୟସାଚୀ ଭବଦୀୟ ପୁତ୍ରଙ୍କ ଅବଶିଷ୍ଟ ସୈନ୍ୟମାନଙ୍କୁ ଅବସ୍ଥିତ ହୋଇଥିବାର ଦେଖି ଅତିଶୟ କ୍ରୁଦ୍ଧ ହେଲେ । ୪୨ ।

ତତ୍ପରେ ସେ ସେମାନଙ୍କୁ ହଠାତ୍ ଶରସମୂହରେ ଆଚ୍ଛାଦନ କଲେ । ସେତେବେଳେ ଭୂତଳରୁ ଏତାଦୃଶ ଧୂଳିରାଶି ଉଡ୍ଡୀନ ହେଲା ଯେ ତାହାଦ୍ୱାରା କିଛିମାତ୍ର ଦୃଷ୍ଟିଗୋଚର ହେଲା ନାହିଁ । ୪୩ । ଶରଜାଳ ଓ ଅନ୍ଧକାରପଟଳରେ ଧରାତଳ ଆଚ୍ଛନ୍ନ ହେଲାରୁ ଆପଣଙ୍କ ସେନାମାନେ ଭୟ ହେତୁରୁ ସବୁ ଦିଗକୁ ଧାବିତ ହେଲେ । ୪୪ । କୁରୁ ସୈନ୍ୟବୃନ୍ଦ ପଳାୟନ କରିବାରୁ ଦୁର୍ଯ୍ୟୋଧନ ପାଣ୍ଡବ ସୈନ୍ୟମାନଙ୍କୁ ଗୁହାଁ ଗର୍ଜନ କଲେ । ୪୫ । ପୂର୍ବକାଳରେ ବଳିରାଜା ଯେଉଁପରି ଯୁଦ୍ଧ ନିମିତ୍ତ ଦେବଗଣଙ୍କୁ ଆହ୍ୱାନ କରିଥିଲେ, ଦୁର୍ଯ୍ୟୋଧନ ସେହିପରି ପାଣ୍ଡବ ସୈନ୍ୟମାନଙ୍କୁ ଗର୍ଜନ ପୂର୍ବକ ଆହ୍ୱାନ କଲେ । ସେମାନେ କ୍ରୋଧରେ ଏକତ୍ରିତ ହୋଇ ଗର୍ଜନକାରୀ ଦୁର୍ଯ୍ୟୋଧନଙ୍କୁ ବାରମ୍ବାର ଭର୍ତ୍ସନା ପୂର୍ବକ ତାହାଙ୍କ ପ୍ରତି ନାନାବିଧ ଅସ୍ତ୍ରଶସ୍ତ୍ର ବିସର୍ଜନ କଲେ । ୪୬ । ଦୁର୍ଯ୍ୟୋଧନ ମଧ ଅସମ୍ଭ୍ରାନ୍ତ ଭାବରେ ସେହି ଶତ୍ରୁମାନଙ୍କ ପ୍ରତି ଶର ନିକ୍ଷେପ କଲେ । ହେ ମହାରାଜ ! ସେତେବେଳେ ଆମ୍ଭେମାନେ ସମସ୍ତେ ଭବଦୀୟ ପୁତ୍ରଙ୍କ ଅଦ୍ଭୁତ ପୌରୁଷ ଅବଲୋକନ କଲୁଁ; କାରଣ ତତ୍ ସମୟରେ ପାଣ୍ଡବ-ମାନେ ସମସ୍ତେ ମିଳିତ ହୋଇ ସୁଦ୍ଧା ତାହାଙ୍କୁ ପରାଭବ ଦେଇ ପାରିଲେ ନାହିଁ ।

ତତ୍ପରେ ଦୁର୍ଯ୍ୟୋଧନ ଅନତିଦୂରସ୍ଥିତ ସ୍ୱୀୟ ସୈନ୍ୟମାନଙ୍କୁ ଅତିଶୟ କ୍ଷତବିକ୍ଷତ ଓ ପଳାୟନ ବିଷୟରେ ଦୃଢ଼ନିଶ୍ଚୟ ହେବାର ଦେଖି ସେମାନଙ୍କୁ ନିଷେଧ କଲେ ଓ ସ୍ୱକୀୟ ବୁଦ୍ଧିମତ୍ତା ପ୍ରକାଶ ପୂର୍ବକ ସେମାନଙ୍କ ଆନନ୍ଦ ଜନ୍ମାଇବା ନିମିତ୍ତ ଏହି ବାକ୍ୟ କହିଲେ—"ହେ ଯୋଧବୃନ୍ଦ ! ଯେଉଁ ସ୍ଥାନକୁ ଗମନ କଲେ ପାଣ୍ଡବମାନେ ତୁମ୍ଭମାନଙ୍କୁ ବିନାଶ କରିବା ନିମିତ୍ତ ଅକ୍ଷମ ହେବେ, ତାଦୃଶ ସ୍ଥାନ ପୃଥିବୀ ଅବା ପର୍ବତର କୌଣସି ଠାରେ ସୁଦ୍ଧା ନାହିଁ; ଅତଏବ ଏହି ସ୍ଥାନକୁ ପରିତ୍ୟାଗ କଲେ କଣ ହେବ ? ସମସ୍ତେ ସ୍ଥିର ହୁଅ । ଏତେବେଳେ ପାଣ୍ଡବମାନଙ୍କ ବଳ ଅତି ଅଳ୍ପ ଅଛି ଏବଂ କୃଷ୍ଣ ଓ ଅର୍ଜୁନଙ୍କ ଶରୀର ଅତ୍ୟନ୍ତ କ୍ଷତବିକ୍ଷତ ହୋଇଅଛି ।

ସମ୍ପ୍ରତି ଆମ୍ଭେମାନେ ଯଦି ଏହି ସ୍ଥାନରେ ସ୍ଥିର ହୋଇ ରହିବା, ତେବେ ନିଶ୍ଚୟ ବିଜୟ ଲାଭ କରିବା । ତୁମ୍ଭେମାନେ ଯଦି ସଂଗ୍ରାମରୁ ପଳାୟନରୂପ ପାପାଚରଣରେ ପ୍ରବୃତ୍ତ ହୋଇ ସ୍ଥାନାନ୍ତରକୁ ପ୍ରସ୍ଥାନ କରିବ, ତଥାପି ପାଣ୍ଡବକୁଳ ପଶ୍ଚାଦ୍‌ଗାମୀ ହୋଇ ତୁମ୍ଭମାନଙ୍କୁ ବିନଷ୍ଟ କରିବେ । ସେହି କାରଣରୁ ତାହା ଅପେକ୍ଷା ଏହି ସ୍ଥାନରେ ଯୁଦ୍ଧରେ ପ୍ରାଣତ୍ୟାଗ କରିବା ଆମ୍ଭମାନଙ୍କ ପକ୍ଷରେ ଶ୍ରେୟଃ । କ୍ଷତ୍ରିୟ ଧର୍ମାନୁସାରେ ଯୁଦ୍ଧ କରୁ କରୁ ଯଦି ରଣଭୂମିରେ ମୃତ୍ୟୁ ହୁଏ, ତେବେ ତାହା ସୁଖପ୍ରଦ ଅଟେ । କାରଣ ମୃତ ବ୍ୟକ୍ତି ମୃତ୍ୟୁରେ କପରି ଦୁଃଖ ହୁଏ, ତାହା ଜାଣି ପାରେ ନାହିଁ ; ବିଶେଷତଃ ଜନ୍ମାନ୍ତରରେ ଅନନ୍ତ ସୁଖ ସମ୍ଭୋଗ କରେ ।

ହେ ସମାଗତ କ୍ଷତ୍ରିୟକୁଳ ! ତୁମ୍ଭେମାନେ ସମସ୍ତେ ଶ୍ରବଣ କର । ଯୁଦ୍ଧରେ ପ୍ରବୃତ୍ତ ହୋଇ କ୍ରୋଧଯୁକ୍ତ ଶତ୍ରୁ ଭୀମଙ୍କ ଅଧୀନ ହେବା ତୁମ୍ଭ-ମାନଙ୍କର କର୍ତ୍ତବ୍ୟ ; କିନ୍ତୁ ପୂର୍ବପୁରୁଷମାନଙ୍କ ପରମ୍ପରା ପରିତ୍ୟାଗ କରିବା ତୁମ୍ଭମାନଙ୍କ ପକ୍ଷରେ ଉଚିତ ନୁହେଁ । ୫୭ । କ୍ଷତ୍ରିୟର ପଳାୟନ ଅପେକ୍ଷା ଅନ୍ୟ କିଛିମାତ୍ର ଗରିଷ୍ଠ ପାପ କର୍ମ ନାହିଁ ଓ ଯୁଦ୍ଧ ଧର୍ମ ଅପେକ୍ଷା ଶ୍ରେୟସ୍କର ସ୍ୱର୍ଗର ପଥ ମଧ୍ୟ ନାହିଁ । ହେ କୌରବଗଣ ! ଯୋଦ୍ଧାମାନେ ବହୁ ତପସ୍ୟାରେ ବହୁ କାଳରେ ପ୍ରାପ୍ତ ହେବାର ଉପଯୁକ୍ତ ଲୋକବୃନ୍ଦକୁ ଅବିଳମ୍ବରେ ସମ୍ଭୋଗ କରନ୍ତି ।”

ହେ ମହାରାଜ ! କ୍ଷତ୍ରିୟ ମହାରଥମାନେ ଦୁର୍ଯ୍ୟୋଧନଙ୍କ ଏହି ପ୍ରକାର ବାକ୍ୟସବୁକୁ ମାନ୍ୟ କରି ପରାଜୟକୁ ଅଗ୍ରାହ୍ୟପୂର୍ବକ ବିକ୍ରମ ପ୍ରକାଶ ବିଷୟରେ ମନୋଯୋଗୀ ହୋଇ ପୁନଶ୍ଚ ପାଣ୍ଡବମାନଙ୍କ ପ୍ରତି ଧାବିତ ହେଲେ । ୫୯ । ତତ୍ପରେ ଉଭୟପକ୍ଷୀୟ ଓ ପାଣ୍ଡବୀୟ ଯୋଦ୍ଧାମାନଙ୍କର ପୁନଶ୍ଚ ଦେବାସୁର ସଂଗ୍ରାମ ସଦୃଶ ଦାରୁଣ ସମର ହେଲା । ୬୦ । ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଓ ସୈନ୍ୟମାନେ ଯୁଧିଷ୍ଠିରଙ୍କ ଅଗ୍ରଗାମୀ ପାଣ୍ଡବ ସୈନ୍ୟମାନଙ୍କ ପଶ୍ଚାଦ୍‌ଭାଗରେ ଧାବିତ ହେଲେ । ୬୧ ।

---

# ଚତୁର୍ଥ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ସଂଗ୍ରାମଭୂମିରେ ମହାତ୍ମା ମହାରଥମାନଙ୍କର ରଥ ଓ ରଥମାଡ଼ ସବୁ ପତିତ, ଗଜ ଓ ପଦାତିକବୃନ୍ଦ ନିହତ ଏବଂ ନିଃସଙ୍ଗ ଭାବରେ ଅବସ୍ଥିତ ଶତ ସହସ୍ର ନରପତିମାନଙ୍କ ରଣସ୍ଥଳ ରୁଦ୍ର ଶ୍ମଶାନ ସଦୃଶ ଅତି ଭୟଙ୍କର ହୋଇଥିବାର ଦେଖି ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଶୋକୋପହତ ଚିତ୍ତରେ ବିମୁଖ ହେଲେ, ସୈନ୍ୟବୃନ୍ଦ ଅର୍ଜୁନଙ୍କ ବଳବୀର୍ଯ୍ୟ ଅବଲୋକନ କରି ଅତି ଉଦ୍‌ବିଗ୍ନ ହେଲେ । ମର୍ଦ୍ଦିତ ସୈନ୍ୟକୁଳର ଉଚ୍ଚନାଦ ଶ୍ରବଣ କରି ଅନ୍ୟାନ୍ୟ ସୈନ୍ୟମାନେ ଅତିଶୟ ଦୁଃଖିତ ଓ ନିତାନ୍ତ ଚିନ୍ତାଗ୍ରସ୍ତ ହେଲେ । ବୟଃଶୀଳ ସଂଯୁକ୍ତ ତେଜସ୍ୱୀ କୃପାଚାର୍ଯ୍ୟ ନରେନ୍ଦ୍ରମାନଙ୍କ ବିକୃତ ଅଙ୍ଗଜ୍ଞାନ ଦର୍ଶନରେ କୃପାବିଷ୍ଟ ହୋଇ ନରପତି ଦୁର୍ଯ୍ୟୋଧନଙ୍କ ନିକଟକୁ ଆସି ମନ୍ୟୁ ହେତୁରୁ ତାହାଙ୍କୁ ସମ୍ବୋଧନ କରି କହିଲେ, "ହେ ଅନଘ ! ମହାରାଜ ଦୁର୍ଯ୍ୟୋଧନ ! ଆମ୍ଭେ ତୁମ୍ଭଙ୍କୁ ଯେଉଁ ବାକ୍ୟସବୁ କହିବୁଁ ତାହା ଶ୍ରବଣ କରି ରୁଚି ଅନୁସାରେ ରକ୍ଷାକର । ୭ । ହେ କ୍ଷତ୍ରିୟଶ୍ରେଷ୍ଠ ରାଜେନ୍ଦ୍ର ! କ୍ଷତ୍ରିୟମାନେ ଯାହା ଅବଲମ୍ବନ କରି ଯୁଦ୍ଧରେ ପ୍ରବୃତ୍ତ ହୋଇଥାଆନ୍ତି, ସେହି ଯୁଦ୍ଧଧର୍ମ ଅପେକ୍ଷା ଅନ୍ୟ କିଛି ଶ୍ରେୟସ୍କର ପଥ ନାହିଁ । ୮ । ପିତା, ପୁତ୍ର, ଭ୍ରାତା ଭାଗିନେୟ, ମାତୁଳ, ସମ୍ବନ୍ଧୀ ଓ ବାନ୍ଧବ ଏହି ସମସ୍ତେ କ୍ଷତ୍ରିୟମାନଙ୍କ ଯୋଦ୍ଧ; ଯୁଦ୍ଧସ୍ଥଳରେ ବଧରେ ପରମ ଧର୍ମ ଓ ପଳାୟନରେ ନିତାନ୍ତ ଅଧର୍ମ ହୁଏ । ଏତେବେଳେ ଏହି ଜୀବିତାର୍ଥୀ ଜନବୃନ୍ଦ ଜୀବିକାନିର୍ବାହ ବିଷୟରେ ଘୋରତର ସନ୍ଦେହରେ ପଡ଼ିଅଛନ୍ତି । ଏହି ବିଷୟରେ ତୁମ୍ଭଙ୍କୁ କିଛି ହିତବାକ୍ୟ କହୁଅଛୁଁ, ଶ୍ରବଣ କର ।

ମହାରଥ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଜୟଦ୍ରଥ, ତୁମ୍ଭର ସହୋଦରବୃନ୍ଦ ଓ ତୁମ୍ଭ ପୁତ୍ର ଲକ୍ଷ୍ମଣ ପ୍ରାଣତ୍ୟାଗ କରିଅଛନ୍ତି । ଅବଶେଷରେ କାହାକୁ ଉପାସନା କରିବା ? ଯେଉଁମାନଙ୍କ ହସ୍ତରେ ଭାର ସମର୍ପଣ କରି ଆମ୍ଭେମାନେ ରାଜ୍ୟଶାସନ ବିଷୟରେ ଚିତ୍ତ ରଖିଥିଲୁ, ସେହି ବୀରକୁଳ ମାୟାମୟ ତନୁ ପରିତ୍ୟାଗ ପୂର୍ବକ ବ୍ରହ୍ମଜ୍ଞାନମାନଙ୍କ ଗତି ପ୍ରାପ୍ତ ହୋଇ ଅଛନ୍ତି । ୧୩ । ଆମ୍ଭେମାନେ ଏତେବେଳେ ଅସଂଖ୍ୟ ନରପତିମାନଙ୍କୁ ନିପାତ କରି ଗୁଣବାନ୍ ମହାରଥହୀନ ହୋଇ ଦୀନ ଭାବରେ ରହିଅଛୁଁ । ୧୪ । ଯେଉଁ ବୀରମାନେ

ଜୀବିତ ଅଛନ୍ତି, ସେମାନେ ସମସ୍ତେ ଏକତ୍ରିତ ହୋଇ ସୁଦ୍ଧା ଅର୍ଜ୍ଜୁନଙ୍କୁ ଜୟ କରି ପାରିବେ ନାହିଁ ; କାରଣ କୃଷ୍ଣ ସହାୟ ହୋଇ ସର୍ବଦା ଯେଉଁ ମହାବାହୁଙ୍କୁ ରକ୍ଷା କରୁଅଛନ୍ତି, ତାହାଙ୍କୁ ଦେବତାମାନେ ମଧ୍ୟ ପରାଭବ ଦେବାକୁ କ୍ଷମ ହେବେ ନାହିଁ । ୧୫ ।

ଆମ୍ଭମାନଙ୍କ ସୈନ୍ୟବୃନ୍ଦ ଇନ୍ଦ୍ରଧନୁ ସଦୃଶ ଅର୍ଜ୍ଜୁନଙ୍କ ଗୃପ ଓ ଇନ୍ଦ୍ରଙ୍କ କେତୁ ସମାନ ଉନ୍ନତ କପି କେତନକୁ ଦେଖି ବିଚଳିତ ହେଉଅଛନ୍ତି । ୧୬ । ଭୀମସେନଙ୍କ ସିଂହନାଦ, ପାଞ୍ଚଜନ୍ୟ ଶଙ୍ଖର ନିଃସ୍ୱନ ଓ ଗାଣ୍ଡିବ କୋଦଣ୍ଡର ନିର୍ଘୋଷରେ ଆମ୍ଭମାନଙ୍କ ଚିତ୍ତ ଚମକିତ ହେଉଅଛି । ୧୭ । ପ୍ରଜ୍ୱଳିତ ଅଙ୍ଗାର ସଦୃଶ ଗାଣ୍ଡିବ କୋଦଣ୍ଡ ନୟନର ପ୍ରଭାକୁ ଅପହରଣ କରି ସଞ୍ଚରଣଶୀଳ ମହା ବିଦ୍ୟୁତ୍ ସମାନ ଦେଖା ଯାଉଅଛି । ୧୮ । ଏହି ସୁବର୍ଣ୍ଣଦ୍ୱାରା ଖଚିତ କମ୍ପମାନ ଉତ୍କୃଷ୍ଟ ଧନୁ ଆକାଶ ମଣ୍ଡଳସ୍ଥିତ ମେଘମଣ୍ଡଳୀ ମଧ୍ୟରେ ତଡ଼ିତ୍ ସଦୃଶ ଚତୁ-ର୍ଦ୍ଦିଗରେ ମଧ୍ୟ ପ୍ରକାଶ ପାଉଅଛି । ୧୯ । ଚନ୍ଦ୍ର ଓ କାଶ ପୁଷ୍ପ ସଦୃଶ ଶ୍ୱେତବର୍ଣ୍ଣ ସୁବର୍ଣ୍ଣଦ୍ୱାରା ଚିତ୍ରବିଚିତ୍ର କଳେବର ଅଶ୍ୱବୃନ୍ଦ ରଥରେ ଯୋଜିତ ହୋଇ ଉର୍ଦ୍ଧ୍ୱ ମୁଖରେ ଆକାଶକୁ ପାନ କଲା ପରି ଅବସ୍ଥାନ କରି ପବନ ଦ୍ୱାରା ସଞ୍ଚାଳିତ ମେଘ ସମୂହ ସମାନ କୃଷ୍ଣଙ୍କ ଦ୍ୱାରା ଚାଳିତ ହୋଇ ରଣ-ସ୍ଥଳରେ ଅର୍ଜୁନଙ୍କୁ ବହନ କରୁଅଛନ୍ତି । ୨୧ । ଶିଶିର କାଳରେ ଉତ୍ଥିତ ଦାବାଗ୍ନି ଯେଉଁପରି ବନ ଦହନ କରେ, ତଦ୍‌ବତ୍ ଅସ୍ତ୍ରପଣ୍ଡିତ ଶ୍ରେଷ୍ଠ ଅର୍ଜୁନ ତୁମ୍ଭମାନଙ୍କ ସେହି ସୈନ୍ୟଙ୍କୁ ଦଗ୍‌ଧ କରିଅଛନ୍ତି । ୨୨ । ମହେନ୍ଦ୍ରଙ୍କ ସଦୃଶ ପ୍ରଭାଶାଳୀ ଅର୍ଜୁନ ଚତୁର୍ଦ୍ଦଂଷ୍ଟ୍ର ମାତଙ୍ଗ ପରି ସେନାମାନଙ୍କ ମଧ୍ୟରେ ପ୍ରବେଶ କରିବାର ଦେଖିଲୁ । ୨୩ । ହେ ରାଜନ୍ ! ହସ୍ତୀ ଯେଉଁପରି ପଦ୍ମ ବନକୁ ଦଳନ କରେ, ସେହିପରି ଅର୍ଜୁନ ଭବଦୀୟ ସେନାସମୂହକୁ ବିଶେଷ କ୍ଷୋଭଯୁକ୍ତ ଓ ପାର୍ଥିବମାନଙ୍କୁ ତ୍ରାସିତ କରୁଅଛନ୍ତି । ୨୪ । ସିଂହ ଯେଉଁପରି ମୃଗମାନଙ୍କୁ ତ୍ରାସ ଦିଏ, ସେହିପରି ପାଣ୍ଡୁନନ୍ଦନ ବାରମ୍ବାର ଗାଣ୍ଡୀବ ନିର୍ଘୋଷ ଦ୍ୱାରା ତୁମ୍ଭ ଯୋଦ୍ଧାମାନଙ୍କୁ ତ୍ରାସ ଦେଉଥିବାର ଦେଖିଲୁ । ୨୫ ।

ସର୍ବଲୋକ ମଧ୍ୟରେ ମହାଧନୁର୍ଦ୍ଧର ଏବଂ ସର୍ବଧନୁର୍ଦ୍ଧର ଶ୍ରେଷ୍ଠ ଅମୁକ୍ତ କବଚ କୃଷ୍ଣାର୍ଜୁନ ଦୁହେଁ ଲୋକ ମଧ୍ୟରେ ବିରାଜମାନ ହୋଇଅଛନ୍ତି । ୨୬ । ହେ ଭରତକୁଳ ପ୍ରଦୀପ ! ସମରଭୂମି ମଧ୍ୟରେ

ପରସ୍ପର ବଧକାଂକ୍ଷୀ ନରକୁଳର ଅତି ଭୟଙ୍କର ଯୁଦ୍ଧ ଆଜି ସପ୍ତଦଶ ଦିବସରେ ଉପସ୍ଥିତ ହୋଇଅଛି । ୨୭ । ଶରତକାଳୀନ ଜଳଧରବୃନ୍ଦ ଯେଉଁପରି ପବନର ବେଗରେ ଛିନ୍ନ ଭିନ୍ନ ହୁଏ, ଯୁଦ୍ଧରେ ତୁମ୍ଭ ସୈନ୍ୟ-ସମୂହ ସେହିପରି ଚତୁର୍ଦ୍ଦିଗକୁ ପଳାଇଲେ । ୨୮ । ହେ ମହାରାଜ ! ମହାସାଗରରେ ବାୟୁଦ୍ୱାରା ବିକମ୍ପିତ ନୌକାପରି ତୁମ୍ଭ ସେନା ଅର୍ଜ୍ଜୁନଙ୍କ ଦ୍ୱାରା ବିକମ୍ପିତ ହୋଇଅଛନ୍ତି । ୨୯ । ଏତେବେଳେ ତୁମ୍ଭ କର୍ଣ୍ଣ କେଉଁଠାରେ ଅଛନ୍ତି ? ଦ୍ରୋଣାଚାର୍ଯ୍ୟ ଓ ତାହାଙ୍କ ଅନୁଚରବର୍ଗ ଅବା କେଉଁଠାରେ ଅଛନ୍ତି, ଆମ୍ଭେ ଅବା କେଉଁଠାରେ ଅଛୁ ? ତୁମ୍ଭେ ସ୍ୱୟଂ କେଉଁଠାରେ ଅଛ, କୃତବର୍ମ୍ମା ଅବା କେଉଁଠାରେ ଅଛନ୍ତି ? ତୁମ୍ଭ ଭ୍ରାତା ଦୁଃଶାସନ ଭ୍ରାତୃଗଣ ସହିତ ଅବା କେଉଁଠାରେ ଅଛନ୍ତି ? ଜୟଦ୍ରଥଙ୍କୁ ଶର ଦ୍ୱାରା ବଦ୍ଧ ହୋଇଥିବାର ଦେଖି ସମଗ୍ରୋଦ୍ୟତ ଭର୍ତ୍ତାସ୍ୱ ଭ୍ରାତା, ସମ୍ବନ୍ଧି ଓ ମାତୁଳ ପ୍ରଭୃତି ସହାୟ ବୃନ୍ଦଙ୍କୁ ପରାସ୍ତ କରି ଅର୍ଜୁନ ସମସ୍ତ ଲୋକର ମସ୍ତକ ଆକ୍ରମଣ ପୂର୍ବକ ରାଜା ଜୟଦ୍ରଥଙ୍କୁ ବିନଷ୍ଟ କଲେ ।

ଏତେବେଳେ ଆମ୍ଭେମାନେ ଆଉ କାହାକୁ ଉପାସନା କରିବା ? ଯାହାଦ୍ୱାରା ପାଣ୍ଡୁନନ୍ଦନ ପରାସ୍ତ ହେବେ, ଏପରି କେଉଁ ଲୋକ ଅଛି ? ମହାତ୍ମା ଧନଞ୍ଜୟଙ୍କ ନାନା ପ୍ରକାର ଦିବ୍ୟାସ୍ତ୍ର ଓ ଗାଣ୍ଡିବ ଧନୁର ନିର୍ଘୋଷ ଆମ୍ଭମାନଙ୍କ ପରାକ୍ରମ ହରଣ କରୁଅଛି । ୩୪ । ଏହି ହତନାୟକ ସେନା ନଷ୍ଟଚନ୍ଦ୍ର ରଜନୀ ପରି ଗଜଦ୍ୱାରା ଭଗ୍ନ ବୃକ୍ଷ ପରି ଓ ଶୁଷ୍କ ନଦୀ ସମାନ ଆକୁଳ ହେଉଅଛି । ୫୩ । ହୁତାଶନ ଯେଉଁପରି ତୃଣରାଶି ମଧ୍ୟରେ ପ୍ରଜ୍ୱଳିତ ହୋଇ ବିଚରଣ କରେ ମହାବାହୁ ଶ୍ୱେତବାହନ ଅର୍ଜ୍ଜୁନ ସେହିପରି ଆମ୍ଭ-ମାନଙ୍କ ସେନାପତିଶୂନ୍ୟ ସୈନ୍ୟ ମଧ୍ୟରେ ସ୍ୱେଚ୍ଛାନୁସାରେ ସଞ୍ଚାର କରିବେ । ୩୬ । ମହାବଳ ଭୀମ ଓ ସାତ୍ୟକି ଏହି ଦୁହିଁଙ୍କର ଯେଉଁ ବେଗ ସେ ଅନାୟାସରେ ପର୍ବତସମୂହକୁ ବିଦୀର୍ଣ୍ଣ ଓ ସାଗରମାନଙ୍କୁ ଶୁଷ୍କ କରି-ପାରିବ । ୩୭ ।

ହେ ନରବର ! ସଭା ମଧ୍ୟରେ ଭୀମସେନ ଯେଉଁ ବାକ୍ୟମାନ କହି-ଥିଲେ ସେ ତାହା ସବୁ ସଫଳ କରିଅଛନ୍ତି । ଯାହା କିଛି ଅବଶିଷ୍ଟ ରହିଅଛି ତାହା ମଧ୍ୟ ପୁନଶ୍ଚ ସଫଳ କରିବେ । ୩୮ । ମହାବୀର କର୍ଣ୍ଣ ସମ୍ମୁଖରେ ଥିଲେ ମଧ୍ୟ ଗାଣ୍ଡିବ ଧନୁର୍ଦ୍ଧାରୀ ଅତିଶୟ ଦୁର୍ଭେଦ୍ୟ ସ୍ୱକୀୟ ବଳସମୂହକୁ ଅନାୟାସରେ ରକ୍ଷା କରିଥିଲେ । ୩୯ । ତୁମ୍ଭେମାନେ ସେହି ସାଧୁଗଣଙ୍କ-

ଠାରେ ଅକାରଣ ଯେଉଁ ଅସାଧୁ ବ୍ୟବହାରମାନ କରିଛ ସଂପ୍ରତି ତାହାର ଫଳ ଉପସ୍ଥିତ ହୋଇଅଛି । ୪୦ । ତୁମ୍ଭେ ଆତ୍ମରକ୍ଷା ନିମିତ୍ତ ଯତ୍ନରେ ଏହି ଲୋକସମୂହକୁ ଆହରଣ କରିଥିଲ, ସଂପ୍ରତି ଆହୂତ ଲୋକ ସହିତ ସେହି ତୁମ୍ଭର ଆତ୍ମା ସଂଶୟାରୂଢ଼ ହୋଇଅଛି । ୪୧ । ଅତଏବ ହେ ତାତ ଦୁର୍ଯ୍ୟୋଧନ ! ଏତେବେଳେ ତୁମ୍ଭେ ଆତ୍ମରକ୍ଷା ନିମିତ୍ତ ଯତ୍ନଶୀଳ ହୁଅ । କାରଣ ଆତ୍ମା କେବଳ ସମ୍ପଦାସ୍ତର ଭାଜନ ! ଭାଜନ ବିଭିନ୍ନ ହେଲେ ତଦ୍‌ଗତ ପଦାର୍ଥ ମଧ୍ୟ ସବୁ ଦିଗକୁ ଗମନ କରେ । ୪୨ । ବୃହସ୍ପତି ଏହି ନୀତି ପ୍ରଚାର କରିଅଛନ୍ତି କି "ଆପଣା ଅପେକ୍ଷା ପ୍ରବଳ ଅଥବା ଆତ୍ମ-ସମକକ୍ଷ ବ୍ୟକ୍ତି ସହିତ ଇଚ୍ଛା ପୂର୍ବକ ସନ୍ଧି କରିବାର ଉଚିତ ଓ ବର୍ଦ୍ଧମାନ ଲୋକଙ୍କ ସହିତ ଯୁଦ୍ଧ ବିଗ୍ରହ କରିବାର କର୍ତ୍ତବ୍ୟ । ଆମ୍ଭେମାନେ ସଂପ୍ରତି ପାଣ୍ଡବମାନଙ୍କ ଅପେକ୍ଷା ବଳବୀର୍ଯ୍ୟ ଶକ୍ତି ପ୍ରଭୃତି ସକଳ ବିଷୟରେ ହୀନ; ଅତଏବ ଆମ୍ଭ ମତରେ ଏତେବେଳେ ସେମାନଙ୍କ ସହିତ ସନ୍ଧି କରିବାର ଶ୍ରେୟଃ । ୪୪ ।

ଯେଉଁ ବ୍ୟକ୍ତି ଆପଣାର ଶ୍ରେୟକୁ ଜାଣିପାରେ ନାହିଁ ଓ ମଙ୍ଗଳରେ ଅନାସ୍ଥା କରେ, ସେ ଅଚିରକାଳେ ରାଜ୍ୟଭ୍ରଷ୍ଟ ହୁଏ ଏବଂ କଦାପି ମଙ୍ଗଳ ଲାଭ କରି ନ ପାରେ । ୪୫ । ହେ ମହାରାଜ ! ଆମ୍ଭେମାନେ ଯଦି ରାଜା ଯୁଧିଷ୍ଠିରଙ୍କ ନିକଟରେ ପ୍ରଣତ ହୋଇ ପୁଣ୍ଡା ରାଜ୍ୟ ଲାଭ କରିବା, ତେବେ ତାହା ମଧ୍ୟ ଶ୍ରେୟଃ, ମୂଢ଼ତା ପ୍ରଯୁକ୍ତ ପରାଭବ ସ୍ୱୀକାର କରିବାର ଶ୍ରେୟଃ ନୁହେଁ । ୪୬ । କୃପାଳୁ ରାଜା ଯୁଧିଷ୍ଠିର ବୃଦ୍ଧ ରାଜା ଧୃତରାଷ୍ଟ୍ର ଓ ଶ୍ରୀକୃଷ୍ଣଙ୍କ ବଚନାନୁସାରେ ତୁମ୍ଭଙ୍କୁ ନିଶ୍ଚୟ ରାଜ୍ୟରେ ନିଯୁକ୍ତ କରିବେ, କାରଣ କୃଷ୍ଣ, ରାଜା ଯୁଧିଷ୍ଠିର, ଭୀମ ଓ ଅର୍ଜୁନଙ୍କୁ ଯାହା ଆଜ୍ଞା କରନ୍ତି, ସେମାନେ ତାହା ପ୍ରତିପାଳନ କରନ୍ତି; ଏଥିରେ ସନ୍ଦେହ ନାହିଁ । ୪୮ । ଆମ୍ଭେ ଅନୁମାନ କରୁଅଛୁ କୃଷ୍ଣ କଦାପି କୁରୁରାଜ ଧୃତରାଷ୍ଟ୍ରଙ୍କ ବାକ୍ୟକୁ ଅନ୍ୟଥା କରିବେ ନାହିଁ । ୪୯ । ଅତଏବ ଆମ୍ଭେ କହୁଅଛୁ, ଏତେବେଳେ ପାଣ୍ଡବମାନଙ୍କ ସହିତ ଯୁଦ୍ଧରୁ ନିବୃତ୍ତ ହେଲେ ତୁମ୍ଭର ମଙ୍ଗଳ ହେବ । ମହାରାଜ ! ଆମ୍ଭେ କାର୍ପଣ୍ୟ ଅବା ସ୍ୱୀୟ ପ୍ରାଣରକ୍ଷା ନିମିତ୍ତ ତୁମ୍ଭଙ୍କୁ ଏହା ସବୁ କହୁନାହୁଁ । ଯେଉଁ ସବୁ ହିତକର ବାକ୍ୟ କହୁଅଛୁ, ତାହା ତୁମ୍ଭେ ପରଲୋକଗାମୀ ହୋଇ ନିଶ୍ଚୟ ସ୍ମରଣ କରିବ ।"

ବୃଦ୍ଧଶ୍ରେଷ୍ଠ କୃପାଚାର୍ଯ୍ୟ ଏହି ବାକ୍ୟ ସବୁ କହି ଦୀର୍ଘ ଓ ଉଷ୍ଣ ନିଶ୍ୱାସ ପରିତ୍ୟାଗ କରି ଶୋକ କଲେ ଓ ମୋହଗ୍ରସ୍ତ ହେଲେ । ୫୧ ।

# ପଞ୍ଚମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଯଶସ୍ୱୀ କୃପାଚାର୍ଯ୍ୟ ରାଜା ଦୁର୍ଯ୍ୟୋଧନଙ୍କୁ ଏହିପରି ବାକ୍ୟସବୁ କହିଲାପରେ ସେ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ ପୂର୍ବକ କ୍ଷଣମାତ୍ର ମୌନ ହୋଇ ରହିଲେ । ୧ । ତତ୍ପରେ ମୁହୂର୍ତ୍ତମାତ୍ର ଚିନ୍ତାକରି ଶାରଦ୍ୱତଙ୍କୁ ଏହି କଥା କହିଲେ ଯେ "ସୁହୃଦ୍ ବ୍ୟକ୍ତିର ଯାହା ବକ୍ତବ୍ୟ, ତାହାସବୁ ଆପଣ ଆମ୍ଭଙ୍କୁ ଶୁଣାଇଲେ ଏବଂ ଆପଣ ସ୍ୱୟଂ ମଧ୍ୟ ପ୍ରାଣପଣରେ ମହାରଥ ଓ ଅତି ତେଜସ୍ୱୀ ପାଣ୍ଡବମାନଙ୍କ ସହିତ ସଂଗ୍ରାମ କରିଅଛନ୍ତି । ଏହା ସମସ୍ତ ଲୋକେ ଜାଣନ୍ତି । ଆପଣ ସୁହୃଦ୍ ସଦୃଶ ଆମ୍ଭଙ୍କୁ ଯେଉଁ ବାକ୍ୟମାନ କହିଲେ, ତାହା ସବୁ ଶ୍ରବଣ କରି ସୁଦ୍ଧା ମୁମୂର୍ଷୁ ବ୍ୟକ୍ତିର ଔଷଧରେ ପ୍ରୀତି ଜନ୍ମିଲାପରି ତହିଁରେ ଆମ୍ଭର ପ୍ରୀତି ଜନ୍ମୁନାହିଁ । ୫ । ହେ ବିପ୍ରବର ! ଆପଣ ଯୁକ୍ତି କାରଣ ସଂଯୁକ୍ତ ଯେଉଁ ବାକ୍ୟମାନ କହିଲେ, ତହିଁରେ ଆମ୍ଭର କଦାପି ରୁଚି ହେଉନାହିଁ ।

ଆମ୍ଭେମାନେ ଯେଉଁ ମହାବଳୀ ରାଜାଙ୍କୁ ଦ୍ୟୂତ କ୍ରୀଡ଼ାରେ ପରାଜୟ ଦେଇ ରାଜ୍ୟରୁ ନିର୍ବାସିତ କରିଦେଇଥିଲୁ, ସେ ଏତେବେଳେ ଆମ୍ଭଠାରେ କିପରି ବିଶ୍ୱାସ କରିବେ ଓ ଆମ୍ଭ ବାକ୍ୟରେ ତାହାଙ୍କର କେଉଁପରି ଅବା ପୁନରପି ଶ୍ରଦ୍ଧା ଜନ୍ମିବ ? ପୁଣି ମଧ୍ୟ ଦେଖିବା ହେଉ, ପାଣ୍ଡବ ହିତୈଷୀ ହୃଷୀକେଶ କୃଷ୍ଣ ଯେତେବେଳେ ଦୂତପଣ ସ୍ୱୀକାର କରି ଆମ୍ଭମାନଙ୍କ ନିକଟକୁ ଆସିଥିଲେ, ତେତେବେଳେ ଆମ୍ଭେମାନେ ତାହାଙ୍କୁ ଯେଉଁ ତିରସ୍କାର କରିଥିଲୁ ତାହା ମଧ୍ୟ ଅତି ଅବିଚାରର କାର୍ଯ୍ୟ ହୋଇଅଛି । ଏତେବେଳେ ସେ ଆମ୍ଭ ବାକ୍ୟକୁ କିପରି ବିଶ୍ୱାସ କରିବେ ? ଦ୍ରୌପଦୀଙ୍କୁ ସଭାମଧ୍ୟକୁ ଆଣିଲାରୁ ସମସ୍ତଙ୍କ ସାକ୍ଷାତରେ ସେ ଯେଉଁ ଅତ୍ୟନ୍ତ ବିଳାପ କରିଥିଲେ, କୃଷ୍ଣ ତାହା ସ୍ମରଣକରି କ୍ଷମା କରିବେ ନାହିଁ; କାରଣ ରାଜ୍ୟ-ହରଣ ଅପେକ୍ଷା ଦ୍ରୌପଦୀଙ୍କ ବିଳାପ ତାହାଙ୍କ ପକ୍ଷେ ଅତ୍ୟନ୍ତ ଦୁଃଖପ୍ରଦ ହୋଇଅଛି । ୧୦ । କୃଷ୍ଣାର୍ଜ୍ଜୁନ ଦୁହେଁ ଏକପ୍ରାଣ ବୋଲି ଯାହା ଆମ୍ଭେ ପୂର୍ବେ ଶୁଣିଥିଲୁ ଏତେବେଳେ ତାହା ସାକ୍ଷାତରେ ଦେଖିଲୁ । ୧୧ । କେଶବ ନିଜ ଭଗିନେୟଙ୍କ ମୃତ୍ୟୁ ସମ୍ବାଦ ଶୁଣି ଆଜପର୍ଯ୍ୟନ୍ତ ଅତି କଷ୍ଟରେ ରଜନୀ ଯାପନ କରୁଅଛନ୍ତି । ଅତଏବ ଆମ୍ଭେମାନେ ତାହାଙ୍କ ନିକଟରେ ଅତ୍ୟନ୍ତ ଅପରାଧୀ ହୋଇଅଛୁ । ଏତେବେଳେ ସେ ଆମ୍ଭମାନଙ୍କୁ କାହିଁକି କ୍ଷମା ଦେବେ ? ୧୨ ।

ଅଭିମନ୍ୟୁଙ୍କ ବିନାଶ ହେତୁରୁ ଅର୍ଜୁନଙ୍କର କିଛିମାତ୍ର ସୁଖ ନାହିଁ । ସୁତରାଂ ପ୍ରାର୍ଥୀ ହେଲେ ସୁଦ୍ଧା ସେ କାହିଁକି ଆମ୍ଭମାନଙ୍କ ହିତ ସାଧନ ନିମିତ୍ତ ଯତ୍ନଶୀଳ ହେବେ ? ହେ ଦ୍ୱିଜବର ! ମଧ୍ୟମ ପାଣ୍ଡବ ମହାବଳ ଅତି ଉଗ୍ର ସ୍ୱଭାବ ଭୀମ ଯେଉଁ ଦୃଢ଼ ପ୍ରତିଜ୍ଞା କରିଅଛନ୍ତି, ତାହା ଦ୍ୱାରା ସେ ନତ ହେବେ ପଛକେ କଦାପି ଅବନତ ହେବେ ନାହିଁ । ୧୪ । ଯେଉଁ ବୀରଦ୍ୱୟ କେବଳ ଆମ୍ଭମାନଙ୍କର ପ୍ରବଳ ଶତ୍ରୁ, ଯେଉଁ ଦୁହେଁ ସର୍ବଦା ବଦ୍ଧକବଚ ଓ ଖଡ଼୍‌ଗ ହସ୍ତ ହୋଇ ରହିଅଛନ୍ତି, ସେହି ଯମଦେବ ସଦୃଶ ନକୁଳ, ସହଦେବ, ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡି ମଧ୍ୟ ଆମ୍ଭ ସଙ୍ଗେ ଶତ୍ରୁତା କରିଅଛନ୍ତି । ଅତଏବ ସେମାନେ କିପରି ଆମ୍ଭ ହିତ ନିମିତ୍ତ ଯତ୍ନଶୀଳ ହେବେ ? ସଭା ମଧ୍ୟରେ ସମସ୍ତଙ୍କ ସାକ୍ଷାତରେ ଦୁଃଶାସନ ଯେଉଁ ଏକବସ୍ତ୍ରା ରଜସ୍ୱଳା କୃଷ୍ଣାଙ୍କୁ ଅତିଶୟ କ୍ଲେଶ ଦେଇଥିଲେ, ପାଣ୍ଡବମାନେ ସେହି ଘଟନା ଓ ଅବସ୍ଥାକୁ ଆଜଯାଏ ସ୍ମରଣ କରୁଅଛନ୍ତି ; ଅତଏବ ସେହି ଶତ୍ରୁଦଳନମାନଙ୍କୁ ସଂଗ୍ରାମରୁ ନିବର୍ତ୍ତାଇବାକୁ କାହାର ଶକ୍ତି ଅଛି ? ୧୮ । ଦ୍ରୌପଦୀ ତଦବଧି ମଳିନା ଓ ଦୁଃଖିତା ହୋଇ ପତିମାନଙ୍କ ଅର୍ଥସିଦ୍ଧି ଓ ଆମ୍ଭମାନଙ୍କ ବିନାଶ ନିମିତ୍ତ ଉଗ୍ରତର ତପସ୍ୟା କରୁଅଛନ୍ତି ଓ ଯେତେଦିନ ପର୍ଯ୍ୟନ୍ତ ବୈର ନିର୍ଯ୍ୟାତନ ନ ହେବ ତତ୍କାଳ ପର୍ଯ୍ୟନ୍ତ ସେ ସର୍ବଦା ସ୍ଥଣ୍ଡିଳ ମଧ୍ୟରେ ଶୟନ କରିବେ । କୃଷ୍ଣଙ୍କ ଭଗିନୀ ସୁଭଦ୍ରା ଅଭିମାନ ପରିତ୍ୟାଗ ପୂର୍ବକ ଦାସୀ ସମାନ ହୋଇ ପାଞ୍ଚାଳୀଙ୍କୁ ସେବା କରୁଅଛନ୍ତି । ଏହିପରି ଯେଉଁ ବୈରଭାବ ବର୍ଦ୍ଧିତ ହୋଇଅଛି, ତାହା କଦାପି ନିବାରିତ ହେବ ନାହିଁ । ୨୧ ।

ଅଭିମନ୍ୟୁଙ୍କ ବିନାଶ ହୋଇଥିବା ହେତୁରୁ ଅର୍ଜୁନ ଆମ୍ଭ ସହିତ କାହିଁପାଇଁ ସନ୍ଧିବନ୍ଧନ କରିବେ ? ଆମ୍ଭେ ସସାଗରା ପୃଥିବୀର ଅଧିପତି ହୋଇ ସୁତରାଂ କେଉଁପରି ପାଣ୍ଡବମାନଙ୍କ ପ୍ରସାଦଲବ୍‌ଧ ଅକଣ୍ଟକ ରାଜ୍ୟ ଭୋଗ କରିବୁ ? ପ୍ରଥମରେ ଆମ୍ଭେ ସୂର୍ଯ୍ୟଦେବଙ୍କ ସଦୃଶ ସମଗ୍ର ନରପାଳମାନଙ୍କ ଉପର୍ଯ୍ୟୁପରି ଆଧିପତ୍ୟ କରି ପଶ୍ଚାତ୍ କେଉଁପରି ଦାସବତ୍ ଯୁଧିଷ୍ଠିରଙ୍କ ଅନୁଗତ ହେବୁ ? ଆମ୍ଭେ ସ୍ୱୟଂ ଅନୁପମ ଐଶ୍ୱର୍ଯ୍ୟ ଭୋଗ ଓ ବିପୁଳ ଧନ ଦାନ କରି ଏତେବେଳେ ଦୀନମାନଙ୍କ ସହିତ ଦୀନ ଭାବରେ କିପରି ଜୀବିକା ନିର୍ବାହ କରିବୁ ? ଆପଣ ଆମ୍ଭଙ୍କୁ ଯେଉଁ ସ୍ନିଗ୍‌ଧ ଓ ହିତ ବାକ୍ୟ କହିଲେ, ତହିଁରେ ଆମ୍ଭେ କୌଣସି ଦୋଷାରୋପ କରୁନାହୁଁ ; କିନ୍ତୁ

ଏହି ଶେଷ ସମୟରେ ସନ୍ଧିବନ୍ଧନ କରିବାକୁ କଦାପି ଉଚିତ ବୋଲି ବୋଧ କରୁନାହୁଁ ।

ଆମ୍ଭ ବିବେଚନାରେ ଯୁଦ୍ଧ କରିବା ଉଚିତ, ଏତେବେଳେ ନପୁଂସକ ସଦୃଶ ହେବାର ଅନ୍ୟାୟ । କିନ୍ତୁ ଏହି ସମୟ ଯୁଦ୍ଧର ପ୍ରକୃତ ସମୟ । ହେ ଦ୍ୱିଜବର ! ଆମ୍ଭେ ନାନାବିଧ ଯଜ୍ଞ କରିଅଛୁ । ବ୍ରାହ୍ମଣମାନଙ୍କୁ ଭୂରି ଭୂରି ଦକ୍ଷିଣା ଦେଇଅଛୁ ଓ ସର୍ବଦା ବେଦ ଶ୍ରବଣ କରିଥିବାରେ ଆମ୍ଭର ସମସ୍ତ କାମନା ହୋଇଅଛି । ଆମ୍ଭେ ଶତ୍ରୁକୁଳର ମସ୍ତକ ଉପରେ ବସିଅଛୁ, ଭୃତ୍ୟମାନଙ୍କୁ ଉତ୍ତମ ରୂପେ ପ୍ରତିପାଳନ କରି ଅଛୁ । ଦୀନଜନମାନଙ୍କୁ ବିପଦରୁ ରକ୍ଷା କରିଅଛୁ । ୨୮ । ଆମ୍ଭେ ନିଜ ରାଜ୍ୟ ପାଳନ କରିଅଛୁ । ପର ରାଜ୍ୟ ସବୁ ଜୟ କରିଅଛୁ । ନାନା ପ୍ରକାର ଭୋଗ୍ୟ ବସ୍ତୁ ଉପଭୋଗ କରିଅଛୁ । ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗକୁ ସେବା କରିଅଛୁ ଏବଂ ପିତୃଗଣ ଓ କ୍ଷତ୍ରିୟ ଧର୍ମ ନିକଟରେ ଋଣଶୂନ୍ୟ ହୋଇଅଛୁ । ୩୦ । ଆମ୍ଭେ ଦୃଢ଼ କରି କହୁଅଛୁ, ଏହି ସଂସାରରେ କିଛି ସୁଖ ନାହିଁ । ତେବେ ରାଜ୍ୟ କେଉଁଠାରେ ରହିବ ଓ ଯଶ ଅବା କେଉଁଠାରେ ରହିବ ?

ଯାହାହେଉ ଇହଲୋକରେ କୀର୍ତ୍ତି ସ୍ଥାପନ କରିବାର ଉଚିତ, ତାହା ମଧ୍ୟ ଯୁଦ୍ଧ ବ୍ୟତିରେକେ ଅନ୍ୟ କାହିଁରେ ହୁଏ ନାହିଁ । ୩୧ । କ୍ଷତ୍ରିୟର ଗୃହ ମଧ୍ୟରେ ନିଧନ ହେବାର ଅତି ନିନ୍ଦନୀୟ । ଗୃହ ମଧ୍ୟରେ ଶଯ୍ୟାଶାୟୀ କ୍ଷତ୍ରିୟର ମରଣରେ ମହାନ୍ ଅଧର୍ମ ହୁଏ । ୩୨ । ଯେଉଁ ବ୍ୟକ୍ତି ଉତ୍କୃଷ୍ଟ ଯଜ୍ଞାଦି କର୍ମ ନିର୍ବାହ କରି ବନରେ କିମ୍ବା ଯୁଦ୍ଧରେ ତନୁ ତ୍ୟାଗ କରେ, ସେ ଅସୀମ ମହିମାକୁ ପ୍ରାପ୍ତ ହୁଏ । ୩୩ । ଯେଉଁ ବ୍ୟକ୍ତି ଜରାବସ୍ଥାରେ ଜୀର୍ଣ୍ଣ ଓ ଆର୍ତ୍ତ ହୋଇ ଦୀନ ଭାବରେ ବିଳାପ କରି ରୋଦନ-ପରାୟଣ ଜ୍ଞାତିମାନଙ୍କ ମଧ୍ୟରେ ମୃତ ହୁଏ, ସେ ପୁରୁଷ ମଧ୍ୟରେ ଗଣନୀୟ ନୁହେଁ । ୩୪ । ଏତେବେଳେ ଆମ୍ଭେ ନାନାବିଧ ଭୋଗ୍ୟ ବିଷୟ ପରିତ୍ୟାଗ ପୂର୍ବକ ସଂଗ୍ରାମ ଦ୍ୱାରା ପରମ ଗତି ପ୍ରାପ୍ତ ହୋଇ ସାଧୁମାନଙ୍କ ଗନ୍ତବ୍ୟ ଇନ୍ଦ୍ରଭୁବନକୁ ଗମନ କରିବୁ । ୩୫ । ହେ ବିପ୍ରବର ! ଯୁଦ୍ଧରେ ଅପରାଙ୍ମୁଖ ସାଧୁଚରିତ ଶୂର ସତ୍ୟସନ୍ଧ ସୁବୁଦ୍ଧିଶୀଳ ଯଜ୍ଞଯାଜକବୃନ୍ଦ ଓ ଯେଉଁମାନଙ୍କ ଶରୀର ରଣଯଜ୍ଞରେ ଶସ୍ତ୍ରରୂପ ଅବଭୃତ ଜଳରେ ପବିତ୍ର ହୋଇଥାଏ, ନିଶ୍ଚୟ ସେହିମାନଙ୍କର ସ୍ୱର୍ଗବାସ ହୁଏ । ଅପ୍‌ସରୋଗଣ ସେମାନଙ୍କୁ ଯୁଦ୍ଧ-

କ୍ଷେତ୍ରରେ ଆନନ୍ଦ ସହିତ ନିରୀକ୍ଷଣ କରନ୍ତୁ । ୩୭ । ପିତୃଗଣ ସମରନିହତ ବୀରମାନଙ୍କୁ ଦେବସଭା ମଧ୍ୟରେ ପୂଜିତ ଓ ଅପ୍ସରୋଗଣଙ୍କ ସହିତ ସ୍ୱର୍ଗ ଭୁବନରେ ଆମୋଦ ପ୍ରମୋଦରେ ଆନନ୍ଦିତ ହୋଇ ଅବସ୍ଥାନ କରୁଥିବାର ଦେଖନ୍ତୁ । ୩୮ । ଯୁଦ୍ଧରେ ଅପରାଙ୍ମୁଖ ବୀରବୃନ୍ଦ ଓ ଅମରକୁଳ ଯେଉଁ ମାର୍ଗରେ ଗମନ କରନ୍ତି, ଆମ୍ଭେମାନେ ମଧ୍ୟ ସେହି ପଥକୁ ଅଧିରୋହଣ କରିବା । ୩୯ ।

ଆମ୍ଭ ନିମିତ୍ତ ବୃଦ୍ଧ ପିତାମହ ଭୀଷ୍ମ, ବୁଦ୍ଧିମାନ୍ ଆଚାର୍ଯ୍ୟ, କର୍ଣ୍ଣ, ଜୟଦ୍ରଥ ଓ ଦୁଃଶାସନଙ୍କ ସହିତ ନରପତିମାନେ ଯୁଦ୍ଧରେ ଆସକ୍ତ ହୋଇ ତନୁ ତ୍ୟାଗ କରିଅଛନ୍ତି ଏବଂ ଶରଦ୍ୱାରା କ୍ଷତବିକ୍ଷତ ଓ ରକ୍ତାକ୍ତକଳେବର ହୋଇ ଧରାତଳରେ ଶୟନ କରିଅଛନ୍ତି । ୪୧ । ଯଥାବିଧାନରେ ଯଜ୍ଞକାରୀ ଉତ୍ତମ ଅସ୍ତ୍ର ପଣ୍ଡିତ ଶୂରମାନେ ନ୍ୟାୟାନୁସାରେ ପ୍ରାଣ ପରିତ୍ୟାଗ ପୂର୍ବକ ଇନ୍ଦ୍ରଭୁବନରେ ଅଧିଷ୍ଠାନ କରିଅଛନ୍ତି । ୪୨ । ଯେଉଁମାନେ ଏହି ଯୁଦ୍ଧରେ ଶରୀର ପରିତ୍ୟାଗ କରି ସଦ୍‌ଗତି ପ୍ରାପ୍ତ ହୋଇଅଛନ୍ତି, ସେହିମାନଙ୍କ ଗମନ ଦ୍ୱାରା କେବଳ ଏହି ପଥ ପ୍ରସ୍ତୁତ ହୋଇଅଛି ; ଏହା ଦୁର୍ଗମ ହେଲେ ସୁଦ୍ଧା ସୁଖକର ଅଟେ । ଯେଉଁସବୁ ବୀରବୃନ୍ଦ ଆମ୍ଭ ନିମିତ୍ତ ହତ ହୋଇଅଛନ୍ତି, ସେହିମାନଙ୍କ କାର୍ଯ୍ୟସମୂହ ସ୍ମରଣ ପଥରେ ଉଦିତ ହେଲେ ସେମାନଙ୍କ ଋଣ ପରିଶୋଧ କରିବାକୁ ଇଚ୍ଛା ଜନ୍ମିଅଛି ; ଅତଏବ ଆଉ ରାଜ୍ୟରେ ଲୋଭ ହେଉନାହିଁ । ୪୪ । ଆମ୍ଭେ ଭ୍ରାତା, ସଖା, ପିତାମହ ପ୍ରଭୃତିଙ୍କୁ ନିପାତ କରାଇ ଯଦି ସ୍ୱକୀୟ ପ୍ରାଣ ରଖିବୁ, ତେବେ ସମସ୍ତ ଲୋକମାନେ ଆମ୍ଭଙ୍କୁ ନିଶ୍ଚୟ ନିନ୍ଦା କରିବେ । ୪୫ । ଆମ୍ଭେ ସୁହୃଦ୍, ସ୍ୱଜନ ଓ ବନ୍ଧୁବାନ୍ଧବରେ ବିହୀନ ହେଲୁଁ । ଏତେବେଳେ ପାଣ୍ଡବମାନଙ୍କ ନିକଟରେ ପ୍ରଣତ ହୋଇ ରାଜ୍ୟ ପାଇଲେ ଅବା କି ହେବ ? ଆମ୍ଭେ ଜଗତରେ ଏତାଦୃଶ ପରାଭବ କରି ପରିଶେଷରେ ଉତ୍ତମ ଯୁଦ୍ଧଦ୍ୱାରା ସ୍ୱର୍ଗଗାମୀ ହେବୁ । କଦାପି ଏହା ଅନ୍ୟଥା ହେବ ନାହିଁ । ୪୭ ।

ମହାରାଜ ! କ୍ଷତ୍ରିୟବୃନ୍ଦ ଦୁର୍ଯ୍ୟୋଧନଙ୍କ ଏତାଦୃଶ ବାକ୍ୟ ଶ୍ରବଣ କରି ତାହାଙ୍କୁ ପ୍ରଶଂସା ଓ ଅପରିମିତ ସାଧୁବାଦ ଦେଲେ । ୪୮ । ସମସ୍ତେ ପରାଜୟକୁ ଶୋଚନା ନ କରି ବିକ୍ରମ ପ୍ରକାଶ ବିଷୟରେ ଉତ୍ସାହିତ ହେବାକୁ ନିଶ୍ଚୟ କରି ଯୁଦ୍ଧ ନିମିତ୍ତ ବ୍ୟଗ୍ରଚିତ୍ତ ହେଲେ । ୪୯ । ତଦନନ୍ତରେ

ଯୁଦ୍ଧାଭିଳାଷୀ କୌରବଗଣ ବାହନବୃନ୍ଦଙ୍କୁ ଉତ୍ତମ ରୂପେ ଆଶ୍ୱସ୍ତ କରି ଉନଦ୍ୱିଯୋଜନ ସ୍ଥାନକୁ ଗମନ କରି ଅବସ୍ଥିତ ହେଲେ । ୫୦ । ସେଠାରେ ହିମାଳୟର ନିରବରଣ ଓ ବୃକ୍ଷାଦିଶୂନ୍ୟ ପରିସରରେ ରକ୍ତବର୍ଣ୍ଣା ସରସ୍ୱତୀ ନଦୀର ନିକଟକୁ ଯାଇ ତାହାର ଜଳରେ ସ୍ନାନ ଓ ତଦୀୟ ଜଳ ପାନ କଲେ । ତତ୍ପରେ ସେମାନେ ଦୁର୍ଯ୍ୟୋଧନଙ୍କଦ୍ୱାରା ଉତ୍ସାହ ଲାଭ କରି ସେହିଠାରେ ସ୍ଥିରମନା ହୋଇ ରହିଲେ । ହେ ମହାରାଜ ! ପରଶେଷରେ କାଳଦ୍ୱାରା ପ୍ରେରିତ ସେହି କ୍ଷତ୍ରିୟକୁଳ ସେଠାରେ ପରସ୍ପରରେ ଆପଣାକୁ ରକ୍ଷା କରି ପଳାୟନରୁ ନିବୃତ୍ତ ହୋଇ ରହିଲେ । ୫୨ ।

---

## ଷଷ୍ଠ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ଯୁଦ୍ଧପ୍ରିୟ ବୀରଗଣ ହିମାଳୟର ପରିସର ପ୍ରଦେଶରେ ଅବସ୍ଥିତ ହେବାରୁ ଯୋଦ୍ଧାମାନେ ସମସ୍ତେ ସେଠାକୁ ଆଗମନ କଲେ । ୧ । ଶଲ୍ୟ, ଚିତ୍ରସେନ, ମହାରଥ ଶକୁନି, ଅଶ୍ୱତ୍ଥାମା, ସାତ୍ୱତ ବଂଶୀୟ କୃତବର୍ମା କୃପାଚାର୍ଯ୍ୟ, ସୁଷେଣ, ଅରିଷ୍ଟସେନ, ଧୃତସେନ ଓ ଜୟତ୍ସେନ ପ୍ରଭୃତି ନରପତିବୃନ୍ଦ ସେଠାକୁ ଆଗତ ହୋଇ ରାତ୍ରିଯାପନ କଲେ । ୩ । ମହାବୀର କର୍ଣ୍ଣ ସଂଗ୍ରାମରେ ହତ ହେବାରୁ ଆପଣଙ୍କ ପୁତ୍ରବୃନ୍ଦ ପାଣ୍ଡବମାନଙ୍କଦ୍ୱାରା ଅତ୍ୟନ୍ତ ତ୍ରାସିତ ହୋଇ ହିମାଳୟ ଗିରି ବିନା ଅନ୍ୟ କୌଣସିଠାରେ ସୁଖଲାଭ କଲେ ନାହିଁ । ୪ । ସେଠାରେ ସେହି ଯୋଦ୍ଧାମାନେ ସମସ୍ତେ ଯୁଦ୍ଧ ନିମିତ୍ତ ଯତ୍ନ କରି ଶଲ୍ୟଙ୍କ ସନ୍ନିଧିରେ ରାଜାଙ୍କୁ ଯଥାବିଧିରେ ପୂଜା କଲେ ଓ ଏକତ୍ରିତ ହୋଇ କହିଲେ— । ୫ । "ମହାରାଜ ! ଏତେବେଳେ ଯେଉଁ ବ୍ୟକ୍ତିଦ୍ୱାରା ଆମ୍ଭେମାନେ ଉତ୍ତମରୂପେ ରକ୍ଷିତ ହୋଇ ଶତ୍ରୁମାନଙ୍କୁ ଜୟ କରିବୁଁ, ତାହାଙ୍କୁ ସେନାପତି ପଦରେ ନିଯୁକ୍ତ କରି ଶତ୍ରୁମାନଙ୍କ ସହିତ ଯୁଦ୍ଧ ବିଷୟରେ ଉଦ୍‌ଯୋଗୀ ହେଉନ୍ତୁ" । ୬ ।

ତତ୍ପରେ ଯେଉଁ ରଥିବର ସର୍ବପ୍ରକାର ଯୁଦ୍ଧକୁ ଜାଣନ୍ତି, ଯେ ଯୁଦ୍ଧରେ ଯମସଦୃଶ, ଯାହାଙ୍କ ଅଙ୍ଗସବୁ ସୁନ୍ଦର, ମସ୍ତକ ଉଷ୍ଣୀଷରେ ଆଚ୍ଛନ୍ନ, ଗ୍ରୀବା ତିନିଗୋଟି ରେଖାରେ ସଂଯୁକ୍ତ, ଯେ ପ୍ରିୟଭାଷୀ, ଯାହାଙ୍କ ନେତ୍ର

ପ୍ରଫୁଟିତ ପଦ୍ମଦଳସଦୃଶ, ମୁଖମଣ୍ଡଳ ଦୁର୍ନିରୀକ୍ଷ୍ୟ, ଯେ ସୁମେରୁସଦୃଶ ଗୁରୁ ; ସ୍କନ୍ଧ ନେତ୍ରଗତି ଓ କଣ୍ଠସ୍ୱର ବିଷୟରେ ଯେ ମହାଦେବଙ୍କ ବୃଷ ସଦୃଶ, ବେଗ ଓ ବଳ ପ୍ରକାଶ ବିଷୟରେ ଯେ ଗରୁଡ଼ ଓ ପବନ ସମାନ, ଯେ ତେଜରେ ସୂର୍ଯ୍ୟଦେବଙ୍କ ସମାନ, ବୁଦ୍ଧିରେ ଶୁକ୍ରସନ୍ନିଭ ଏବଂ କାନ୍ତି, ରୂପ ଓ ମୁଖ ସୌନ୍ଦର୍ଯ୍ୟ ବିଷୟରେ ଚନ୍ଦ୍ର ସଦୃଶ ; ଯାହାଙ୍କ ବକ୍ଷସ୍ଥଳ ଅତି ବିସ୍ତୀର୍ଣ୍ଣ, ଭୁଜଦ୍ୱୟ ଶ୍ରମସହ, ପୀନ ଓ ଆୟତ ଅଙ୍ଗସୌଷ୍ଠବ ସୁବର୍ଣ୍ଣ ପଦ୍ମସଦୃଶ, ସନ୍ଧିସ୍ଥାନ ସବୁ ଅତି ସୁଶ୍ଳିଷ୍ଟ, ଉରୁ, କଟି, ଜଙ୍ଘ ପ୍ରଭୃତି ସର୍ବାଙ୍ଗ ଉତ୍ତମ ବର୍ତ୍ତୁଳ, ଚରଣଦ୍ୱୟ ମନୋହର, ଅଙ୍ଗୁଳି ଓ ନଖ ସୁନ୍ଦର ; ବିଧାତା ପ୍ରତ୍ୟେକ ଗୁଣଗ୍ରାମର ସ୍ମରଣପୂର୍ବକ ଯତ୍ନରେ ଯାହାଙ୍କୁ ସର୍ବ ଲକ୍ଷଣ-ସମ୍ପନ୍ନରୂପେ ନିର୍ମାଣ କରିଅଛନ୍ତି, ଯେ ବେଦବିଦ୍ୟାରେ ସାଗର, ଶତ୍ରୁଜୟୀ ଓ ଶତ୍ରୁମାନଙ୍କଦ୍ୱାରା ବଳପୂର୍ବକ ଅଜେୟ ; ଯେ ଦଶାଙ୍ଗ ଓ ସମ୍ପୂର୍ଣ୍ଣ ଅସ୍ତ୍ର-ବିଦ୍ୟା ଯଥାର୍ଥରୂପେ ଅବଗତ ହୋଇ ପଞ୍ଚମ ବେଦ, ଇତିହାସ ଓ ଅଙ୍ଗ ସହିତ ଚତୁର୍ବେଦକୁ ଉତ୍ତମରୂପେ ଅଧ୍ୟୟନ କରିଅଛନ୍ତି; ମହାତପା ଅଯୋନିଜ ଦ୍ରୋଣାଚାର୍ଯ୍ୟ ଯତ୍ନରେ ଅତି ଉଗ୍ର ତପସ୍ୟାଦ୍ୱାରା ଭଗବାନ୍ ଶିବଙ୍କୁ ଆରାଧନା କରି ଅଯୋନିଜାଙ୍କ ଗର୍ଭରେ ଯାହାଙ୍କୁ ଉତ୍ପାଦନ କରାଇଥିଲେ, ସେହି ଅନୁପମକର୍ମା; ଅସଦୃଶ ରୂପସମ୍ପନ୍ନ, ସର୍ବବିଦ୍ୟାପାରଗ, ଗୁଣସାଗର, ଶତ୍ରୁଦଳନ ଅଶ୍ୱତ୍ଥାମାଙ୍କ ସମୀପରେ ଉପସ୍ଥିତ ହୋଇ ଆପଣଙ୍କ ପ୍ରିୟ ରଥସ୍ଥିତ ରାଜା ଦୁର୍ଯ୍ୟୋଧନ କହିଲେ, ହେ ବୀର ! ଆପଣ ଆମ୍ଭ ସମସ୍ତଙ୍କର ପରମଗତି ଓ ଗୁରୁଙ୍କ ପୁତ୍ର, ଅତଏବ ଆମ୍ଭେମାନେ ସମସ୍ତେ ଯେଉଁ ବ୍ୟକ୍ତିକୁ ଅଗ୍ରଗାମୀ କରି ଯୁଦ୍ଧରେ ପାଣ୍ଡବମାନଙ୍କୁ ପରାଭବ ଦେବୁଁ, ଏତାଦୃଶ କେଉଁ ବ୍ୟକ୍ତି ଆପଣଙ୍କ ନିଯୋଗାନୁସାରେ ଆମ୍ଭ-ମାନଙ୍କର ସେନାପତି ହେବ ? ୧୮ ।

ଅଶ୍ୱତ୍ଥାମା କହିଲେ—ମଦ୍ରାଧିପତି ଶଲ୍ୟ ବଳବୀର୍ଯ୍ୟ, କୁଳଶୀଳ-ଯଶଃ, ଶ୍ରୀ ଓ ତେଜଃ ପ୍ରଭୃତି ସର୍ବଗୁଣରେ ପରିପୂର୍ଣ୍ଣ ଅଟନ୍ତି । ଅତଏବ ଏହି କେବଳ ଆମ୍ଭମାନଙ୍କର ସେନାପତି ହେଉନ୍ତୁ । ୧୯ । ଦ୍ୱିତୀୟ କାର୍ତ୍ତିକେୟଙ୍କ ସଦୃଶ ଓ ମହାସେନାସଂଯୁକ୍ତ ଏହି ମହାବାହୁ ନିଜ ଭାଗିନେୟମାନଙ୍କୁ ପରିତ୍ୟାଗ କରି କୃତଜ୍ଞ ହୋଇ ଆମ୍ଭମାନଙ୍କ ନିକଟକୁ ଆସିଅଛନ୍ତି । ୨୦ । ଅତଏବ ହେ ନୃପବର ! ଅମରକୁଳ ଯେଉଁପରି ଅପରାଜିତ କାର୍ତ୍ତିକେୟଙ୍କୁ ସେନାପତି କରି ଜୟଶୀଳ ହୋଇଥିଲେ,

ଆମ୍ଭେମାନେ ତଦ୍‌ବତ୍ ଏହି ନରପତିଙ୍କୁ ସେନାପତି କରି ଜୟଯୁକ୍ତ ହେବା । ୨୧ ।

ଦ୍ରୋଣପୁତ୍ର ଏହିପରି କହିବାରୁ ସମସ୍ତ ନରପାଳମାନେ ଶଲ୍ୟଙ୍କୁ ପରିବେଷ୍ଟନ ପୂର୍ବକ ଜୟଧ୍ୱନି କଲେ ଏବଂ ପରମ ଆନନ୍ଦରେ ଯୁଦ୍ଧ ନିମିତ୍ତ ମନୋଯୋଗୀ ହେଲେ । ତତ୍ପରେ ଦୁର୍ଯ୍ୟୋଧନ ଭୂତଳରେ ଅବସ୍ଥିତ ହୋଇ ଯୁଦ୍ଧରେ ପରଶୁରାମ ଓ ଭୀଷ୍ମ ଦେବଙ୍କ ସଦୃଶ ରଥସ୍ଥିତ ଶଲ୍ୟଙ୍କୁ କୃତାଞ୍ଜଳିପୁଟରେ କହିଲେ, ହେ ମିତ୍ରବତ୍ସଳ ! ପଣ୍ଡିତମାନେ ଯେଉଁ ସମୟରେ ମିତ୍ର ଅବା ଅମିତ୍ରଙ୍କୁ ପରୀକ୍ଷା କରନ୍ତି, ଏତେବେଳେ ମିତ୍ର-ମାନଙ୍କର ସେହି ସମୟ ଉପସ୍ଥିତ ହୋଇଅଛି । ଆପଣ ବାହିନୀମୁଖରେ ଅବସ୍ଥାନ କରି ଆମ୍ଭମାନଙ୍କର ସେନାପତି ହେଉନ୍ତୁ । ୨୫ । ଆପଣ ସମରାଙ୍ଗଣରେ ଉପସ୍ଥିତ ହେଲେ ମନ୍ଦବୁଦ୍ଧି ପାଣ୍ଡବ ଓ ପାଞ୍ଚାଳ ସମୂହ ଯୁଦ୍ଧରେ ଅମାତ୍ୟମାନଙ୍କ ସହିତ ଉଦ୍ୟମଶୂନ୍ୟ ହେବେ । ୨୬ ।

ଶଲ୍ୟ କହିଲେ—ହେ କୁରୁରାଜ ! ତୁମ୍ଭେ ଆମ୍ଭକୁ ଯାହା ଅନୁମତି ଦେଉଅଛ, ଆମ୍ଭେ ତାହା କରିବୁ । ଆମ୍ଭେ ତୁମ୍ଭର ପ୍ରିୟ କାର୍ଯ୍ୟ ସାଧନ ନିମିତ୍ତ ରାଜ୍ୟଧନ ଓ ପ୍ରାଣ ପର୍ଯ୍ୟନ୍ତ ସମର୍ପଣ କରିଅଛୁ । ୨୮ । ଦୁର୍ଯ୍ୟୋଧନ କହିଲେ, ହେ ବୀରବର ମାତୁଳ ! ଆପଣ ଅନୁପମ ବଳଶାଳୀ । ଆମ୍ଭେ ଆପଣଙ୍କୁ ସେନାପତି ପଦରେ ବରଣ କରୁଅଛୁ । କାର୍ତ୍ତିକେୟ ଯେଉଁପରି ରଣସ୍ଥଳରେ ଅମରମାନଙ୍କୁ ରକ୍ଷା କରିଥିଲେ, ଆପଣ ଏତେବେଳେ ସେହିପରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୨୯ । ହେ ବୀର ! ହେ ରାଜେନ୍ଦ୍ର ! ଦେବତା ସମୂହର କାର୍ତ୍ତିକେୟ ଯେପରି ସେନାପତିତ୍ୱ ସ୍ୱୀକାର କରିଥିଲେ, ସେହିପରି ଆପଣ ଆମ୍ଭମାନଙ୍କର ସେନାପତି ପଦରେ ଅଭିଷିକ୍ତ ହେଉନ୍ତୁ । ଇନ୍ଦ୍ରଦେବ ଯେଉଁପରି ଅସୁରକୁଳକୁ ବିନଷ୍ଟ କରିଥିଲେ, ଆପଣ ସେହିପରି ଆମ୍ଭର ଶତ୍ରୁ ବୃନ୍ଦଙ୍କୁ ସଂଗ୍ରାମରେ ସଂହାର କରିବା ହେଉନ୍ତୁ । ୩୦ ।

---

# ସପ୍ତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ପ୍ରତାପଶାଳୀ ମଦ୍ରପତି ଦୁର୍ଯ୍ୟୋଧନଙ୍କ ଏହି ବାକ୍ୟ ଶୁଣି ତାହାଙ୍କୁ ସମ୍ବୋଧନ କରି କହିଲେ, ହେ ମହାବାହୋ ! ବାକ୍ୟବିଶାରଦ ମହାରାଜ ଶ୍ରବଣ କର । ତୁମ୍ଭେ ଯେ ଏହି ରଥସ୍ଥିତ କୃଷ୍ଣ ଓ ଅର୍ଜ୍ଜୁନଙ୍କୁ ରଥିଶ୍ରେଷ୍ଠ ବୋଲି ଜାଣିଅଛ, ଏହି ଦୁହେଁ ବାହୁବଳରେ କଦାପି ଆମ୍ଭ ସମାନ ନୁହନ୍ତି । ଆମ୍ଭେ କ୍ରୋଧଯୁକ୍ତ ହେଲେ ସମରୋଦ୍ୟତ ଦେବତା, ଅସୁର, ମନୁଷ୍ୟ ଓ ପୃଥିବୀସ୍ଥିତ ସମସ୍ତ ଲୋକଙ୍କ ସହିତ ଯୁଦ୍ଧ କରିପାରୁ, ପାଣ୍ଡବଗଣ ଅଧିକ ନୁହନ୍ତି । ଆମ୍ଭେ ଆଜ ଆପଣଙ୍କ ସୈନ୍ୟ ପରିଚାଳକ ହୋଇ ଯୁଦ୍ଧରେ ଉପସ୍ଥିତ ସୋମକ ଓ ସମସ୍ତ ପାଣ୍ଡବଙ୍କୁ ନିଶ୍ଚୟ ଜୟ କରିବୁ । ଆମ୍ଭେ ଏପରି ଗୋଟିଏ ବ୍ୟୂହ ରଚନା କରିବୁ ଯେ ଶତ୍ରୁନିକର ତହିଁରୁ କଦାପି ଉତ୍ତୀର୍ଣ୍ଣ ହୋଇ ପାରିବେ ନାହିଁ । ୫ ।

ହେ କୁରୁନାଥ ! ଆମ୍ଭେ ଆପଣଙ୍କୁ ଏହି ସବୁ ବାକ୍ୟ ଯଥାର୍ଥ ରୂପେ କହୁଅଛୁ, କିନ୍ତୁ ସଂଶୟ କରିବେ ନାହିଁ । ହେ ଭରତଶ୍ରେଷ୍ଠ ! ମହାରାଜ ମଦ୍ରାଧିପତି ଏହିପରି କହିବାରେ ରାଜା ଦୁର୍ଯ୍ୟୋଧନ ଆହ୍ଲାଦିତ ହୋଇ ଶାସ୍ତ୍ରୋକ୍ତ ବିଧାନ ଦ୍ୱାରା ସେନାବୃନ୍ଦ ମଧ୍ୟରେ ତତ୍‌କ୍ଷଣାତ୍ ତାହାଙ୍କୁ ଅଭିଷିକ୍ତ କରାଇଲେ । ୭ । ଶଲ୍ୟ ଅଭିଷିକ୍ତ ହେଲା ଉତ୍ତାରେ ସେଠାରେ ମହାନ୍ ସିଂହନାଦ ହେଲା । ମହାରାଜ ! ଆପଣଙ୍କ ସୈନ୍ୟମାନଙ୍କ ମଧ୍ୟରେ ନାନା ପ୍ରକାର ବାଦ୍ୟଧ୍ୱନି ହେଲା । ୮ । ମହାରଥ ମଦ୍ରକଗଣ ଓ ଅନ୍ୟାନ୍ୟ ଯୋଦ୍ଧାମାନେ ଅତିଶୟ ଆହ୍ଲାଦିତ ହେଲେ ଓ ସମସ୍ତେ ସମରଶୋଭୀ ଶଲ୍ୟଙ୍କୁ ସ୍ତବ କଲେ । ୯ । "ହେ ମହାରାଜ ! ଆପଣ ଚିରଞ୍ଜୀବୀ ଓ ଜୟଯୁକ୍ତ ହୁଅନ୍ତୁ । ସମାଗତ ଶତ୍ରୁମାନଙ୍କୁ ସଂହାର କରନ୍ତୁ । ମହାବଳ ଧୃତରାଷ୍ଟ୍ରଙ୍କ ପୁତ୍ରଗଣ ଆପଣଙ୍କ ବାହୁବଳ ଆଶ୍ରୟ କରି ବିପକ୍ଷବର୍ଜ୍ଜିତ ହୋଇ ସମସ୍ତ ପୃଥିବୀ ଶାସନ କରନ୍ତୁ । ଆପଣ ସମରାଙ୍ଗଣରେ ସୁର, ଅସୁର ଓ ମନୁଷ୍ୟ-ମାନଙ୍କୁ ଜୟ କରିବାକୁ ସମର୍ଥ । ୧୧ । ମର୍ତ୍ତ୍ୟ ଧର୍ମଶୀଳ ସୋମକ ଓ ସୃଞ୍ଜୟମାନେ ଅଧିକ ନୁହନ୍ତି ।" ତେତେବେଳେ ବୀରବର ମଦ୍ରାଧିପତି ଅକୃତ ପୁଣ୍ୟକର୍ମା ବ୍ୟକ୍ତିର ଦୁଷ୍ପ୍ରାପ୍ୟ ଏତାଦୃଶ ସ୍ତୁତି ବାକ୍ୟ ଶୁଣି ଅତି ଉତ୍କୃଷ୍ଟ ହର୍ଷ ଲାଭ କଲେ । ଶଲ୍ୟ କହିଲେ, ହେ ରାଜେନ୍ଦ୍ର ! ଆମ୍ଭେ ଆଜ ରଣସ୍ଥଳ ମଧ୍ୟରେ ପାଣ୍ଡବଗଣଙ୍କ ସହିତ ପାଞ୍ଚାଳମାନଙ୍କୁ ବିନଷ୍ଟ କରିବୁ,

ଅଥବା ସ୍ୱୟଂ ସେମାନଙ୍କ ଦ୍ୱାରା ହତ ହୋଇ ସ୍ୱର୍ଗଗାମୀ ହେବୁ; ସମସ୍ତ ଲୋକେ ଆଜ ଆମ୍ଭଙ୍କୁ ନିର୍ଭୟ ଭାବରେ ବିଚରଣ କରୁଥିବାର ଦେଖନ୍ତୁ । ୧୪ ।

ଆଜ ପାଣ୍ଡବଗଣ କୃଷ୍ଣ, ସାତ୍ୟକ, ଦ୍ରୌପଦୀଙ୍କ ପୁତ୍ରବୃନ୍ଦ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ପ୍ରଭଦ୍ରକ, ପାଞ୍ଚାଳ ଓ ଚେଦିସମୂହ ସମସ୍ତେ ଆମ୍ଭ ବିକ୍ରମ ଓ ମଦ୍ରାଧିପ କାର୍ମୁକର ଉତ୍କୃଷ୍ଟ ବଳ ଉତ୍ତମ ରୂପେ ଦେଖନ୍ତୁ । ୧୬ । ଆଜ ସିଦ୍ଧମାନେ, ଚାରଣକୁଳ ଓ ପାଣ୍ଡବଗଣ ରଣସ୍ଥଳରେ ଆମ୍ଭ ବାହୁବଳ ଅସ୍ତ୍ରବୀର୍ଯ୍ୟ, ଅସ୍ତ୍ରପ୍ରୟୋଗର ନିପୁଣତା ଓ ଅସ୍ତ୍ରସମ୍ପତ୍ତି ବିଲୋକନ କରନ୍ତୁ । ଆଜ ପାଣ୍ଡବୀୟ ମହାରଥମାନେ ଆମ୍ଭ ବିକ୍ରମ ବିଲୋକନ କରି ପ୍ରତିକାର-ପରାୟଣ ହୋଇ ବିବିଧ ଉପାୟ ଚେଷ୍ଟା କରନ୍ତୁ । ଆଜ ପାଣ୍ଡବଙ୍କ ସମସ୍ତ ସୈନ୍ୟମାନେ ଆମ୍ଭ ପ୍ରଭାବରେ ଚତୁର୍ଦ୍ଦିଗକୁ ଧାବିତ ହେବେ । ୧୯ । ହେ କୁରୁରାଜ ! ଆମ୍ଭେ ଆଜ ଆପଣଙ୍କ ପ୍ରିୟ କାର୍ଯ୍ୟସାଧନ ନିମିତ୍ତ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣଙ୍କୁ ମଧ୍ୟ ଅତିକ୍ରମ କରି ରଣଭୂମିରେ ବିଚରଣ କରିବୁ ।୨୦।

ସଞ୍ଜୟ କହିଲେ—ହେ ମାନପ୍ରଦ ! ଶଲ୍ୟ ଅଭିଷିକ୍ତ ହେଲାରୁ ଆପଣଙ୍କ ସୈନ୍ୟବୃନ୍ଦ ମଧ୍ୟରେ କେହି ସୁଦ୍ଧା କର୍ଣ୍ଣଙ୍କ ମୃତ୍ୟୁକୁ ଦୁଃଖ ବୋଲି ଜାଣିଲେ ନାହିଁ । ୨୧ । ତତ୍ପରେ ସମସ୍ତ ସୈନିକ ସମୂହ ହର୍ଷଯୁକ୍ତ ଓ ପ୍ରସନ୍ନମନା ହେଲେ ଏବଂ ପାଣ୍ଡବମାନେ ମଦ୍ରରାଜଙ୍କ ଦ୍ୱାରା ପରାସ୍ତ ଓ ନିହତ ହେବେ ବୋଲି ଜାଣିଲେ । ୨୨ । ହେ ଭରତଶ୍ରେଷ୍ଠ ! ସୈନ୍ୟବୃନ୍ଦ ଅତ୍ୟନ୍ତ ହର୍ଷଲାଭ କରି ସୁଖରେ ଓ ସୁସ୍ଥ ଚିତ୍ତରେ ସେହି ରଜନୀରେ ଶୟନ କଲେ । ୨୩ । ରାଜା ଯୁଧିଷ୍ଠିର ଆପଣଙ୍କ ସୈନ୍ୟବୃନ୍ଦର ତାଦୃଶ ଆନନ୍ଦ ଧ୍ୱନି ଶୁଣି ସମସ୍ତ କ୍ଷତ୍ରିୟମାନଙ୍କ ସାକ୍ଷାତରେ ଶ୍ରୀକୃଷ୍ଣଙ୍କୁ କହିଲେ, ହେ ମାଧବ ! ଦୁର୍ଯ୍ୟୋଧନ ସବୁ ସୈନ୍ୟମଧ୍ୟରେ ପୂଜିତ ମହା ଧନୁର୍ଦ୍ଧର ମଦ୍ରରାଜ ଶଲ୍ୟଙ୍କୁ ସେନାପତି କଲେ । ଏହି ବିଷୟର ଅଭିପ୍ରାୟ ଜାଣି ଯାହା ଯଥାର୍ଥ ଓ କ୍ଷମତାଦ୍ୱାରା ସାଧ୍ୟ ହୁଏ ତାହା କରିବା ହେଉନ୍ତୁ । ତୁମ୍ଭେ ଆମ୍ଭମାନଙ୍କ ରକ୍ଷାକର୍ତ୍ତା ଓ ପ୍ରଣେତା; ଅତଏବ ଏହା ପରେ ଯାହା କରିବାର ଉଚିତ ତାହା କର । ୨୬ ।

ମହାରାଜ ! କୃଷ୍ଣ ଯୁଧିଷ୍ଠିରଙ୍କ ଏହି ଆଦେଶ ଶୁଣି ତାହାଙ୍କୁ କହିଲେ, ହେ ଭରତ ! ମହାତ୍ମା ମଦ୍ରାଧିପତି ମହାତେଜସ୍ୱୀ, ମହାବୀର୍ଯ୍ୟ-ଶାଳୀ ଓ ବିଶେଷତଃ ପଣ୍ଡିତ, ବିଚିତ୍ରଯୋଧୀ ଓ ଲଘୁବଯୁକ୍ତ ଅଟନ୍ତି ବୋଲି

ଆମ୍ଭେ ଉତ୍ତମରୂପେ ଜାଣୁଁ । ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଏମାନେ ଯୁଦ୍ଧରେ ଯାଦୃଶ, ମଦ୍ରରାଜ ମଧ୍ୟ ତାଦୃଶ ଅଥବା ସେମାନଙ୍କ ଅପେକ୍ଷା ଅଧିକ କ୍ଷମତାଶାଳୀ ବୋଲି ଆମ୍ଭେ ବିବେଚନା କରୁଅଛୁ । ୨୯ । ହେ ରାଜନ୍ ! ସେ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଯୁଦ୍ଧ କଲେ ତାହାଙ୍କ ସଙ୍ଗେ ପ୍ରତିଯୁଦ୍ଧ କରିବାକୁ ତତ୍ପର ସମକକ୍ଷ ଯୋଦ୍ଧା ପୁରୁଷ ଆମ୍ଭେ ଦେଖୁନାହୁଁ । ୩୦ । ଭୀମ, ଅର୍ଜ୍ଜୁନ, ସାତ୍ୟକି, ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ଏହିମାନଙ୍କ ଅପେକ୍ଷା ସେ ଅଧିକ ବଳବାନ୍ । ୩୧ । ହେ ମହାରାଜ ! କ୍ରୋଧଯୁକ୍ତ ଯମଦେବ ପ୍ରଜାମାନଙ୍କ ମଧ୍ୟରେ ଯେଉଁପରି ନିର୍ଭୟରେ ବିଚରଣ କରନ୍ତି, ସିଂହ ଓ ଗଜସଦୃଶ ବିକ୍ରମଶାଳୀ ଶଲ୍ୟ ସେହିପରି ନିର୍ଭୟ ଭାବରେ ସମରାଙ୍ଗଣରେ ସଞ୍ଚାର କରିବେ । ୩୨ । ହେ ନରବର ! ଶାର୍ଦ୍ଦୂଳ ସମାନ ବିକ୍ରମଶାଳୀ ଆପଣଙ୍କ ବିନା ଆଜି ଯୁଦ୍ଧରେ ପ୍ରତିଯୁଦ୍ଧ କରିବାକୁ ଅନ୍ୟ ବ୍ୟକ୍ତିଙ୍କୁ ତାହାଙ୍କ ସମକକ୍ଷ ବୋଲି ଦେଖୁନାହୁଁ । ୩୩ ।

ହେ କୁରୁନନ୍ଦନ ! ଯେଉଁ ବ୍ୟକ୍ତି କ୍ରୋଧଯୁକ୍ତ ଶଲ୍ୟଙ୍କୁ ସଂଗ୍ରାମରେ ସଂହାର କରିବ, ଆପଣଙ୍କ ବିନା ତାଦୃଶ ଲୋକକୁ ଆମ୍ଭେ ଦେବଲୋକ ଓ ସମଗ୍ର ଭୂମଣ୍ଡଳ ମଧ୍ୟରେ ଦେଖିନାହୁଁ । ୩୪ । ମଦ୍ରରାଜ ଶଲ୍ୟ ପ୍ରତିଦିନ ଯୁଦ୍ଧ କରି ଆପଣଙ୍କ ସୈନ୍ୟସମୂହକୁ ବିଶେଷ କ୍ଷୋଭ ଦେଇଅଛନ୍ତି ; ଅତଏବ ଇନ୍ଦ୍ରଦେବ ଯେଉଁପରି ଶମ୍ବରାସୁରକୁ ସଂହାର କରିଥିଲେ, ଆପଣ ସେହିପରି ଆଜି ତାହାଙ୍କୁ ଯମାଳୟକୁ ପ୍ରେରଣ କରନ୍ତୁ । ୩୫ । ଦୁର୍ଯୋଧନ ଏହି ଶଲ୍ୟବୀରଙ୍କୁ ଅଜେୟ ବୋଲି ଜାଣି ଉତ୍ତମରୂପେ ସତ୍କାର କରିଅଛନ୍ତି । ଆଜି ସେ ହତ ହେଲେ ଆପଣଙ୍କର ନିଶ୍ଚୟ ଜୟ ହେବ । ୩୬ । ଶଲ୍ୟ ହତ ହେଲା ଉତ୍ତାରେ ଦୁର୍ଯୋଧନଙ୍କର ମହତ୍ ସୈନ୍ୟ ସମସ୍ତେ ହତ ହେବେ । ମହାରାଜ ! ଏତେବେଳେ ଆପଣ ଆମ୍ଭର ଏହି ବାକ୍ୟ ଶୁଣି ଯୁଦ୍ଧରେ ମହାରଥ ଶଲ୍ୟଙ୍କର ଅଭିମୁଖକୁ ଗମନ କରିବା ହେଉନ୍ତୁ ଓ ଇନ୍ଦ୍ରଦେବ ଯେଉଁପରି ନମୁଚିନାମା ଅସୁରଙ୍କୁ ସଂହାର କରିଥିଲେ, ଆପଣ ତଦ୍‌ବତ୍ ଏହାଙ୍କୁ ବିନାଶ କରିବା ହେଉନ୍ତୁ । ୩୮ ।

ଏ ଆମ୍ଭର ମାତୁଳ, ଏହା ବିଚାରି ତାହାଙ୍କଠାରେ ଦୟା କରିବେ ନାହିଁ । ଏତେବେଳେ କେବଳ କ୍ଷତ୍ରିୟ ଧର୍ମକୁ ପୁରସ୍କୃତ କରି ମଦ୍ରାଧିପଙ୍କୁ ସଂହାର କରିବା ହେଉନ୍ତୁ । ୩୯ । ଭୀଷ୍ମ ଓ ଦ୍ରୋଣରୂପ ସାଗର ଓ କର୍ଣ୍ଣରୂପ, ମହାସାଗରକୁ ପାର ହୋଇ ଏତେବେଳେ ସ୍ୱଗଣ ସହିତ

ଶଲ୍ୟରୂପ ଗୋଷ୍ପଦରେ ନିମଗ୍ନ ହେଉନ୍ତୁ ନାହିଁ । ୪୦ । ଆପଣଙ୍କ ତପସ୍ୟା ଓ କ୍ଷତ୍ରିୟ ଧର୍ମ ସମ୍ବନ୍ଧୀୟ ଯେତେ ବଳ ଅଛି, ତାହା ସବୁ ଏହି ଯୁଦ୍ଧରେ ଦେଖାଇବା ହେଉନ୍ତୁ ଓ ମହାରଥ ଶଲ୍ୟଙ୍କୁ ସଂହାର କରିବା ହେଉନ୍ତୁ । ୪୧ । ପରବୀରହନ୍ତା କେଶବ ଏହି କଥା କହି ସାୟଂକାଳରେ ପାଣ୍ଡବଗଣଙ୍କ-ଦ୍ୱାରା ପୂଜିତ ହୋଇ ଶିବିରକୁ ଗଲେ । ୪୨ ।

କୃଷ୍ଣ ଶିବିରକୁ ଗଲା ଉତ୍ତାରେ ଧର୍ମରାଜ ଯୁଧିଷ୍ଠିର ଭ୍ରାତୃଗଣ, ପାଞ୍ଚାଳଗଣ ଓ ସୋମକ ନରପାଳସମୂହଙ୍କୁ ବିଦାୟ ଦେଇ ବିଶଲ୍ୟ ଗଜ-ସଦୃଶ ସେହି ରଜନୀରେ ସୁଖରେ ଶୟନ କଲେ । ସମସ୍ତ ମହା ଧନୁର୍ଦ୍ଧର ପାଣ୍ଡବ ଓ ପାଞ୍ଚାଳବୃନ୍ଦ ସୂତପୁତ୍ରଙ୍କ ନିଧନରେ ଆନନ୍ଦିତ ହୋଇ ସେହି ରଜନୀରେ ସୁଖରେ ଶୟନ କଲେ । ହେ ମହାରାଜ ! ମହାଧନୁର୍ଦ୍ଧର ମହାରଥ ପାଣ୍ଡବ ସୈନ୍ୟବୃନ୍ଦ ସୂତପୁତ୍ରଙ୍କ ନିଧନରେ ଜୟ ଲାଭ କରି ବ୍ୟାଧିଶୂନ୍ୟ ଓ ବିପଦ୍‌ସାଗରକୁ ପାର ହୋଇ ରଜନୀରେ ଆହ୍ଲାଦିତ ହେଲେ । ୪୩ ।

---

## ଅଷ୍ଟମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ରଜନୀ ପ୍ରଭାତ ହେଲା ଉତ୍ତାରେ ରାଜା ଦୁର୍ଯ୍ୟୋଧନ ଆପଣଙ୍କ ମହାରଥ ସମସ୍ତଙ୍କୁ କବଚ ପରିଧାନ କରିବା ନିମିତ୍ତ ଆଜ୍ଞା ଦେଲେ । ୧ । ସୈନ୍ୟସମୂହ ନରପାଳଙ୍କ ଅନୁମତି ଅନୁସାରେ କବଚ ପରିଧାନ କଲେ । କେହି କେହି ତତ୍‌କ୍ଷଣାତ୍ ଧାବିତ ହୋଇ ରଥ ସମୂହକୁ ଯୋଜିତ କଲେ । ୨ । କେହି କେହି ଅବା ଗଜଯୂଥଙ୍କୁ ସୁସଜ୍ଜିତ କଲେ । ପଦାତିକମାନେ କବଚ ଧାରଣ କଲେ ଓ ଅନ୍ୟାନ୍ୟ ସହସ୍ର ସହସ୍ର ଲୋକ ରଥସମୂହକୁ ଆସ୍ତରଣଯୁକ୍ତ କଲେ । ୩ । ହେ ମହାରାଜ ! ତତ୍ପରେ ଉତ୍ସାହଶୀଳ ଯୋଦ୍ଧା ଓ ସୈନ୍ୟମାନଙ୍କୁ ଯୁଦ୍ଧ କରାଇବା ନିମିତ୍ତ ନାନାବିଧ ବାଦ୍ୟଧ୍ୱନି ପ୍ରାଦୁର୍ଭୂତ ହେଲା । ୪ । ହେ ଭରତ ! ପରିଶେଷରେ ଅପରାଙ୍ମୁଖ ସମରୋଦ୍ୟତ ସମସ୍ତ ସୈନ୍ୟମାନେ ବଦ୍ଧକବଚ ହୋଇ ଯୁଦ୍ଧ ନିବୃତ୍ତିର ମୂଳକାରଣ ମୃତ୍ୟୁକୁ ଦେଖିଥିଲେ । ୫ । ମହାରଥମାନେ ମଦ୍ରରାଜ ଶଲ୍ୟଙ୍କୁ ସେନାପତି କରି ନିଜ ନିଜ ସୈନ୍ୟ-ମାନଙ୍କୁ ବିଭାଗ କରି ନେଇ ସୈନ୍ୟଦଳ ମଧ୍ୟରେ ଅବସ୍ଥିତ ହେଲେ । ୬ ।

ତଦନନ୍ତର କୃପାଚାର୍ଯ୍ୟ, କୃତବର୍ମା ଅଶ୍ୱତ୍ଥାମା, ଶଲ୍ୟ, ଶକୁନି ଓ ଅନ୍ୟାନ୍ୟ ଅବଶିଷ୍ଟ ନୃପଗଣ ଏବଂ ଅନ୍ୟାନ୍ୟ ସୈନ୍ୟବୃନ୍ଦ ଭବଦୀୟ ପୁତ୍ରଙ୍କ ସହିତ ଏକତ୍ର ସମବେତ ହୋଇ ଏହିପରି ପ୍ରତିଜ୍ଞା କଲେ ଯେ "ଆମ୍ଭମାନଙ୍କ ମଧ୍ୟରେ କୌଣସି ବ୍ୟକ୍ତି ଏକାକୀ ପାଣ୍ଡବମାନଙ୍କ ସହିତ ସଂଗ୍ରାମ କରିବେ ନାହିଁ । ଯଦି କେହି ଏକାକୀ ସେମାନଙ୍କ ସମଭିବ୍ୟାହାରରେ ସଂଗ୍ରାମ କରିବେ, କିମ୍ବା ସଂଗ୍ରାମକାରୀ ସୈନ୍ୟଙ୍କୁ ପରିତ୍ୟାଗ କରି ଯିବେ, ତେବେ ସେ ପଞ୍ଚମହାପାତକ ଓ ଉପପାତକର ଫଳ ଭୋଗ କରିବେ । ଆମ୍ଭମାନଙ୍କ ମଧ୍ୟରେ ସମସ୍ତେ ପରସ୍ପରରେ ରକ୍ଷାକରି ସମରରେ ପ୍ରବୃତ୍ତ ହେବେ ।" ତେତେବେଳେ ମହାରଥଗଣ ଏହିପରି ପ୍ରତିଜ୍ଞା ପୂର୍ବକ ଶଲ୍ୟଙ୍କୁ ପୁରସ୍କୃତ କରି ଅବିଳମ୍ବରେ ଶତ୍ରୁମାନଙ୍କ ଅଭିମୁଖକୁ ଧାବିତ ହେଲେ । ମହାରାଜ ! ପାଣ୍ଡବଗଣ ମଧ୍ୟ ଏହିପରି ସୈନ୍ୟବିନ୍ୟାସ କରି ଯୁଦ୍ଧ ନିମିତ୍ତ ଚତୁର୍ଦ୍ଦିଗରୁ କୌରବମାନଙ୍କ ଅଭିମୁଖୀନ ହେଲେ । ହେ ଭରତଶ୍ରେଷ୍ଠ ! ସେହି ଉଭୟ ସୈନ୍ୟ ଏକତ୍ର ସମବେତ ହେବାରୁ ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ଏହି ଚତୁରଙ୍ଗ ସୈନ୍ୟମାନଙ୍କର ଯେଉଁ କୋଳାହଳ ହେଲା, ତାହା ଆନ୍ଦୋଳିତ ମହାସାଗରର ଭୀଷଣ ନିନାଦ ପରି ଜଣାଗଲା ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭେ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣଙ୍କ ନିଧନ ବିବରଣ ଶୁଣିଅଛୁଁ ; ପୁନଶ୍ଚ ଶଲ୍ୟ ଓ ଆମ୍ଭ ପୁତ୍ରଙ୍କ ବିନାଶ ବୃତ୍ତାନ୍ତ କୀର୍ତ୍ତନ କର । ଧର୍ମରାଜ ଯୁଦ୍ଧରେ ଶଲ୍ୟଙ୍କୁ କିପରି ସଂହାର କଲେ ଓ ବଳବାନ ଭୀମ ଅବା ଆମ୍ଭ ପୁତ୍ର ଦୁର୍ଯ୍ୟୋଧନଙ୍କୁ କିପରି ବିନଷ୍ଟ କଲେ ?

ସଞ୍ଜୟ କହିଲେ—ମହାରାଜ ! ମନୁଷ୍ୟଦେହ ଓ ଅଶ୍ୱ, ଗଜ ପ୍ରଭୃତିର କ୍ଷୟସଙ୍ଘଟିତ ସଂଗ୍ରାମର ବିବରଣ କହୁଅଛୁ, ସ୍ଥିର ମନରେ ଶ୍ରୁଣିବା ହେଉନ୍ତୁ । ହେ କୁରୁନାଥ ! ତେତେବେଳେ ଭବଦୀୟ ପୁତ୍ରମାନଙ୍କର ଏପରି ବଳବତୀ ଆଶା ହୋଇଥିଲା ଯେ ଭୀଷ୍ମ, ଦ୍ରୋଣ ହତ ଓ ସୂତପୁତ୍ର ପାତିତ ହେଲେ ସୁଦ୍ଧା, ଶଲ୍ୟ ନିଶ୍ଚୟ ପାଣ୍ଡବମାନଙ୍କୁ ସଂହାର କରିବେ । ଦୁର୍ଯ୍ୟୋଧନ ଏହି ଆଶାକୁ ହୃଦୟରେ ରଖି ଆଶ୍ୱସ୍ତ ହୋଇ ମହାରଥ ଶଲ୍ୟଙ୍କୁ ଉତ୍ତମ ରୂପେ ଆଶ୍ରୟ କରି ଆପଣାକୁ ସନାଥ ବୋଲି ମଣିଲେ । କର୍ଣ୍ଣ ହତ ହେବାରୁ ପାଣ୍ଡବଗଣ ଯେତେବେଳେ ସିଂହନାଦ କରିଥିଲେ, ତେତେ-

ବେଳେ ଦୁର୍ଯ୍ୟୋଧନ ପ୍ରଭୃତି ସମସ୍ତଙ୍କ ହୃଦୟ ଅତ୍ୟନ୍ତ ଭୟଗ୍ରସ୍ତ ହୋଇ ଥିଲା । ହେ ମହାରାଜ ! ସେତେବେଳେ ପ୍ରତାପଶାଳୀ ମହାରଥ ମଦ୍ରରାଜ ସେମାନଙ୍କୁ ଆଶ୍ୱାସ ପ୍ରଦାନପୂର୍ବକ ଋଦ୍ଧିଯୁକ୍ତ ସର୍ବତୋଭଦ୍ର ନାମକ ବ୍ୟୂହ ବିନ୍ୟାସ କଲେ ଓ ସିନ୍ଧୁଦେଶୀୟ ଅଶ୍ୱଯୁକ୍ତ ଉତ୍କୃଷ୍ଟ ରଥରେ ଆରୂଢ଼ ହୋଇ ବେଗ ଓ ବଳବିଶିଷ୍ଟ ବିଚିତ୍ର ଶରାସନ କମ୍ପାଇ ସଂଗ୍ରାମରେ ପାଣ୍ଡବମାନଙ୍କ ନିକଟକୁ ଗଲେ ।

ହେ ମହାରାଜ ! ତାହାଙ୍କ ସାରଥି ରଥାରୂଢ଼ ହୋଇ ରଥର ଅପୂର୍ବ ଶୋଭା ବିସ୍ତାର କଲେ । ଭବଦୀୟ ପୁତ୍ରଗଣର ଭୟହାରୀ ଶତ୍ରୁଦଳନ ବୀରବର ଶଲ୍ୟ ବରଣପ୍ରାପ୍ତ ହୋଇ ସେହି ରଥରେ ବସିଲେ । ମଦ୍ରରାଜ ପ୍ରୟାଣ ସମୟରେ ବଦ୍ଧକବଚ ହୋଇ ମଦ୍ରଦେଶୀୟ ବୀରଗଣ ଓ ଦୁର୍ଜୟ କର୍ଣ୍ଣପୁତ୍ରଙ୍କ ସହିତ ବ୍ୟୂହର ଅଗ୍ରଭାଗରେ ଅବସ୍ଥିତ ହେଲେ । ଦୁର୍ଯ୍ୟୋଧନ କୌରବଶ୍ରେଷ୍ଠମାନଙ୍କ ଦ୍ୱାରା ରକ୍ଷିତ ହୋଇ ମଧ୍ୟଭାଗରେ ଅବସ୍ଥାନ କଲେ । କୃତବର୍ମା ତ୍ରିଗର୍ତ୍ତ ସୈନ୍ୟଗଣରେ ପରିବେଷ୍ଟିତ ହୋଇ ବାମ ଭାଗରେ ଅବସ୍ଥାନ କଲେ । କୃପାଚାର୍ଯ୍ୟ ଶକ ଓ ଯବନ ସୈନ୍ୟମାନଙ୍କ ସହିତ ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ହେଲେ । ଅଶ୍ୱତ୍ଥାମା କାମ୍ବୋଜ ସୈନ୍ୟରେ ବେଷ୍ଟିତ ହୋଇ ପୃଷ୍ଠ ଭାଗରେ ରହିଲେ ଏବଂ ଶକୁନି ଅଶ୍ୱାରୋହୀ ସୈନ୍ୟମାନଙ୍କ ସହିତ ଓ ଉଲୂକ ଅନ୍ୟାନ୍ୟ ସମସ୍ତ ସେନା ସହିତ ଯୁଦ୍ଧ ଯାତ୍ରା କଲେ ।

ହେ ମହାରାଜ ! ମହା ଧନୁର୍ଦ୍ଧର ଅନନ୍ତ ପାଣ୍ଡବଗଣ ବ୍ୟୂହବିନ୍ୟାସ ପୂର୍ବକ ତିନ ଭାଗରେ ବିଭକ୍ତ ହୋଇ ଭବଦୀୟ ସୈନ୍ୟମାନଙ୍କ ପ୍ରତି ଧାବିତ ହେଲେ । ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ମହାରଥ ସାତ୍ୟକି ଅବିଳମ୍ବରେ ଯୁଦ୍ଧରେ ଶଲ୍ୟଙ୍କ ସେନାର ଅଭିମୁଖକୁ ଧାବିତ ହେଲେ । ହେ ଭରତଶ୍ରେଷ୍ଠ ! ତତ୍ପରେ ରାଜା ଯୁଧିଷ୍ଠିର ସ୍ୱକୀୟ ସୈନ୍ୟଗଣରେ ପରିବେଷ୍ଟିତ ହୋଇ ଶଲ୍ୟଙ୍କୁ ସଂହାର କରିବା ଇଚ୍ଛାରେ ତାହାଙ୍କ ସମ୍ମୁଖକୁ ଧାବିତ ହେଲେ । ଶତ୍ରୁକୁଳ ସଂହାରକାରୀ ଅର୍ଜ୍ଜୁନ ମହାଧନୁର୍ଦ୍ଧର କୃତବର୍ମା ଓ ସଂଶପ୍ତକ ସୈନ୍ୟମାନଙ୍କ ପ୍ରତି ଅତି ବେଗରେ ଧାବିତ ହେଲେ । ସଂଗ୍ରାମରେ ଶତ୍ରୁମାନଙ୍କ ସଂହାରେଚ୍ଛୁ ମହାରଥ ସୋମକଗଣ ଏବଂ ମହାବଳ ଭୀମ କୃପାଚାର୍ଯ୍ୟଙ୍କ ଅଭିମୁଖକୁ ଧାବିତ ହେଲେ । ନକୁଳ ଓ ସହଦେବ ସସୈନ୍ୟରେ ଯାତ୍ରା କରି ଯୁଦ୍ଧରେ ସୈନ୍ୟଯୁକ୍ତ ମହାରଥ ଶକୁନି ଓ ଉଲୂକଙ୍କ ସମ୍ମୁଖରେ

ଉପସ୍ଥିତ ହେଲେ । ହେ ରାଜେନ୍ଦ୍ର ! ଏହାପରେ ଆପଣଙ୍କ ଅଯୁତ ସୈନ୍ୟ ବିବିଧ ଆୟୁଧଧାରଣପୂର୍ବକ କ୍ରୁଦ୍ଧ ଭାବରେ ପାଣ୍ଡବମାନଙ୍କ ସମ୍ମୁଖକୁ ଅଗ୍ରସର ହୋଇ ଅବସ୍ଥାନ କଲେ ।

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ପ୍ରବଳ ପରାକ୍ରାନ୍ତ କ୍ରୋଧଯୁକ୍ତ ପାଣ୍ଡବଙ୍କ ଦ୍ୱାରା ମହାଧନୁର୍ଦ୍ଧର ମହାରଥ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ନିହତ ହେଲାରୁ କୌରବମାନଙ୍କର ଯେଉଁ ଅଳ୍ପମାତ୍ର ସୈନ୍ୟ ଅବଶିଷ୍ଟ ଥିଲେ, ସେମାନଙ୍କ ସଂଖ୍ୟା କେତେ ଓ ପାଣ୍ଡବୀୟ ସୈନ୍ୟସଂଖ୍ୟା କେତେ ? ସଞ୍ଜୟ କହିଲେ, ମହାରାଜ ! ଯେତେବେଳେ ଆମ୍ଭେମାନେ ଓ ଶତ୍ରୁମାନେ ଯୁଦ୍ଧସ୍ଥଳରେ ସଂଗ୍ରାମ କରିବା ନିମିତ୍ତ ଉପସ୍ଥିତ ଥିଲୁ, ସେତେବେଳେ ଉଭୟ ପକ୍ଷର ଯେତେ ସୈନ୍ୟ ଥିଲେ, ତାହା ଆମ୍ଭଠାରୁ ଶୁଣିବା ହେଉନ୍ତୁ ।

ହେ ଭରତଶ୍ରେଷ୍ଠ ! ସେତେବେଳେ ଆପଣଙ୍କର ଏକାଦଶ ସହସ୍ର ରଥ, ସପ୍ତଶତାଧିକ ଦଶ ସହସ୍ର ଗଜ, ଦୁଇ ଲକ୍ଷ ଅଶ୍ୱ ଓ ତିନି କୋଟି ପଦାତିକ ସୈନ୍ୟ ଥିଲେ । ପାଣ୍ଡବମାନଙ୍କର ଷଟ୍ ସହସ୍ର ରଥ, ଷଟ୍ ସହସ୍ର ଗଜ, ଦଶ ସହସ୍ର ଅଶ୍ୱ ଓ କୋଟି ସଂଖ୍ୟକ ପଦାତିକ ଅବଶିଷ୍ଟ ଥିଲେ ଏବଂ ଏମାନେ ଯୁଦ୍ଧ ନିମିତ୍ତ ଆଗତ ହେଲେ । ହେ ରାଜେନ୍ଦ୍ର ! ଆମ୍ଭେମାନେ ଯଥାପରି ସୈନ୍ୟବିଭାଗ କରି ଶଲ୍ୟଙ୍କ ମତରେ ରହି ଜୟ ଇଚ୍ଛାରେ କ୍ରୁଦ୍ଧ ହୋଇ ପାଣ୍ଡବମାନଙ୍କ ନିକଟକୁ ଧାବିତ ହେଲୁ, ସେହିପରି ବୀରବର ନରଶ୍ରେଷ୍ଠ ଜୟଚିହ୍ନ ପ୍ରକାଶକ ପାଣ୍ଡବଗଣ ଓ ଯଶସ୍ୱୀ ପାଞ୍ଚାଳବୃନ୍ଦ ଯୁଦ୍ଧରେ କ୍ରୁଦ୍ଧ ହୋଇ ସମାଗତ ହେଲେ । ସେମାନେ ସମସ୍ତେ ପରସ୍ପର ବଧ ଇଚ୍ଛାରେ ପୂର୍ବାହ୍ନ ସମୟରେ ସଂଗ୍ରାମଭୂମିକୁ ଆଗତ ହେଲେ । ତପରେ ପରସ୍ପର ପ୍ରହାରକାରୀ ଭବଦୀୟ ଓ ଶତ୍ରୁ ପକ୍ଷୀୟ ସୈନ୍ୟମାନଙ୍କର ଭୟଙ୍କର ଯୁଦ୍ଧାରମ୍ଭ ହେଲା । ୪୫ ।

---

## ନବମ ଅଧ୍ୟାୟ

ସଞ୍ଜୟ କହିଲେ—ହେ ନରେନ୍ଦ୍ର ! ତତ୍ପରେ କୌରବମାନଙ୍କର ସୃଞ୍ଜୟଗଣ ସହିତ ଯେଉଁ ଘୋରତର ଭୟବର୍ଦ୍ଧନ ଯୁଦ୍ଧ ଆରମ୍ଭ ହୋଇଥିଲା, ତାହା ଦେବାସୁର ଯୁଦ୍ଧର ସମାନ । ୧ । ସହସ୍ର ସହସ୍ର ଅଶ୍ୱ, ଗଜ, ରଥୀ, ଅଶ୍ୱାରୋହୀ ଓ ପରାକ୍ରାନ୍ତ ସୈନିକଜନକର ପରସ୍ପର ସମ୍ମିଳିତ

ହେଲେ । ୨ । ବର୍ଷାକାଳରେ ଆକାଶମଣ୍ଡଳରେ ମେଘସମୂହର ଗର୍ଜ୍ଜନ ସଦୃଶ ଭୀମ ରୂପଧାରୀ ଧାବମାନ ଗଜଯୂଥର ଗର୍ଜନ ଶୁଣାଗଲା । ୩ । କୌଣସି କୌଣସି ବଳବନ୍ତ ରଥିଗଣ ମଦମତ୍ତ ମାତଙ୍ଗଯୂଥ ଦ୍ୱାରା ବିରଥ ଓ ଆହତ ହୋଇ ରଣଭୂମିର ଚତୁର୍ଦ୍ଦିଗରେ ଧାବିତ ହେଲେ ।

ହେ ଭରତ ! ସୁଶିକ୍ଷିତ ରଥିଗଣ ପାଦରକ୍ଷକ ଓ ଅଶ୍ୱାରୋହୀମାନଙ୍କୁ ଶାଣିତ ଶରନିକରଦ୍ୱାରା ପରଲୋକକୁ ପ୍ରେରଣ କଲେ । ୫ । ହେ ରାଜନ୍ ! ଯୁଦ୍ଧବିଦ୍ୟାବିଶାରଦ ଆରୋହୀବୃନ୍ଦ ଯୁଦ୍ଧରେ ମହାରଥୀସମୂହକୁ ପରିବେଷ୍ଟନ-ପୂର୍ବକ ବିଚରଣ କରି ପ୍ରାସ ଶକ୍ତି ଓ ଖଡ୍‌ଗଦ୍ୱାରା ପ୍ରହାର କଲେ । ୬ । କତିପୟ ଧନୁର୍ଦ୍ଧର ବୀର ପୁରୁଷ ମହାରଥମାନଙ୍କୁ ପରିବେଷ୍ଟନପୂର୍ବକ ଅନେକ ବ୍ୟକ୍ତି ଏକ ଜଣକୁ ଆକ୍ରମଣ କରି ଯମାଳୟକୁ ପ୍ରେରଣ କଲେ । ୭ । କୌଣସି କୌଣସି ଗଜାରୋହୀ ରଥୋପରିସ୍ଥିତ ମହାରଥ-ମାନେ ଧାବମାନ ମହାମାତ୍ର ସାନ୍ତରଯୋଧୀ ମହାରଥଙ୍କୁ ଆକ୍ରମଣପୂର୍ବକ ବିନଷ୍ଟ କଲେ । ୮ । କୌଣସି କୌଣସି ରଥୀ କ୍ରୁଦ୍ଧ ହୋଇ ବହୁତର ଶର ବର୍ଷଣ କରୁଥିବା ସମୟରେ ଗଜାରୋହୀ ସୈନ୍ୟମାନେ ତାହାକୁ ପରିବେଷ୍ଟନପୂର୍ବକ ସଂହାର କଲେ । ୯ । ଗଜାରୋହୀ ଗଜାରୋହୀର ପ୍ରତି ଓ ରଥାରୋହୀ ରଥାରୋହୀର ପ୍ରତି ଧାବିତ ହୋଇ ଶକ୍ତି, ତୋମର ଓ ନାରାଚ ନିକ୍ଷେପଦ୍ୱାରା ପରସ୍ପରରେ ପ୍ରହାର କଲେ । ୧୦ । ରଥ, ଗଜ, ଅଶ୍ୱବୃନ୍ଦ ଓ ପଦାତିକମାନେ ବିମର୍ଦ୍ଦିତ ରଣସ୍ଥଳରେ ବିଷମ ବ୍ୟାକୁଳିତ ହେଉଥିବାର ଦେଖାଯାଉଥିଲା । ୧୧ । ଚାମରଦ୍ୱାରା ଉପଶୋଭିତ ଓ ଅଶ୍ୱଗଣ ଚତୁର୍ଦ୍ଦିଗରେ ଧାବିତ ହେଲାରୁ ହିମାଳୟର ପରିସର ପ୍ରଦେଶର ହଂସଗଣ ପୃଥିବୀକୁ ପାନ କରୁଥିଲା ପରି ଜଣାଯାଉଥିଲା । ୧୨ ।

ହେ ମହାରାଜ ! ସେହି ସମସ୍ତ ଅଶ୍ୱମାନଙ୍କ ଖୁରାଘାତରେ କ୍ଷତବିକ୍ଷତା ବିଚିହିତା ବସୁନ୍ଧରା ନଖକ୍ଷତା କାମିନୀ ସଦୃଶ ଶୋଭିତା ହେଲା । ୧୩ । ହେ ଭରତ ! ତେତେବେଳେ ଅଶ୍ୱମାନଙ୍କ ଖୁରା ଶବ୍ଦରେ, ରଥଚକ୍ରର ନିଃସ୍ୱନରେ, ପଦାତିକବୃନ୍ଦର କୋଳାହଳରେ, କୁଞ୍ଜରଯୂଥର ବୃଂହିତ ଧ୍ୱନିରେ, ନାନାବିଧ ବାଦ୍ୟନିର୍ଘୋଷରେ ଏବଂ ଶଙ୍ଖସମୂହର ନିନାଦରେ ଭୂତଳ ନିର୍ଘାତଦ୍ୱାରା ଶବ୍ଦାୟମାନ ହେଲାପରି ନିନାଦିତ ହେଲା । ୧୫ । ଶବ୍ଦାୟମାନ କାର୍ମୁକ, ଦୀପ୍ୟମାନ ଅସ୍ତ୍ର ଶସ୍ତ୍ର ଓ କବଚ-ସମୂହର ପ୍ରଭାରେ ରଣସ୍ଥଳ ଏପରି ଆକୀର୍ଣ୍ଣ ହୋଇଥିଲା ଯେ, ସେଠାରେ

କେହି କିଛି ବୁଝି ଜାଣିପାରିଲେ ନାହିଁ । ୧୬ । ହସ୍ତୀଶୁଣ୍ଡ ସଦୃଶ ବିଚ୍ଛିନ୍ନ ଅସଂଖ୍ୟ ବାହୁବୃନ୍ଦ ବିବିଧ ଚେଷ୍ଟା ଚଞ୍ଚଳତା ଓ ଦାରୁଣ ବେଗକୁ ପ୍ରକାଶ କଲେ । ୧୭ । ତାଳଫଳ ତାଳବୃକ୍ଷରୁ ବିଚ୍ୟୁତ ହୋଇ ପତିତ ହେଲେ ଯାଦୃଶ ଶବ୍ଦ ହୁଏ, ବୀରବୃନ୍ଦର ବିଚ୍ଛିନ୍ନ ମସ୍ତକସମୂହ ମହୀତଳରେ ପତିତ ହେଲାରୁ ତାଦୃଶ ଧ୍ୱନି ହେଉଥିଲା । ୧୮ । ହେ ଭରତ ! ଶରତକାଳୀନ ସୁବର୍ଣ୍ଣ ବର୍ଣ୍ଣ ପଦ୍ମବୃନ୍ଦ ସଦୃଶ ରୁଧିରସିକ୍ତ ପତିତ ମସ୍ତକ ନିକରଦ୍ୱାରା ବସୁଧା ଶୋଭା ପାଇଲା । ୧୯ । ସେହି ସୁରକ୍ଷିତ ଗତସତ୍ତ୍ୱ ଉଦ୍‌ବୃତ୍ତ ନୟନ ଉତ୍ତମାଙ୍ଗ ସମୂହଦ୍ୱାରା ଭୂମଣ୍ଡଳ ସୁବର୍ଣ୍ଣ ପଦ୍ମମାଳାରେ ମଣ୍ଡିତ ହେଲାପରି ଜଣାଯାଉଥିଲା । ୨୦ । ମହାମୂଲ୍ୟ କେୟୂରଯୁକ୍ତ ଚନ୍ଦନଚର୍ଚ୍ଚିତ ପତିତ ଭୁଜସମୂହଦ୍ୱାରା ଧରାତଳ ଇନ୍ଦ୍ରଦେବଙ୍କ ଧ୍ୱଜରାଶିରେ ସୁଶୋଭିତ ହେଲାପରି ଜଣାଯାଉଥିଲା । ୨୧ । ହସ୍ତୀଶୁଣ୍ଡ ସଦୃଶ ନରେନ୍ଦ୍ରମାନଙ୍କ ବିଚ୍ଛିନ୍ନ ଊରୁ-ସମୂହଦ୍ୱାରା ସମରସ୍ଥଳ ପୂର୍ଣ୍ଣ ହେଲା । ୨୨ । ତତ୍ ସମୟରେ ରଣଭୂମିରେ ସୈନ୍ୟକୁଳ ଶତ ଶତ ସଂଖ୍ୟକ କବନ୍ଧରାଶିରେ ଏବଂ ଛତ୍ର ଓ ଚାମର-ସମୂହରେ ବେଷ୍ଟିତ ହୋଇ କୁସୁମରାଶିଶୋଭିତ ବନପରି ବିରାଜିତ ହେଲା । ୨୩ ।

ହେ ମହାରାଜ ! ତେତେବେଳେ ଯୋଦ୍ଧାମାନେ ରକ୍ତାକ୍ତ କଳେବର ହୋଇ ନିର୍ଭୟରେ ବିଚରଣ କରି ସୁପୁଷ୍ପିତ କିଂଶୁକ ତରୁସମାନ ପରିଦୃଷ୍ଟ ହେଲେ । ୨୪ । କରିଯୂଥ ଯେଉଁ ଯେଉଁ ସ୍ଥାନରେ ଥିଲେ, ସେମାନେ ଶର ଓ ତୋମରାଘାତରେ ପ୍ରପୀଡ଼ିତ ହୋଇ ଛିନ୍ନ ଘନ ସଦୃଶ ସେହି ସ୍ଥାନରେ ପତିତ ହେଲେ । ୨୫ । କରିସୈନ୍ୟବୃନ୍ଦ ମହାବୀରମାନଙ୍କ ଦ୍ୱାରା ବଧ୍ୟମାନ ହୋଇ ପବନ ଦ୍ୱାରା ବିଚଳିତ ଜଳଧାର ସମାନ ଚତୁର୍ଦ୍ଦିଗକୁ ପଳାୟନ କଲେ । ୨୬ । ପରିଶେଷରେ ମେଘ ସଦୃଶ ଗଜଯୂଥ ପ୍ରଳୟ-କାଳୀନ ବଜ୍ରବିଦୀର୍ଣ୍ଣ ଗିରିବୃନ୍ଦ ସଦୃଶ ଭୂମିରେ ପଡ଼ିଲେ ଓ ଗିରିସଦୃଶ ଅଶ୍ୱବୃନ୍ଦ ରାଶି ରାଶି ହୋଇ ଆରୋହିକୁଳ ସହିତ ଭୂପୃଷ୍ଠରେ ପଡ଼ିଲେ । ୨୮ । ସମରଭୂମିରେ ପରଲୋକବାହିନୀ ଯେଉଁ ମହାନଦୀ ଉତ୍ପନ୍ନ ହେଲା, ତହିଁରେ ରକ୍ତ ଜଳସଦୃଶ, ରଥବୃନ୍ଦ ଆବର୍ତ୍ତ, ଧ୍ୱଜନିକର ବୃକ୍ଷ ଓ ଅସ୍ଥିନିକର ଶର୍କର ଅର୍ଥାତ୍ ପ୍ରସ୍ତରଖଣ୍ଡ ସଦୃଶ ଅଟେ । ୨୯ । ଭୁଜବୃନ୍ଦ କୁମ୍ଭୀର, ଧନୁସମୂହ ସ୍ରୋତ, କରିଯୂଥ ଶୈଳ, ଅଶ୍ୱବୃନ୍ଦ ପାଷାଣ, ମେଦ ଓ ମଜ୍ଜାନିଚୟ କର୍ଦ୍ଦମ, ଛତ୍ର ରାଜହଂସ ଏବଂ ଗଦାସମୂହ ଉଡ଼ୁପ ଅର୍ଥାତ୍ ଭେଳା ସମାନ ଅଟେ । ୩୦ । କବଚ, ଉଷ୍ଣୀଷ, ପତାକା, ଦ୍ରୁମ, ରଥଚକ୍ର

ଚକ୍ରବାକ୍ୟ, ବଳ କିରେଶ୍ମ ଦଣ୍ଡ ପ୍ରଭୃତି ବିବିଧ ବସ୍ତୁସମୂହ ଦ୍ୱାରା ତାହା ପରିପୂର୍ଣ୍ଣ ହୋଇଥିଲା । ୩୧ । କୁରୁ ସୃଞ୍ଜୟ ସୈନ୍ୟମାନଙ୍କ ରକ୍ତସମ୍ଭୂତା ସେହି ତରଙ୍ଗିଣୀ ବୀରକୁଳର ହର୍ଷଜନନୀ ଓ ଭୀରୁମାନଙ୍କର ଭୟ-ବର୍ଦ୍ଧିନୀ ହେଲା । ୩୨ । ସେହି ନଦୀ ପିତୃଲୋକ ଉଦ୍ଦେଶ୍ୟରେ ଅତି ଭୈରବ ଭାବରେ ବହୁଥିଲା । ପରିଘସମାନ ଭୁଜବିଶିଷ୍ଟ ବୀରଗଣ ବାହନରୂପ ନୌକାଦ୍ୱାରା ତାହାକୁ ଅନାୟାସରେ ପାର ହେଲେ । ୩୩ ।

ହେ ଶତ୍ରୁତାପନ ମହାରାଜ ! ଏହିପରି ଦେବାସୁର ଯୁଦ୍ଧ ସଦୃଶ ଚତୁରଙ୍ଗବଳର ଧ୍ୱଂସକାରୀ ଘୋରତର ଯୁଦ୍ଧ ହୁଅନ୍ତେ ସୈନ୍ୟଗଣ ସ୍ୱୀୟ ବାନ୍ଧବମାନଙ୍କୁ ଉଚ୍ଚୈଃସ୍ୱରରେ ଆହ୍ୱାନ କଲେ । ୩୪ । ହେ ରାଜନ୍ ! ସୁହୃଦ୍‌ବୃନ୍ଦ ସେମାନଙ୍କର ସେହି ଭୟଙ୍କର ଉଚ୍ଚ ଆହ୍ୱାନ ନାଦ ଶୁଣି ଆର୍ତ୍ତ ହେଲେ; ମାତ୍ର ପଳାୟନ କଲେ ନାହିଁ । ତାଦୃଶ ଭୟଙ୍କର ମର୍ଯ୍ୟାଦାଶୂନ୍ୟ ସମର ହେବାରୁ ଅର୍ଜୁନ ଓ ଭୀମସେନ ଶତ୍ରୁମାନଙ୍କୁ ମୋହିତ କଲେ । ୩୫ । ଆପଣଙ୍କ ମହତୀ ସେନା କାଳମୁଖରେ ପତିତ ମଦବଶା ରମଣୀ ପରି ସେ ଯେଉଁ ସ୍ଥାନରେ ଥିଲେ, ସେ ସେହି ସ୍ଥାନରେ ମୋହିତ ହୋଇ ରହିଲେ । ୩୬ । ଉପରେ ଭୀମ ଓ ଅର୍ଜୁନ ସୈନ୍ୟମାନଙ୍କୁ ମୋହିତ କରି ଶଙ୍ଖ ଧ୍ୱନି ଓ ସିଂହନାଦ କଲେ । ୩୮ । ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ସେହି ମହାନାଦ ଶ୍ରବଣ କରି ମାତ୍ରେ ଧର୍ମରାଜଙ୍କୁ ଅଗ୍ରସର କରି ଶଲ୍ୟଙ୍କ ସମ୍ମୁଖକୁ ଧାବିତ ହେଲେ । ୩୯ । ମହାରାଜ ! ଶୂରକୁଳ ଭାଗ୍ୟବଶରେ ଯେତେବେଳେ ଶଲ୍ୟଙ୍କ ସହିତ ସଙ୍ଗତ ହୋଇ ଘୋରତର ସଂଗ୍ରାମ କଲେ, ସେତେବେଳେ ଆମ୍ଭେମାନେ ଅନେକ ଆଶ୍ଚର୍ଯ୍ୟ କୌଶଳ ନିରୀକ୍ଷଣ କଲୁ । ୪୦ । ସମରମତ୍ତ ଅସ୍ତ୍ରପଣ୍ଡିତ ବେଗବାନ୍ ନକୁଳ ଓ ସହଦେବ ତ୍ୱରାନ୍ୱିତ ହୋଇ ଭବଦୀୟ ସୈନ୍ୟନିକରକୁ ଜୟ କରିବା ଇଚ୍ଛାରେ ଧାବିତ ହେଲେ । ୪୧ ।

ହେ ଭରତଶ୍ରେଷ୍ଠ ! ଉପରେ ଆପଣଙ୍କ ବଳସମୂହ ଜୟକାଂକ୍ଷୀ ପାଣ୍ଡବମାନଙ୍କର ଶରପ୍ରହାରରେ ବହୁଧା ଭଗ୍ନ ହୋଇ ନିବର୍ତ୍ତିଲେ । ୪୨ । ସେମାନେ ଭବଦୀୟ ପୁତ୍ରମାନଙ୍କ ସାକ୍ଷାତରେ ଦୃଢ଼ ଧନୁର୍ଦ୍ଧର ପାଣ୍ଡବଗଣ କର୍ତ୍ତୃକ ଆହତ ଓ ବଧ୍ୟମାନ ହୋଇ ଦିଗମାନଙ୍କରେ ଆଶ୍ରୟ ଗ୍ରହଣ କଲେ । ୪୩ । ହେ ଭରତ ! ଏହି ସମୟରେ ଭବଦୀୟ ଯୋଦ୍ଧାମାନଙ୍କ ମଧ୍ୟରେ ଅତି ମହାନ୍ ହାହାକାର ଧ୍ୱନି ଉଠିଲା ଓ ପଶ୍ଚାତ୍ ଧାବମାନ

ମହାତ୍ମାମାନଙ୍କ ମଧ୍ୟରେ ରହ ରହ ବୋଲି ଶବ୍ଦ ଉଠିଥିଲା । ୪୪ । ହେ ଭରତଶ୍ରେଷ୍ଠ ! କ୍ଷତ୍ରିୟମାନଙ୍କ ମଧ୍ୟରେ ଯେଉଁମାନେ ଯୁଦ୍ଧରେ ପରସ୍ପର ଜୟାକାଙ୍କ୍ଷା କରିଥିଲେ, ସେମାନେ ସମସ୍ତେ ପାଣ୍ଡବଗଣଙ୍କ ଦ୍ୱାରା ଭଗ୍ନ ହୋଇ ପଳାୟନ କଲେ । ୪୫ । ଯୁଦ୍ଧସ୍ଥଳରେ ଭବଦୀୟ ଯୋଧବୃନ୍ଦ ନିଜ ନିଜ ପ୍ରିୟ ପୁତ୍ର, ଭ୍ରାତା, ପିତାମହ, ମାତୁଳ, ଭାଗିନେୟ, ସମ୍ବନ୍ଧି ଓ ବାନ୍ଧବମାନଙ୍କୁ ପରିତ୍ୟାଗପୂର୍ବକ ଅଶ୍ୱଗଜମାନଙ୍କୁ ଦ୍ରୁତବେଗରେ ଚଳାଇ ଆତ୍ମରକ୍ଷାନିମିତ୍ତ ଉତ୍ସାହିତ ହୋଇ ଗମନ କଲେ । ୪୬ ।

---

## ଦଶମ ଅଧ୍ୟାୟ

ସଞ୍ଜୟ କହିଲେ—ପ୍ରତାପଶାଳୀ ମଦ୍ରରାଜ ସେହି ପଳାୟମାନ ବଳଙ୍କୁ ଦେଖି ସାରଥିଙ୍କୁ କହିଲେ, "ହେ ରଥବାହକ ! ମନସଦୃଶ ବେଗଗାମୀ ଅଶ୍ୱମାନଙ୍କୁ ଶୀଘ୍ର ଚଳାଅ । ୧ । ଧ୍ରିୟମାଣ ପାଣ୍ଡୁର ବର୍ଣ୍ଣ ଛତ୍ରଦ୍ୱାରା ବିରାଜିତ ପାଣ୍ଡୁନନ୍ଦନ ରାଜା ଯୁଧିଷ୍ଠିର ଯେଉଁଠାରେ ଅଛନ୍ତି, ତୁମ୍ଭେ ଅବିଳମ୍ବେ ଆମ୍ଭଙ୍କୁ ସେହି ସ୍ଥାନରେ ପ୍ରବେଶ କରାଅ । ୨ । ହେ ସାରଥେ ! ଆମ୍ଭର କେତେ ବଳ ଅଛି ଦେଖ । ଆଜି ଯୁଦ୍ଧରେ ପାଣ୍ଡବମାନେ ଆମ୍ଭ ସମ୍ମୁଖରେ ରହିବାକୁ କଦାପି ସମର୍ଥ ହେବେ ନାହିଁ ।" ୩ । ମଦ୍ରରାଜ ଏହିପରି କହିଲା ପରେ ସାରଥି ସତ୍ୟପ୍ରତିଜ୍ଞ ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟକୁ ରଥ ଚଳାଇଲେ । ୪ । ସମୁଦ୍ରର ତୀରଭୂମି ଯେଉଁପରି ଉଚ୍ଛ୍ୱଳିତ ସମୁଦ୍ରକୁ ଧାରଣ କରେ, ଶଲ୍ୟ ଏକାକୀ ପାଣ୍ଡବମାନଙ୍କ ଆଗମନଶୀଳ ଅତି ମହତ୍ ବଳସମୂହକୁ ସେହିପରି ସହସା ଧାରଣ କଲେ । ୫ । ହେ ଆର୍ଯ୍ୟ ! ଅଚଳକୁ ସ୍ପର୍ଶ କଲା ମାତ୍ରେ ସମୁଦ୍ରର ବେଗ ଯେଉଁପରି ସ୍ଥିର ହୁଏ, ପାଣ୍ଡବଙ୍କ ସୈନ୍ୟବୃନ୍ଦ ଶଲ୍ୟଙ୍କ ନିକଟବର୍ତ୍ତୀ ହେଲାମାତ୍ରେ ସେହିପରି ସ୍ଥିର ଭାବରେ ଅବସ୍ଥାନ କଲେ । ୬ । କୌରବଗଣ ଶଲ୍ୟ ସମରରେ ଅବସ୍ଥିତ ଥିବାର ଦେଖି ପ୍ରାଣପଣରେ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୭ ।

ହେ ମହାରାଜ ! ବ୍ୟୂହ ମଧ୍ୟରେ ଭାଗକ୍ରମରେ ବିନ୍ୟସ୍ତ ସୈନ୍ୟ-ସମୂହ ଯୁଦ୍ଧରେ ପ୍ରବୃତ୍ତ ହେଲାରୁ ଶୋଣିତ ଜଳପୂର୍ଣ୍ଣ ଅତି ଭୟଙ୍କର ଯୁଦ୍ଧ ଆରମ୍ଭ ହେଲା । ୮ । ରଣମତ୍ତ ନକୁଳ ଚିତ୍ରସେନଙ୍କୁ ଆକ୍ରମଣ କଲେ ।

ସେହି ବିଚିତ୍ର ଧନୁର୍ଦ୍ଧର ବୀର ଦୁହେଁ ଯୁଦ୍ଧରେ ପରସ୍ପର ମିଳିତ ହୋଇ ଦକ୍ଷିଣୋତ୍ତର ବର୍ଷୁକ ଓ ଉଦ୍‌ବୃତ୍ତ ଦୁଇଗୋଟି ଜଳଧର ସଦୃଶ ପରସ୍ପରୋପରି ଯେତେବେଳେ ପୁଙ୍ଖାନୁପୁଙ୍ଖରେ ଶରବୃଷ୍ଟି କରୁଥିଲେ, ସେତେବେଳେ ଆମ୍ଭେମାନେ ସମସ୍ତେ ପାଣ୍ଡୁନନ୍ଦନ କି ଚିତ୍ରସେନ କାହାର ଅବକାଶ ଦେଖୁ ନ ଥିଲୁଁ । ଅସ୍ତ୍ରବିଦ୍ୟାପାରଗ ଓ ରଥଚର୍ଯ୍ୟାବିଶାରଦ ସେହି ବଳିଷ୍ଠ ବୀର ଦୁହେଁ ପରସ୍ପର ବଧ ବିଷୟରେ ଯତ୍ନଶୀଳ ହୋଇ ଅନ୍ୟୋନ୍ୟର ଛିଦ୍ରାନ୍ୱେଷଣରେ ତତ୍ପର ହେଲେ । ହେ ମହାରାଜ ! ଚିତ୍ରସେନ ପୀତବର୍ଣ୍ଣ ନିଶିତ ଭଲ୍ଲ ଦ୍ୱାରା ନକୁଳଙ୍କ ଶରାସନକୁ ମୁଷ୍ଟି ଦେଶରେ ଛେଦନ କଲେ । ତତ୍ପରେ ପାଣ୍ଡବଙ୍କ ଶରାସନ ଛିନ୍ନ ହେଲାରୁ ଅସମ୍ଭ୍ରାନ୍ତ ଚିତ୍ରସେନ ତାହାଙ୍କ ଲଲାଟ ମଧ୍ୟକୁ ତିନିଗୋଟି ବାଣ ନିକ୍ଷେପ କରି ତୀକ୍ଷ୍ଣ ଶର ପ୍ରହାରରେ ତଦୀୟ ଅଶ୍ୱମାନଙ୍କୁ ସଂହାର କଲେ ଓ ଧ୍ୱଜ ଏବଂ ସାରଥିଙ୍କୁ ତିନି ତିନି ଶରରେ ପାତିତ କଲେ । ହେ ମହାରାଜ ! ଶତ୍ରୁନିର୍ମୁକ୍ତ ଲଲାଟସ୍ଥିତ ତିନି ଗୋଟି ଶର ଦ୍ୱାରା ନକୁଳ ତ୍ରିଶୃଙ୍ଗ ଗିରି ପରି ଶୋଭିତ ହେଲେ । ତତ୍ପରେ ବୀରବର ନକୁଳ ଛିନ୍ନଶରାସନ ଓ ବିରଥ ହୋଇ ଖଡ୍‌ଗ ଚର୍ମ ଗ୍ରହଣ ପୂର୍ବକ ସିଂହ ପର୍ବତାଗ୍ରରୁ ଓହ୍ଲାଇଲା ପରି ତତ୍‌କ୍ଷଣାତ୍ ରଥରୁ ଓହ୍ଲାଇଲେ ଏବଂ ସେ ପଦବ୍ରଜରେ ଧାବମାନ ହେଲେ । ଚିତ୍ରସେନ ତାହାଙ୍କ ଉପରେ ଭୂରି ଭୂରି ଶର ବୃଷ୍ଟି କଲେ । ୧୯ ।

ଅଦ୍ଭୁତ ପରାକ୍ରମଶାଳୀ ବୀର ନକୁଳ ବର୍ମଦ୍ୱାରା ତାହାସବୁ ନିବାରଣ କଲେ ଏବଂ ସେହି ବିଚିତ୍ରଯୋଧୀ ଶ୍ରମଜୟୀ ମହାବାହୁ ସୈନ୍ୟମାନଙ୍କ ସାକ୍ଷାତରେ ଚିତ୍ରସେନଙ୍କ ନିକଟକୁ ଯାଇ ତହିଁରେ ଆରୋହଣ କଲେ । ତତ୍ପରେ ପାଣ୍ଡୁପୁତ୍ର ଚିତ୍ରସେନଙ୍କ କୁଣ୍ଡଳ ଓ ମୁକୁଟ ଦ୍ୱାରା ଉପଶୋଭିତ ସୁନ୍ଦର ନାସିକାଯୁକ୍ତ ଆୟତନେତ୍ର ମସ୍ତକକୁ ଶରୀର ମଧ୍ୟରୁ କର୍ତ୍ତନ କଲେ । ସେତେବେଳେ ସୂର୍ଯ୍ୟସମ ପ୍ରଭାଶାଳୀ ଚିତ୍ରସେନ ରଥ ଉପରେ ପଡ଼ିଲେ । ୨୦ । ମହାରଥମାନେ ଚିତ୍ରସେନ ହତ ହେବାର ଦେଖି ନକୁଳଙ୍କୁ ଭୂରି ଭୂରି ସାଧୁବାଦ ପ୍ରଦାନପୂର୍ବକ ସିଂହନାଦ କଲେ । ୨୧ ।

ହେ ମହାରାଜ ! ତତ୍ପରେ କର୍ଣ୍ଣପୁତ୍ର ରଥିବର ସୁଷେଣ ଓ ସତ୍ୟସେନ ଭ୍ରାତାଙ୍କ ମରଣ ଦେଖି ଶାଣିତ ଶର ବର୍ଷଣ କରି ମହାବନରେ ଦୁଇଗୋଟି ବ୍ୟାଘ୍ର ଯେଉଁପରି ଗୋଟିଏ ହସ୍ତୀକୁ ବିନାଶ କରିବା ନିମିତ୍ତ ଧାବମାନ ହୁଅନ୍ତି, ତଦ୍‌ବତ୍ ତ୍ୱରାଯୁକ୍ତ ହୋଇ ପାଣ୍ଡବଙ୍କ ନିକଟକୁ ଧାବିତ

ହେଲେ । ୨୩ । ସେହି ଦୁହେଁ ମହାରଥ ନକୁଳଙ୍କୁ ମେଘଦ୍ୱୟ ଜଳଧାରା ବର୍ଷଣ କଲାପରି ଅସଂଖ୍ୟ ସୁତୀକ୍ଷ୍ଣ ଶର ନିକ୍ଷେପ କଲେ । ୨୪ । ପାଣ୍ଡବ ସର୍ବାଙ୍ଗରେ ଶରବିଦ୍ଧ ହୋଇ ସୁଦ୍ଧା ଆନନ୍ଦିତ ବ୍ୟକ୍ତିପରି ଅନ୍ୟ ଶରାସନ ଗ୍ରହଣପୂର୍ବକ ଅବିଳମ୍ବରେ ରଥରେ ଆରୋହଣ କଲେ ଓ କ୍ରୋଧଯୁକ୍ତ ଯମଦେବ ସଦୃଶ ସମର ମଧ୍ୟରେ ଅବସ୍ଥିତ ହେଲେ । ହେ ନରନାଥ ! ସେହି ଦୁଇ ଭ୍ରାତା ସୁଦୃଢ଼ ଶରପ୍ରହାରଦ୍ୱାରା ତାହାଙ୍କ ରଥକୁ ଖଣ୍ଡ ଖଣ୍ଡ କରିବାକୁ ଆରମ୍ଭ କଲେ । ତତ୍ପରେ ରଣଚତୁର ନକୁଳ ଅନାୟାସରେ ଚାରିଗୋଟି ଶର ସନ୍ଧାନ କରି ସତ୍ୟସେନଙ୍କ ଅଶ୍ୱଚତୁଷ୍ଟୟଙ୍କୁ ନିହତ କଲେ ।

ହେ ରାଜେନ୍ଦ୍ର ! ପରିଶେଷରେ ପାଣ୍ଡୁପୁତ୍ର ଗୋଟିଏ ସୁବର୍ଣ୍ଣ ପୁଙ୍ଖ ଶାଣିତ ନାରାଚ ସନ୍ଧାନପୂର୍ବକ ସତ୍ୟସେନଙ୍କ ଶରାସନ ଛେଦନ କଲେ । ସତ୍ୟସେନ ଓ ସୁଷେଣ ଅନ୍ୟ ରଥରେ ଆରୋହଣପୂର୍ବକ ଅପର ଶରାସନ ଗ୍ରହଣ କରି ନକୁଳଙ୍କ ସମ୍ମୁଖକୁ ଧାବିତ ହେଲେ । ପ୍ରତାପଶାଳୀ ଅସମ୍ଭ୍ରାନ୍ତ-ଚିତ୍ତ ମାଦ୍ରୀପୁତ୍ର ରଣର ଅଗ୍ରଭାଗରେ ସେହି ଦୁହିଙ୍କୁ ଦୁଇ ଦୁଇ ବାଣ ନିକ୍ଷେପ କଲେ । ତଦନନ୍ତର ମହାରଥ ସୁଷେଣ କ୍ରୋଧର ଅଧୀନ ହୋଇ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଅନାୟାସରେ ପାଣ୍ଡୁପୁତ୍ରଙ୍କ ଉତ୍କୃଷ୍ଟ କାର୍ମୁକକୁ ଛେଦନ କଲେ । ସେତେବେଳେ ନକୁଳ କ୍ରୋଧରେ ଅଧୀର ହୋଇ ଅନ୍ୟ ଶରାସନ ଗ୍ରହଣପୂର୍ବକ ପାଞ୍ଚଗୋଟି ଶରପ୍ରେରଣଦ୍ୱାରା ସୁଷେଣଙ୍କୁ ବିଦ୍ଧ କଲେ ଓ ଗୋଟିଏ ବାଣରେ ତାହାଙ୍କ ରଥର ଧ୍ୱଜ ଛେଦନ କଲେ ।

ତତ୍ପରେ ନକୁଳ ବଳପୂର୍ବକ ସତ୍ୟସେନଙ୍କ ଶରାସନ ଓ ହସ୍ତାବାପ ଛେଦନ କରିବାରେ ରଣସ୍ଥଳରେ ସମସ୍ତେ କୋଳାହଳ କଲେ । ପରିଶେଷରେ ସତ୍ୟସେନ ଶତ୍ରୁନିବାରଣକ୍ଷମ ଭାରସାଧନ ଅନ୍ୟ ଶରାସନ ଧରି ପାଣ୍ଡବଙ୍କୁ ଶରନିକରଦ୍ୱାରା ସଂପୂର୍ଣ୍ଣରୂପେ ଆଚ୍ଛନ୍ନ କଲେ । ପରବୀର-ହନ୍ତା ନକୁଳ ସେହି ବାଣବୃନ୍ଦକୁ ନିବାରଣ କରି ସତ୍ୟସେନ ଓ ସୁଷେଣଙ୍କୁ ଏକାବେଳକେ ଦୁଇ ଦୁଇ ବାଣରେ ବିଦ୍ଧ କଲେ । ସେହି ବୀରଦୁହେଁ ପୃଥକ୍ ପୃଥକ୍ ସରଳଗାମୀ ଶରନିକରଦ୍ୱାରା ପାଣ୍ଡବଙ୍କୁ ପ୍ରତିବିଦ୍ଧ ଓ ତାହାଙ୍କ ସାରଥିଙ୍କୁ ଶାଣିତ ଶରରେ ବିଦ୍ଧ କଲେ । ପ୍ରତାପଶାଳୀ ଲଘୁହସ୍ତ ସତ୍ୟସେନ ନକୁଳଙ୍କ ରଥର ଈଷା ଓ ଶରାସନ ଛେଦନ କଲେ ।

ମହାରାଜ ! ତତ୍ପରେ ସେହି ଅତିରଥ ରଥ ମଧ୍ୟରେ ଥାଇ ମହାବିଷଯୁକ୍ତା ଜିହ୍ୱାକୁ ଲହ ଲହ କରୁଥିବା ନାଗକନ୍ୟା ସଦୃଶୀ ସୁବର୍ଣ୍ଣ-ଯୁକ୍ତା ସୁତୀକ୍ଷ୍ଣା ତୈଳଧୌତା ଅତି ନିର୍ମଳା ରଥରୁ ଶକ୍ତିକ ଗ୍ରହଣପୂର୍ବକ ସତ୍ୟସେନଙ୍କୁ ନିକ୍ଷେପ କଲେ । ସେହି ଶକ୍ତି ସତ୍ୟସେନଙ୍କ ହୃଦୟକୁ ଶତଖଣ୍ଡ କଲା । ୪୦ । ତେତେବେଳେ ସତ୍ୟସେନ ଗତସତ୍ତ୍ୱ ହୋଇ ଅଳ୍ପ ଚେତନା ଥିବା ସମୟରେ ରଥରୁ ପଡ଼ିଲେ । ଭ୍ରାତା ନିହତ ହେଲାରୁ ସୁଷେଣ କ୍ରୋଧରେ ଅଧୀର ଅଧୈର୍ଯ୍ୟ ହୋଇ ଅବିଳମ୍ବରେ ପାଦରକ୍ଷୀ ପାଣ୍ଡବଙ୍କୁ ଭୂରି ଭୂରି ଶରବୃଷ୍ଟିରେ ପୀଡ଼ା ଦେଲେ ଓ ଚାରି ଶରରେ ତାହାଙ୍କ ଚାରି ଅଶ୍ୱ, ପାଞ୍ଚ ଶରରେ ଧ୍ୱଜ ଓ ତିନି ଶରରେ ସାରଥିଙ୍କୁ ଉଚ୍ଛେଦନ-ପୂର୍ବକ ସିଂହନାଦ କଲେ ।

ତତ୍କାଳରେ ଦ୍ରୌପଦୀଙ୍କ ପୁତ୍ର ମହାରଥ ସୁତସୋମ ନକୁଳଙ୍କୁ ବିରଥ ହେବାର ଦେଖି ପିତାଙ୍କୁ ରକ୍ଷା କରିବାନିମିତ୍ତ ଯୁଦ୍ଧରେ ତାହାଙ୍କ ଅଭିମୁଖକୁ ଧାବିତ ହେଲେ । ତେତେବେଳେ ଭରତଶ୍ରେଷ୍ଠ ନକୁଳ ତାହାଙ୍କ ରଥରେ ଆରୋହଣ କରି ପର୍ବତର ଉପରିସ୍ଥିତ ସିଂହପରି ଅତ୍ୟନ୍ତ ଶୋଭିତ ହେଲେ । ତତ୍ପରେ ସେ ଅନ୍ୟ ଶରାସନ ଗ୍ରହଣପୂର୍ବକ ସୁଷେଣଙ୍କ ସହିତ ଯୁଦ୍ଧ କଲେ । ୪୫ । ସେହି ଦୁଇ ମହାରଥ ପରସ୍ପର ମିଳିତ ହୋଇ ଶରବୃଷ୍ଟି କରି ପରସ୍ପର ବଧ ନିମିତ୍ତ ଅତ୍ୟନ୍ତ ଯତ୍ନ କଲେ ।

ପରିଶେଷରେ ସୁଷେଣ ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ ପାଣ୍ଡବଙ୍କୁ ତିନିଗୋଟି ଶର ଓ ସୁତସୋମଙ୍କ ଦୁଇ ବାହୁ ଓ ବକ୍ଷ ସ୍ଥଳକୁ ବିଂଶତି ବାଣ ନିକ୍ଷେପ କଲେ । ୪୭ । ହେ ମହାରାଜ ! ଏଥି ଉତ୍ତରରେ ପରବୀରହନ୍ତା ବେଗଶାଳୀ ନକୁଳ କ୍ରୋଧର ଅଧୀନ ହୋଇ ସୁଷେଣଙ୍କ ଦଶଦିଗକୁ ଶର-ସମୂହରେ ଆଚ୍ଛନ୍ନ କଲେ ଓ ସୁତୀକ୍ଷ୍ଣ ସୁଶାଣିତ ବେଗଯୁକ୍ତ ଗୋଟିଏ ଅର୍ଦ୍ଧଚନ୍ଦ୍ର ବାଣ ସନ୍ଧାନପୂର୍ବକ କର୍ଣ୍ଣପୁତ୍ରଙ୍କୁ ପ୍ରୟୋଗ କଲେ । ୪୯ । ହେ ନୃପବର ! ନକୁଳ ସେହି ନିକ୍ଷିପ୍ତ ଅର୍ଦ୍ଧଚନ୍ଦ୍ର ଶର ପ୍ରହାର ଦ୍ୱାରା ସମସ୍ତ ସୈନ୍ୟଙ୍କ ସାକ୍ଷାତରେ ସୁଷେଣଙ୍କ ମସ୍ତକ ଛେଦନ କଲାରୁ ତାହା ଅତି ଆଶ୍ଚର୍ଯ୍ୟ ଜଣାଗଲା । ୫୦ । ନଦୀର ଜଳ ବେଗ ହେତୁରୁ ଭଗ୍ନ ତୀରସ୍ଥିତ ମହାବୃକ୍ଷ ପରି ସୁଷେଣ ମହାତ୍ମା ନକୁଳଙ୍କ ଦ୍ୱାରା ହତ ହୋଇ ଭୂମିରେ ପଡ଼ିଲେ । ହେ ଭରତଶ୍ରେଷ୍ଠ ! ତତ୍‌ସମୟରେ ଭବଦୀୟ ସୈନ୍ୟବୃନ୍ଦ କର୍ଣ୍ଣପୁତ୍ରଙ୍କ ବଧ ଓ ପାଣ୍ଡୁପୁତ୍ରଙ୍କ ବିକ୍ରମ ବିଲୋକନ କରି ଭୟରେ ପଳାଇଲେ । ୫୨ ।

ହେ ମହାରାଜ ! ଶୂରବର ଶତ୍ରୁହନ୍ତା ପ୍ରତାପଶାଳୀ ସେନାପତି ଶଲ୍ୟ ସମର ସ୍ଥଳରେ ସେହି ସୈନ୍ୟମାନଙ୍କୁ ଉତ୍ତମ ରୂପେ ରକ୍ଷା କଲେ । ୫୩ । ସୈନ୍ୟମାନଙ୍କୁ ବ୍ୟବସ୍ଥାପିତ କରି ଘୋରତର ସିଂହନାଦ ଓ ଅତି ଦାରୁଣ କୋଦଣ୍ଡ ଶବ୍ଦ କରି ସେ ନିର୍ଭୟରେ ଅବସ୍ଥିତ ହେଲେ । ୫୪ । ସେତେବେଳେ ଭବଦୀୟ ସୈନ୍ୟକୁଳ ଦୃଢ଼ ଧନୁର୍ଦ୍ଧର ସେନାପତିଙ୍କ ଦ୍ୱାରା ରକ୍ଷିତ ଓ ବ୍ୟଥାଶୂନ୍ୟ ହୋଇ ଶତ୍ରୁକୁଳର ଚତୁର୍ଦ୍ଦିଗକୁ ଅଗ୍ରସର ହେଲେ ଏବଂ ମହାବଳ ଯୋଦ୍ଧାମାନେ ମହା ଧନୁର୍ଦ୍ଧର ଶଲ୍ୟଙ୍କ ଚତୁର୍ଦ୍ଦିଗରେ ବେଢ଼ି ଯୁଦ୍ଧ ଇଚ୍ଛାରେ ଅବସ୍ଥିତ ହେଲେ । ୫୬ । ଭୀମ, ସାତ୍ୟକି, ନକୁଳ ଓ ସହଦେବ ପ୍ରଭୃତି ବୀରଗଣ ରଣଭୂମି ମଧ୍ୟରେ ଶତ୍ରୁଦମନ ଲଜ୍ଜାଶୀଳ ଯୁଧିଷ୍ଠିରଙ୍କୁ ପୁରସ୍କୃତ ଓ ପରିବେଷ୍ଟନ କରି ବାରମ୍ବାର ସିଂହନାଦ, ଅତି ଉଗ୍ର ବାଣ ଶଙ୍ଖ ଶବ୍ଦ ଓ ବିବିଧ ବାହୁସ୍ଫୋଟ ଧ୍ୱନି କଲେ । ୫୮ । ସେହିପରି ମଧ୍ୟ ଆପଣଙ୍କ ସମରପ୍ରିୟ ସୈନ୍ୟସମୂହ ତତ୍‌କ୍ଷଣାତ୍ ଶଲ୍ୟଙ୍କୁ ବେଷ୍ଟନପୂର୍ବକ ପୁନଶ୍ଚ ଯୁଦ୍ଧ ନିମିତ୍ତ ଇଚ୍ଛୁକ ହେଲେ । ୫୯ । ତତ୍ପରେ ଭବଦୀୟ ଓ ଶତ୍ରୁ ପକ୍ଷୀୟ ସୈନ୍ୟମାନେ ପ୍ରାଣପଣରେ ଭୀରୁମାନଙ୍କ ଭୟବର୍ଦ୍ଧନ ତୁମୁଳ ଯୁଦ୍ଧ କଲେ । ୬୦ ।

ହେ ମହାରାଜ ! ପୂର୍ବକାଳରେ ଦେବାସୁର ଯୁଦ୍ଧରେ ଯେଉଁପରି ହୋଇଥିଲା, ସେତେବେଳେ ସାହସିକ ସୈନ୍ୟମାନଙ୍କ ଯୁଦ୍ଧରେ ସେହିପରି ଯମଦେବଙ୍କ ରାଜ୍ୟ ପରିବର୍ଦ୍ଧିତ ହେଲା । ୬୧ । ପାଣ୍ଡବ କପିଧ୍ୱଜ ସଂଶପ୍ତକମାନଙ୍କୁ ସଂହାର କରି କୌରବସେନାର ସମ୍ମୁଖକୁ ଧାବିତ ହେଲେ ଓ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ପାଣ୍ଡବପକ୍ଷର ସୈନ୍ୟବୃନ୍ଦ ମଧ୍ୟ ବାରମ୍ବାର ଶାଣିତ ଶର ବର୍ଷଣ କରି ସେହି କୌରବସେନାର ନିକଟକୁ ଆଗମନ କଲେ । ୬୩ । ଯେତେବେଳେ ପାଣ୍ଡବମାନଙ୍କ ଦ୍ୱାରା ସୈନ୍ୟବୃନ୍ଦ ବେଷ୍ଟିତ ହେଲେ, ତତ୍କାଳରେ ସେମାନଙ୍କର ଏତାଦୃଶ ମୋହ ଜନ୍ମିଲା ଯେ କେହି ସୁଦ୍ଧା ଦିଗବିଦିଗ ନିରୂପଣ କରି ପାରିଲେ ନାହିଁ । ୬୪ । ପାଣ୍ଡବମାନଙ୍କର ଶାଣିତ ଶରାଘାତରେ ଅସଂଖ୍ୟ ବୀର ହତ ଓ ବିଧ୍ୱସ୍ତ ହେଲେ । ମହାରଥ ପାଣ୍ଡବମାନେ କୌରବ ସୈନ୍ୟମାନଙ୍କୁ ଯେଉଁପରି ସଂହାର କରୁଥିଲେ, ଭବଦୀୟ ପୁତ୍ରମାନେ ମଧ୍ୟ ସେହିପରି ଶରବୃଷ୍ଟି ଦ୍ୱାରା ପାଣ୍ଡବୀ ସେନାର ଶତସହସ୍ର ବ୍ୟକ୍ତିଙ୍କୁ ସଂହାର କଲେ । ତତ୍ପରେ ସେହି ଉଭୟ ସୈନ୍ୟ ଅତ୍ୟନ୍ତ ସନ୍ତପ୍ତ

ଓ ପରସ୍ପର ବଧମାନ ହୋଇ ବର୍ଷାକାଳୀନ ଦୁଇଗୋଟି ନଦୀ ସଦୃଶ ବ୍ୟାକୁଳ ହେଲେ । ହେ ରାଜେନ୍ଦ୍ର ! ତେତେବେଳେ ଏହିପରି ମହାଯୁଦ୍ଧ ହେବାରୁ ଭବଦୀୟ ଓ ପାଣ୍ଡବମାନଙ୍କ ମଧ୍ୟରେ ମହାଭୟର ସଞ୍ଚାର ହେଲା ।

---

## ଏକାଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ, ସୈନ୍ୟବୃନ୍ଦ ପରସ୍ପର ବଧମାନ ହୋଇ ମ୍ଳାନବର୍ଣ୍ଣ ଧାରଣ କଲେ । ଗଜଯୂଥ ନିନାଦ କରୁଥିଲେ, ପଦାତିବୃନ୍ଦ ଉଚ୍ଚ ସ୍ୱରରେ ଗର୍ଜନ କଲେ । ଅଶ୍ୱାନିକର ପଳାୟମାନ ହେଲେ, ଦାରୁଣ ଜନକ୍ଷୟ ଉପସ୍ଥିତ ହେଲା । ପ୍ରାଣୀକୁଳ ସଂହାର ଦଶାରେ ପତିତ ହେଉଥିଲେ । ନାନାବିଧ ଅସ୍ତ୍ରଶସ୍ତ୍ରସମୂହର ସମବାୟ ଜନ୍ମିଲା, ରଥାରୋହୀ ଓ ଗଜାରୋହୀକୁଳ ପରସ୍ପର ସଂସକ୍ତ ହେଲେ । ଯୁଦ୍ଧବୀରମାନଙ୍କର ହର୍ଷ ଓ ଭୀରୁମାନଙ୍କର ଭୟ ବୃଦ୍ଧି ହେଲା, ସୈନ୍ୟସମୂହ ବଧ ଇଚ୍ଛାରେ ସମର-ସିନ୍ଧୁରେ ସ୍ନାନ କଲେ ଏବଂ ଯମରାଜଙ୍କ ରାଜ୍ୟବର୍ଦ୍ଧନ ନିମିତ୍ତ ପ୍ରାଣ ବିଯୋଗ କରି, ଅକ୍ଷକ୍ରୀଡ଼ା ସଦୃଶ ଘୋରତର ସମରରେ ପ୍ରବୃତ୍ତ ହୋଇ ପାଣ୍ଡବ-ମାନେ ଆପଣଙ୍କ ସୈନ୍ୟସମୂହକୁ, ଯେଉଁପରି ଶାଣିତ ଶରବୃନ୍ଦରେ ଧ୍ୱଂସ କରୁଥିଲେ, ସେହିପରି ଭବଦୀୟ ଯୋଦ୍ଧାମାନେ ମଧ୍ୟ ପାଣ୍ଡବପକ୍ଷୀୟ ସୈନ୍ୟକୁଳକୁ ସଂହାର କରିବା ନିମିତ୍ତ ପ୍ରବୃତ୍ତ ହେଉଥିଲେ । ୭ ।

ସୂର୍ଯ୍ୟଦେବଙ୍କ ଉଦୟସମନ୍ୱିତ ପୂର୍ବାହ୍ନ ସମୟରେ, ଭୂରୁମାନଙ୍କ ଲୟାବହ ଯୁଦ୍ଧ ବର୍ଦ୍ଧମାନ ହୁଅନ୍ତେ ବିପକ୍ଷମାନେ ଉତ୍ତମରୂପେ ଲକ୍ଷ୍ୟ ସ୍ଥିର କରି, ମହାତ୍ମା ଅର୍ଜ୍ଜୁନଙ୍କଦ୍ୱାରା ରକ୍ଷିତ ହୋଇ ଓ ପ୍ରାଣ ଆଶା ପରିତ୍ୟାଗ-ପୂର୍ବକ, ଭବଦୀୟ ସୈନ୍ୟମାନଙ୍କ ସହିତ ସମର କଲେ । ୮ । ବଳବନ୍ତ ଓ ଗର୍ବିତ ପାଣ୍ଡବମାନେ ଲକ୍ଷ୍ୟ ସ୍ଥିର କରି ପ୍ରହାର କରିବାକୁ ପ୍ରବୃତ୍ତ ହେଲାରୁ, କୌରବୀ ସେନା ଅଗ୍ନିଭୟରେ ଆକୁଳା କୂଳଢୀ ପରି ଅବସନ୍ନ ହେଲା । ୯ । ଭୀଷ୍ମ ତାଙ୍କର ନିମଗ୍ନ ଦୁର୍ବଳ ଗୋସଦୃଶ ଅବସନ୍ନ, ସେହି ସୈନ୍ୟ ସମସ୍ତଙ୍କୁ ଅବଲୋକନ କରି ସେମାନଙ୍କୁ ଉଦ୍ଧାର କରିବା ଇଚ୍ଛାରେ ପାଣ୍ଡବ ସୈନ୍ୟମାନଙ୍କ ନିକଟକୁ ଗଲେ ଏବଂ ମନୋହର ଶରାସନ ଗ୍ରହଣପୂର୍ବକ

କ୍ରୋଧଯୁକ୍ତ ହୋଇ ଆତତାୟୀ ପାଣ୍ଡବମାନଙ୍କ ପ୍ରତି ଧାବିତ ହେଲେ । ୧୧ । ହେ ମହାରାଜ ! ଜିତକାଶୀ ପାଣ୍ଡବମାନେ ମଧ୍ୟ ରଣସ୍ଥଳରେ ମଦ୍ରରାଜଙ୍କ ସନ୍ନିଧିକୁ ପ୍ରାପ୍ତ ହୋଇ ନିମିତ୍ତ ଶରବୃନ୍ଦଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ୧୨ । ତତ୍ପରେ ମହାରଥ ଶଲ୍ୟ ଯୁଧିଷ୍ଠିରଙ୍କ ସାକ୍ଷାତରେ ସୁତୀକ୍ଷ୍ଣ ଶତସଂଖ୍ୟକ ଶରଦ୍ୱାରା ପାଣ୍ଡବୀ ସେନାକୁ ପୀଡ଼ା ପ୍ରଦାନ କଲେ । ୧୩ ।

ହେ ମହାରାଜ ! ତତ୍‌କାଳରେ ଅନେକ ଦୁର୍ନିମିତ୍ତମାନ ପ୍ରାଦୁର୍ଭୂତ ହେଲା । ଗିରିଯୁକ୍ତା ପୃଥିବୀ ଶବ୍ଦ କରି ବିଶେଷ କମ୍ପମାନ ହେଲା । ୧୪ । ଦଣ୍ଡ ଓ ଶୂଳ ସଂଯୁକ୍ତ ପ୍ରଦୀପ୍ତ ଉଲ୍‌କାସମୂହ ଚତୁର୍ଦ୍ଦିଗକୁ ବିଦାରଣ କରି ସୂର୍ଯ୍ୟମଣ୍ଡଳରେ ଆଘାତ ପ୍ରଦାନପୂର୍ବକ ଆକାଶରୁ ଭୂମିରେ ପଡ଼ିଲେ । ୧୫ । ହେ ମହାରାଜ ! ମୃଗ, ମହିଷ ଓ ପକ୍ଷିସମୂହ, ଆପଣଙ୍କ ସୈନ୍ୟମାନଙ୍କୁ ଦକ୍ଷିଣ ଭାଗରେ ବହୁବାର ଗମନାଗମନ କଲେ । ୧୬ । ଶୁକ୍ର, ମଙ୍ଗଳ ଓ ବୁଧ ଗ୍ରହ ସମସ୍ତ ରାଜାମାନଙ୍କ ଅଗ୍ରଭାଗରେ ଓ ପାଣ୍ଡୁପୁତ୍ରମାନଙ୍କ ପଶ୍ଚାତ୍‌ଭାଗରେ ଉଦିତ ହେଲେ । ୧୭ । ଶସ୍ତ୍ରବୃନ୍ଦର ଅଗ୍ରଭାଗରେ କିରଣ ଏପରି ପ୍ରଖର ହେଲା ଯେ, ତାହାକୁ ଚାହିଁ ହେଲା ନାହିଁ । ରଥ କେତୁର ଉପରଭାଗରେ କାକ ଓ ପେଚକ ପ୍ରଭୃତି ପକ୍ଷିସମୂହ ଆସି ବାରମ୍ବାର ବସିଲେ । ପରିଶେଷରେ ଏକତ୍ର ମିଳିତ ସୈନ୍ୟଗଣର ସେହି ଯୁଦ୍ଧ ଅତି ଭୟଙ୍କର ହେଲା ।

ହେ ମହାରାଜ ! ତତ୍ପରେ ସମସ୍ତ କୌରବ ସୈନ୍ୟମାନେ ଏକତ୍ର ମିଳିତ ହୋଇ ପାଣ୍ଡବୀସେନାର ସମ୍ମୁଖକୁ ଧାବିତ ହେଲେ । ବର୍ଷଣଶୀଳ ଇନ୍ଦ୍ରଦେବସଦୃଶ ଅଦୀନାତ୍ମା ଶଲ୍ୟ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କ ଉପରେ ଶରଧାରା ବର୍ଷଣ କଲେ । ମହାବଳ ଶଲ୍ୟ ଭୀମଙ୍କୁ ଶାଣିତ ଶର ନିକ୍ଷେପ କଲେ ଓ ନକୁଳ ସହଦେବ ଦ୍ରୌପଦୀଙ୍କ ପଞ୍ଚପୁତ୍ର, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ସାତ୍ୟକି ଏହି ସମସ୍ତଙ୍କୁ ପ୍ରତ୍ୟେକ ଦଶ ଦଶ ବାଣରେ ପ୍ରହାର କଲେ । ବର୍ଷାକାଳରେ ଇନ୍ଦ୍ର ଯେଉଁପରି ବୃଷ୍ଟିଧାରା ବର୍ଷଣ କରନ୍ତି, ସେତେବେଳେ ଶଲ୍ୟ ସେହିପରି ଶରଧାରା ବର୍ଷଣ କଲେ । ୨୩ ।

ହେ ମହାରାଜ ! ତତ୍ପରେ ଶଲ୍ୟଙ୍କ ଦ୍ୱାରା ସହସ୍ର ସହସ୍ର ପ୍ରଭଦ୍ରକ ଓ ସୋମକ ସୈନ୍ୟସମୂହ ସମରାଙ୍ଗଣରେ ପତିତ ଓ ପୀଡ଼ିତ୍ୟମାନ ହେଲେ । ୨୪ । ଭ୍ରମର ନିକର, ଶଲଭବୃନ୍ଦ ଓ ମେଘନିଃସୃତ ବଜ୍ରସମୂହ ସଦୃଶ ଶଲ୍ୟଙ୍କ ଶରସମୂହ ପତିତ ହେଲା । ୨୫ । ଅଶ୍ୱାରୋହୀ, ଗଜାରୋହୀ, ରଥା-

ସୈନ୍ୟ ଓ ପଦାତିକ ଏହିପରି ଚତୁରଙ୍ଗ ସୈନ୍ୟ ଶଲ୍ୟଙ୍କ ଶରରେ ଆର୍ତ୍ତନାଦ କରି ବିଭ୍ରାନ୍ତ ଓ ନିପତିତ ହେଲେ । ୨୬ । ମେଘ ସଦୃଶ ନିନାଦକାରୀ ମହାବଳ ଶଲ୍ୟ ଗର୍ଜନ କରି କ୍ରୋଧ ଓ ପୌରୁଷରେ ଆବିଷ୍ଟ ହୋଇ କାଳ-ପ୍ରେରିତ ଯମଦେବ ସଦୃଶ ସମର ମଧ୍ୟରେ ଶତ୍ରୁମାନଙ୍କୁ ପ୍ରତିଶରରେ ଆଚ୍ଛନ୍ନ କଲେ । ପାଣ୍ଡବମାନଙ୍କ ସୈନ୍ୟବୃନ୍ଦ ଶଲ୍ୟଙ୍କ ଦ୍ୱାରା ବଧ୍ୟମାନ ହୋଇ ଅଜାତଶତ୍ରୁ ଯୁଧିଷ୍ଠିରଙ୍କ ଅଭିମୁଖକୁ ଧାବିତ ହେଲେ । ସେତେବେଳେ ଲଘୁହସ୍ତ ଶଲ୍ୟ ସେମାନଙ୍କୁ ଶାଣିତ ଶରସମୂହରେ ମର୍ଦ୍ଦନ କରି ଘୋରତର ଶରବୃଷ୍ଟି ଦ୍ୱାରା ଯୁଧିଷ୍ଠିରଙ୍କୁ ପୀଡ଼ା ଦେଲେ । ମହାରାଜ ! ଯୁଧିଷ୍ଠିର ଶଲ୍ୟଙ୍କୁ ପଦାତିକ ଓ ଅଶ୍ୱ ସୈନ୍ୟମାନଙ୍କ ସହିତ ସ୍ୱକୀୟ ସମୀପକୁ ଆସୁଥିବାର ଦେଖି ଅତ୍ୟନ୍ତ କ୍ରୋଧଯୁକ୍ତ ଚିତ୍ତରେ ମତ୍ତଗଜଙ୍କୁ ଯେଉଁପରି ଅଙ୍କୁଶଦ୍ୱାରା ନିବାରଣ କରାଯାଏ, ତଦ୍‌ବତ୍ ସୁତୀକ୍ଷ୍ଣ ବିଶିଖସମୂହ ଦ୍ୱାରା ତାହାଙ୍କୁ ନିବାରଣ କଲେ । ଶଲ୍ୟ ସେହି ମହାନୁଭବଙ୍କ ଉପରକୁ ସର୍ପ ସଦୃଶ ଏକଗୋଟି ସୁଦୃଢ଼ ଶର ସନ୍ଧାନ କଲେ । ବାଣ ଅତି ବେଗରେ ତାହାଙ୍କ ତନୁଭେଦପୂର୍ବକ ମହୀରେ ପଡ଼ିଲା ।

ତତ୍ପରେ ମହାବୀର ଭୀମ କ୍ରୋଧାକ୍ରାନ୍ତ ହୋଇ ଶଲ୍ୟଙ୍କୁ ସାତଗୋଟି ଶର ବିନ୍ଧିଲେ ଓ ନକୁଳ ଦଶ ବାଣ ଓ ସହଦେବ ପାଞ୍ଚ ଶିଳୀମୁଖଦ୍ୱାରା ତାହାଙ୍କୁ ପ୍ରହାର କଲେ । ଶତ୍ରୁହନ୍ତା ବୀରବର ଦ୍ରୌପଦୀଙ୍କ ପୁତ୍ରସମୂହ ଯେତେବେଳେ ମହାବେଗରେ ଶଲ୍ୟଙ୍କ ଉପରେ ବାଣବୃଷ୍ଟି କରୁଥିଲେ, ସେତେବେଳେ ଜଳଧରସମୂହ ମହାବେଗରେ ପର୍ବତ ଉପରେ ବୃଷ୍ଟିଧାରା ବର୍ଷଣ କରୁଥିଲା ପରି ଜଣାଗଲା । ମହାରାଜ ! ପାଣ୍ଡବମାନେ ଏହିପରି ଚତୁର୍ଦ୍ଦିଗରୁ ଶଲ୍ୟଙ୍କୁ ପ୍ରତିବାଣରେ ବ୍ୟଥା ଦେବାର ଦେଖି କୃତବର୍ମା ଓ କୃପାଚାର୍ଯ୍ୟ ଅତି କ୍ରୁଦ୍ଧ ହୋଇ ସେହି ଦିଗକୁ ଧାବମାନ ହେଲେ ଓ ମହା-ବୀର୍ଯ୍ୟ ଉଲୁକ, ଶକୁନି, ବିସ୍ମୟଯୁକ୍ତ ଓ ମହାବଳ ଅଶ୍ୱତ୍ଥାମା ଓ ଭବଦୀୟ ପୁତ୍ର ସମସ୍ତେ କ୍ରମେ କ୍ରମେ ଆସି ଯୁଦ୍ଧରେ ଶଲ୍ୟଙ୍କୁ ରକ୍ଷା କଲେ । ୩୬ । କୃତବର୍ମା ଭୀମଙ୍କୁ ତିନିଗୋଟି ଶରରେ ବିଦ୍ଧ କରି ଘୋରତର ଶର ବୃଷ୍ଟି ଦ୍ୱାରା ସେହି କ୍ରୋଧାକ୍ରାନ୍ତ ବୀରଙ୍କୁ ନିବାରଣ କଲେ । ୩୭ । କୃପାଚାର୍ଯ୍ୟ କ୍ରୁଦ୍ଧ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ବାଣବୃଷ୍ଟି ଦ୍ୱାରା ପ୍ରହାର କଲେ । ଶକୁନି ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ନିକଟକୁ ଓ ଅଶ୍ୱତ୍ଥାମା ନକୁଳ ସହଦେବଙ୍କ ନିକଟକୁ ଧାବିତ ହେଲେ ଏବଂ ଯୋଧବୀର ଉଗ୍ରତେଜା ବଳବାନ ରାଜା ଦୁର୍ଯ୍ୟୋଧନ

କେଶବ ଓ ଅର୍ଜୁନଙ୍କ ଅଭିମୁଖକୁ ଧାବିତ ହୋଇ ଶରାଘାତ କଲେ । ୩୯ । ହେ ମହାରାଜ ! ଏହିପରି ଭବଦୀୟ ପୁତ୍ରମାନଙ୍କର ଶତ୍ରୁସମୂହ ସହିତ ଘୋରତର ବିଚିତ୍ର ଦ୍ୱନ୍ଦ୍ୱ ଯୁଦ୍ଧ ହେଲା । ୪୦ ।

ତଦନନ୍ତର ମଦ୍ରରାଜ ଭୀମଙ୍କ ଶରତ୍ମୃଗବର୍ଣ୍ଣ ଅଶ୍ୱମାନଙ୍କୁ ବିନାଶ କଲେ; ସୁତରାଂ ପାଣ୍ଡୁପୁତ୍ର ହତାଶ୍ୱ ହୋଇ ରଥରୁ ଓହ୍ଲାଇ ଗଦା ଧାରଣ କଲେ ଓ ଦଣ୍ଡଧର ଯମଦେବ ସଦୃଶ ଯୁଦ୍ଧ କଲେ । ଶଲ୍ୟ ସହଦେବଙ୍କ ସାକ୍ଷାତରେ ତାହାଙ୍କ ଅଶ୍ୱମାନଙ୍କୁ ନିଧନ କଲେ । ୪୨ । ସହଦେବ ଅସି ଦ୍ୱାରା ଶଲ୍ୟପୁତ୍ରଙ୍କ ପ୍ରାଣ ବିନାଶ କଲେ । କୃପାଚାର୍ଯ୍ୟ ଯତ୍ନଶୀଳ ହୋଇ ଅତିଶୟ ଯତ୍ନପରାୟଣ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ଅସମ୍ଭ୍ରାନ୍ତ ଭାବରେ ଯୁଦ୍ଧରେ ପ୍ରବୃତ୍ତ ହେଲେ ଏବଂ ଅଶ୍ୱତ୍ଥାମା ଅମିତକ୍ରୋଧ ହୋଇ ଅନାୟାସରେ ଦ୍ରୌପଦୀଙ୍କ ପ୍ରତ୍ୟେକ ପୁତ୍ରକୁ ଦଶ ଦଶ ବାଣ ପ୍ରହାର କଲେ । ସେ ପୁନଶ୍ଚ ଭୀମଙ୍କ ଅଶ୍ୱମାନଙ୍କୁ ହତ କଲାରୁ ମହାବଳ ପାଣ୍ଡବ ହତାଶ ହୋଇ ତତ୍କ୍ଷଣାତ୍ ରଥରୁ ଓହ୍ଲାଇ କ୍ରୋଧାକ୍ରାନ୍ତ ଭାବରେ କାଳଦଣ୍ଡ ସଦୃଶ ଗଦାକୁ ପ୍ରହାରପୂର୍ବକ କୃତବର୍ମାଙ୍କ ରଥ ସହିତ ଅଶ୍ୱମାନଙ୍କୁ ବିନଷ୍ଟ କଲେ । ସୁତରାଂ କୃତବର୍ମା ଅବପ୍ଲୁତ ଗତିରେ ତତ୍କ୍ଷଣାତ୍ ସେହି ରଥରୁ ଅବତୀର୍ଣ୍ଣ ହେଲେ । ୪୭ ।

ହେ ମହାରାଜ ! ଶଲ୍ୟ ମଧ୍ୟ ସମ୍ୟକ୍ କ୍ରୁଦ୍ଧ ହୋଇ ସୋମକ ଓ ପାଣ୍ଡବ ସୈନ୍ୟ ସମୂହକୁ ସଂହାର କରି ଶାଣିତ ଶରବୃନ୍ଦ ଦ୍ୱାରା ପୁନଶ୍ଚ ଯୁଧିଷ୍ଠିରଙ୍କୁ ଜର୍ଜରିତ କଲେ । ୪୮ । ସେତେବେଳେ ବୀର୍ଯ୍ୟଶାଳୀ ଭୀମ କ୍ରୋଧଯୁକ୍ତ ହୋଇ ଦନ୍ତରେ ଓଷ୍ଠ ଓ ଅଧର ଦଂଶନ କରି ଶଲ୍ୟଙ୍କୁ ବିନାଶ କରିବା ଇଚ୍ଛାରେ ଗଦା ଧାରଣ କଲେ । ୪୯ । ଯମଦଣ୍ଡ ଓ କାଳରାତ୍ରି ସଦୃଶ ଯେଉଁ ଗଦା ଧୃତ ହୋଇ ଅଶ୍ୱଗଜନରମାନଙ୍କ ପ୍ରାଣ ବିନାଶ କରେ ( ୫୦ ) ଏବଂ ଯାହା ସୁବର୍ଣ୍ଣ ପଟ୍ଟରେ ପରିବୃତ ଥାଇ ପ୍ରଜ୍ୱଳିତ ଉଲ୍କା ସଦୃଶ ଛବି ପ୍ରକାଶ କରେ, ଯେଉଁ ଗଦା ଉତ୍କୃଷ୍ଟ ଲୌହରେ ନିର୍ମିତ ହୋଇ ବଜ୍ର ସଦୃଶ ଦୃଢ଼ତା ଧାରଣ କରିଅଛି, ଯାହା ସର୍ପ-ଅବଳା ସମାନ ପ୍ରାଣଘାତିନୀ, କମନୀୟ କାମିନୀପରି ଯାହା ଅଗୁରୁ ଚନ୍ଦନ-ଚର୍ଚ୍ଚିତା, ସେହିପରି ଯେଉଁ ଗଦା ବସା, ମେଦ ଓ ରୁଧିର ଦ୍ୱାରା ଚର୍ଚ୍ଚିତାଙ୍ଗ, ଯାହା ଯମଙ୍କ ଜିହ୍ୱା ବାସବଙ୍କ ବଜ୍ର ଓ ମୁକ୍ତକଞ୍ଚୁକ ସର୍ପସଦୃଶୀ, ଯାହା ଅତି ପଟୁ ଘଣ୍ଟାରବ ଦ୍ୱାରା ବିରାଜିତା ଓ ହସ୍ତୀମେଦର ବିଳିପ୍ତା ଥିଲା,

ଯେଉଁ ଗଦା ଶତ୍ରୁ ସୈନ୍ୟର ତ୍ରାସଦାୟିନୀ, ନିଜ ସୈନ୍ୟର ହର୍ଷଜନନୀ ଏବଂ ବିଶିଷ୍ଟ ଚକ୍ରାକାରୀ ବୋଲି ମନୁଷ୍ୟଲୋକ ମଧ୍ୟରେ ବିଖ୍ୟାତ ହୋଇଅଛି; ବୀର ଭୀମ ଯେଉଁ ବୃହତ୍ ଗଦା ଧାରଣ ପୂର୍ବକ କୈଳାସ ଭବନରେ ଅତିଶୟ କ୍ରୋଧାନ୍ୱିତ ଶିବଙ୍କ ସଖା ଅଳକାଧିପତି କୁବେରଙ୍କୁ ଆହ୍ୱାନ କରୁଥିଲେ ( ୫୫ ) ମହାବଳ ଭୀମ ପୂର୍ବେ ଦ୍ରୌପଦୀଙ୍କ କାର୍ଯ୍ୟ ପ୍ରିୟାଭିଳାଷରେ ପାରିଜାତକ ପୁଷ୍ପ ନିମିତ୍ତ ଅଳକାପୁରୀରେ ପ୍ରବେଶ କରି ଯେଉଁପରି ଅନେକ ବ୍ୟକ୍ତିଙ୍କ ନିଷେଧ ବାକ୍ୟ ନ ଶୁଣି ଅସଂଖ୍ୟ ଅସଂଖ୍ୟ ଗର୍ବିତ ମାୟାବୀ ଗୁହ୍ୟକମାନଙ୍କୁ ସଂହାର କରିଥିଲେ, ସେହିପରି ସେହି ମହାବାହୁ ମଣିରତ୍ନ ହୀରକ ପ୍ରଭୃତିରେ ବିଭୂଷିତ ଅଷ୍ଟକୋଣବିଶିଷ୍ଟ ବଜ୍ର ସଦୃଶ ଗୁରୁ ଗଦା ଉତ୍ତୋଳନ କରି ରଣାଙ୍ଗନରେ ଶଲ୍ୟଙ୍କ ଅଭିମୁଖକୁ ଧାବମାନ ହେଲେ ।

ଗଦାଯୁଦ୍ଧପଣ୍ଡିତ ଭୀମ ଅନତିବିଳମ୍ବରେ ସେହି ଦାରୁଣ ନାଦଯୁକ୍ତା ଗଦାର ଆଘାତରେ ଶଲ୍ୟଙ୍କ ଅତିଶୀଘ୍ରଗାମୀ ଅଶ୍ୱଚତୁଷ୍ଟୟକୁ ସଂହାର କଲେ । ତତ୍ପରେ ମଦ୍ରେଶ୍ୱର ଏକାନ୍ତ କ୍ରୋଧାନ୍ୱିତ ହୋଇ ଭୀମଙ୍କ ପୀନ ବକ୍ଷସ୍ଥଳକୁ ଗୋଟିଏ ତୋମରାସ୍ତ୍ର ନିକ୍ଷେପ କଲେ । ସେହି ତୋମର ତାହାଙ୍କ ମର୍ମଭେଦ ପୂର୍ବକ ହୃଦୟରେ ପ୍ରବିଷ୍ଟ ହେଲା । ଭୀମ ତତ୍କ୍ଷଣାତ୍ ଅନାୟାସରେ ତାହା ଉଦ୍ଧୃତ କରି ତାହାଦ୍ୱାରା ଶଲ୍ୟଙ୍କ ସାରଥି ହୃଦୟକୁ ବେଧ କଲେ । ସାରଥି ତେତେବେଳେ ରୁଧିର ବମନ କରି ଅତିଶୟ ତ୍ରସ୍ତଚିତ୍ତରେ ରଥରୁ ପଡ଼ିଲେ । ମଦ୍ରରାଜ ତେତେବେଳେ ଦୁଃଖିତ ଭାବରେ ସାରଥିହୀନ ରଥରୁ ଓହ୍ଲାଇଲେ ଓ ଭୀମଙ୍କ କୃତ ପ୍ରତିକାରକୁ ଦେଖି ବିସ୍ମିତ ହେଲେ । ତତ୍ପରେ ସେହି ଧୀରସ୍ୱଭାବ ଶଲ୍ୟ ଗଦାଧାରଣ ପୂର୍ବକ ଶତ୍ରୁପ୍ରତି ଦୃଷ୍ଟିପାତ କଲେ । ପାଣ୍ଡବମାନେ ଯୁଦ୍ଧରେ ଅକ୍ଳିଷ୍ଟ କର୍ମା ଭୀମଙ୍କର ସେହି ଭୟଙ୍କର କର୍ମ ଦେଖି ପ୍ରସନ୍ନ ମନରେ ତାହାଙ୍କୁ ପ୍ରଶଂସା କଲେ ।

---

# ଦ୍ୱାଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ମଦ୍ରାଧିପତି ଶଲ୍ୟ ରଥରୁ ନିପତିତ ସାରଥିଙ୍କୁ ଦେଖି ତତ୍କ୍ଷଣାତ୍ ଗୋଟିଏ ଲୌହମୟୀ ଗଦା ଗ୍ରହଣପୂର୍ବକ ଗିରି ସଦୃଶ ଅଚଳ ଭାବରେ ଅବସ୍ଥିତ ହେଲେ । ୧ । ମହାବୀର ବୃକୋଦର ଶଲ୍ୟଙ୍କୁ ପ୍ରଦୀପ୍ତ କାଳାଗ୍ନି ସଦୃଶ, ପାଶପାଣି କୃତାନ୍ତ ସଦୃଶ, ଶୃଙ୍ଗଯୁକ୍ତ କୈଳାସଗିରି ସମାନ, ବଜ୍ରଧର ବାସବ ସଦୃଶ, ଶୂଳଧାରୀ ରୁଦ୍ରଙ୍କ ସଦୃଶ ଓ ବନମଧ୍ୟସ୍ଥିତ ମତ୍ତଗଜ ସଦୃଶ ଅବସ୍ଥାନ କରିଥିବାର ଦେଖି ସ୍ୱକୀୟ ଭୀଷଣ ଗଦା ଧାରଣପୂର୍ବକ ଅତିବେଗରେ ତାହାଙ୍କ ନିକଟକୁ ଧାବମାନ ହେଲେ । ୩ ।

ତତ୍ପରେ ସହସ୍ର ସହସ୍ର ଶଙ୍ଖଧ୍ୱନି, ତୂର୍ଯ୍ୟନିନାଦ ଓ ଶୂରକୁଳର ହର୍ଷବର୍ଦ୍ଧନ ସିଂହନାଦ ହେଲା । ୪ । ଆପଣଙ୍କର ଓ ଶତ୍ରୁପକ୍ଷୀୟ ସୈନ୍ୟ-ସମୂହ ସେହି ମହାଗଜ ସଦୃଶ ବୀରଦ୍ୱୟଙ୍କୁ ନିରୀକ୍ଷଣ କରି ଧନ୍ୟ ଧନ୍ୟ ବୋଲି ପ୍ରଶଂସା କଲେ । ଯେଉଁପରି କୃଷ୍ଣ, ରାମ ଓ ମଦ୍ରାଧିପତି ଶଲ୍ୟଙ୍କ ବ୍ୟତିରେକେ ଯୁଦ୍ଧରେ ଅନ୍ୟ କୌଣସି ବ୍ୟକ୍ତି ଭୀମଙ୍କ ବେଗ ସହ୍ୟ କରିବାକୁ ଉତ୍ସାହିତ ନୁହନ୍ତି, ତଦ୍ୱତ୍ ଭୀମଙ୍କ ବିନା ଅନ୍ୟ କୌଣସି ଯୋଦ୍ଧା ମହାନୁଭବ ଶଲ୍ୟଙ୍କ ଗଦାର ବେଗ ସହ୍ୟ କରିବାକୁ ସମର୍ଥ ନୁହନ୍ତି । ୭ । ମଦ୍ରରାଜ ଓ ବୃକୋଦର ବୃଷଭ ସମାନ ନାଦ କରି ଗଦାଦ୍ୱୟକୁ ବାରମ୍ବାର କମ୍ପାଇ ରଣସ୍ଥଳରେ ବିଚରଣ କଲେ । ସେହି ପୁରୁଷସିଂହ ଉଭୟ ବୀରଙ୍କ ମଣ୍ଡଳାବର୍ତ୍ତନ ଓ ଗଦାବିହରଣ ବିଷୟରେ ନିର୍ବିଶେଷ ଯୁଦ୍ଧ ହେଲା । ୯ ।

ଶଲ୍ୟଙ୍କ ଗଦା ଅଗ୍ନିଜ୍ୱାଳାସଦୃଶ ଅତି ଉଜ୍ଜ୍ୱଳ ସୁବର୍ଣ୍ଣମୟ ଶୁଭ୍ର ପଟରେ ଆବଦ୍ଧ ଥିବାରୁ ଭୟବର୍ଦ୍ଧନ କରୁଥିଲା ଓ ମଣ୍ଡଳାକାର ମାର୍ଗରେ ବିଚରଣକାରୀ ମହାତ୍ମା ଭୀମଙ୍କ ଗଦା ସୌଦାମିନୀଯୁକ୍ତ ମେଘ ସଦୃଶ ଶୋଭା ପାଇଲା । ୧୧ । ମଦ୍ରରାଜ ସ୍ୱୀୟ ଗଦାଦ୍ୱାରା ଭୀମସେନଙ୍କ ଗଦାକୁ ତାଡ଼ନ କଲାରୁ ଦହ୍ୟମାନ ହେଲା ପରି ହୋଇ ସେହି ଗଦା ରାଶି ରାଶି ସ୍ଫୁଲିଙ୍ଗ ଆକାଶରେ ବିସ୍ତାର କଲା; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଭୀମ ସ୍ୱକୀୟ ଗଦାଦ୍ୱାରା ଶଲ୍ୟଙ୍କ ଗଦାକୁ ଆଘାତ କରନ୍ତେ ତହିଁରୁ ଅଙ୍ଗାର ବୃଷ୍ଟି ହେଲା । ୧୩ । ଦୁଇଗୋଟି ମତ୍ତ ଗଜ ଯେଉଁପରି ଦନ୍ତଦ୍ୱାରା ଓ ମହା-

ବୃଷଭଯୁଗଳ ଯେଉଁପରି ଶୃଙ୍ଗଦ୍ୱାରା ପରସ୍ପର ଆଘାତ କରନ୍ତି, ସେହିପରି ସେହି ଉଭୟ ବୀର ଅଙ୍କୁଶ ସଦୃଶ ଗଦାର ଅଗ୍ରଭାଗ ଦ୍ୱାରା ପରସ୍ପରକୁ ପ୍ରହାର କଲେ । ୧୪ । କ୍ଷଣକ ମଧ୍ୟରେ ଗଦାଘାତରେ ବୀରଦ୍ୱୟଙ୍କର ସର୍ବାଙ୍ଗ ରକ୍ତାକ୍ତ ହେବାରୁ ସେହି ଦୁହେଁ ପୁଷ୍ପିତ କିଂଶୁକ ବୃକ୍ଷସଦୃଶ ଦର୍ଶନୀୟ ହେଲେ । ୧୫ । ମଦ୍ରରାଜ ଗଦାଦ୍ୱାରା ଭୀମସେନଙ୍କ ଦକ୍ଷିଣ ଓ ବାମ ଭାଗରେ ଆଘାତ କଲେ ସୁଦ୍ଧା ସେହି ମହାବାହୁ ପର୍ବତ ପରି ବିଚଳିତ ହେଲେ ନାହିଁ । ୧୬ ।

ହେ ମହାରାଜ ! ଏହିପରି ଭୀମସେନ ମଧ୍ୟ ବାରମ୍ବାର ଶଲ୍ୟଙ୍କୁ ତାଡ଼ନା କଲେ ସୁଦ୍ଧା ସେ ଗଜଦ୍ୱାରା ଆହତ ଗିରିପରି କିଛିମାତ୍ର ବ୍ୟଥା ପାଇଲେ ନାହିଁ । ୧୭ । ସେହି ପୁରୁଷବ୍ୟାଘ୍ର ଦୁହିଁଙ୍କର ବଜ୍ରନିଃସ୍ୱନ ଗଦାର ଆଘାତ ଶବ୍ଦ ଦଶ ଦିଗରେ ଶୁଣାଯାଉଥିଲା । ୧୮ । ତତ୍ପରେ ସେହି ଉଭୟ ମହାବୀର କ୍ଷଣମାତ୍ର ସମୟ ନିବୃତ୍ତ ହୋଇ ଗଦା ଉତ୍ତୋଳନ ପୂର୍ବକ ପୁନଶ୍ଚ ଅନ୍ତରବର୍ତ୍ତୀ ମାର୍ଗରେ ରହି ରଣମଣ୍ଡଳରେ ବିଚରଣ କଲେ ଓ ଅମାନୁଷକର୍ମା ସେହି ବୀରଦ୍ୱୟ ଅଷ୍ଟପାଦ ବିଚରଣ କଲା ଉତ୍ତାରେ ଲୌହମୟ ଦଣ୍ଡ ଉତ୍ତୋଳନ ପୂର୍ବକ ଅତି ଭୟଙ୍କର ସଂଗ୍ରାମ କଲେ । ୨୦ । ପରସ୍ପର ଜୟାଭିଳାଷୀ ରଣପଣ୍ଡିତ ସେହି ବୀରଦ୍ୱୟ ସଂଗ୍ରାମମଣ୍ଡଳରେ ବିଚରଣ କରି ନାନାବିଧ ଯୁଦ୍ଧର କ୍ରିୟାମାନଙ୍କୁ ଦେଖାଉଥିଲେ । ୨୧ ।

ପରିଶେଷରେ ସେହି ଦୁହେଁ ଗଦା ଉତ୍ତୋଳନ କରି ଶୃଙ୍ଗଯୁକ୍ତ ପର୍ବତ ସଦୃଶ ପରସ୍ପରକୁ ଆଘାତ କଲେ; ଭୂମିକମ୍ପକାଳୀନ ଅଚଳ ଓ ଇନ୍ଦ୍ରଧ୍ୱଜ ସମାନ ବୀରଯୁଗଳ ପରସ୍ପର ଅତି ବେଗଶାଳୀ ଗଦାଘାତରେ ଅତ୍ୟନ୍ତ କ୍ଷତବିକ୍ଷତ ହୋଇ ଏକାବେଳକେ ଭୂମିତଳେ ପଡ଼ିଲେ ଓ ଅତ୍ୟନ୍ତ ଆହତ ଓ ବିହ୍ୱଳ ହେଲେ । ଉଭୟ ସେନାର ବୀରବୃନ୍ଦ ହାହାକାର କଲେ । ତତ୍ପରେ କୃପାଚାର୍ଯ୍ୟ ଶଲ୍ୟଙ୍କୁ ନିଜ ରଥରେ ବସାଇ ସମରାଙ୍ଗଣରୁ ଅପସୃତ ହେଲେ । ଭୀମସେନ ଅଳ୍ପ ସମୟ ମତ୍ତ ବ୍ୟକ୍ତି ସମାନ ବିହ୍ୱଳ ହୋଇ ନିମେଷ ମଧ୍ୟରେ ପୁନଶ୍ଚ ଉଠିଲେ ଓ ଗଦାହସ୍ତ ହୋଇ ସମର ନିମିତ୍ତ ଶଲ୍ୟଙ୍କୁ ଆହ୍ୱାନ କଲେ । ତତ୍ପରେ ଉଭୟପକ୍ଷୀୟ ଯୋଦ୍ଧାମାନେ ନାନାବିଧ ଅସ୍ତ୍ରଶସ୍ତ୍ର ଧାରଣପୂର୍ବକ ବିବିଧ ବାଦ୍ୟଧ୍ୱନି କରି ପାଣ୍ଡବ ସୈନ୍ୟମାନଙ୍କ ସହିତ ଯୁଦ୍ଧ କଲେ ।

ହେ ମହାରାଜ ! ଦୁର୍ଯ୍ୟୋଧନ ପ୍ରଭୃତି ବୀରବୃନ୍ଦ ଶସ୍ତ୍ର ଧରି ଭୁଜଦ୍ୱୟ ଉତ୍ତୋଳନପୂର୍ବକ ବାରମ୍ବାର ଅତି ଭୟଙ୍କର ବୀରନାଦ କରି ଧାବମାନ ହେଲେ । ପାଣ୍ଡବମାନେ ତାହା ଦେଖି ସିଂହନାଦ କରି ସେମାନଙ୍କ ସମ୍ମୁଖକୁ ଯାତ୍ରା କଲେ । ହେ ଭରତଶ୍ରେଷ୍ଠ ! ସେମାନେ ଆସୁ ଆସୁ ଦୁର୍ଯ୍ୟୋଧନ ଅବଲମ୍ବରେ ଗୋଟିଏ ପ୍ରାସ ଅସ୍ତ୍ର ନିକ୍ଷେପଦ୍ୱାରା ଚେକିତାନଙ୍କ ହୃଦୟକୁ ଅତି ଦୃଢ଼ ରୂପେ ବିଦ୍ଧ କଲେ । ଭବଦୀୟ ପୁତ୍ରଙ୍କଦ୍ୱାରା ସେ ତାଡ଼ିତ ହେବା ମାତ୍ରେ ଅତିଶୟ ମୋହଗ୍ରସ୍ତ ଓ ରୁଧିରାକ୍ତ ହୋଇ ରଥରେ ପଡ଼ିଲେ । ହେ ମହାରାଜ ! ପାଣ୍ଡବପକ୍ଷର ମହାରଥମାନେ ଚେକିତାନଙ୍କୁ ନିହତ ହେବାର ଦେଖି ଆପଣଙ୍କ ସୈନ୍ୟକୁଳ ଉପରେ ଚତୁର୍ଦ୍ଦିଗରୁ ଅବିଶ୍ରାନ୍ତ ଭାବରେ ବାଣ ବୃଷ୍ଟି କଲେ ଓ ତତ୍କର୍ତ୍ତୃକ ପ୍ରେକ୍ଷ୍ୟମାଣ ହୋଇ ଜୟଚିହ୍ନ ପ୍ରକାଶପୂର୍ବକ ଭବଦୀୟ ସୈନ୍ୟବୃନ୍ଦ ମଧ୍ୟରେ ବିଚରଣ କଲେ ।

ହେ ମହାରାଜ ! ତତ୍ପରେ କୃପାଚାର୍ଯ୍ୟ, କୃତବର୍ମା ଓ ମହାବଳ ଶକୁନି ଶଲ୍ୟଙ୍କୁ ପୁରସ୍କୃତ କରି ଧର୍ମରାଜଙ୍କ ସହିତ ସମର ଆରମ୍ଭ କଲେ । ଯେଉଁ ମହାବଳ ପରାକ୍ରାନ୍ତ ବୀରବର ଦ୍ରୋଣାଚାର୍ଯ୍ୟଙ୍କୁ ସଂହାର କରିଥିଲେ, ସେହି ଧୃଷ୍ଟଦ୍ୟୁମ୍ନଙ୍କ ସହିତ ରାଜା ଦୁର୍ଯ୍ୟୋଧନ ସ୍ୱୟଂ ସଂଗ୍ରାମ କରିବାକୁ ପ୍ରବୃତ୍ତ ହେଲେ । ତିନି ସହସ୍ର ରଥୀ ଆପଣଙ୍କ ପୁତ୍ରଙ୍କ ଆଦେଶାନୁସାରେ ଅଶ୍ୱତ୍ଥାମାଙ୍କୁ ପୁରସ୍କୃତ କରି ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କଲେ । ହେ ମହାରାଜ ! ହଂସବୃନ୍ଦ ଯେଉଁପରି କୌଣସି ବୃହତ୍ ସରୋବରରେ ପ୍ରବେଶ କରନ୍ତି, ତଦ୍‌ବତ୍ ଭବଦୀୟ ସୈନ୍ୟମାନେ ବିଜୟ ବିଷୟରେ କୃତସଂକଳ୍ପ ହୋଇ ପ୍ରାଣ ଆଶା ପରିତ୍ୟାଗପୂର୍ବକ ପାଣ୍ଡବସେନା ମଧ୍ୟରେ ପ୍ରବିଷ୍ଟ ହେଲେ ।

ତତ୍ପରେ ପରସ୍ପର ବଧାଭିଳାଷୀ ବୀରମାନଙ୍କର ଅନ୍ୟୋନ୍ୟର ବଧଯୁକ୍ତ ପରସ୍ପରର ପ୍ରୀତିବର୍ଦ୍ଧନ ଅତି ଭୟଙ୍କର ସଂଗ୍ରାମ ହେଲା । ହେ ମହାରାଜ ! ବୀରସିଂହମାନଙ୍କ କ୍ଷୟକାରୀ ସେହି ସମର ହେଉଥିବା ସମୟରେ ପବନଦ୍ୱାରା ବିଚଳିତ ଅତି ଭୟଙ୍କର ଧୂଳିରାଶି ଉଡ୍‌ଡୀନ ହେଲା । ସେତେବେଳେ ଆମ୍ଭମାନଙ୍କ ଓ ପାଣ୍ଡବମାନଙ୍କ ମଧ୍ୟରେ ଯେଉଁ-ମାନେ ନିର୍ଭୟରେ ଯୁଦ୍ଧ କରୁଥିଲେ, ସେମାନଙ୍କ ନାମକୀର୍ତ୍ତନ ଓ ନାମ-ଶ୍ରବଣ ହେଉଥିବାରୁ ପରସ୍ପର ଜାଣି ପାରୁଥିଲୁଁ । କ୍ରମେ କ୍ରମେ ରୁଧିରଧାରା

ବୃଷ୍ଟିଦ୍ୱାରା ସେହିସବୁ ଧୂଳି ଓ ଅନ୍ଧକାର ବିନଷ୍ଟ ହେଲାରୁ ଦିକ୍‌ମଣ୍ଡଳ ନିର୍ମଳ ହେଲା ।

ସେହିପରି ଅତି ଭୟଙ୍କର ସଂଗ୍ରାମ ହେଉଥିବା ସମୟରେ ଆପଣଙ୍କର କିମ୍ବା ଶତ୍ରୁ ପକ୍ଷର କୌଣସି ସୈନ୍ୟ ପରାଙ୍ମୁଖ ହେଲେ ନାହିଁ । ପରାକ୍ରାନ୍ତ ଯୋଦ୍ଧା ପୁରୁଷମାନେ ଧର୍ମଯୁଦ୍ଧଦ୍ୱାରା ସ୍ୱର୍ଗଗମନକୁ ଇଚ୍ଛାକରି ବ୍ରହ୍ମଲୋକଗାମୀ ହେବା ବିଷୟରେ ତତ୍ପର ହେଲେ ଓ ଯୁଦ୍ଧରେ ଜୟାଭିଳାଷୀ ପ୍ରଭୁଙ୍କର ଅନ୍ନ ପରିଶୋଧ ନିମିତ୍ତ ପ୍ରିୟକାର୍ଯ୍ୟରେ ନିଶ୍ଚିତ ଓ ସ୍ୱର୍ଗଗମନରେ ଆସକ୍ତ ହୋଇ ଯୁଦ୍ଧ କଲେ । ମହାରଥବୃନ୍ଦ ପରସ୍ପର ନାନାପ୍ରକାର ଅସ୍ତ୍ର ଶସ୍ତ୍ର ବିସର୍ଜନଦ୍ୱାରା ପ୍ରହାରପୂର୍ବକ ଘୋରତର ଗର୍ଜନ କଲେ । "ବିନାଶ କର, ଆକ୍ରମଣ କର, ବନ୍ଧନ କର, ପ୍ରହାର କର, ଛେଦନ କର" ଏହି ବାକ୍ୟସବୁ କେବଳ ଉଭୟ ସେନା ମଧ୍ୟରେ ଶୁଣା ଯାଉଥିଲା ।

ହେ ମହାରାଜ ! ତତ୍ପରେ ଶଲ୍ୟ ଧର୍ମରାଜ ଯୁଧିଷ୍ଠିରଙ୍କ ବିନାଶ ନିମିତ୍ତ ଇଚ୍ଛୁକ ହୋଇ ଶାଣିତ ଶରନିକରଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ମହାରଥ ପାଣ୍ଡବ ମଧ୍ୟ ତାହାଙ୍କର ସମସ୍ତ ମର୍ମ ସ୍ଥାନକୁ ଲକ୍ଷ୍ୟ କରି ଅନାୟାସରେ ଚତୁର୍ଦ୍ଦିଗ ନାରାଚ ନିକ୍ଷେପ କଲେ । ମହାଯଶା ମଦ୍ରରାଜ ଯୁଧିଷ୍ଠିରଙ୍କ ବିନାଶ ନିମିତ୍ତ ଅଭିଳାଷୀ ହୋଇ ପ୍ରତିବାଣରେ ତାହାଙ୍କୁ ଆଚ୍ଛାଦନ କଲେ ଓ ଅନେକାନେକ କଙ୍କପତ୍ରଯୁକ୍ତ ବାଣଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ହେ ମହାରାଜ ! ପରିଶେଷରେ ସମସ୍ତ ସୈନ୍ୟଙ୍କ ସାକ୍ଷାତରେ ପୁନଶ୍ଚ ଗୋଟିଏ ଦୃଢ଼ତର ସାୟକଦ୍ୱାରା ଯୁଧିଷ୍ଠିରଙ୍କୁ ଆଘାତ କଲେ । ମହାଯଶା ଧର୍ମରାଜ ମଧ୍ୟ ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ ଶାଣିତ ଶରନିକର-ଦ୍ୱାରା ଶଲ୍ୟଙ୍କୁ ବିଦ୍ଧ କଲେ ଏବଂ ତଦୀୟ ସାରଥିଙ୍କୁ ନବ ଶର, ଚନ୍ଦ୍ରସେନଙ୍କୁ ସପ୍ତତି ଶାୟକ ଓ ଦ୍ରୁମସେନଙ୍କୁ ଚତୁଃଷଷ୍ଟି ବାଣ ପ୍ରହାରଦ୍ୱାରା ନିହତ କଲେ । ହେ ମହାରାଜ ! ମହାନୁଭବ ପାଣ୍ଡବଙ୍କଦ୍ୱାରା ଶଲ୍ୟଙ୍କ ଚକ୍ରରକ୍ଷକ ନିହତ ହେଲାରୁ ସେ ପଞ୍ଚବିଂଶତି ଚେଦିସୈନ୍ୟଙ୍କୁ ସଂହାର କଲେ । ମଦ୍ରରାଜ ସାତ୍ୟକିଙ୍କୁ ପଞ୍ଚବିଂଶତି ଶର, ଭୀମଙ୍କୁ ସପ୍ତ ସାୟକ ଓ ନକୁଳ ସହଦେବଙ୍କୁ ଶାଣିତ ଶତସଂଖ୍ୟକ ବାଣରେ ବିଦ୍ଧ କଲେ ।

ଶଲ୍ୟ ଏହିପରି ରଣାଙ୍ଗନ ମଧ୍ୟରେ ବିଚରଣ କରୁଥିବା ସମୟରେ ନୃପବର ଯୁଧିଷ୍ଠିର ତାହାଙ୍କ ଉପରେ ସର୍ପସମାନ ସାୟକସମୂହ ବର୍ଷଣ

କଲେ । ପରଶେଷରେ ଗୋଟିଏ ଭଲ୍ଲାଘାତରେ ତଦୀୟ ଧ୍ୱଜର ଅଗ୍ରଭାଗକୁ ଛେଦନ କଲେ । ଯେତେବେଳେ ଶଲ୍ୟଙ୍କ କେତୁ ଛିନ୍ନ ହୋଇ ରଥରୁ ପୃଥିବୀରେ ପଡ଼ିଲା, ତେତେବେଳେ ଆଘାତପ୍ରାପ୍ତ ପର୍ବତର ଶୃଙ୍ଗ ପଡ଼ିଲା ପରି ଦେଖାଗଲା । ଶଲ୍ୟ ନିପତିତ ରଥକେତନ ଓ ପାଣ୍ଡୁପୁତ୍ରଙ୍କୁ ଅବସ୍ଥିତ ଦେଖି ଘୋରତର କ୍ରୋଧର ଅଧୀନ ହୋଇ ବାଣ ବୃଷ୍ଟି କଲେ । ବର୍ଷଣଶୀଳ ମେଘ ସଦୃଶ ଅପରିମିତ ବଳଶାଳୀ କ୍ଷତ୍ରିୟବର ଶଲ୍ୟଙ୍କ ବାଣବୃଷ୍ଟିଦ୍ୱାରା କ୍ଷତ୍ରିୟବୃନ୍ଦ ଆଚ୍ଛନ୍ନ ହେଲେ । ସେ ସାତ୍ୟକି, ଭୀମ, ନକୁଳ ଓ ସହଦେବ ଏହି ସମସ୍ତଙ୍କୁ ଅତ୍ୟନ୍ତ ପୀଡ଼ା ଦେଲେ ।

ମହାରାଜ ! ତତ୍ପରେ ପାଣ୍ଡବଙ୍କ ବକ୍ଷସ୍ଥଳ ମେଘବୃନ୍ଦ ସଦୃଶ ବସ୍ତ୍ରାବୃତ ବାଣମୟ ଜାଲରେ ଆଚ୍ଛନ୍ନ ହୋଇଥିବାର ଦେଖିଲୁ । ମହାରଥ ଶଲ୍ୟଙ୍କ ଦୃଢ଼ତର ଶରବୃନ୍ଦଦ୍ୱାରା ତଦୀୟ ଧ୍ୱଜ ବନ୍ଧଗସବୁ ଆଚ୍ଛାଦିତ ହେଲା । ତତ୍ପରେ ରାଜା ଯୁଧିଷ୍ଠିର ଶଲ୍ୟଙ୍କ ଶରାଘାତରେ ପୀଡ଼ିତ ହୋଇ ଇନ୍ଦ୍ରଙ୍କ ପ୍ରହାରରେ ଜମ୍ଭାସୁର ସଦୃଶ ବିକ୍ରମହୀନ ହେଲେ । ୬୩ ।

---

## ତ୍ରୟୋଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଶଲ୍ୟଙ୍କ ଦ୍ୱାରା ଯୁଧିଷ୍ଠିର ପୀଡ଼ିତ ହେଲାରୁ ଭୀମ, ସାତ୍ୟକି, ନକୁଳ, ସହଦେବ ସଂଗ୍ରାମରେ ଅନେକ ଅନେକ ରଥବୃନ୍ଦ ଦ୍ୱାରା ଶଲ୍ୟଙ୍କୁ ପରିବେଷ୍ଟନ ପୂର୍ବକ ପୀଡ଼ା ପ୍ରଦାନ କଲେ । ସେହି ଏକ ବ୍ୟକ୍ତି ବହୁ ମହାରଥି କର୍ତ୍ତୃକ ପୀଡ଼ିତ ହୋଇଥିବାରୁ ଅତି ଉତ୍କୃଷ୍ଟ ଧନ୍ୟବାଦ ଉଠିଲା । ସିଦ୍ଧଗଣ ଆନନ୍ଦିତ ହେଲେ । ମୁନିଗଣ ସେଠାରେ ଉପସ୍ଥିତ ହୋଇ ଏହା ଆଶ୍ଚର୍ଯ୍ୟ ବୋଲି କହିଲେ । ୩ । ଭୀମ ଯୁଦ୍ଧରେ ପରାକ୍ରମ ପ୍ରକାଶ କରିବା ବିଷୟରେ ଶଲ୍ୟ ସ୍ୱରୂପ ଶଲ୍ୟଙ୍କୁ ପ୍ରଥମରେ ଗୋଟିଏ ବାଣରେ ବିଦ୍ଧ କରି ପୁନଶ୍ଚ ସପ୍ତଶରରେ ପ୍ରହାର କଲେ । ୪ । ସାତ୍ୟକି ମଧ୍ୟ ଧର୍ମରାଜଙ୍କ ରକ୍ଷାନିମିତ୍ତ ଶଲ୍ୟଙ୍କୁ ଶତ-ସଂଖ୍ୟକ ସାୟକ ଦ୍ୱାରା ଆଚ୍ଛନ୍ନ କରି ସିଂହନାଦ କଲେ ଓ ନକୁଳ ତାହାଙ୍କୁ ପଞ୍ଚଶର ଓ ସହଦେବ ସପ୍ତ ସାୟକରେ ବିଦ୍ଧ କରି ପୁନଶ୍ଚ ଅବଲମ୍ବିରେ ତାହାଙ୍କୁ ସପ୍ତ ଶିଖ ଦ୍ୱାରା ପ୍ରହାର କଲେ । ୬ ।

ତେତେବେଳେ ସେହି ଶୂରବର ଶଲ୍ୟ ସେହି ମହାରଥମାନଙ୍କ ଦ୍ୱାରା ପୀଡ଼ିତ ହୋଇ ଘୋରତର ଭାରସାଧନ ଗୋଟିଏ ଶରାସନ ବିକର୍ଷଣ ପୂର୍ବକ ସାତ୍ୟକିଙ୍କୁ ପଞ୍ଚବିଂଶତି ଶରରେ, ଭୀମଙ୍କୁ ତ୍ରିସପ୍ତତି ବାଣରେ ଓ ନକୁଳଙ୍କୁ ସପ୍ତ ସାୟକରେ ପ୍ରହାର କଲେ । ୮ । ପରିଶେଷରେ ସହଦେବଙ୍କ ଶରଯୁକ୍ତ ଶରାସନ ଛେଦକ ପୂର୍ବକ ତାହାଙ୍କୁ ତ୍ରି-ସପ୍ତତି ବିଶିଖ ଦ୍ୱାରା ପ୍ରହାର କଲେ । ୯ । ତତ୍ପରେ ସହଦେବ ତତ୍କ୍ଷଣାତ୍ ଅନ୍ୟ କାର୍ମୁକରେ ଗୁଣ ଦେଇ ମାତୁଳ ଶଲ୍ୟଙ୍କୁ ପ୍ରଜ୍ୱଳିତ ଅଗ୍ନି ଓ ସର୍ପସଦୃଶ ପଞ୍ଚଶର ଦ୍ୱାରା ତାଡ଼ନ କଲେ ଓ ଅତିଶୟ କ୍ରୋଧାନ୍ୱିତ ହୋଇ ଦୃଢ଼ତର ଶରଦ୍ୱାରା ତଦୀୟ ସାରଥିଙ୍କୁ ପ୍ରହାର ପୂର୍ବକ ପୁନଶ୍ଚ ତାହାଙ୍କୁ ତିନିଗୋଟି ବାଣ ନିକ୍ଷେପ କଲେ । ଭୀମସେନ ସପ୍ତତି ସାୟକ, ସାତ୍ୟକି ନବବାଣ ଓ ଧର୍ମରାଜ ଷଷ୍ଟିସଂଖ୍ୟକ ଶର ସନ୍ଧାନ ପୂର୍ବକ ଶଲ୍ୟଙ୍କ ଶରୀରକୁ ନିକ୍ଷେପ କଲେ ।

ହେ ମହାରାଜ ! ଶଲ୍ୟ ସେହି ମହାରଥବୃନ୍ଦର ଶରସମୂହରେ ଅତ୍ୟନ୍ତ ବିଦ୍ଧ ହେଲାରୁ ପର୍ବତରୁ ନିର୍ଗତ ଗୈରିକ ଜଳସଦୃଶ ତାହାଙ୍କ ସର୍ବାଙ୍ଗରୁ ରୁଧିରଧାର କ୍ଷରିତ ହେଲା । ମହାରାଜ ! ଏହା ଅତି ଆଶ୍ଚର୍ଯ୍ୟ ଲାଗିଲା, ଯେତେବେଳେ ଶଲ୍ୟ ତାଦୃଶ ପୀଡ଼ିତ ହୋଇ ସୁଦ୍ଧା ସେହି ସମସ୍ତ ମହାଧନୁର୍ଦ୍ଧର ପ୍ରତ୍ୟେକଙ୍କ ଅତି ବେଗରେ ପଞ୍ଚ ପଞ୍ଚ ଶର ନିକ୍ଷେପ କଲେ । ତତ୍ପରେ ମହାରଥ ଶଲ୍ୟ ଅନ୍ୟ ଏକ ଭଲ୍ଲଦ୍ୱାରା ଯୁଧିଷ୍ଠିରଙ୍କ ଗୁଣଯୁକ୍ତ ଶରାସନକୁ ଛେଦନ କଲେ । ମହାରଥ ଧର୍ମରାଜ ତତ୍କ୍ଷଣାତ୍ ଅନ୍ୟ ଶରାସନ ଗ୍ରହଣପୂର୍ବକ ଅଶ୍ୱ, ସାରଥି, ରଥ ଓ ଧ୍ୱଜ ସହିତ ଶଲ୍ୟଙ୍କୁ ଆଚ୍ଛାଦନ କଲେ । ତେତେବେଳେ ଶଲ୍ୟ ଯୁଧିଷ୍ଠିରଙ୍କ ବାଣରେ ଆଚ୍ଛନ୍ନ ହୋଇ ତାହାଙ୍କୁ ଦଶଗୋଟି ଶାଣିତ ସାୟକଦ୍ୱାରା ବିଦ୍ଧ କଲେ ।

ଧର୍ମପୁତ୍ର ବାଣଦ୍ୱାରା ପୀଡ଼ିତ ହେବାର ଦେଖି ସାତ୍ୟକି କ୍ରୋଧର ଅଧୀନ ହୋଇ ଶଲ୍ୟଙ୍କୁ ଶରବୃନ୍ଦରେ ଆହତ କଲେ । ଶଲ୍ୟ କ୍ଷୁରପ୍ର ଅସ୍ତ୍ର-ଦ୍ୱାରା ସାତ୍ୟକିଙ୍କ ଶରାସନ ଛେଦନ କରି ଭୀମ ପ୍ରଭୃତି ବୀରମାନଙ୍କୁ ତିନି ତିନି ବାଣରେ ପ୍ରହାର କଲେ । ସାତ୍ୟକି ତାହାଙ୍କୁ କୋପରେ ଗୋଟିଏ ସୁବର୍ଣ୍ଣ ଦଣ୍ଡଯୁକ୍ତ ମହାବଳ ତୋମର ନିକ୍ଷେପ କଲେ । ଭୀମ କ୍ରୋଧାନ୍ୱିତ ସର୍ପ ସଦୃଶ ଗୋଟିଏ ନାରାଚ, ନକୁଳ ଶକ୍ତି, ସହଦେବ ଗଦା ଓ ଯୁଧିଷ୍ଠିର ଶତଘ୍ନୀ ଗଦାକୁ ଧରି ଶଲ୍ୟଙ୍କୁ ବିନାଶ କରିବା ଇଚ୍ଛାରେ ତାହାଙ୍କ ଉପରକୁ ନିକ୍ଷେପ କଲେ । ୨୨ ।

ସେହି ପଞ୍ଚବ୍ୟକ୍ତିଙ୍କ ହସ୍ତରୁ ନିକ୍ଷିପ୍ତ ଅସ୍ତ୍ରଶସ୍ତ୍ର ସବୁ ଆସୁ ଆସୁ ଲଘୁଅସ୍ତ୍ର ପ୍ରତାପଶାଳୀ ଶଲ୍ୟ ତାହା ନିବାରଣ କଲେ । ସେ ଭଲ୍ଲଦ୍ୱାରା ସାତ୍ୟକିଙ୍କ ତୋମର ଛେଦନ କରି ଭୀମଙ୍କ ପ୍ରେରିତ ସୁବର୍ଣ୍ଣଭୂଷଣ ଶରକୁ ଦୁଇ ଖଣ୍ଡରେ ଛେଦନ କଲେ । ନକୁଳଙ୍କ ପ୍ରେରିତ ସୁବର୍ଣ୍ଣଦଣ୍ଡ ଓ ଭୟାବହ ଶକ୍ତି ଏବଂ ସହଦେବଙ୍କ ଗଦାକୁ ଶରନିକରରେ ବାରଣ କଲେ । ସେହି ପ୍ରତାପଶାଳୀ ପୁରୁଷ ନରପତି ଯୁଧିଷ୍ଠିରଙ୍କ ପ୍ରେରିତ ଶତଘ୍ନୀ ଗଦାକୁ ଦୁଇଗୋଟି ଶରରେ ଛେଦନ କରି ପାଣ୍ଡବମାନଙ୍କ ସାକ୍ଷାତରେ ଅତି ଘୋର ସିଂହନାଦ କଲେ । କିନ୍ତୁ ସାତ୍ୟକି ଯୁଦ୍ଧରେ ଶତ୍ରୁର ସେହି ବିଜୟକୁ ସହ୍ୟ କରି ପାରିଲେ ନାହିଁ ! ୨୭ ।

ତତ୍ପରେ ସାତ୍ୟକି କ୍ରୋଧରେ ଅଧୈର୍ଯ୍ୟ ହୋଇ ଅନ୍ୟ ଶରାସନ ଗ୍ରହଣପୂର୍ବକ ଶଲ୍ୟଙ୍କୁ ଦୁଇଗୋଟି ଶରଦ୍ୱାରା ବିଦ୍ଧ କରି ତାଙ୍କ ସାରଥିଙ୍କୁ ତିନିଗୋଟି ଶରରେ ପ୍ରହାର କଲେ । ମହାରାଜ ତତ୍ପରେ ଅଙ୍କୁଶଦ୍ୱାରା ମହାରାଜାଙ୍କୁ ପ୍ରହାର କଲାପରି ଶଲ୍ୟ ସେମାନଙ୍କୁ ପ୍ରତ୍ୟେକରେ ଦଶ ଦଶ ବାଣରେ ଅତ୍ୟନ୍ତ ପ୍ରହାର କଲେ । ହେ ଭାରତ ! ସେହି ସମସ୍ତ ଶତ୍ରୁନିସୂଦନ ମହାରଥବୃନ୍ଦ ମଦ୍ରରାଜ ଶଲ୍ୟଙ୍କଦ୍ୱାରା ନିବାରିତ ହୋଇ ସମରସ୍ଥଳରେ ତାହାଙ୍କ ସମ୍ମୁଖରେ ରହିବାକୁ ସମର୍ଥ ହେଲେ ନାହିଁ । ୩୦ ।

ସେତେବେଳେ ରାଜା ଦୁର୍ଯ୍ୟୋଧନ ଶଲ୍ୟଙ୍କ ବିକ୍ରମ ଦେଖି, ପାଣ୍ଡବ, ପାଞ୍ଚାଳ ଓ ସଞ୍ଜୟମାନଙ୍କ ନିଧନ ହେବ ବୋଲି ଜାଣିଥିଲେ । ୩୧ । ତତ୍ପରେ ମହାପ୍ରତାପଶାଳୀ ମହାବାହୁ ଭୀମ ହୃଦୟରେ ପ୍ରାଣତ୍ୟାଗର ସଂକଳ୍ପ କରି ଶଲ୍ୟଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୩୨ । ମହାବଳ ସାତ୍ୟକି ନକୁଳ, ସହଦେବ, ତତ୍ସମୟରେ ମହାରାଜାଙ୍କ ପରିବେଷ୍ଟନପୂର୍ବକ ଚତୁର୍ଦ୍ଦିଗରୁ ଶରବୃଷ୍ଟି କଲେ । ୩୩ । ପ୍ରତାପଯୁକ୍ତ ଶଲ୍ୟ ପାଣ୍ଡବପକ୍ଷର ଏହି ମହାଧନୁର୍ଦ୍ଧର ମହାରଥଚତୁଷ୍ଟୟଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେମାନଙ୍କ ସଙ୍ଗେ ସଂଗ୍ରାମ କଲେ । ୩୪ । ହେ ମହାରାଜ ! ରାଜା ଧର୍ମରାଜ ଯୁଧିଷ୍ଠିରଙ୍କ କ୍ଷୁରପ୍ର ଅସ୍ତ୍ର ପ୍ରହାରଦ୍ୱାରା ଅବିଳମ୍ବରେ ମହାଯୁଦ୍ଧରେ ଶଲ୍ୟଙ୍କ ଚକ୍ରରକ୍ଷକର ପ୍ରାଣ ସଂହାର କଲେ । ୩୫ । ଶଲ୍ୟଙ୍କର ବୀରବର ମହାରଥ ଚକ୍ରରକ୍ଷକ ନିହତ ହେଲାରୁ ସେ ପାଣ୍ଡବୀୟ ସମସ୍ତ ସୈନ୍ୟଙ୍କ ଉପରେ ବାଣବୃଷ୍ଟି କଲେ । ୩୬ ।

ଧର୍ମରାଜ ଯୁଧିଷ୍ଠିର ସେତେବେଳେ ସ୍ୱକୀୟ ସୈନ୍ୟମାନଙ୍କୁ ଶରଦ୍ୱାରା ଆଚ୍ଛନ୍ନ ହୋଇଥିବାର ଦେଖି ମନେ ମନେ ବିଚାର କଲେ, କ୍ରୋଧଯୁକ୍ତ ଶଲ୍ୟ ଯଦି ଆମ୍ଭର ଓସୈନ୍ୟକୁଳକୁ କ୍ଷୟ ନ କରିବେ, ତେବେ କୃଷ୍ଣ ଯେଉଁ ବାକ୍ୟ କହିଥିଲେ, ତାହା ଯଥାର୍ଥ ହେବ। ହେ ମହାରାଜ ! ଯୁଧିଷ୍ଠିର ଏହିପରି ବିଚାର କରୁଥିବା ସମୟରେ ପାଣ୍ଡବଗଣ ଅଶ୍ୱ, ଗଜ ପ୍ରଭୃତି ଚତୁରଙ୍ଗ ସୈନ୍ୟ ସହିତ କୌରବମାନଙ୍କୁ ଦଳନ କରି ଶଲ୍ୟଙ୍କ ନିକଟରେ ଉପସ୍ଥିତ ହେଲେ । ୩୯ । ତତ୍ପରେ ପ୍ରବଳ ପବନ ଯେଉଁପରି ମେଘ-ମଣ୍ଡଳୀକୁ ଛିନ୍ନଭିନ୍ନ କରେ, ମହାଧିପ ଶଲ୍ୟ ତଦ୍‌ବତ୍ ସେମାନଙ୍କ ନାନାବିଧ ଅସ୍ତ୍ରଶସ୍ତ୍ର ସମୂହଦ୍ୱାରା ଉତ୍ପନ୍ନ ଶରବୃଷ୍ଟିକୁ ତତ୍‌କ୍ଷଣାତ୍ ଦଗ୍ଧ କଲେ । ୪୦ ।

ତଦନନ୍ତର ଶଲ୍ୟଙ୍କ ନିକ୍ଷିପ୍ତ ସୁବର୍ଣ୍ଣପୁଙ୍ଖବିଶିଷ୍ଟ ଶରବୃଷ୍ଟି ଆକାଶ-ମଣ୍ଡଳରେ ଶଲଭ ସମୂହ ପରି ଦିଶୁଥିଲା ଓ ତାହାଙ୍କ ପ୍ରେରିତ ରଣ-ମସ୍ତକରେ ନିପତିତ ଶରନିକର ପକ୍ଷୀକୁଳ ସଦୃଶ ଦୃଶ୍ୟମାନ ହେଉ-ଥିଲେ । ୪୨ । ହେ ମହାରାଜ ! ଶଲ୍ୟଙ୍କ ନିକ୍ଷିପ୍ତ ସୁବର୍ଣ୍ଣଭୂଷିତ ଶରସମୂହ-ଦ୍ୱାରା ଆକାଶମଣ୍ଡଳର କିଛି ମାତ୍ର ଅନ୍ତର ନ ଥିଲା ପରି ଜଣା ଯାଉଥିଲା । ସେହି ମହାସମର ସ୍ଥଳ ବାଣାନ୍ଧକାରରେ ଆଚ୍ଛନ୍ନ ହେଲାରୁ ପାଣ୍ଡବ-ମାନଙ୍କର କି ଆମ୍ଭମାନଙ୍କର କେହି ଜଣେ ସୁଦ୍ଧା ଦୃଷ୍ଟିଗୋଚର ହେଲେ ନାହିଁ । ବଳିଷ୍ଠ ଶଲ୍ୟଙ୍କ ନିରନ୍ତର ଶରବୃଷ୍ଟିରେ ପାଣ୍ଡବୀୟ ସୈନ୍ୟସାଗର ଅତ୍ୟନ୍ତ କ୍ଷୋଭଯୁକ୍ତ ହେବାର ଦେଖି ଦେବଦାନବ ଗନ୍ଧର୍ବଗଣ ଅତି ବିସ୍ମୟାପନ୍ନ ହେଲେ ।

ସେତେବେଳେ ଶଲ୍ୟ ମଧ୍ୟ ଅସୀମ ଯତ୍ନ ସହିତ ପାଣ୍ଡବ ସୈନ୍ୟ-ମାନଙ୍କୁ ଶରସମୂହରେ ପୀଡ଼ାପ୍ରଦାନ କଲେ ଓ ଯୁଧିଷ୍ଠିରଙ୍କୁ ଆଚ୍ଛାଦନ କରି ସିଂହସଦୃଶ ବାରମ୍ବାର ନାଦ କଲେ । ପାଣ୍ଡବ ପକ୍ଷର ମହାରଥମାନେ ଶଲ୍ୟଙ୍କ ଦ୍ୱାରା ପୀଡ଼ିତ ହେଲାରୁ ସେତେବେଳେ ତାହାଙ୍କ ନିକଟରେ ରହିବାକୁ ଅସମର୍ଥ ହେଲେ । କେବଳ ଯୁଧିଷ୍ଠିର ଓ ଭୀମ ପ୍ରଭୃତି କତିପୟ ବୀରମାନେ ଯୁଦ୍ଧମଣ୍ଡନ ବୀରବର ଶଲ୍ୟଙ୍କୁ ପରିତ୍ୟାଗ କଲେ ନାହିଁ । ୪୮ ।

---

# ଚତୁର୍ଦ୍ଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଅର୍ଜ୍ଜୁନ ଅଶ୍ୱତ୍ଥାମା ଓ ତଦୀୟ ଅନୁଚର ତ୍ରିଗର୍ତ୍ତ ଦେଶୀୟ ମହାରଥଗଣର ବାଣବୃଷ୍ଟିରେ ବିଦ୍ଧ ହୋଇ ଦ୍ରୋଣପୁତ୍ରଙ୍କୁ ତିନି ଶିଳୀମୁଖରେ ଓ ଅନ୍ୟାନ୍ୟ ଧନୁର୍ଦ୍ଧରମାନଙ୍କୁ ଦୁଇ ଦୁଇ ବାଣରେ ବିଦ୍ଧ କଲେ । ୨ । ସେହି ମହାବାହୁ ପୁନଶ୍ଚ ବାଣ ବୃଷ୍ଟି କରନ୍ତେ ଭବଦୀୟ ସୈନ୍ୟକୁଳର ସର୍ବାଙ୍ଗ ଶରରୂପ କଣ୍ଟକରେ ଆଚ୍ଛନ୍ନ ହେଲା । ୩ । ସେମାନେ ଶାଣିତ ଶରପ୍ରହାରରେ ବଧ୍ୟମାନ ହୋଇ ସୁଦ୍ଧା ଯୁଦ୍ଧରେ ପାର୍ଥଙ୍କୁ ପରିତ୍ୟାଗ କଲେ ନାହିଁ । ଅଶ୍ୱତ୍ଥାମା ପ୍ରଭୃତି ବୀରବୃନ୍ଦ ମହାରଥ ଅର୍ଜ୍ଜୁନଙ୍କୁ ପରିବେଷ୍ଟନ ପୂର୍ବକ ତାହାଙ୍କ ଉପରେ ବାଣ ବୃଷ୍ଟି କରି ସଂଗ୍ରାମରେ ପ୍ରବୃତ୍ତ ହେଲେ ।

ସେମାନଙ୍କ ନିକ୍ଷିପ୍ତ ସୁବର୍ଣ୍ଣବିଭୂଷିତ ସାୟକସମୂହଦ୍ୱାରା ଅବିଲମ୍ବରେ ଅର୍ଜ୍ଜୁନଙ୍କ ରଥର ଉପରିଭାଗ ଆଚ୍ଛନ୍ନ ହେଲା । ସମରମତ୍ତ ସୈନ୍ୟବୃନ୍ଦ କୃଷ୍ଣ ଓ ଅର୍ଜ୍ଜୁନଙ୍କୁ ଶରସମୂହରେ କ୍ଷତବିକ୍ଷତ ହେବାର ଦେଖି ଅତ୍ୟନ୍ତ ଆହ୍ଲାଦିତ ହେଲେ । ହେ ମହାରାଜ ! ତେତେବେଳେ ରଥ ଚକ୍ର, କୁବେର, ଈଶା, ଯୁଗ ଯୋକ୍ତ୍ର ଓ ଅନୁକର୍ଷ ପ୍ରଭୃତି ସବୁ ଶରପୂର୍ଣ୍ଣ ହେଲା । ହେ ମହାରାଜ ! ତତ୍ ସମୟରେ ଭବଦୀୟ ଯୋଦ୍ଧାମାନେ ଅର୍ଜ୍ଜୁନଙ୍କର ଯେଉଁପରି ଦୁରବସ୍ଥା ଘଟାଇଥିଲେ, ତାଦୃଶ ଘଟନା ପୂର୍ବେ କଦାପି ଆମ୍ଭମାନଙ୍କର ଦୃଷ୍ଟିଗୋଚର କିମ୍ବା ଶ୍ରୁତିଗୋଚର ହୋଇ ନ ଥିଲା । ତାହାଙ୍କ ରଥ ବିଚିତ୍ର ସାୟକବୃନ୍ଦରେ ଆଚ୍ଛାଦିତ ହୋଇ ଭୂତଳସ୍ଥିତ ଉଲ୍‌କା ସମୂହରେ ସମ୍ପାପ୍ତ ବିମାନପରି ଶୋଭା ପାଉଥିଲା ।

ମହାରାଜ ! ତତ୍ପରେ ଜଳଧର ଯେଉଁପରି ଜଳଧାରା ବର୍ଷଣଦ୍ୱାରା ପର୍ବତସମୂହକୁ ଆଚ୍ଛନ୍ନ କରେ, ତଦ୍‌ବତ୍ ଅର୍ଜ୍ଜୁନ ଦୃଢ଼ତର ଶରସମୂହ-ଦ୍ୱାରା ଭବଦୀୟ ସେନାବୃନ୍ଦଙ୍କୁ ଆଚ୍ଛନ୍ନ କଲେ । ସେମାନେ ଅର୍ଜ୍ଜୁନଙ୍କ ନାମାଙ୍କିତ ବାଣବୃନ୍ଦଦ୍ୱାରା ବିଧ୍ୟମାନ ହୋଇ ସମସ୍ତଙ୍କୁ ଅର୍ଜ୍ଜୁନମୟ ଜ୍ଞାନ କରୁଥିଲେ । ତତ୍ପରେ ଅର୍ଜ୍ଜୁନ ଅଗ୍ନି ସଦୃଶ ହୋଇ ଅଦ୍ଭୁତ ଶରସମୂହ ଓ ଶରାସନ ଶବ୍ଦ-ଜନିତ ପବନ ସହଯୋଗରେ ଆପଣଙ୍କ ସୈନ୍ୟ ସ୍ୱରୂପ କାଷ୍ଠରାଶିଙ୍କୁ ଅତି ଶୀଘ୍ର ଦଗ୍ଧ କଲେ । ହେ ଭାରତ ! କ୍ରମେ କ୍ରମେ ଧରାତଳରେ ଧନଞ୍ଜୟଙ୍କ ରଥ ମାର୍ଗରେ ପତନଶୀଳ ଚକ୍ର ଯୁଗ, ତୂଣୀର, ଧ୍ୱଜ ପତାକା, ରଥ, ଈଷା, ଅନୁକର୍ଷ, ତ୍ରିବେଣୁ, ଅକ୍ଷ, ଯୋକ୍ତ୍ର, ପ୍ରତୋଦ, କୁଣ୍ଡଳ,

ଉଷ୍ଣୀଷଧାରୀ ମସ୍ତକ, ସହସ୍ର ସହସ୍ର ଭୁଜ, ଜଙ୍ଘାନିକର, ବ୍ୟଜନ ଓ ମୁକୁଟ ପତିତ ହେଲା । ହେ ମହାରାଜ ! କ୍ରୋଧଯୁକ୍ତ ପାର୍ଥଙ୍କ ରଥ ମାର୍ଗରେ ରଣସ୍ଥଳ ରକ୍ତ ମାଂସରେ କଦର୍ଯ୍ୟମୟ ହେବାରୁ ତାହା ରୁଦ୍ରଙ୍କ ଶ୍ମଶାନ-ଭୂମିପରି ଅଗମ୍ୟ ହେଲା । ତେତେବେଳେ ସମରଭୂମି ଭୀରୁମାନଙ୍କ ତ୍ରାସ-ଜନନୀ ଓ ଶୂରକୁଳର ହର୍ଷବର୍ଦ୍ଧିନୀ ହେଲା । ଶତ୍ରୁତାପନ ଅର୍ଜୁନ ରଣ ମଧ୍ୟରେ ଦୁଇ ସହସ୍ର ଆବରଣ ସଂଯୁକ୍ତ ରଥ ସଂହାର କରି ଧୂମଶୂନ୍ୟ ଅଗ୍ନି ସଦୃଶ ଦେଦୀପ୍ୟମାନ ହେଲେ ।

ମହାରାଜ ! ଭଗବାନ ଶିଖାବାନ୍ ଅଗ୍ନିଦେବ ଯେଉଁପରି ଚରାଚର ବିଶ୍ୱକୁ ଦଗ୍ଧ କରି ଧୂମଶୂନ୍ୟ ଭାବରେ ପରିଦୃଷ୍ଟ ହୁଅନ୍ତି, ମହାରଥୀ ଅର୍ଜୁନ ତାଦୃଶ ହେଲେ । ତତ୍ପରେ ଅଶ୍ୱତ୍ଥାମା ଯୁଦ୍ଧରେ ପାଣ୍ଡବଙ୍କ ପରାକ୍ରମ ଦେଖି ଦୀର୍ଘ ପତାକାଯୁକ୍ତ ରଥରେ ଆରୋହଣପୂର୍ବକ ପାର୍ଥଙ୍କୁ ନିବାରଣ କଲେ । କ୍ରମଶଃ ସେହି ରଥୀଶ୍ରେଷ୍ଠ ଶ୍ୱେତାଶ୍ୱ ବୀରଦ୍ୱୟ ପରସ୍ପର ବଧ କାମନା କରି ଅଳ୍ପକ୍ଷଣ ମଧ୍ୟରେ ଏକତ୍ରିତ ହେଲେ । ମହାରାଜ ! ବର୍ଷାକାଳରେ ମେଘବୃନ୍ଦର ଅବିଶ୍ରାନ୍ତ ବୃଷ୍ଟିପରି ସେହି ଦୁହିଁଙ୍କର ନିରନ୍ତର ଅତି ଦାରୁଣ ବାଣ ବୃଷ୍ଟି ହେଲା । ବୃଷଭଯୁଗଳ ଯେଉଁପରି ପରସ୍ପରକୁ ଶୃଙ୍ଗଦ୍ୱାରା କ୍ଷତବିକ୍ଷତ କରନ୍ତି, ସେହି ମହାବୀର ଦୁହେଁ ପରସ୍ପର ଉପରେ ସ୍ପର୍ଦ୍ଧା ପ୍ରକାଶ କରି ଦୃଢ଼ତର ଶର ନିକ୍ଷେପ ଦ୍ୱାରା ପରସ୍ପରରେ କ୍ଷତବିକ୍ଷତ ହେଲେ ।

ହେ ଭରତଶ୍ରେଷ୍ଠ ! ଏହିପରି ବହୁକ୍ଷଣ ପର୍ଯ୍ୟନ୍ତ ସେହି ଉଭୟଙ୍କର ଦ୍ୱନ୍ଦ୍ୱ ଯୁଦ୍ଧ ସମାନ ଭାବରେ ହେଉଥିଲା ଓ ପୁନଶ୍ଚ ସେଠାରେ ଅତି ଘୋରତର ଅସ୍ତ୍ରଶସ୍ତ୍ରର ସଙ୍ଗମ ହେଲା । ତତ୍ପରେ ଅଶ୍ୱତ୍ଥାମା ଅର୍ଜୁନଙ୍କୁ ଶାଣିତ ଦ୍ୱାଦଶଗୋଟି ଶରରେ ଓ କୃଷ୍ଣଙ୍କୁ ଦଶ ବାଣରେ ବିଦ୍ଧ କଲେ । ତେତେବେଳେ ମହାରଥ ଅର୍ଜୁନ ଅନାୟାସରେ ଗାଣ୍ଡିବ କୋଦଣ୍ଡକୁ ବିସ୍ତାରଣ କଲେ ଓ ମୁହୂର୍ତ୍ତେକ ନିମିତ୍ତ ଗୁରୁପୁତ୍ରଙ୍କୁ ସମ୍ମାନ ପ୍ରଦାନ ପୂର୍ବକ କ୍ରମେ କ୍ରମେ ତାହାଙ୍କର ଅଶ୍ୱ, ରଥ ଓ ସାରଥିଙ୍କୁ ବିନାଶ କଲେ । ତତ୍ପରେ ଅତି ମୃଦୁ ଭାବରେ ତଦୀୟ ଶରୀରକୁ ତିନିଗୋଟି ଶର ପ୍ରହାର କଲେ । ଅଶ୍ୱତ୍ଥାମା ତେତେବେଳେ ଅଶ୍ୱବିହୀନ ରଥ ଉପରେ ବସି ସୁଦ୍ଧା ଗର୍ବ ପ୍ରକାଶ ପୂର୍ବକ ପରିଘସ ସଦୃଶ ଗୋଟିଏ ମୁଷଳ ଧରି

ପାଣ୍ଡବଙ୍କୁ ନିକ୍ଷେପ କଲେ । ଶତ୍ରୁନିବାରଣ ପାଣ୍ଡବ ହଠାତ୍ ସୁବର୍ଣ୍ଣପଟ୍ଟ ବିଭୂଷିତ ସେହି ମୂଷଳାସ୍ତ୍ର ଆସୁଥିବାର ଦେଖି ତତ୍‌କ୍ଷଣାତ୍ ତାହାକୁ ସପ୍ତ-ଶରରେ ଛେଦନ କଲେ ।

ଯୁଦ୍ଧବିଶାରଦ ଅଶ୍ୱତ୍ଥାମା ସ୍ୱକୀୟ ନିକ୍ଷିପ୍ତ ଅସ୍ତ୍ର ନଷ୍ଟ ହେବାର ଦେଖି ଅତିଶୟ କୋପାବିଷ୍ଟ ହେଲେ ଓ ପର୍ବତଶୃଙ୍ଗ ସଦୃଶ ଗୋଟିଏ ପରିଘ ଧରି ପାର୍ଥଙ୍କୁ ନିକ୍ଷେପ କଲେ । ଅର୍ଜୁନ ସେତେବେଳେ କ୍ରୋଧଯୁକ୍ତ ଯମଦେବ ସଦୃଶ ସେହି ପରିଘକୁ ଦେଖି ଶୀଘ୍ର ପାଞ୍ଚଗୋଟି ଶରଦ୍ୱାରା ତାହାକୁ ବିନାଶ କଲେ । ତତ୍‌ସମୟରେ ପରିଘ ଅର୍ଜୁନଙ୍କ ବାଣରେ ବିଚ୍ଛିନ୍ନ ହୋଇ ପାର୍ଥିବ ମାନଙ୍କ ମନକୁ ବିଦାରଣ କଲାପରି ଭୂତଳରେ ପଡ଼ିଲା । ୩୪ । ତଦନନ୍ତର ଅର୍ଜୁନ ଅଶ୍ୱତ୍ଥାମାଙ୍କୁ ତିନିଗୋଟି ଶରଦ୍ୱାରା ବିଦ୍ଧ କଲେ । ମହାବଳ ଅଶ୍ୱତ୍ଥାମା ବଳିଷ୍ଠ ଅର୍ଜୁନଙ୍କ ଦୃଢ଼ତର ଶରରେ ଗାଢ଼ ବିଦ୍ଧ ହୋଇ ସୁଦ୍ଧା ସ୍ୱକୀୟ ପୌରୁଷ ପ୍ରକାଶ କରି ଭୀତ ହେଲେ ନାହିଁ । ମହାରାଜ ! ତଦନନ୍ତର ଭରଦ୍ୱାଜ ସମସ୍ତ କ୍ଷତ୍ରିୟ କୁଳର ସାକ୍ଷାତରେ ମହାରଥ ସୁରଥଙ୍କୁ ଶରସମୂହରେ ଆଚ୍ଛନ୍ନ କଲେ । ପାଞ୍ଚାଳ-ମାନଙ୍କ ମହାରଥ ସୁରଥ ମେଘଶବ୍ଦ ସମାନ ଶବ୍ଦଯୁକ୍ତ ରଥଦ୍ୱାରା ଯୁଦ୍ଧରେ ଅଶ୍ୱତ୍ଥାମାଙ୍କ ସମ୍ମୁଖକୁ ଧାବିତ ହେଲେ ଏବଂ ସର୍ବଭାରସହ ଦୃଢ଼ତର ଶରାସନ ବିକର୍ଷଣ ପୂର୍ବକ ଅଗ୍ନି ଓ ସର୍ପ ସଦୃଶ ଶରସମୂହରେ ତାହାଙ୍କୁ ଆଚ୍ଛନ୍ନ କଲେ ।

ମହାରଥ ସୁରଥ କ୍ରୁଦ୍ଧ ହୋଇ ଆସୁଥିବାର ଦେଖି ସେ ଦଣ୍ଡା ଓ ସର୍ପ ସଦୃଶ କ୍ରୋଧଯୁକ୍ତ ହେଲେ ଓ ତ୍ରିଶାଖାଯୁକ୍ତ ଭ୍ରୂକୁଟି ବିସ୍ତାର-ପୂର୍ବକ ବାରମ୍ବାର ଉଭୟ ଓଷ୍ଠ ଲେହନ କରି ଅତି ରୋଷରେ ଧନୁର୍ଗୁଣ ମାର୍ଜନପୂର୍ବକ ଯମଦଣ୍ଡ ସଦୃଶ ଏକ ତୀକ୍ଷ୍ଣ ନାରାଚ ନିକ୍ଷେପ କଲେ । ୪୧ । ଇନ୍ଦ୍ରଙ୍କ ପରିତ୍ୟକ୍ତ ବଜ୍ର ଯେଉଁପରି ଭୂତଳକୁ ବିଦାରଣ କରି ପ୍ରବିଷ୍ଟ ହୁଏ, ସେହିପରି ନାରାଚ ଅସ୍ତ୍ର ତତ୍‌କ୍ଷଣାତ୍ ସୁରଥଙ୍କ ହୃଦୟ ଭେଦ କରି ଅତି ବେଗରେ ପ୍ରବିଷ୍ଟ ହେଲା । ୪୨ । ବଜ୍ରଦ୍ୱାରା ବିଦାରିତ ପର୍ବତଶୃଙ୍ଗ ଯେଉଁପରି ପତିତ ହୁଏ, ସେହିପରି ସୁରଥ ନାରାଚଦ୍ୱାରା ଅତିଶୟ ଆହତ ହୋଇ ଧରାରେ ପଡ଼ିଲେ ।୪୩ ।

ସେହି ବୀରବର ନିହତ ହେଲାରୁ ପ୍ରତାପଶାଳୀ ଅଶ୍ୱତ୍ଥାମା ଅବିଳମ୍ବରେ ସେହି ରଥରେ ଆରୋହଣ କଲେ । ୪୪ । ତପୂରେ ସେ

ଯୁଦ୍ଧଶଯ୍ୟାରେ ସୁସଜ୍ଜିତ ଓ ସଂଶପ୍ତକ ସୈନ୍ୟଗଣରେ ପରିବେଷ୍ଟିତ ହୋଇ ଯୁଦ୍ଧରେ ଅର୍ଜ୍ଜୁନଙ୍କ ସଙ୍ଗରେ ସଂଗ୍ରାମ କଲେ । ସୂର୍ଯ୍ୟଦେବ ଦିବସର ମଧ୍ୟଭାଗରେ ଆରୋହଣ କଲା ସମୟରେ ଏକାକୀ ଅର୍ଜ୍ଜୁନଙ୍କର ବହୁ ବୀର-ମାନଙ୍କ ସହିତ ଯେଉଁ ମହାରଣ ହୋଇଥିଲା, ତାହା ଯମଦେବଙ୍କ ରାଜ୍ୟ ବର୍ଦ୍ଧନ କରୁଥିଲା । ୪୬ । ତତ୍ସମୟରେ ସେମାନଙ୍କ ପରାକ୍ରମକୁ ଓ ଏକାବେଳକେ ଅନେକ ସହିତ ଏକାକୀ ଅର୍ଜ୍ଜୁନଙ୍କ ଯୁଦ୍ଧ ହେବାର ଦେଖି ଆମ୍ଭେମାନେ ଅତିଶୟ ଆଶ୍ଚର୍ଯ୍ୟ ଜ୍ଞାନ କଲୁ । ୪୭ । ଇନ୍ଦ୍ରଦେବ ପୂର୍ବକାଳରେ ଦୈତ୍ୟମାନଙ୍କ ସହିତ ଯେଉଁପରି ମହାଯୁଦ୍ଧ କରିଥିଲେ, ଏତେବେଳେ ଅର୍ଜ୍ଜୁନଙ୍କର ଶତ୍ରୁମାନଙ୍କ ସହିତ ତାଦୃଶ ମହାଯୁଦ୍ଧ ହେଲା । ୪୮ ।

---

## ପଞ୍ଚଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନ ଦୁହେଁ ଶର ଓ ଶକ୍ତି ପ୍ରହାର ଦ୍ୱାରା ମହାଯୁଦ୍ଧ କଲେ । ୧ । ବର୍ଷା କାଳରେ ଜଳଧରବୃନ୍ଦ ସଦୃଶ ସେହି ଦୁହିଁଙ୍କର ସହସ୍ର ସହସ୍ର ଶରଧାରା ନିର୍ଗତ ହେଲା । ୨ । ରାଜା ଦୁର୍ଯ୍ୟୋଧନ ପ୍ରଥମରେ ଉଗ୍ରଶରଧାରୀ ଦ୍ରୋଣହନ୍ତା ଧୃଷ୍ଟଦ୍ୟୁମ୍ନଙ୍କୁ ଶୀଘ୍ରଗାମୀ ଅସ୍ତ୍ରରେ ପ୍ରହାର କରି ପୁନଶ୍ଚ ସପ୍ତ ଶାୟକ ଦ୍ୱାରା ବିଦ୍ଧ କଲେ । ୩ । ଦୃଢ଼ବିକ୍ରମ ବଳବାନ ଧୃଷ୍ଟଦ୍ୟୁମ୍ନ ମଧ୍ୟ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କୁ ସପ୍ତତିବିଶିଖ ଦ୍ୱାରା ଅତିଶୟ ପୀଡ଼ା ପ୍ରଦାନ କଲେ । ୪ । ହେ ଭରତଶ୍ରେଷ୍ଠ ! ତାହାଙ୍କ ସହୋଦରମାନେ ରାଜାଙ୍କୁ ପୀଡ଼ାଗ୍ରସ୍ତ ହେବାର ଦେଖି ଉତ୍କୃଷ୍ଟ ସେନା ସହିତ ଧୃଷ୍ଟଦ୍ୟୁମ୍ନଙ୍କୁ ପରିବେଷ୍ଟନ କଲେ । ୫ । ହେ ରାଜନ୍ ! ବୀର ଧୃଷ୍ଟଦ୍ୟୁମ୍ନ ଚତୁର୍ଦ୍ଦିଗରେ ସେହି ଅତିରଥମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ସୁଦ୍ଧା ଅସ୍ତ୍ରନୈପୁଣ୍ୟ ପ୍ରଦର୍ଶନପୂର୍ବକ ରଣସ୍ଥଳରେ ବିଚରଣ କଲେ ।

ଶିଖଣ୍ଡୀ ପ୍ରଭଦ୍ରକ ସୈନ୍ୟସମ୍ବଳିତ ଧନୁର୍ଦ୍ଧର ମହାରଥ କୃତବର୍ମା ଓ କୃପାଚାର୍ଯ୍ୟଙ୍କ ସଙ୍ଗେ ଯୁଦ୍ଧ କଲେ । ୭ । ହେ ବଂଶପାତେ ! ପ୍ରାଣର ଦ୍ୟୂତକ୍ରୀଡ଼ା ସ୍ୱରୂପ ଯୁଦ୍ଧରେ ଯେଉଁମାନେ ପ୍ରାଣ ବିସର୍ଜନ କରିବାକୁ ଉଦ୍ୟମଶୀଳ ହୋଇଥିଲେ, ସେମାନଙ୍କର ମହାଯୁଦ୍ଧ ହେଲା । ୮ । ହେ

ରାଜେନ୍ଦ୍ର ! ଶଲ୍ୟ ଚତୁର୍ଦ୍ଦିଗରେ ଶରବୃଷ୍ଟି କରି ସାତ୍ୟକି ଓ ଭୀମଙ୍କ ସହିତ ପାଣ୍ଡବ ସୈନ୍ୟମାନଙ୍କୁ ପୀଡ଼ା ଦେଲେ ଓ ଯମ ସଦୃଶ ପରାକ୍ରାନ୍ତ ନକୁଳ ଓ ସହଦେବଙ୍କ ଧୈର୍ଯ୍ୟ ଓ ବଳ ପ୍ରକାଶପୂର୍ବକ ଯୁଦ୍ଧ କଲେ । ୧୦ । ସେହି ମହାଯୁଦ୍ଧରେ ଶଲ୍ୟଙ୍କ ସାୟକ ଆଘାତରେ ନିପତିତ ପାଣ୍ଡବ ସୈନ୍ୟମାନଙ୍କୁ କିଏ ପରିତ୍ରାଣ କରିବ, ତାହା କେହି ସୁଦ୍ଧା ନିଶ୍ଚୟ କରି ପାରିଲେ ନାହିଁ । ୧୧ ।

ତତ୍ପରେ ଯୁଧିଷ୍ଠିର ଅତ୍ୟନ୍ତ ପୀଡ଼ିତ ହେବାରୁ ମାଦ୍ରିନନ୍ଦନ ବୀର ନକୁଳ ଅତି ବେଗରେ ମାତୁଳଙ୍କ ନିକଟକୁ ଧାବିତ ହେଲେ । ପରବୀର-ହନ୍ତା ନକୁଳ ସଂଗ୍ରାମରେ ଅନାୟାସରେ ଶଲ୍ୟଙ୍କୁ ଶରସମୂହରେ ଆଚ୍ଛନ୍ନ କରି ସର୍ବପ୍ରକାର ଲୌହମୟ କର୍ମାରମାର୍ଜିତ ସୁବର୍ଣ୍ଣପୁଙ୍ଖଯୁକ୍ତ ଶିଳାଦ୍ୱାରା ଶାଣିତ ଓ କାର୍ମୁକ ଯନ୍ତ୍ରରୁ ନିର୍ମୁକ୍ତ ଦଶସଂଖ୍ୟକ ବାଣଦ୍ୱାରା ତାହାଙ୍କ ହୃଦୟକୁ ବିଦ୍ଧ କଲେ । ୧୪ । ଶଲ୍ୟ ମହାତ୍ମା ଭଗିନେୟଙ୍କ ଦ୍ୱାରା ପୀଡ଼ିତ ହୋଇ ତାହାଙ୍କୁ ମଧ୍ୟ ନତପର୍ବ ପଞ୍ଚସଂଖ୍ୟକ ଶରଘାତରେ ପୀଡ଼ା ଦେଲେ । ୧୫ । ତତ୍ପରେ ରାଜା ଯୁଧିଷ୍ଠିର, ଭୀମ, ସାତ୍ୟକି ଓ ମାଦ୍ରୀପୁତ୍ର ସହଦେବ ଶଲ୍ୟଙ୍କ ନିକଟକୁ ଧାବମାନ ହେଲେ । ୧୬ । ସେ ସମସ୍ତଙ୍କ ରଥ ନିର୍ଘୋଷ-ଦ୍ୱାରା ଦିଗଦିଗନ୍ତମାନଙ୍କୁ ପରିପୂର୍ଣ୍ଣ ଓ ଭୂମିତଳକୁ କମ୍ପମାନ କରି ଶୀଘ୍ର ଆସୁଥିବାର ଦେଖି ଶତ୍ରୁହନ୍ତା ସେନାପତି ଶଲ୍ୟ ଯୁଦ୍ଧରେ ସେମାନଙ୍କର ସମ୍ମୁଖୀନ ହେଲେ ।

ହେ ମହାରାଜ ! ତତ୍ପରେ ମଦ୍ରେଶ୍ୱର ଯୁଧିଷ୍ଠିରଙ୍କୁ ତିନଗୋଟି ଶର, ଭୀମଙ୍କୁ ସପ୍ତ ଶର, ସାତ୍ୟକିଙ୍କୁ ଶତସଂଖ୍ୟକ ଶିଳୀମୁଖ ଓ ସହଦେବଙ୍କୁ ତିନି ବାଣରେ ବିଦ୍ଧ କରି କ୍ଷୁରପ୍ର ଅସ୍ତ୍ରଦ୍ୱାରା ନକୁଳଙ୍କ ଶର ଓ ଶରାସନ ଛେଦନ କଲେ । ନକୁଳଙ୍କ ଶର ଓ ଶରାସନ ଶଲ୍ୟଙ୍କ ସାୟକରେ ବିଚ୍ଛିନ୍ନ ହୋଇ ଭୂତଳରେ ନିପତିତ ହେଲା । ୨୦ । ପରିଶେଷରେ ମହାରଥ ମାଦ୍ରୀପୁତ୍ର ଅନ୍ୟ ଶରାସନ ଗ୍ରହଣ ପୂର୍ବକ ମଦ୍ରରାଜଙ୍କ ରଥକୁ ଅବଲମ୍ବରେ ଶରସମୂହରେ ପୂର୍ଣ୍ଣ କଲେ । ୨୧ । ଯୁଧିଷ୍ଠିର ଓ ସହଦେବ ଦଶ ଦଶ ବାଣ ଦ୍ୱାରା ଶଲ୍ୟଙ୍କ ବକ୍ଷସ୍ଥଳକୁ ବିଦ୍ଧ କଲେ । ୨୨ । ଭୀମସେନ ଧାବ-ମାନ ହୋଇ ଷଷ୍ଟିସଂଖ୍ୟକ ଶରଦ୍ୱାରା ଏବଂ ସାତ୍ୟକିଙ୍କ ପକ୍ଷଯୁକ୍ତ ନବବାଣ ଦ୍ୱାରା ଶଲ୍ୟଙ୍କୁ ଆହତ କଲେ । ୨୩ । ତଦନନ୍ତର ଶଲ୍ୟ କ୍ରୋଧର ବଶବର୍ତ୍ତୀ ହୋଇ ସାତ୍ୟକିଙ୍କୁ ନବ ଶରଦ୍ୱାରା ବିଦ୍ଧ କରି ପୁନଶ୍ଚ ସପ୍ତତି-ସଂଖ୍ୟକ ସୁଦୃଢ଼ ସାୟକ ଦ୍ୱାରା ବେଧ କଲେ । ୨୪ ।

ହେ ମହାରାଜ ! ସେ ତଦନନ୍ତର ତଦୀୟ ଶରଯୁକ୍ତ ଶରାସନକୁ ମୁଷ୍ଟି ଦେଶରେ ଛେଦନ କଲେ ଓ ଅଶ୍ୱଚତୁଷ୍ଟୟକୁ ମଧ୍ୟ ତତ୍କ୍ଷଣାତ୍ ଯମାଳୟଗାମୀ କରାଇଲେ । ୨୫ । ମହାରଥ ମଦ୍ରରାଜ ସାତ୍ୟକିଙ୍କୁ ବିରଥ କରି ଶତସଂଖ୍ୟକ ବିଶିଖ ଦ୍ୱାରା ଆହତ କଲେ ଏବଂ ଯୁଧିଷ୍ଠିର, ଭୀମ, କ୍ରୋଧାକ୍ରାନ୍ତ ନକୁଳ ଓ ସହଦେବଙ୍କୁ ଦଶସଂଖ୍ୟକ ଶରରେ ବିଦ୍ଧ କଲେ । ୨୭ । ସେତେବେଳେ ଆମ୍ଭେମାନେ ମଦ୍ରପତିଙ୍କର ଅଦ୍ଭୁତ ପୌରୁଷ ଅବଲୋକନ କଲୁଁ, କାରଣ ପାଣ୍ଡବମାନେ ସମସ୍ତେ ଯୁଦ୍ଧରେ ଏକତ୍ର ମିଳିତ ହୋଇ ସୁଦ୍ଧା ଏକାକୀ ଶଲ୍ୟଙ୍କ ସମ୍ମୁଖରେ ରହିବାକୁ ସମର୍ଥ ହେଲେ ନାହିଁ । ୨୮ । ତତ୍ପରେ ସତ୍ୟବିକ୍ରମ ବଳବାନ୍ ସାତ୍ୟକି ଅନ୍ୟ ରଥରେ ଅବସ୍ଥାନ କରି ପାଣ୍ଡବମାନଙ୍କୁ ପୀଡ଼ିତ ଓ ଶଲ୍ୟଙ୍କ ବଶବର୍ତ୍ତୀ ହୋଇଥିବାର ଦେଖି ଅତି ବେଗରେ ମଦ୍ରପତିଙ୍କ ସମ୍ମୁଖକୁ ଧାବିତ ହେଲେ । ମତ୍ତଗଜ ଯେଉଁପରି ଅନ୍ୟ ପ୍ରମତ୍ତମାତଙ୍ଗ ପ୍ରତି ଧାବିତ ହୁଏ, ଯୁଦ୍ଧମଣ୍ଡନ ଶଲ୍ୟ ସେହିପରି ରଥଦ୍ୱାରା ସମାଗତ ସାତ୍ୟକିଙ୍କ ପ୍ରତିକୂଳରେ ଯାତ୍ରା କଲେ ।

ସେତେବେଳେ ଶୂର ସାତ୍ୟକି ଏବଂ ଶଲ୍ୟ ଏକତ୍ର ମିଳିତ ହୁଅନ୍ତେ ସେହି ଦୁହିଁଙ୍କର ଯାଦୃଶ ଯୁଦ୍ଧ ହେଲା, ତାହା ପୂର୍ବକାଳୀନ ଶମ୍ବରାସୁର ଓ ଅମରରାଜଙ୍କ ଯୁଦ୍ଧ ପରି ପ୍ରଶଂସମାନ ହେଲା । ୩୨ । ସାତ୍ୟକି ରଣ-ମଧ୍ୟରେ ଶଲ୍ୟଙ୍କୁ ଅବସ୍ଥିତ ହୋଇଥିବାର ଦେଖି ତାହାଙ୍କୁ ଦଶସଂଖ୍ୟକ ଶରରେ ବିଦ୍ଧ କଲେ ଓ "ରହ ରହ" ବୋଲି କହିଲେ । ୩୩ । ଶଲ୍ୟ ସେହି ମହାନୁଭବଙ୍କ ଦ୍ୱାରା ଅତିଶୟ ଶରବିଦ୍ଧ ହୋଇ ଚିତ୍ରପୁଙ୍ଖଯୁକ୍ତ ଶାଣିତ ଶରସମୂହରେ ତାହାଙ୍କୁ ପ୍ରତିବିଦ୍ଧ କଲେ । ୩୪ । ତତ୍ପରେ ମହାଧନୁର୍ଦ୍ଧର ପାଣ୍ଡବମାନେ ମାତୁଳଙ୍କ ବଧ ଇଚ୍ଛାରେ ସାତ୍ୟକିଙ୍କ ଆକ୍ରାନ୍ତ ମାତୁଳଙ୍କ ନିକଟକୁ ରଥ ଦ୍ୱାରା ଅତି ବେଗରେ ଧାବମାନ ହେଲେ । ୩୫ ।

ହେ ମହାରାଜ ! ତତ୍ପରେ ସିଂହସମାନ ଗର୍ଜନକାରୀ ଯୁଦ୍ଧ-ଶୂରମାନଙ୍କର ଯେଉଁ ପରସ୍ପର ତୁମୁଳ ଯୁଦ୍ଧ ହେଲା, ତହିଁରେ ଶୋଣିତରାଶି ଜଳଧାରା ସଦୃଶ ପ୍ରବାହିତ ହେଉଥିଲା । ୩୬ । ଆମିଷାଭିଳାଷୀ ଗର୍ଜନ-କାରୀ ସିଂହସଦୃଶ ସେମାନେ ଯୁଦ୍ଧରେ ପରସ୍ପରକୁ ଆକ୍ରମଣ କଲେ । ୩୭ । ତତ୍ସମୟରେ ସେମାନଙ୍କର ବାଣସମୂହରେ ଧରାତଳ ଆକୀର୍ଣ୍ଣ ହେଲା । ଆକାଶମଣ୍ଡଳ ସହସା ଶରପୂର୍ଣ୍ଣ ହେଲା, ଶରର ଅନ୍ଧକାରରେ ଚତୁର୍ଦ୍ଦିଗ

ଆଚ୍ଛନ୍ନ ହେଲା ଏବଂ ମହାନୁଭବମାନଙ୍କ କାର୍ମୁକବିମୁକ୍ତ ଶରରାଶିଦ୍ୱାରା ମେଘଗୁପ୍ତ ସମାନ ଗୁପ୍ତ ଜାତ ହେଲା । ୩୯ । ହେ ରାଜନ୍ ! ରଣସ୍ଥଳରେ ନିର୍ମୋକମୁକ୍ତ ସର୍ପସଦୃଶ ସୁବର୍ଣ୍ଣପଙ୍ଖଯୁକ୍ତ ଉଜ୍ଜ୍ୱଳ ସାୟକରାଶିଦ୍ୱାରା ପ୍ରକାଶମାନ ଦିଗସମୂହ ଦେଦୀପ୍ୟମାନ ହେଲା । ୪୦ । ଶୂରବର ଶତ୍ରୁ-ନିସୂଦନ ଶଲ୍ୟ ଏକାକୀ ଅସଂଖ୍ୟ ବୀରମାନଙ୍କ ସହିତ ଯୁଦ୍ଧ କରି ଅଦ୍ଭୁତ ପରାକ୍ରମ ପ୍ରକାଶ କଲେ । ୪୧ । ମଦ୍ରରାଜ ଶଲ୍ୟଙ୍କ ଭୁଜନିର୍ଗତ କଙ୍କପକ୍ଷ-ଭୂଷିତ ପତନଶୀଳ ଘୋରତର ଶରନିକରଦ୍ୱାରା ଭୂମଣ୍ଡଳ ପରିପୂର୍ଣ୍ଣ ହେଲା । ୪୨ । ହେ ରାଜନ୍ ! ପୂର୍ବକାଳରେ ଅସୁରମାନଙ୍କ ବିନାଶ ସମୟରେ ଇନ୍ଦ୍ରଦେବଙ୍କ ରଥ ସମାନ ଶଲ୍ୟଙ୍କ ରଥ ସମର ମଧ୍ୟରେ ବିଚରଣ କରୁଥିବାର ଦେଖିଲୁ । ୪୩ ।

---

## ଷୋଡ଼ଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ତଦନନ୍ତର ଆପଣଙ୍କ ସୈନ୍ୟ-ସମୂହ ଶଲ୍ୟଙ୍କୁ ଅଗ୍ରଗାମୀ କରାଇ ଅତି ବେଗରେ ଯୁଦ୍ଧରେ ପୁନଶ୍ଚ ପାଣ୍ଡବ-ସମ୍ମୁଖକୁ ଧାବିତ ହେଲେ । ୧ । ପୀଡ଼ିତ ଓ ସମରମତ୍ତ ଭବଦୀୟ ସୈନ୍ୟବୃନ୍ଦ ଧାବମାନ ହୋଇ ବାହୁଲ୍ୟ ହେତୁରୁ କ୍ଷଣକ ମଧ୍ୟରେ ପାଣ୍ଡବ-ମାନଙ୍କୁ ଆଲୋଡ଼ିତ କଲେ । ୨ । କୃଷ୍ଣ ଓ ଅର୍ଜୁନଙ୍କ ସାକ୍ଷାତରେ ସେନାମାନଙ୍କୁ ଭୀମ ନିବାରଣ କଲେ ସୁଦ୍ଧା ସେମାନେ କୌରବମାନଙ୍କ ଦ୍ୱାରା ବଧ୍ୟ ହୋଇ ରଣଭୂମିରେ ରହିପାରିଲେ ନାହିଁ । ୩ । ତତ୍ପରେ ଅର୍ଜୁନ କ୍ରୋଧାନ୍ଧ ହୋଇ ଅନୁଚରସହିତ କୃପ ଓ କୃତବର୍ମାଙ୍କୁ ଶର-ନିକର ଦ୍ୱାରା ଆଚ୍ଛାଦିତ କଲେ । ୪ । ସହଦେବ ସୈନ୍ୟ ସହିତ ଶକୁନିଙ୍କୁ ନିବାରଣ କଲେ । ନକୁଳ ତାହାଙ୍କ ପାର୍ଶ୍ୱରେ ଅବସ୍ଥାନ ପୂର୍ବକ ଶଲ୍ୟଙ୍କୁ ଅବଲୋକନ କରୁଥିଲେ । ୫ । ଦ୍ରୌପଦୀଙ୍କ ପୁତ୍ରମାନେ ଅନ୍ୟାନ୍ୟ ଅନେକ ଅନେକ ରାଜାମାନଙ୍କୁ ଆକ୍ରମଣ କଲେ । ୬ । ଭୀମ ଗଦା ଗ୍ରହଣ ପୂର୍ବକ ଦୁର୍ଯ୍ୟୋଧନଙ୍କୁ ଆକ୍ରମଣ କଲେ ଓ ଯୁଧିଷ୍ଠିର ସୈନ୍ୟ ସହିତ ଶଲ୍ୟଙ୍କ ସମ୍ମୁଖୀନ ହେଲେ । ୭ । ତତ୍ପରେ ଯୁଦ୍ଧରେ ଅପରାଙ୍ମୁଖ ଆପଣଙ୍କ ଶତ୍ରୁପକ୍ଷର ଯୋଦ୍ଧାମାନେ ପରସ୍ପର ମିଳିତ ହୋଇ ଘୋରତର ଯୁଦ୍ଧ କଲେ । ୮ ।

ସେହି ମହାସମରରେ ଶଲ୍ୟଙ୍କ କାର୍ଯ୍ୟ ଦେଖି ଅତି ଆଶ୍ଚର୍ଯ୍ୟାନ୍ୱିତ ହେଲୁ । କାରଣ ସେ ଏକାକୀ ପାଣ୍ଡବୀୟ ସୈନ୍ୟମାନଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ । ୯ । ତେତେବେଳେ ରଣସ୍ଥଳରେ ଯୁଧିଷ୍ଠିରଙ୍କ ସନ୍ନିଧିରେ ଶଲ୍ୟ, ଚନ୍ଦ୍ରଙ୍କ ନିକଟରେ ଶନିଗ୍ରହଙ୍କ ପରି ଦିଶୁଥିଲେ । ୧୦ । ଶଲ୍ୟ ବିଷଧର ସଦୃଶ ଶରବୃନ୍ଦ ଦ୍ୱାରା ଯୁଧିଷ୍ଠିରଙ୍କୁ ପୀଡ଼ା ପ୍ରଦାନ କରି ବାରମ୍ବାର ଘୋରତର ଶରବୃଷ୍ଟିଦ୍ୱାରା ପୁନଶ୍ଚ ଭୀମଙ୍କ ଅଭିମୁଖରୁ ଧାବମାନ ହେଲେ । ୧୧ । ଉଭୟପକ୍ଷ ଏବଂ ପରକୀୟ ସୈନ୍ୟବୃନ୍ଦ ତାହାଙ୍କର ଅସ୍ତ୍ରପାଣ୍ଡିତ୍ୟ ଓ ଯୁଦ୍ଧକୌଶଳମାନ ନିରୀକ୍ଷଣ କରି ଭୂରି ଭୂରି ପ୍ରଶଂସା କଲେ । ୧୨ । ତେତେବେଳେ ଯୁଧିଷ୍ଠିର ଆଶା ପ୍ରକାଶ କରୁଥିଲେ ସୁଦ୍ଧା ପାଣ୍ଡବ ସୈନ୍ୟଗଣ ଶଲ୍ୟଙ୍କ ଶରାଘାତରେ ପୀଡ଼ିତ ଓ ଅତିଶୟ କ୍ଷତବିକ୍ଷତ ହୋଇ ରଣସ୍ଥଳକୁ ପରିତ୍ୟାଗ ପୂର୍ବକ ଧାବମାନ ହେଲେ । ୧୩ । ଧର୍ମରାଜ ଯୁଧିଷ୍ଠିର ଶଲ୍ୟଙ୍କ ଦ୍ୱାରା ସ୍ୱକୀୟ ସୈନ୍ୟମାନଙ୍କୁ ବଧମାନ ହେଉ-ଥିବାର ଦେଖି ଅତିଶୟ କ୍ରୋଧାକ୍ରାନ୍ତ ହେଲେ । ୧୪ । 'ଜୟ ହେଉ ଅଥବା ମୃତ୍ୟୁ ହେଉ, ଅବଶ୍ୟ ଯୁଦ୍ଧ କରିବା ।' ଯୁଧିଷ୍ଠିର ନିଜ ବୁଦ୍ଧିରେ ଏହି କଥା ଆଲୋଚନା କରି ପୌରୁଷ ପ୍ରକାଶ ପୂର୍ବକ ଶଲ୍ୟଙ୍କୁ ଅତିଶୟ ପୀଡ଼ା ପ୍ରଦାନ କଲେ । ୧୫ ।

ତତ୍‌ସମୟରେ ସେ କୃଷ୍ଣଙ୍କୁ ଏବଂ ଭ୍ରାତୃମାନଙ୍କୁ ଆହ୍ୱାନ କରି କହିଲେ, "ହେ କୃଷ୍ଣ ! ହେ ଭ୍ରାତୃବୃନ୍ଦ ! ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଅନ୍ୟାନ୍ୟ ଯେଉଁ ନରପାଳଗଣ ମହାବଳ ପରାକ୍ରାନ୍ତ ହୋଇ ସୁଦ୍ଧା କୌରବମାନଙ୍କ ନିମିତ୍ତ ଯୁଦ୍ଧରେ ହତ ହୋଇ ଅଛନ୍ତି, ତୁମ୍ଭେମାନେ ପୌରୁଷ ଓ ଉତ୍ସାହ ପ୍ରକାଶ କରି ଭାଗ୍ୟ ଅନୁସାରେ ସେମାନଙ୍କ ସଂହାର ବିଷୟରେ କୃତକାର୍ଯ୍ୟ ହୋଇଅଛ । ୧୭ । ଏତେବେଳେ ଆମ୍ଭ ଅଂଶରେ ଏକମାତ୍ର ମହାରଥ ଶଲ୍ୟ କେବଳ ଅବଶିଷ୍ଟ ଅଛନ୍ତି । ଅତଏବ ଆଜି ଆମ୍ଭେ ଯୁଦ୍ଧରେ ସେହି ମଦ୍ରପତିଙ୍କୁ ଜିଣିବା ନିମିତ୍ତ ଇଚ୍ଛା କରିଅଛୁ । ୧୮ । ଏହି ବିଷୟରେ ଆମ୍ଭର ଯେଉଁ ଅଭିପ୍ରାୟ ଅଛି, ତାହା ସବୁ ତୁମ୍ଭମାନଙ୍କ ନିକଟରେ ବ୍ୟକ୍ତ କରୁଅଛୁ ।

"ବୀରବର ମାଦ୍ରୀପୁତ୍ର ନକୁଳ ଓ ସହଦେବ, ଯେଉଁ ଦୁହିଁଙ୍କୁ ଇନ୍ଦ୍ର ହେଲେ ସୁଦ୍ଧା ଯୁଦ୍ଧରେ ଜୟ କରି ନ ପାରନ୍ତି ଏବଂ ଯେଉଁ ଦୁହେଁ ବୀର-ସମ୍ମତ, ସାଧୁ, ମାନାର୍ହ ଓ ସତ୍ୟସନ୍ଧ, ସେହି ଦୁଇ ସହୋଦର ଆମ୍ଭର ଚକ୍ର-

ରକ୍ଷକ ହୋଇ କ୍ଷତ୍ରିୟ ଧର୍ମକୁ ପୁରସ୍କାର ପୂର୍ବକ ଆମ୍ଭ ନିମିତ୍ତ ମାତୁଳଙ୍କ ସଙ୍ଗେ ପ୍ରତିଯୁଦ୍ଧ କରନ୍ତୁ । ଶଲ୍ୟ ଆଜି ଆମ୍ଭଙ୍କୁ ବିନାଶ କରିବେ କିମ୍ବା ଆମ୍ଭେ ତାହାଙ୍କର ନିଧନ ସାଧନ କରିବୁଁ । ହେ ବୀର ପୁରୁଷଗଣ ! ସଂପ୍ରତି ତୁମ୍ଭ ସମସ୍ତଙ୍କର ମଙ୍ଗଳ ହେଉ ।

"ଆମ୍ଭେ ଯେଉଁସବୁ ଯଥାର୍ଥ କଥା କହିଲୁ, ତୁମ୍ଭେମାନେ ସମସ୍ତେ ତାହା ଶ୍ରବଣ କଲ । ଆମ୍ଭେ ଆଜି କ୍ଷତ୍ରିୟ ଧର୍ମାନୁସାରେ ମାତୁଳଙ୍କ ସଙ୍ଗେ ସଂଗ୍ରାମ କରିବୁ; ତହିଁରେ ଆମର ଜୟ ହେଉ ଅଥବା ପରାଜୟ ହେଉ । ଏତେବେଳେ ରଥଯୋଜକମାନେ ଅତି ଶୀଘ୍ର ଆମ୍ଭର ଅସ୍ତ୍ରଶସ୍ତ୍ର ସବୁ ଓ ଅନ୍ୟାନ୍ୟ ଉପକରଣମାନଙ୍କୁ ଶାସ୍ତ୍ର ଅନୁସାରେ ରଥ ମଧ୍ୟରେ ସୁସଜ୍ଜିତ କରନ୍ତୁ । ମହାବଳ ସାତ୍ୟକି ଆମ୍ଭର ଦକ୍ଷିଣ ଚକ୍ର ରକ୍ଷା କରନ୍ତୁ ଓ ଧୃଷ୍ଟଦ୍ୟୁମ୍ନ ଉତ୍ତର ଚକ୍ରର ରକ୍ଷଣ ନିମିତ୍ତ ନିଯୁକ୍ତ ହେଉନ୍ତୁ । ଧନଞ୍ଜୟ ଆମ୍ଭର ପୃଷ୍ଠରକ୍ଷକ ହେଉନ୍ତୁ ଓ ଶସ୍ତ୍ରଧାରୀ ଶ୍ରେଷ୍ଠ ଭୀମ ଆମ୍ଭର ଅଗ୍ରସର ହୁଅନ୍ତୁ । ଏହି ପ୍ରକାରେ ହେଲେ ଆମ୍ଭେ ଏହି ମହାଯୁଦ୍ଧରେ ଶଲ୍ୟଙ୍କ ଅପେକ୍ଷା ସର୍ବ ବିଷୟରେ ଅଧିକା ହେବୁ ।"

ନରପାଳଙ୍କ ହିତୈଷୀବୃନ୍ଦ ଏହିପରି ବାକ୍ୟ ଶ୍ରବଣ କରି ତାହାଙ୍କ ଆଦେଶାନୁସାରେ କର୍ମ କଲେ । ୨୬ । ତତ୍ପରେ ତେତେବେଳେ ରଣ-ସ୍ଥଳରେ ପାଞ୍ଚାଳ, ସୋମକ ଓ ମତ୍ସ୍ୟଦେଶୀୟ ସୈନ୍ୟମାନଙ୍କର ଅତିଶୟ ଆନନ୍ଦ ଜନ୍ମିଲା । ୨୭ । ତେତେବେଳେ ଧର୍ମରାଜ ସେହି ପ୍ରତିଜ୍ଞା କରି ଶଲ୍ୟଙ୍କ ଅଭିମୁଖକୁ ଗମନ କଲେ । ତତ୍ପରେ ପାଞ୍ଚାଳଗଣ ଶତ ଶତ ବାର ଶଙ୍ଖ ଭେରୀ ପ୍ରଭୃତି ନାନାବିଧ ବାଦ୍ୟଧ୍ୱନି ଏବଂ ସିଂହନାଦ କଲେ । ସେହି ହର୍ଷଯୁକ୍ତ ବୀରବୃନ୍ଦ ଅତି କ୍ରୋଧରେ ଶଲ୍ୟଙ୍କ ନିକଟକୁ ଧାବମାନ ହେଲେ । ପାଣ୍ଡବପକ୍ଷୀୟମାନେ ଆନନ୍ଦ ଧ୍ୱନି, ଗଜ, ଘଣ୍ଟାର ନିନାଦ, ଶଙ୍ଖସମୂହର ନିର୍ଘୋଷ ଓ ଘୋରତର ତୂର୍ଯ୍ୟ ଶବ୍ଦଦ୍ୱାରା ଭୂମଣ୍ଡଳକୁ ନିନାଦରେ ପରିପୂର୍ଣ୍ଣ କଲେ ।

ରାଜା ଦୁର୍ଯ୍ୟୋଧନ ଓ ବୀର୍ଯ୍ୟଶାଳୀ ଶଲ୍ୟ ଉଦୟଗିରି ଓ ଅସ୍ତଗିରି ପରି ମହାମେଘ ସଦୃଶ ସେହି ସୈନ୍ୟମାନଙ୍କର ଅଭିମୁଖୀନ ହେଲେ । ସମର-ଶ୍ଳାଘୀ ଶଲ୍ୟ ଶତ୍ରୁଦମନ ଯୁଧିଷ୍ଠିରଙ୍କ ଉପରେ ଇନ୍ଦ୍ରଦେବଙ୍କ ଜଳବୃଷ୍ଟିପରି ଅବିଶ୍ରାନ୍ତ ଶରବୃଷ୍ଟି କଲେ । କୁରୁରାଜା ଦୁର୍ଯ୍ୟୋଧନ ମଧ୍ୟ ଉତ୍କୃଷ୍ଟ କାର୍ମୁକ ଧାରଣପୂର୍ବକ ଦ୍ରୋଣାଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ବିବିଧ କୌଶଳ

ପ୍ରଦର୍ଶନପୂର୍ବକ ଶୀଘ୍ର ସୁନ୍ଦର ଓ ବଚିତ୍ର ଭାବରେ ବାଣ ବୃଷ୍ଟି କଲେ । ୩୪ । ସେ ରଣସ୍ଥଳରେ ବଚରଣ କରୁଥିବା ସମୟରେ କେହି ତାହାଙ୍କର ଛିଦ୍ର ଅନ୍ୱେଷଣ କରି ପାରିଲେ ନାହିଁ । ସେହି ବୀରଦ୍ୱୟ ଆମିଷାଭିଳାଷୀ ପରାକ୍ରମଶାଳୀ ଦୁଇଗୋଟି ଶାର୍ଦ୍ଦୂଳ ପରି ବବଧ ବାଣ ଦ୍ୱାରା ପରସ୍ପରକୁ କ୍ଷତବକ୍ଷତ କଲେ । ଭୀମସେନ ଆପଣଙ୍କ ପୁତ୍ର ସମରମତ୍ତ ଦୁର୍ଯ୍ୟୋଧନଙ୍କ ସଙ୍ଗେ ସଙ୍ଗତ ହେଲେ । ୩୬ । ଧୃଷ୍ଟଦ୍ୟୁମ୍ନ, ସାତ୍ୟକ, ନକୁଳ ଓ ସହଦେବ ଚତୁର୍ଦ୍ଦିଗରେ ଶକୁନ ପ୍ରଭୃତ ବୀରମାନଙ୍କୁ ଆକ୍ରମଣ କଲେ । ୩୭ ।

ହେ ମହାରାଜ ! ତେତେବେଳେ ଆପଣଙ୍କ କୁମନ୍ତ୍ରଣାରେ ସପକ୍ଷ ଓ ବପକ୍ଷର ଜୟାଭିଳାଷୀ ବୀରଗଣ ମଧ୍ୟରେ ପୁନଶ୍ଚ ତୁମୁଳ ଯୁଦ୍ଧ ହେଲା । ୩୮ । ତହୁଁରେ ଦୁର୍ଯ୍ୟୋଧନ ଦୃଢ଼ତର ଶରଦ୍ୱାରା ଭୀମଙ୍କ ସୁବର୍ଣ୍ଣବଭୂଷିତ ଧ୍ୱଜକୁ କର୍ତ୍ତନ କଲେ । ହେ ମାନଦ ! ଭୀମଙ୍କ ରୁଚିରଦର୍ଶନ ସେହି ଉତ୍କୃଷ୍ଟ ଧ୍ୱଜ କଙ୍କିଣିମାଳା ସହିତ ଯୁଦ୍ଧରେ ପତିତ ହେଲା । ୪୦ । ହେ ରାଜନ୍ ! ଦୁର୍ଯ୍ୟୋଧନ ଭୀମଙ୍କର ଗଜରାଜ ଶୁଣ୍ଡ ସଦୃଶ ବଚିତ୍ର ଧନୁକୁ ସୁତୀକ୍ଷ୍ଣ କ୍ଷୁରାସ୍ତ୍ରଦ୍ୱାରା ପୁନଶ୍ଚ ଛେଦନ କଲେ । ୪୧ । ତେତେବେଳେ ଭୀମ ଛିନ୍ନ-ଧନୁର୍ଦ୍ଧର ହୋଇ ଅତି କ୍ରୋଧରେ ବକ୍ରମ ପ୍ରକାଶପୂର୍ବକ ରଥ ଶକ୍ତିଦ୍ୱାରା ଭବଦୀୟ ପୁତ୍ରଙ୍କ ବକ୍ଷସ୍ଥଳକୁ ଭେଦ କଲାରୁ ସେ ରଥ ଉପରେ ପଡ଼ିଲେ । ୪୨ । ଦୁର୍ଯ୍ୟୋଧନ ମୂର୍ଚ୍ଛିତ ହେଲାରୁ ଭୀମ କ୍ଷୁରପ ଅସ୍ତ୍ରଦ୍ୱାରା ତାହାଙ୍କ ସାରଥିଙ୍କ ମସ୍ତକକୁ କଳେବରରୁ ପୃଥକ୍ ରୂପେ କର୍ତ୍ତନ କଲେ । ୪୩ ।

ହେ ମହାରାଜ ! ସାରଥି ହତ ହେଲାରୁ ଅଶ୍ୱବୃନ୍ଦ ସାରଥିଶୂନ୍ୟ ରଥକୁ ନେଇ ଚତୁର୍ଦ୍ଦିଗରେ ଧାବିତ ହେଲେ । ତହୁଁରେ ଯୁଦ୍ଧ ମଧ୍ୟରେ ହାହାକାର ଧ୍ୱନ ଉଠିଲା । ମହାରଥ ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ କୃତବର୍ମା ଏମାନେ ଭବଦୀୟ ପୁତ୍ର ଦର୍ଯ୍ୟୋଧନଙ୍କ ପରିତ୍ରାଣ ନମିତ୍ତ ଧାବିତ ହେଲେ । ୪୫ । ତତ୍ ସମୟରେ ସୈନ୍ୟବୃନ୍ଦ ବଚଳିତ ହେଲାରୁ ରାଜାଙ୍କ ଅନୁଚରକୁଳ ତ୍ରସ୍ତ ହେଲେ । ଗାଣ୍ଡିବଧାରୀ ଅର୍ଜୁନ ଶରାସନ ବସ୍ତାରଣ ପୂର୍ବକ ସେମାନଙ୍କୁ ଶରଦ୍ୱାରା ଆହତ କଲେ । ୪୬ ।

ରାଜା ଯୁଧିଷ୍ଠିର କ୍ରୋଧାକ୍ରାନ୍ତ ହୋଇ ସ୍ୱୟଂ ଶ୍ୱେତବର୍ଣ୍ଣ ଘନ ସଦୃଶ ବେଗଗାମୀ ଅଶ୍ୱମାନଙ୍କୁ ଚଳାଇ ଶଲ୍ୟଙ୍କ ନକଟକୁ ଧାବମାନ ହେଲେ । ୪୭ । ଆମ୍ଭେମାନେ ସମସ୍ତେ ଯୁଧିଷ୍ଠିରଙ୍କ ଅତି ଅଦ୍ଭୁତ କାର୍ଯ୍ୟ

ଦେଖିଲୁଁ । ଯେଉଁ ଯୁଧିଷ୍ଠିର ସର୍ବଦା ଧୀର ଓ ଶାନ୍ତ ସ୍ୱଭାବ ଥିଲେ, ସେତେବେଳେ ସେ ଦାରୁଣ ଭାବକୁ ଧାରଣ କଲେ । ୪୮ । କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ସେତେବେଳେ କ୍ରୋଧରେ କମ୍ପମାନ ହୋଇ ନୟନଦ୍ୱୟ ଘୂର୍ଣ୍ଣନ କରି ଶତ ସହସ୍ର ଯୋଦ୍ଧାମାନଙ୍କୁ ଶାଣିତ ଶରଦ୍ୱାରା ଛେଦନ କଲେ । ୪୯ । ପାଣ୍ଡବଶ୍ରେଷ୍ଠ ଯୁଧିଷ୍ଠିର ଯେଉଁ ଯେଉଁ ସୈନ୍ୟମାନଙ୍କୁ ଆକ୍ରମଣ କଲେ, ଉତ୍କୃଷ୍ଟ ବଜ୍ରଦ୍ୱାରା ପର୍ବତ ବିଦୀର୍ଣ୍ଣ ହେଲାପରି ଶରଦ୍ୱାରା ସେହି ସମସ୍ତ ସୈନ୍ୟମାନଙ୍କୁ ନିପାତିତ କଲେ । ୫୦ ।

ସେ ଅନେକ ଅନେକ ରଥୀ, ଅଶ୍ୱ, ସାରଥି, ଧ୍ୱଜ ଓ ରଥମାନଙ୍କୁ ନିପାତିତ କରି ମେଘମାଳା ମଧ୍ୟରେ ପବନ ସଦୃଶ ଏକାକୀ ସୈନ୍ୟମଣ୍ଡଳ ମଧ୍ୟରେ କ୍ରୀଡ଼ା କଲେ । ୫୧ । ରୁଦ୍ରଦେବ କ୍ରୁଦ୍ଧ ହୋଇ ଯେଉଁପରି ପଶୁମାନଙ୍କୁ ସଂହାର କରନ୍ତି, ସେହିପରି ସେ ଅଶ୍ୱ, ଅଶ୍ୱାରୋହୀ ଓ ସହସ୍ର ସହସ୍ର ପଦାତିକମାନଙ୍କୁ ଯୁଦ୍ଧରେ ବିନଷ୍ଟ କଲେ । ୫୨ । ଧର୍ମରାଜ ଏହିପରି ଶରବୃଷ୍ଟିଦ୍ୱାରା ସମର ସ୍ଥଳକୁ ଶୂନ୍ୟ କରି ପରିଶେଷରେ ଶଲ୍ୟଙ୍କ ନିକଟକୁ ଧାବିତ ହେଲେ ଏବଂ "ହେ ଶଲ୍ୟ ! ତୁମ୍ଭେ ରହ ରହ" କେବଳ ଏହି ବାକ୍ୟ କହିଲେ । ୫୩ । ଯୁଦ୍ଧ ସ୍ଥଳରେ ସେହି ଭୀମକର୍ମାଙ୍କ ତାଦୃଶ ଚରିତ ଦର୍ଶନ କରି ଆପଣଙ୍କ ସୈନ୍ୟମାନେ ବିଶେଷ ତ୍ରସ୍ତ ହେଲେ । କେବଳ ଏକାକୀ ଶଲ୍ୟ ଯୁଧିଷ୍ଠିରଙ୍କ ନିକଟକୁ ଧାବମାନ ହେଲେ । ୫୪ ।

ତତ୍ପରେ ସେହି ଦୁହେଁ ରୋଷଯୁକ୍ତ ହୋଇ ଶଙ୍ଖଧ୍ୱନିପୂର୍ବକ ପରସ୍ପରଙ୍କୁ ଆହ୍ୱାନ ଓ ବାରମ୍ବାର ଭର୍ତ୍ସନା କରି ସମାଗତ ହେଲେ । ୫୫ । ସେତେବେଳେ ଶଲ୍ୟ ଶରବୃଷ୍ଟିଦ୍ୱାରା ଯୁଧିଷ୍ଠିରଙ୍କୁ ଓ ଯୁଧିଷ୍ଠିର ମଧ୍ୟ ବାଣବୃଷ୍ଟିଦ୍ୱାରା ଶଲ୍ୟଙ୍କୁ ପୀଡ଼ା ଦେଲେ । ୫୬ । ମହାରାଜ ! ସେତେବେଳେ ସମର ମଧ୍ୟରେ ଶୂରବର ଶଲ୍ୟ ଓ ଯୁଧିଷ୍ଠିରଙ୍କ କଳେବରରୁ କଙ୍କପତ୍ର ଶରଦ୍ୱାରା ରୁଧିର-ଧାରା କ୍ଷରିତ ହେବାରୁ ସେହି ଦୁହେଁ ବନ ମଧ୍ୟସ୍ଥିତ ଦେଦୀପ୍ୟମାନ ପୁଷ୍ପିତ କିଂଶୁକ ଓ ଶାଳ୍ମଳୀ ବୃକ୍ଷପରି ଶୋଭା ପାଇଲେ ଏବଂ ରଣଦୁର୍ମଦ ସେହି ମହାତ୍ମା ଦୁହେଁ ସିଂହନାଦ କଲେ । ୫୮ । ସୈନ୍ୟବୃନ୍ଦ ତାହା ଦେଖି ଉଭୟରେ ଜୟ ଓ ପରାଜୟ ବିଷୟରେ କିଛି ନିଷ୍ପତ୍ତି କରି ପାରିଲେ ନାହିଁ । ଆଜି ଯୁଧିଷ୍ଠିର ଶଲ୍ୟଙ୍କୁ ସଂହାର କରି ପୃଥିବୀ ଭୋଗ କରିବେ ଅଥବା ଶଲ୍ୟ ପାଣ୍ଡବଙ୍କୁ ବିନଷ୍ଟ କରି ଦୁର୍ଯ୍ୟୋଧନଙ୍କୁ ପୃଥିବୀ ଦେବେ, ସେତେବେଳେ

ସେମାନଙ୍କ ଅନ୍ତଃକରଣରେ ଏହି ବିଷୟରେ କିଛି ବିଶ୍ମୟ ହୋଇ ପାରିଲା ନାହିଁ । ୬୦ । ଧର୍ମରାଜ ଯୁଦ୍ଧ କଲାରୁ ସମସ୍ତେ ତାହାଙ୍କର ଅନୁକୂଳ ହେଲେ ।

ତତ୍ପରେ ଶଲ୍ୟ ଯୁଧିଷ୍ଠିରଙ୍କୁ ଶତସଂଖ୍ୟକ ଶର ନିକ୍ଷେପ କଲେ ଏବଂ ଶାଣିତାଗ୍ରଦ୍ୱାରା ତଦୀୟ ଶରାସନ ଛେଦନ କଲେ । ଯୁଧିଷ୍ଠିର ଅନ୍ୟ ଶରାସନ ଗ୍ରହଣପୂର୍ବକ ତିନିଗୋଟି ଶରଦ୍ୱାରା ଶଲ୍ୟଙ୍କୁ ପ୍ରହାର କଲେ ଓ କ୍ଷୁରାସ୍ତ୍ରଦ୍ୱାରା ତାହାଙ୍କ ଧନୁ ଛେଦ କଲେ । ପରିଶେଷରେ ନତପର୍ବ ଶରବୃନ୍ଦଦ୍ୱାରା ତଦୀୟ ଅଶ୍ୱଚତୁଷ୍ଟୟଙ୍କୁ, ଅନନ୍ତର ଶାଣିତାଗ୍ର ଦୁଇ ଦୁଇ ଶରଦ୍ୱାରା ସାରଥି ଓ ପୃଷ୍ଠରକ୍ଷକଙ୍କୁ ନିହତ କଲେ । ହେ ଶତ୍ରୁଦଳନ ! ତତ୍ପରେ ପୀତବର୍ଣ୍ଣ ଶାଣିତ ଦୀପ୍ୟମାନ ଭଲ୍ଲ ଅସ୍ତ୍ରଦ୍ୱାରା ସମ୍ମୁଖବର୍ତ୍ତୀ ଶଲ୍ୟଙ୍କ ଧ୍ୱଜକୁ କର୍ତ୍ତନ କଲେ । ଏଥି ଉତ୍ତାରେ ଦୁର୍ଯ୍ୟୋଧନଙ୍କ ସୈନ୍ୟବୃନ୍ଦ ସମସ୍ତେ ଛିନ୍ନ ଭିନ୍ନ ହେଲେ । ୬୫ । ଅବସର ମଧ୍ୟରେ ଅଶ୍ୱତ୍ଥାମା ଶଲ୍ୟଙ୍କର ତାଦୃଶ ଦଶା ଦେଖି ତାହାଙ୍କ ନିକଟକୁ ଗଲେ ଏବଂ ତାହାଙ୍କୁ ନିଜ ରଥରେ ଆରୋପିତ କରାଇ ସତ୍ୱର ହୋଇ ସେଠାରୁ ପ୍ରସ୍ଥାନ କଲେ । ୬୬ । ସେହି ଉଭୟଙ୍କର ଗମନର ମୁହୂର୍ତ୍ତିକ ଉତ୍ତାରେ ଯୁଧିଷ୍ଠିର ସିଂହନାଦ କଲେ । ଶଲ୍ୟ ଯଥାବିଧାନରେ ସୁସଜ୍ଜିତ ଯନ୍ତ୍ରର ଉପକରଣଯୁକ୍ତ ମହାମେଘ ନିନାଦକାରୀ ଶତ୍ରୁକୁଳର ଲୋମହର୍ଷଣ ଅନ୍ୟ ଏକ ରଥରେ ଆରୋହଣ କଲେ । ୬୮ ।

---

## ସପ୍ତଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ଶଲ୍ୟ ଅନ୍ୟ ଏକ ଦୃଢ଼ତର ବେଗଶାଳୀ ଶରାସନ ଗ୍ରହଣପୂର୍ବକ ଯୁଧିଷ୍ଠିରଙ୍କୁ ବିଦ୍ଧ କରି ସିଂହସଦୃଶ ନାଦ କଲେ । ୧ । ତତ୍ପରେ ସେହି ଅସୀମ ବୁଦ୍ଧିଶାଳୀ କ୍ଷତ୍ରିୟବର ଶଲ୍ୟ ବୃଷ୍ଟିଯୁକ୍ତ ଜଳଧର ପରି କ୍ଷତ୍ରିୟମାନଙ୍କ ଉପରେ ଅବିଶ୍ରାନ୍ତ ଭାବରେ ବାଣବୃଷ୍ଟି କଲେ । ୨ । ସେ ସାତ୍ୟକଙ୍କୁ ଦଶବାଣରେ, ଭୀମ ଓ ସହଦେବଙ୍କୁ ତିନି ତିନି ବାଣରେ ବିଦ୍ଧ କରି ଯୁଧିଷ୍ଠିରଙ୍କୁ ପୀଡ଼ା ଦେଲେ । ୩ । ଉଲ୍‌କା-ରାଶିଦ୍ୱାରା ଯେଉଁପରି ଗଜଯୂଥ ପୀଡ଼ିତ ହୁଅନ୍ତି, ସେହିପରି ଶଲ୍ୟଙ୍କ ବିଶିଖ-ବୃଷ୍ଟିଦ୍ୱାରା ସେମାନେ ଓ ଅନ୍ୟାନ୍ୟ ଅଶ୍ୱ, ରଥ, ଗଜ ଓ ମହାଧନୁର୍ଦ୍ଧରଗଣ

ପୀଡ଼ିତ ହେଲେ । ୪ । ରଥୀବୀର ଶଲ୍ୟ ଗଜ ଓ ଗଜାରୋହୀ, ଅଶ୍ୱ ଓ ଅଶ୍ୱାରୋହୀ ଏବଂ ରଥ ସହିତ ରଥୀମାନଙ୍କୁ ନିହତ କଲେ । ୫ । ସେ ଯୋଦ୍ଧାମାନଙ୍କର ଆୟୁଧଯୁକ୍ତ ବାହୁସମୂହ ରଥର ଧ୍ୱଜବୃନ୍ଦ ବିଚ୍ଛିନ୍ନ କଲାରୁ ତାହାଦ୍ୱାରା ଯୁଦ୍ଧଭୂମି କୁଶରେ ପରିପୂର୍ଣ୍ଣ ଯଜ୍ଞବେଦୀ ପରି ସୁଶୋଭିତ ହେଲା ।

ଶଲ୍ୟ ଯମଦେବ ସଦୃଶ ସେହିରୂପେ ଶତ୍ରୁ ସୈନ୍ୟମାନଙ୍କୁ ପ୍ରହାର କଲାରୁ ପାଣ୍ଡବ, ପାଞ୍ଚାଳ ଓ ସୋମକ ସୈନ୍ୟମାନେ ଅତିଶୟ କ୍ରୋଧଯୁକ୍ତ ହୋଇ ତାହାଙ୍କୁ ପରିବେଷ୍ଟନ କଲେ । ୭ । ଭୀମସେନ, ସାତ୍ୟକି, ପୁରୁଷସିଂହ ନକୁଳ ଓ ସହଦେବ ଶଲ୍ୟଙ୍କୁ ମହାବଳ ରାଜାଙ୍କ ସହିତ ସମାଗତ ହୋଇଥିବାର ଦେଖି ପରସ୍ପର ଆହ୍ୱାନ କଲେ । ୮ । ହେ ନୃପବର ! ତତ୍ପରେ ସେହି ସମସ୍ତ ବୀରମାନେ ଯୁଦ୍ଧରେ ନରବୀର ଯୋଦ୍ଧା-ଶ୍ରେଷ୍ଠ ଶଲ୍ୟଙ୍କର ନିକଟବର୍ତ୍ତୀ ହୋଇ ଉଗ୍ରବେଗ ଶରନିକର ଦ୍ୱାରା ତାହାଙ୍କୁ ଆଚ୍ଛାଦନ ପୂର୍ବକ ଆଘାତ କଲେ । ରାଜା ଯୁଧିଷ୍ଠିର, ଭୀମସେନ, ସାତ୍ୟକି, ନକୁଳ ଓ ସହଦେବଙ୍କ ଦ୍ୱାରା ପରୀକ୍ଷିତ ହୋଇ ଶଲ୍ୟଙ୍କ ବକ୍ଷ-ସ୍ଥଳରେ ଉଦ୍‌ବେଗ ବାଣସମୂହ ଦ୍ୱାରା ଆଘାତ କଲେ । ୧୦ ।

ତତ୍ପରେ ଭବଦୀୟ ସୈନ୍ୟବୃନ୍ଦ ଯୁଦ୍ଧରେ ଶଲ୍ୟଙ୍କୁ ଶର ଦ୍ୱାରା ଆର୍ତ୍ତ ହୋଇଥିବାର ଦେଖି ଦୁର୍ଯ୍ୟୋଧନଙ୍କ ଆଦେଶାନୁସାରେ ଚତୁର୍ଦ୍ଦିଗରୁ ଆସି ତାହାଙ୍କ ପରିବେଷ୍ଟନ କଲେ । ୧୧ । ହେ ମହାରାଜ ! ତହିଁ ଉତ୍ତାରେ ରଣକ୍ଷେତ୍ରରେ ଶଲ୍ୟ ଯୁଧିଷ୍ଠିରଙ୍କୁ ସପ୍ତଶର ଦ୍ୱାରା ଶୀଘ୍ର ବିଦ୍ଧ କଲେ ଓ ମହାତ୍ମା ଯୁଧିଷ୍ଠିର ମଧ୍ୟ ସେହି ତୁମୁଳ ଯୁଦ୍ଧ ସମୟରେ ଶଲ୍ୟଙ୍କୁ ନବବାଣରେ ବିଦ୍ଧ କଲେ । ୧୨ । ମହାରଥ ମଦ୍ରାଧିପତି ଓ ଯୁଧିଷ୍ଠିର ସମରରେ ଆକର୍ଣ୍ଣ ପୂର୍ଣ୍ଣ ଶାଣିତ ତୈଳଧୌତ ଶରନିକର ଦ୍ୱାରା ପରସ୍ପରକୁ ଆଚ୍ଛାଦିତ କଲେ । ୧୩ । ଯୁଦ୍ଧରେ ବୈରିବୃନ୍ଦର ଅଜେୟ, ମହାବଳ ପରାକ୍ରାନ୍ତ ମହାରଥ ସେହି ନୃପଶ୍ରେଷ୍ଠ ଦୁହେଁ ପରସ୍ପର ଛିଦ୍ର ଅନ୍ୱେଷଣ କରି ନିରନ୍ତର ନିକ୍ଷିପ୍ତ ଶରଦ୍ୱାରା ପରସ୍ପରକୁ ବିଦ୍ଧ କଲେ । ୧୪ । ପାଣ୍ଡବଶ୍ରେଷ୍ଠ ଓ ଶଲ୍ୟ ଏ ମହାତ୍ମା ଦୁହିଙ୍କର ନିରନ୍ତର ପରସ୍ପର ବାଣବୃଷ୍ଟି ହେଲାରୁ ତେତେବେଳେ ଇନ୍ଦ୍ରଙ୍କ ବଜ୍ରନିର୍ଘୋଷ ସଦୃଶ ଧନୁ ଓ ଗୁଣର ଅତି ଭୟଙ୍କର ନିନାଦ ଶ୍ରୁତିଗୋଚର ହେଲା । ୧୫ । ମହାରଣ୍ୟ ମଧ୍ୟରେ ଆମିଷଲୋଭୀ ଦୁଇଗୋଟି ଶାର୍ଦ୍ଦୁଳଶିଶୁ ପରି ଦୁହେଁ ସମରାଙ୍ଗଣ ମଧ୍ୟରେ

ବିଚରଣ କଲେ ଓ ରଣମଧ୍ୟରେ ଦର୍ପିତ ହୋଇ ଦୁଇଗୋଟି ମତ୍ତଗଜ ସଦୃଶ ପରସ୍ପରକୁ କ୍ଷତବିକ୍ଷତ କଲେ । ୧୬ ।

ତଦନନ୍ତର ଅତିବେଗଶାଳୀ ମହାତ୍ମା ଶଲ୍ୟ ସୂର୍ଯ୍ୟ ଓ ଅଗ୍ନି ସଦୃଶ ପ୍ରଭାଶାଳୀ ବାଣଦ୍ୱାରା ସହସା ଉଭୟଙ୍କର ବଳଯୁକ୍ତ ବୀର ଯୁଧିଷ୍ଠିରଙ୍କ ହୃଦୟକୁ ବିଦ୍ଧ କଲେ । ୧୭ । ହେ ରାଜନ୍ କୁରୁଶ୍ରେଷ୍ଠ ! ମହାତ୍ମା ଯୁଧିଷ୍ଠିର ସେହି ଅତି ଉତ୍କୃଷ୍ଟ ସାୟକରେ ଗାଢ଼ ରୂପେ ବିଦ୍ଧ ହୋଇ ତତ୍କ୍ଷଣାତ୍ ଶଲ୍ୟଙ୍କୁ ଗୋଟିଏ ଦୃଢ଼ତର ଶରଦ୍ୱାରା ଆହତ କରି ଅତିଶୟ ଆହ୍ଲାଦିତ ହେଲେ । ୧୮ । ତତ୍ପରେ ଇନ୍ଦ୍ରଦେବଙ୍କ ସମାନ ପ୍ରଭାବଶାଳୀ ନୃପବର ଶଲ୍ୟ ମୁହୂର୍ତ୍ତକ ମଧ୍ୟରେ ଶକ୍ତି ଲାଭ କରି କ୍ରୋଧରେ ଆରକ୍ତନେତ୍ର ହୋଇ ଅତି ଶୀଘ୍ର ଶତସଂଖ୍ୟକ ଶର ଦ୍ୱାରା ଯୁଧିଷ୍ଠିରଙ୍କୁ ଆଘାତ କଲେ । ୧୯ ।

ପରିଶେଷରେ ମହାତ୍ମା ଧର୍ମନନ୍ଦନ କ୍ରୋଧଯୁକ୍ତ ହୋଇ ଅବିଳମ୍ବରେ ନବଗୋଟି ବାଣ ସନ୍ଧାନ କରି ତାହାଦ୍ୱାରା ଶଲ୍ୟଙ୍କ ବକ୍ଷସ୍ଥଳ ଓ ସୁବର୍ଣ୍ଣମୟ କବଚ ଭେଦ କରି ଅତି ଶୀଘ୍ର ଛଅ ବାଣ ଦ୍ୱାରା ତାହାଙ୍କୁ ବିଦ୍ଧ କଲେ । ସେତେବେଳେ ଶଲ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ଶରାସନ ଆକର୍ଷଣ ପୂର୍ବକ ବାଣ ବୃଷ୍ଟି କରି ଦୁଇଗୋଟି କ୍ଷୁର ଅସ୍ତ୍ରଦ୍ୱାରା କୁରୁବର ଯୁଧିଷ୍ଠିରଙ୍କ ଶରାସନ ଛେଦନ କଲେ । ୨୧ ।

ତତ୍ପରେ ଇନ୍ଦ୍ରଦେବ ଯେଉଁପରି ନମୁଚି ଅସୁରକୁ ବାଣଦ୍ୱାରା ବିଦ୍ଧ କରିଥିଲେ, ତଦ୍‌ବତ୍ ଯୁଧିଷ୍ଠିର ଅନ୍ୟ ଏକ ନୂତନ ଶରାସନ ଗ୍ରହଣପୂର୍ବକ ଶାଣିତାଗ୍ର ଶରନିକର ଦ୍ୱାରା ଶଲ୍ୟଙ୍କୁ ବିଦ୍ଧ କଲେ । ୨୨ । ମହାତ୍ମା ଶଲ୍ୟ ନଅଗୋଟି ବାଣଦ୍ୱାରା ରାଜା ଯୁଧିଷ୍ଠିର ଓ ଭୀମଙ୍କ ସୁବର୍ଣ୍ଣନିର୍ମିତ ବିଚିତ୍ର କବଚଦ୍ୱୟକୁ ଛେଦନପୂର୍ବକ ବାହୁଯୁଗଳକୁ ବିଦାରଣ କଲେ । ୨୩ । ପରିଶେଷରେ ସୂର୍ଯ୍ୟ ଓ ଅଗ୍ନି ସଦୃଶ ଜାଜ୍ୱଲ୍ୟମାନ ଅନ୍ୟ ଏକଗୋଟି କ୍ଷୁର ବାଣଦ୍ୱାରା ଯୁଧିଷ୍ଠିରଙ୍କ ଶରାସନ ଛେଦନ କଲେ । କୃପାଚାର୍ଯ୍ୟ ଛଅଗୋଟି ସାୟକ ଦ୍ୱାରା ତାହାଙ୍କ ସାରଥିଙ୍କୁ ନିପାତ କରି ତାହାଙ୍କ ଅଭିମୁଖକୁ ଧାବିତ ହେଲେ । ୨୪ । ମହାତ୍ମା ମଦ୍ରପତି ଶଲ୍ୟ ଶରଚତୁଷ୍ଟୟ ଦ୍ୱାରା ଧର୍ମପୁତ୍ର ରାଜା ଯୁଧିଷ୍ଠିରଙ୍କୁ ନିହତ କରି କ୍ରମେ କ୍ରମେ ତାହାଙ୍କ ସୈନ୍ୟ କ୍ଷୟ କଲେ । ୨୫ ।

ରାଜାଙ୍କର ତାଦୃଶ ଅବସ୍ଥା ହେଲାରୁ, ମହାତ୍ମା ଭୀମ ବେଗଶୀଳ ବାଣଦ୍ୱାରା ଅତି ସତ୍ୱର ଶଲ୍ୟଙ୍କ ଶରାସନ ଛେଦନପୂର୍ବକ ତାହାଙ୍କୁ ଦୁଇ

ବାଣରେ ଅତ୍ୟନ୍ତ ବିଦ୍ଧ କଲେ । ୨୬ । ତତ୍ପରେ କ୍ରୋଧଯୁକ୍ତ ବୃକୋଦର ଅନ୍ୟ ଶରଦ୍ୱାରା ଶଲ୍ୟଙ୍କ ସାରଥିର କବଚବୃତ ଦେହରୁ ମସ୍ତକକୁ ପୃଥକ୍ ରୂପେ କର୍ତ୍ତନ କଲେ ଏବଂ ଅବିଳମ୍ବରେ ଅଶ୍ୱଚତୁଷ୍ଟୟକୁ ନିହତ କଲେ । ୨୭ । ସମସ୍ତ ଧନୁର୍ଦ୍ଧର ବୀରମାନଙ୍କ ମଧ୍ୟରେ ଅଗ୍ରଗଣନୀୟ ଭୀମ ଓ ସହଦେବ ସମରାଙ୍ଗଣରେ ଏକାକୀ ବିଚରଣକାରୀ ଶଲ୍ୟଙ୍କୁ ଶତସଂଖ୍ୟକ ଶରଦ୍ୱାରା ଆଚ୍ଛନ୍ନ କଲେ । ୨୮ । ଶଲ୍ୟ ସେହି ଶରସମୂହରେ ମୋହିତ ହେଲାରୁ ଭୀମ ତାହାଙ୍କ କବଚକୁ ଛେଦନ କଲେ ।

ତେତେବେଳେ ଶଲ୍ୟ ବୃକୋଦରଙ୍କ ଦ୍ୱାରା କବଚହୀନ ହୋଇ ସହସ୍ର ତାରାଯୁକ୍ତ ବର୍ମ ଓ ଖଡ୍‌ଗ ଧାରଣପୂର୍ବକ ରଥରୁ ଓହ୍ଲାଇ କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କ ନିକଟକୁ ଧାବିତ ହେଲେ । ସେହି ଭୟଙ୍କର ବଳଶାଳୀ ଶଲ୍ୟ ନକୁଳଙ୍କ ରଥର ଇଷା ଛେଦନପୂର୍ବକ ଯୁଧିଷ୍ଠିରଙ୍କ ସନ୍ନିଧିଗାମୀ ହେଲେ । ୩୦ । ତଦନନ୍ତର ଶଲ୍ୟ କ୍ରୋଧଯୁକ୍ତ ଯମଦେବଙ୍କ ସଦୃଶ ଆଗମନ କରୁଥିବାର ଦେଖି ଧୃଷ୍ଟଦ୍ୟୁମ୍ନ, ଦ୍ରୌପଦୀଙ୍କ ପୁତ୍ରବୃନ୍ଦ, ଶିଖଣ୍ଡୀ ଓ ସାତ୍ୟକି ହଠାତ୍ ଆସି ସେଠାରେ ଉପସ୍ଥିତ ହେଲେ । ୩୧ । ଏହା ଉତ୍ତାରେ ମହାତ୍ମା ଭୀମ ଦଶସଂଖ୍ୟକ ଶରରେ ତାହାଙ୍କର ସେହି ଉତ୍କୃଷ୍ଟ ବର୍ମକୁ ଛେଦନ କଲେ ଏବଂ ଭବଦୀୟ ସୈନ୍ୟ ମଧ୍ୟରେ ହର୍ଷନାଦ କରି ଭଲ୍ଲ ଦ୍ୱାରା ଶଲ୍ୟଙ୍କ ମୁଷ୍ଟିମଧ୍ୟରେ ଖଡ୍‌ଗକୁ ଛେଦନ କଲେ । ୩୨ । ପାଣ୍ଡବପକ୍ଷୀୟ ପ୍ରଧାନ ପ୍ରଧାନ ରଥିବୃନ୍ଦ ଭୀମସେନଙ୍କ ସେହି କାର୍ଯ୍ୟକୁ ଦର୍ଶନ କରି ଆହ୍ଲାଦିତ ହେଲେ ଓ ସେମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ର ସଦୃଶ ଶଙ୍ଖଧ୍ୱନି କଲେ । ୩୩ । ଆପଣଙ୍କ ସୁରକ୍ଷିତ ସୈନ୍ୟସମୂହ ସେହି ଭୀଷଣ ଶବ୍ଦରେ ବିଷଣ୍ଣ ଖେଦପ୍ରାପ୍ତ ସ୍ୱେଦଯୁକ୍ତ ଓ ରକ୍ତାକ୍ତ କଳେବର ହୋଇ ମୂର୍ଚ୍ଛିତ ହେଲା-ପରି ଜଣାଗଲେ । ୩୪ ।

ତଦନନ୍ତର ଶଲ୍ୟ ଭୀମ ପ୍ରଭୃତି ପାଣ୍ଡବୀୟ ପ୍ରଧାନ ପ୍ରଧାନ ଯୋଦ୍ଧା-ମାନଙ୍କ ଦ୍ୱାରା କ୍ଷତବିକ୍ଷତ ହୋଇ ମୃଗ ଅନ୍ୱେଷଣ ବିଷୟରେ ତ୍ୱରାଯୁକ୍ତ ସିଂହ ପରି ହଠାତ୍ ଯୁଧିଷ୍ଠିରଙ୍କ ସମ୍ମୁଖୀନ ହେଲେ । ୩୫ । ତେତେବେଳେ ଯୁଧିଷ୍ଠିରଙ୍କ ଅଶ୍ୱ ଓ ସାରଥି ନିହତ ହୋଇଥିଲେ । ସେହି ହେତୁରୁ ସେ ମଦ୍ରପତିଙ୍କୁ ଦେଖି କ୍ରୋଧରେ ପ୍ରଜ୍ୱଳିତ ଅଗ୍ନି ସଦୃଶ ହୋଇ ତତ୍‌କ୍ଷଣାତ୍ ତାହାଙ୍କୁ ସୈନ୍ୟମାନଙ୍କ ଦ୍ୱାରା ଆକ୍ରମଣ କଲେ । "ହେ ଯୁଧିଷ୍ଠିର ! ତୁମ୍ଭେ ଶଲ୍ୟଙ୍କୁ ବଧ କରିବ" ଗୋବିନ୍ଦଙ୍କର ଏହି ପୂର୍ବ ବାକ୍ୟ ସ୍ମରଣ କରି

ଯୁଧିଷ୍ଠିର ସାରଥିହୀନ ଅଶ୍ୱବିହୀନ ରଥରେ ବସି ଶକ୍ତି ଗ୍ରହଣ କରିବାକୁ ଇଚ୍ଛୁକ ହୋଇ ଶଲ୍ୟଙ୍କ ବଧ ନିମିତ୍ତ ମନଯୋଗ କଲେ । ୩୭ । ଯୁଧିଷ୍ଠିର ମହାତ୍ମା ଶଲ୍ୟଙ୍କର ତାଦୃଶ କାର୍ଯ୍ୟ ଦେଖି ଓ ତାହାଙ୍କୁ ଆପଣାର ଅବଶିଷ୍ଟ ଭାଗ ବୋଲି ଆଲୋଚନା କରି ତାହାଙ୍କ ବଧ ବିଷୟରେ ଯତ୍ନଶୀଳ ହେଲେ ଓ କୃଷ୍ଣ ଯାହା ସବୁ କହିଥିଲେ, ତାହା କଲେ । ୩୮ ।

ସେ କ୍ରୋଧଯୁକ୍ତ ଚିତ୍ତରେ ମଣି ଓ ସୁବର୍ଣ୍ଣ ଦଣ୍ଡମୟୀ ସୁବର୍ଣ୍ଣ ଉଜ୍ଜ୍ୱଳା ଗୋଟିଏ ଶକ୍ତି ଗ୍ରହଣ କଲେ ଏବଂ ପ୍ରଦୀପ୍ତ ନେତ୍ରଦ୍ୱୟରେ ତିରସ୍କାର କରି ଶଲ୍ୟଙ୍କୁ ଚାହିଁଲେ । ୩୯ । ହେ ରାଜନ୍ ! ମହାରାଜ ଶଲ୍ୟ, ସେହି ନିଷ୍ପାପ ପବିତ୍ର ସ୍ୱଭାବ ଧର୍ମରାଜଙ୍କଦ୍ୱାରା ନିରୀକ୍ଷିତ ହୋଇ ତତ୍‌କ୍ଷଣାତ୍ ଯାହା ଭସ୍ମସାତ୍ ନ ହେଲେ, ତାହା ଆମ୍ଭଙ୍କୁ ଆଶ୍ଚର୍ଯ୍ୟ ଜଣାଯାଉ-ଅଛି । ୪୦ । ସେହି ମହାତ୍ମା କୁରୁଶ୍ରେଷ୍ଠ ଯୁଧିଷ୍ଠିର ମଣି ଓ ପ୍ରବାଳଦ୍ୱାରା ଉଜ୍ଜ୍ୱଳିତ ରୁଚିର ଓ ଉଗ୍ରଦଣ୍ଡଯୁକ୍ତ ଗୋଟିଏ ପ୍ରଦୀପ୍ତ ଶକ୍ତି ଗ୍ରହଣ କରି ଶଲ୍ୟଙ୍କୁ ଅତି ବେଗରେ ନିକ୍ଷେପ କଲେ । ୪୧ । ତହିଁରେ ଏକତ୍ରିତ କୌରବବୃନ୍ଦ ପ୍ରଳୟକାଳରେ ଆକାଶମଣ୍ଡଳରୁ ପତିତ ଉତ୍କୃଷ୍ଟ ଉଲ୍‌କା ସଦୃଶ ଅଗ୍ନିକଣାଯୁକ୍ତ ସେହି ପ୍ରଦୀପ୍ତ ଶକ୍ତିକୁ ହଠାତ୍ ମହାବେଗରେ ପତିତ ହେବାର ଦେଖିଲେ । ୪୨ ।

ସମର ମଧ୍ୟରେ ଅତିଶୟ ଯତ୍ନପରାୟଣ ଧର୍ମରାଜ, ପାଶହସ୍ତ, କାଳରାତ୍ରି ଓ ଯମଦେବଙ୍କ ଧାତ୍ରୀସ୍ୱରୂପା ଉଗ୍ରମୂର୍ତ୍ତି ବ୍ରହ୍ମଦଣ୍ଡ ସଦୃଶୀ ଅବ୍ୟର୍ଥ ଶକ୍ତିକୁ ପରିତ୍ୟାଗ କରିଥିଲେ । ୪୩ । ପାଣ୍ଡବମାନେ ଅତିଶୟ ଯତ୍ନ ପୂର୍ବକ ଗନ୍ଧ, ମାଲ୍ୟ, ଆସନ, ପାନ ଓ ଭୋଜନଦ୍ୱାରା ଅଥର୍ବ ଓ ଅଙ୍ଗିରାଙ୍କ ଉଗ୍ରକାର୍ଯ୍ୟପରି ପ୍ରଜ୍ୱଳିତ, ପ୍ରଳୟକାଳୀନ ଅଗ୍ନି ସଦୃଶ ଯେଉଁ ଶକ୍ତିକୁ ଅର୍ଚ୍ଚନା କରନ୍ତି, ବିଶ୍ୱକର୍ମା ଶତ୍ରୁକୁଳର ଦେହପ୍ରାଣ ବିନାଶାର୍ଥେ ମହାଦେବଙ୍କ ନିମିତ୍ତ ଯାହାକୁ ନିର୍ମାଣ କରିଥିଲେ, ଯେଉଁ ଶକ୍ତି ଭୂମି, ଆକାଶ, ଜଳାଶୟ ଓ ଜୀବମାନଙ୍କୁ ବିନଷ୍ଟ କରିବାକୁ ସମର୍ଥ, ଯାହାଙ୍କ ଦଣ୍ଡ ସୁବର୍ଣ୍ଣମୟ, ଯାହାଙ୍କ ଘଣ୍ଟ ପତାକା ହୀରକ ଓ ବୈଦୂର୍ଯ୍ୟ ପ୍ରଭୃତି ନାନାବିଧ ମଣିରାଶିଦ୍ୱାରା ବିରଚିତ, ବିଶ୍ୱକର୍ମା ସ୍ୱୟଂ ଅତିଶୟ ଯତ୍ନ-ପ୍ରକାଶପୂର୍ବକ ବ୍ରହ୍ମଚର୍ଯ୍ୟ ପ୍ରଭୃତି ନିୟମମାନ ଧାରଣ କରି ବ୍ରହ୍ମଦ୍ୱେଷୀ-ମାନଙ୍କ ବିନାଶ ନିମିତ୍ତ ଯେଉଁ ଅବ୍ୟର୍ଥ ଶକ୍ତିକୁ ନିର୍ମାଣ କରିଥିଲେ, ସେତେବେଳେ ଯୁଧିଷ୍ଠିର ବଳ ଓ ଯତ୍ନଦ୍ୱାରା ଉକ୍ତ ଶକ୍ତିର ଅତି ଅଧିକ

ବେଗ ସମ୍ପାଦନପୂର୍ବକ ଘୋରତର ମନ୍ତ୍ର ପ୍ରୟୋଗ କରି ଧର୍ମପଥ ଅନୁସାରେ ଶଲ୍ୟଙ୍କ ବଧ ନିମିତ୍ତ ସେହି ଶକ୍ତିକୁ ନିକ୍ଷେପ କଲେ । ୪୭ । ରୁଦ୍ରଦେବ ଯେଉଁପରି ଅନ୍ଧକାସୁରକୁ ଅନ୍ତକର ଶର ନିକ୍ଷେପପୂର୍ବକ ଗର୍ଜନ କରିଥିଲେ, ଧର୍ମରାଜ ସେହିପରି ଚେଚେବେଲେ ଦୃଢ଼ତର ଭୁଜଦଣ୍ଡ ପ୍ରସାରଣପୂର୍ବକ କ୍ରୋଧରେ ନୃତ୍ୟ କଲା ପରି ହୋଇ, 'ହେ ଅନିଷ୍ଟକାରକ, ତୁମ୍ଭେ ହତ ହେଲ', ଏହା କହି ଗର୍ଜନ କଲେ । ୪୮ ।

ଯୁଧିଷ୍ଠିର ନିଜ ଶକ୍ତି ଅନୁସାରେ ସେହି ଅନିବାର୍ଯ୍ୟ ପରାକ୍ରମ-ଶାଳିନୀ ଶକ୍ତିକୁ ପ୍ରେରଣ କଲାରୁ ଅଗ୍ନିଦେବ ଯେଉଁପରି ଉତ୍ତମରୂପେ ମନ୍ତ୍ରଦ୍ୱାରା ପବିତ୍ର ଘୃତଧାରା ଧାରଣ ବିଷୟରେ ଶିଖା ବିସ୍ତାର କରନ୍ତି, ସେହିପରି ଶଲ୍ୟ ସେହି ଶକ୍ତିକୁ ଗ୍ରହଣ କରିବାକୁ ଅଭିଳାଷୀ ହୋଇ ଗର୍ଜନ କଲେ । ୪୯ । ତତ୍ପରେ ସେହି କୃଷ୍ଣଶକ୍ତି ଶଲ୍ୟଙ୍କର ଶୁଭ୍ର ବର୍ଣ୍ଣ ବିଶାଳ ବକ୍ଷସ୍ଥଳ ଓ ମର୍ମସ୍ଥାନସମୂହକୁ ବିଦାରଣ କରି ରାଜା ଯୁଧିଷ୍ଠିରଙ୍କ ଅତି ବିସ୍ତୀର୍ଣ୍ଣ ଯଶରାଶିକ ବହନପୂର୍ବକ ଜଳସଦୃଶ ଭୂଗର୍ଭରେ ପ୍ରବିଷ୍ଟ ହେଲେ । ୫୦ । କ୍ରମେ କ୍ରମେ ତାହାଙ୍କ ନାସିକା, ନେତ୍ର, କର୍ଣ୍ଣ ଓ ମୁଖରୁ ଅନର୍ଗଳ ବିନିର୍ଗତ ରୁଧିରଦ୍ୱାରା ସର୍ବ ଶରୀର ସିକ୍ତ ହେଲା । ସେ କାର୍ତ୍ତିକେୟଙ୍କଦ୍ୱାରା ଆଘାତପ୍ରାପ୍ତ ମହାଗିରି କ୍ରୌଞ୍ଚ ସଦୃଶ ଆହତ ହେଲେ । ୫୧ । ପରିଶେଷରେ ସେହି ମହାତ୍ମା ଯୁଧିଷ୍ଠିରଙ୍କଦ୍ୱାରା କବଚହୀନ ହେଲାରୁ ଐରାବତ ଗଜ ସଦୃଶ ବାହୁଦ୍ୱୟ ପ୍ରସାରଣ କରି ରଥରୁ ବଜ୍ରାହତ ପର୍ବତ ଶୃଙ୍ଗପରି ପୃଥିବୀରେ ପଡ଼ିଲେ । ୫୨ ।

ଶଲ୍ୟ ବାହୁଦ୍ୱୟ ପ୍ରସାରଣ କରି ଯୁଧିଷ୍ଠିରଙ୍କ ସମ୍ମୁଖରେ ଭୂତଳରେ ଉନ୍ନତ ଇନ୍ଦ୍ରଧ୍ୱଜ ପରି ପଡ଼ିଥିଲେ । ୫୩ । ତାହାଙ୍କ ସର୍ବାଙ୍ଗ ବିଭିନ୍ନ ଏବଂ ରୁଧିରରେ ଆଚ୍ଛନ୍ନ ହେଲା । ସେହି ରାଜା ଧରାଶାୟୀ ହେଲାରୁ ଜଣାଗଲା ଯେ ସେ ବହୁକାଳ ପର୍ଯ୍ୟନ୍ତ ପୃଥିବୀରେ ଆଧିପତ୍ୟ କରିଥିବାରୁ ପ୍ରୀତିରେ ପ୍ରିୟ କାନ୍ତା ବସୁଧାଙ୍କୁ ସର୍ବାଙ୍ଗରେ ଆଲିଙ୍ଗନ କରି ତାହାଙ୍କ ବକ୍ଷସ୍ଥଳରେ ଶୟନ କରିଅଛନ୍ତି । ସେ ଧର୍ମାତ୍ମା ଧର୍ମପୁତ୍ରଙ୍କ ଦ୍ୱାରା ଧର୍ମଯୁଦ୍ଧରେ ନିହତ ହୋଇ ଯଜ୍ଞସ୍ଥଳରେ ହୋମାବସାନରେ ପ୍ରଶାନ୍ତ ହୁତାଶନ ପରି ଶୋଭା ପାଇଲେ । ଶଲ୍ୟ ଶକ୍ତି ଆଘାତରେ ବିଭିନ୍ନହୃଦୟ ଏବଂ ଅସ୍ତ୍ର ଶସ୍ତ୍ର ଓ ଧ୍ୱଜ ପତାକା ପରିଭ୍ରଷ୍ଟରେ ହୀନ ହୋଇ ତାଦୃଶ ଭାବରେ ଭୂମିରେ ପଡ଼ିଥିଲେ ହେଁ ତାହାଙ୍କୁ ଲକ୍ଷ୍ମୀଦେବୀ ପରିତ୍ୟାଗ କରି ନ ଥିଲେ । ତଦନନ୍ତର

ଯୁଧିଷ୍ଠିର ଇନ୍ଦ୍ରଧନୁ ସଦୃଶ ଶରାସନ ଗ୍ରହଣ ପୂର୍ବକ ଗରୁଡ଼ ସର୍ପମାନଙ୍କୁ ବିନାଶ କଲାପରି ଯୁଦ୍ଧରେ ଶତ୍ରୁମାନଙ୍କୁ ଦଗ୍ଧ କଲେ ଓ କ୍ଷଣକ ମଧ୍ୟରେ ଶାଣିତ ଶରନିକରଦ୍ୱାରା ବିପକ୍ଷମାନଙ୍କ ଶରୀରସମୂହକୁ ଧ୍ୱଂସ କଲେ ।୫୮।

ହେ ମହାରାଜ ! ତତ୍ପରେ ଭବଦୀୟ ସୈନିକବୃନ୍ଦ ଯୁଧିଷ୍ଠିରଙ୍କ ଶରନିକରରେ ଆଚ୍ଛନ୍ନ ହୋଇ ନୟନ ନିମୀଳନ ପୂର୍ବକ ପରସ୍ପର ଯୁଦ୍ଧରେ ପୀଡ଼ିତ ଏବଂ ଅତି ବିଦୀର୍ଣ୍ଣ ହେଲେ । ତେତେବେଳେ ସେ ସମସ୍ତଙ୍କର ସର୍ବାଙ୍ଗରୁ ରୁଧିରଧାରା ନିର୍ଗତ ହେଉଥିଲା । ସମସ୍ତେ ଶସ୍ତ୍ରଶୂନ୍ୟ ଓ ଆୟୁଧ-ବିହୀନ ହେବାରୁ ନିର୍ଜୀବ ପରି ଦେଖା ଯାଉଥିଲେ ।

ତଦନନ୍ତର ମଦ୍ରରାଜ ନିପତିତ ହେଲାରୁ ତାହାଙ୍କ ସଦୃଶ ସର୍ବଗୁଣ-ଶାଳୀ ଯୁବା ତଦୀୟ ଅନୁଜ, ଭ୍ରାତାଙ୍କ ରଥରେ ଆରୋହଣ ପୂର୍ବକ ପାଣ୍ଡବଙ୍କ ସମୀପକୁ ଧାବମାନ ହେଲେ ଏବଂ ଯୁଦ୍ଧରେ ଉନ୍ମତ୍ତ ହୋଇ ସହୋଦରଙ୍କ ବଧର ପ୍ରତିଶୋଧ ନିମିତ୍ତ କାମନା କଲେ ଓ ତ୍ୱରାଯୁକ୍ତ ଭାବରେ ଯୁଧିଷ୍ଠିରଙ୍କୁ ବହୁତର ନାରାଚଦ୍ୱାରା ବିଦ୍ଧ କଲେ । ଧର୍ମରାଜ ତାହାଙ୍କୁ ଅନାୟାସରେ ଛଅଗୋଟି ବାଣରେ ବିଦ୍ଧ କଲେ ଏବଂ ଦୁଇଗୋଟି କ୍ଷୁରାସ୍ତ୍ର ଦ୍ୱାରା ତଦୀୟ ଧ୍ୱଜ ଓ ଶରାସନ ଛେଦନ କଲେ । ପରିଶେଷରେ ଗୋଟିଏ ଦୀପ୍ୟମାନ ଦୃଢ଼ତର ଶାଣିତ ଭଲ୍ଲଦ୍ୱାରା ସମ୍ମୁଖସ୍ଥିତ ଶଲ୍ୟ ଅନୁଜଙ୍କର ମସ୍ତକ ଛେଦନ କଲେ । ପୁଣ୍ୟକ୍ଷୟ ହେଲେ ସ୍ୱର୍ଗବାସୀ ବ୍ୟକ୍ତି ଯେଉଁପରି ସେଠାରୁ ପତିତ ହୁଅନ୍ତି, ସେହିପରି ତାହାଙ୍କର କୁଣ୍ଡଳଯୁକ୍ତ ମସ୍ତକ ରଥରୁ ପଡ଼ିଲା । ତେତେବେଳେ ତାହାଙ୍କର ମସ୍ତକଶୂନ୍ୟ ରକ୍ତାକ୍ତ କଳେବର ରଥରୁ ପଡ଼ିଥିବାର ଦେଖି ସୈନ୍ୟବୃନ୍ଦ ଯୁଦ୍ଧ ବିଷୟରେ ନିରସ୍ତ ହେଲେ । ବିଚିତ୍ର କବଚଧାରୀ ଶଲ୍ୟଙ୍କ ଅନୁଜ ନିହତ ହେଲାରୁ କୌରବକୁଳ ହା ହା କରି ଅତିବେଗରେ ଧାବିତ ହେଲେ । ଆପଣଙ୍କ ସୈନ୍ୟମାନେ ତାହାଙ୍କ ମରଣ ସନ୍ଦର୍ଶନ କରି ପ୍ରାଣଆଶା ପରିତ୍ୟାଗ କଲେ ଓ ଧୂଳିରାଶିରେ ଅତିଶୟ ଧ୍ୱସ୍ତ ହୋଇ ପାଣ୍ଡବଙ୍କ ଭୟରେ ଅତ୍ୟନ୍ତ ତ୍ରସ୍ତ ହେଲେ ।

ହେ ମହାରାଜ ! କୌରବବୃନ୍ଦ ଏହିପରି ତ୍ରସ୍ତ ଓ ଛିନ୍ନ ଭିନ୍ନ ହେଲାରୁ ସାତ୍ୟକି ସେମାନଙ୍କୁ ଅବିଶ୍ରାନ୍ତ ଭାବରେ ବାଣ ନିକ୍ଷେପ କରି ସମ୍ମୁଖକୁ ଗମନ କଲେ । କୃତବର୍ମା ସେହି ଅସହନୀୟ ଦୁରାସଦ ମହାଧନୁର୍ଦ୍ଧରଙ୍କୁ ଆସୁଥିବାର ଦେଖି ତ୍ୱରାଯୁକ୍ତ ହୋଇ ନିର୍ଭୟ ବ୍ୟକ୍ତି ପରି ତାହାଙ୍କୁ

ଆକ୍ରମଣ କଲେ । ତତ୍ପରେ ସୂର୍ଯ୍ୟଦେବଙ୍କ ସଦୃଶ ପ୍ରଭାଶାଳୀ ସିଂହ ସମାନ ମଦୋତ୍କଟ ବୃଷ୍ଣି ବଂଶ ଜାତ ଅଜେୟ ମହାନୁଭବ କୃତବର୍ମା ସାତ୍ୟକି ଦୁହେଁ ଏକତ୍ର ମିଳିତ ହୋଇ ସୂର୍ଯ୍ୟକିରଣ ସଦୃଶ ଶାଣିତ ଶାୟକସମୂହ-ଦ୍ୱାରା ପରସ୍ପରକୁ ଆଚ୍ଛାଦିତ କଲେ । ସେହି ବୃଷ୍ଣି ବଂଶୀୟ ବୀରଦ୍ୱୟଙ୍କ ଚାପ-ଚ୍ୟୁତ ଶରବୃନ୍ଦ ଆକାଶମଣ୍ଡଳରେ ଶୀଘ୍ରଗାମୀ ପତଙ୍ଗକୁଳ ପରି ଦିଶୁଥିଲେ । ତଦନନ୍ତର କୃତବର୍ମା ସାତ୍ୟକିଙ୍କୁ ଦଶସଂଖ୍ୟକ ଶରରେ ଓ ତାହାଙ୍କ ଅଶ୍ୱମାନଙ୍କୁ ତିନଗୋଟି ଶରରେ ବିଦ୍ଧ କରି ଅନ୍ୟ ଗୋଟିଏ ଦୃଢ଼ତର ଶରଦ୍ୱାରା ତଦୀୟ ଶରାସନ ବିଦ୍ଧ କଲେ । ସାତ୍ୟକି ସେହି ଶରାସନକୁ ପରିତ୍ୟାଗପୂର୍ବକ ଅତି ବେଗରେ ଅନ୍ୟ ଗୋଟିଏ ଦୃଢ଼ତର କାର୍ମୁକ ଧାରଣ କଲେ ଏବଂ ସେହି ସର୍ବଧନୁର୍ଦ୍ଧର ଶ୍ରେଷ୍ଠ ଉତ୍କୃଷ୍ଟ ଧନୁ ଧାରଣ କରି କୃତବର୍ମାଙ୍କ ବକ୍ଷସ୍ଥଳକୁ ଦଶଗୋଟି ବାଣରେ ବିଦ୍ଧ କଲେ । ପରିଶେଷରେ ଦୃଢ଼ତର ଭଲ୍ଲଦ୍ୱାରା ତାହାଙ୍କ ରଥଯୁଗ ଓ ଈଷା ଛେଦନ କରି ଅଶ୍ୱଗଣଙ୍କୁ ଓ ପୃଷ୍ଠରକ୍ଷକ ଏବଂ ସାରଥିଙ୍କୁ ସଂହାର କଲେ ।

ତତ୍ପରେ ପରାକ୍ରମଶାଳୀ କୃପାଚାର୍ଯ୍ୟ ତାହାଙ୍କୁ ବିରଥ ହୋଇ-ଥିବାର ଅବଲୋକନ କରି ସ୍ୱୀୟ ରଥରେ ବସାଇ ରଣସ୍ଥଳରୁ ଗମନ କଲେ । ହେ ମହାରାଜ ! ଶଲ୍ୟ ନିହତ ଓ କୃତବର୍ମା ବିରଥ ହେବାରୁ ଦୁର୍ଯ୍ୟୋଧନଙ୍କ ସୈନ୍ୟବୃନ୍ଦ ପୁନଶ୍ଚ ପରାଙ୍ମୁଖ ହେଲେ । ସେତେବେଳେ ସୈନ୍ୟସମୂହ ଧୂଳିରାଶିରେ ଆକୁଳ ଓ ହତଜ୍ଞାନ ହେଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସୈନ୍ୟ ହତ ହୋଇଥିଲେ । ଯେଉଁମାନେ ଅବଶିଷ୍ଟ ଥିଲେ, ସେମାନେ ମଧ୍ୟ ଯୁଦ୍ଧ ବିଷୟରେ ପରାଙ୍ମୁଖ ହେଲେ । ଭୂମଣ୍ଡଳରୁ ଉଠୁଥିବା ଧୂଳିସମୂହ ମୁହୂର୍ତ୍ତକ ମଧ୍ୟରେ ବିବିଧ ରକ୍ତସ୍ରାବ ଦ୍ୱାରା ବିନଷ୍ଟ ହେଲା ।

ତଦନନ୍ତର ରାଜା ଦୁର୍ଯ୍ୟୋଧନ ସ୍ୱକୀୟ ସୈନ୍ୟଭଙ୍ଗ ଦେଖି ଅତି ବେଗରେ ସମାଗତ ପାଣ୍ଡବମାନଙ୍କୁ ଏକାକୀ ଆକ୍ରମଣ କଲେ । ସେହି ରଥସ୍ଥିତ ପାଣ୍ଡବଗଣ, ଧୃଷ୍ଟଦ୍ୟୁମ୍ନ ଓ ଦୁର୍ଦ୍ଧର୍ଷ ଆନର୍ତ୍ତ ଦେଶାଧିପତିଙ୍କୁ ତୀକ୍ଷ୍ଣ ଶାଣିତ ଶରସମୂହରେ ଆଚ୍ଛନ୍ନ କଲେ । ଶତ୍ରୁବୃନ୍ଦ ତାହାଙ୍କୁ ସାକ୍ଷାତ ଯମ-ଦେବ ସଦୃଶ ଜ୍ଞାନ କରି ତାହାଙ୍କ ନିକଟରେ ସ୍ଥିର ରୂପେ ରହି ପାରିଲେ ନାହିଁ । କୃତବର୍ମା ମଧ୍ୟ ଅନ୍ୟ ରଥରେ ଆରୋହଣ କରି ଯୁଦ୍ଧରୁ ନିବୃତ୍ତ ହେଲେ । ପରିଶେଷରେ ମହାରଥ ଯୁଧିଷ୍ଠିର ତ୍ୱରାଯୁକ୍ତ ହୋଇ ଚାରିଗୋଟି

ଶରରେ କୃତବର୍ମାଙ୍କୁ ଅଶ୍ୱମାନଙ୍କ ସହିତ ନିହତ କଲେ ।୮୬। ଅଶ୍ୱତ୍ଥାମା କୃତବର୍ମା ଅଶ୍ୱବିହୀନ ଓ ବିରଥ ହେବାର ଦେଖି ତତ୍‌କ୍ଷଣାତ୍ ନିଜ ରଥରେ ବସାଇ ଯୁଧିଷ୍ଠିରଙ୍କ ସମ୍ମୁଖରେ ବାହାରିଗଲେ । ୮୭ । ତଦନନ୍ତର କୃପାଚାର୍ଯ୍ୟ ଯୁଧିଷ୍ଠିରଙ୍କୁ ଅଷ୍ଟବାଣରେ ପ୍ରତିବିଦ୍ଧ କଲେ ଓ ତାହାଙ୍କ ଅଶ୍ୱମାନଙ୍କୁ ଶାଣିତ ଅଷ୍ଟ ଶିଳୀମୁଖଦ୍ୱାରା ବିଦ୍ଧ କଲେ । ୮୮ । ହେ ମହାରାଜ ! ଆପଣଙ୍କର ଏବଂ ଭବଦୀୟ ପୁତ୍ରମାନଙ୍କ କୁମନ୍ତ୍ରଣାରେ ଏହିପରି ଯୁଦ୍ଧର ଶେଷ ଅବସ୍ଥା ଘଟିଲା । ୮୯ ।

ମହାଧନୁର୍ଦ୍ଧର ଶଲ୍ୟ ଯୁଧିଷ୍ଠିରଙ୍କ ଦ୍ୱାରା ରଣସ୍ଥଳରେ ନିହତ ହେଲାରୁ ପାଣ୍ଡବଗଣ ତାହାଙ୍କୁ ନିହତ ହେବାର ଦେଖି ସମସ୍ତେ ଏକତ୍ରିତ ହୋଇ ପ୍ରଫୁଲ୍ଲ ଚିତ୍ତରେ ଶଙ୍ଖଧ୍ୱନି କଲେ । ୯୦ । ପୂର୍ବକାଳରେ ବୃତ୍ରାସୁର ବଧ ହେବାରେ ଅମରକୁଳ ଯେଉଁପରି ଇନ୍ଦ୍ରଙ୍କୁ ପ୍ରଶଂସା କରିଥିଲେ, ସେହିପରି ତତ୍‌ସମୟରେ ସମର ମଧ୍ୟରେ ସମସ୍ତେ ଯୁଧିଷ୍ଠିରଙ୍କୁ ପ୍ରଶଂସା କଲେ ଓ ନାନାବିଧ ବାଦ୍ୟଧ୍ୱନି ଦ୍ୱାରା ଭୂମଣ୍ଡଳକୁ ପରିପୂର୍ଣ୍ଣ କଲେ । ୯୧ ।

---

## ଅଷ୍ଟାଦଶ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଶଲ୍ୟ ନିହତ ହେଲାରୁ ତାହାଙ୍କ ଅନୁଚର ସପ୍ତଶତ ବୀର ରଥୀମାନେ ସେହି ମହତ୍ ବଳ ମଧ୍ୟରୁ ନିର୍ଗତ ହେଲେ । ୧ । ସେତେବେଳେ ଦୁର୍ଯ୍ୟୋଧନ ଗିରିସଦୃଶ ଗୋଟିଏ କୁଞ୍ଜର ପୃଷ୍ଠରେ ଆରୋହଣପୂର୍ବକ ହସ୍ତିମାଣଛତ୍ର ଓ ଶୃଙ୍ଖଳିତ ପାର୍ଶ୍ୱରେ ଓ ଚାମର ଦ୍ୱାରା ଅତିଶୟ ଶୋଭିତ ହୋଇ, 'ହେ ମଦ୍ରବୀରଗଣ ! ଯାଅ ନାହିଁ, ଯାଅ ନାହିଁ' ଏହିପରି ବାରମ୍ବାର ବାରଣ କଲେ ସୁଦ୍ଧା ସେମାନେ ତାହାଙ୍କ ନିବାରଣ ବାକ୍ୟକୁ ନ ଶୁଣି ଯୁଧିଷ୍ଠିରଙ୍କୁ ବିନଷ୍ଟ କରିବା ଇଚ୍ଛାରେ ପାଣ୍ଡବ ବଳ ମଧ୍ୟରେ ପ୍ରବେଶ କଲେ । ବୀରବୃନ୍ଦ ସେହି ମହାଯୁଦ୍ଧରେ ଧନୁଷ୍ଟଙ୍କାର କରି ସ୍ଥିରଚିତ୍ତ ହୋଇ ପାଣ୍ଡବମାନଙ୍କ ସଙ୍ଗେ ସଂଗ୍ରାମ କଲେ ।

ଶଲ୍ୟ ନିହତ ଓ ତାହାଙ୍କ ହିତୈଷୀ ମଦ୍ରଦେଶୀୟ ମହାରଥଗଣଙ୍କ ଦ୍ୱାରା ଯୁଧିଷ୍ଠିର ପୀଡ଼ିତ ହୋଇଥିବା ସମ୍ବାଦ ଶୁଣି ମହାରଥ ଅର୍ଜ୍ଜୁନ ରଥନିର୍ଘୋଷରେ ଦଶଦିଗ ପରିପୂର୍ଣ୍ଣ କରି ବାରମ୍ବାର ଗାଣ୍ଡିବ ଶରାସନ ବିସ୍ତାରଣ

ପୂର୍ବକ ସେଠାକୁ ଆଗତ ହେଲେ । ତତ୍ପରେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଦ୍ରୌପଦୀଙ୍କ ପଞ୍ଚପୁତ୍ର, ନରଶ୍ରେଷ୍ଠ ସାତ୍ୟକ, ଶିଖଣ୍ଡି, ଧୃଷ୍ଟଦ୍ୟୁମ୍ନ ଏବଂ ପାଞ୍ଚାଳ ଓ ସୋମକ ସୈନ୍ୟବୃନ୍ଦ ଏମାନେ ସମସ୍ତେ ଯୁଧିଷ୍ଠିରଙ୍କ ରକ୍ଷାର୍ଥେ ତାହାଙ୍କ ଚତୁର୍ଦ୍ଦିଗ ବେଷ୍ଟନପୂର୍ବକ ଅବସ୍ଥିତ ହେଲେ । ପାଣ୍ଡବ-ଗଣ ଏହିପରି ଚତୁର୍ଦ୍ଦିଗରେ ବେଢ଼ି କରି ରହି ମକରସମୂହ ଯେଉଁପରି ସାଗରକୁ କ୍ଷୋଭଯୁକ୍ତ କରନ୍ତି, ତଦ୍‌ବତ୍ କୌରବମାନଙ୍କୁ କ୍ଷୋଭଯୁକ୍ତ କଲେ । ୧୦ । ପ୍ରବଳ ପବନଦ୍ୱାରା ବୃକ୍ଷସମୂହ ଯେଉଁପରି କମ୍ପିତ ହୁଅନ୍ତି, ତଥା ସମୀରଣ ବେଗରେ ମହାନଦୀ ଗଙ୍ଗା ଯେଉଁପରି ଆନ୍ଦୋଳିତ ହୁଏ, ଏ ପାଣ୍ଡବମାନଙ୍କ ଦ୍ୱାରା କୁରୁସେନା ତଦ୍‌ବତ୍ କ୍ଷୋଭଯୁକ୍ତ ହେଲେ । ୧୧ ।

ମହାରାଜ ! ତଥାପି ମହାତ୍ମା ମଦ୍ରରଥମାନେ ମହତୀ ପାଣ୍ଡବୀୟ ସେନା-ମଧ୍ୟରେ ପ୍ରବେଶ କରି "ଯୁଧିଷ୍ଠିର ରାଜା କେଉଁଠାରେ ଅଛନ୍ତି, ତାହାଙ୍କ ବୀର ସହୋଦରମାନେ କେଉଁଠାରେ ଅଛନ୍ତି, ମହାରଥୀ ଶିଖଣ୍ଡୀ କେଉଁଠାରେ ଅଛନ୍ତି, ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକ କେଉଁଠାରେ ଅଛନ୍ତି, ମହାରଥ ଦ୍ରୌପଦୀଙ୍କ କୁମାରମାନେ କେଉଁଠାରେ ଅଛନ୍ତି, କେଉଁଠାରେ କାହାକୁ ସୁଦ୍ଧା ଏଠାରେ ଦେଖୁନାହୁଁ"—ଏହିପରି ବାକ୍ୟ କହିବାରୁ ବୀରବର ମହାରଥ ଦ୍ରୌପଦୀଙ୍କ ପୁତ୍ରମାନେ ସେହି ଯୁଦ୍ଧକାରୀ ମହାରାଜାଙ୍କ ସମସ୍ତ ଅନୁଚରବର୍ଗଙ୍କୁ ଅଭିହତ କଲେ । ଆପଣଙ୍କ ସୈନ୍ୟସମୂହ ମଧ୍ୟରୁ କେହି କେହି ରଥଦ୍ୱାରା, କେହି କେହି ଅବା ବିଚ୍ଛିନ୍ନ ମହାଧ୍ୱଜଦ୍ୱାରା ନିପାତ ହେଲେ । କେହି କେହି ଶତ୍ରୁମାନଙ୍କ ଦ୍ୱାରା ଯୁଦ୍ଧରେ ନିହତ ହେଲେ । ଯୋଦ୍ଧାମାନେ ରଣାଙ୍ଗନରେ ସହସ୍ର ସହସ୍ର ପାଣ୍ଡବୀୟ ବୀର ସୈନ୍ୟଙ୍କୁ ଅବଲୋକନ କରି ଦୁର୍ଯ୍ୟୋଧନଙ୍କ କର୍ତ୍ତୃକ ନିବାରିତ ହୋଇ ସୁଦ୍ଧା ଯୁଦ୍ଧସ୍ଥାନରୁ ଅପଗତ ହେଲେ । ଦୁର୍ଯ୍ୟୋଧନ ସେହି ସମସ୍ତ ବୀରକୁଳଙ୍କୁ ସାନ୍ତ୍ୱନା ଦେଇ ନିଷେଧ କଲେ ; କିନ୍ତୁ ତେତେବେଳେ କୌଣସି ମହାରଥ ମଧ୍ୟ ତାହାଙ୍କ ଶାସନକୁ ଗ୍ରହଣ କଲେ ନାହିଁ ।

ହେ ନୃପବର ! ତତ୍ପରେ ଗାନ୍ଧାର ରାଜାଙ୍କ ପୁତ୍ର ଶ୍ରେଷ୍ଠ ବକ୍ତା ଶକୁନି ଦୁର୍ଯ୍ୟୋଧନଙ୍କୁ କହିଲେ, ହେ ଭରତ କୁଳପ୍ରଦୀପ ! ଆପଣ ଯୁଦ୍ଧରେ ଥାଉଁ ଥାଉଁ ଆମ୍ଭମାନଙ୍କ ସାକ୍ଷାତରେ ପାଣ୍ଡବମାନେ ମଦ୍ରଦେଶୀୟ ସୈନ୍ୟ-ମାନଙ୍କୁ ସଂହାର କରୁଅଛନ୍ତି, ଏହା ଉଚିତ ନୁହେଁ । ହେ ନୃପବର ! ସମସ୍ତେ ଏକତ୍ରିତ ହୋଇ ଯୁଦ୍ଧ କରିବା ବିଷୟରେ ପୂର୍ବେ ପ୍ରତିଜ୍ଞା କରିଥାଇ

ଅଛୁ । ଏପ୍ରକ୍ତ ବିପକ୍ଷମାନେ ଆମ୍ଭମାନଙ୍କ ସୈନ୍ୟବୃନ୍ଦଙ୍କୁ ନହତ କରୁଥିବାର ଦେଖି ଆପଣ ସେମାନଙ୍କୁ କି ନମିତ୍ତ ତ୍ୟାଗ କରୁଅଛନ୍ତି ? ଦୁର୍ଯ୍ୟୋଧନ କହିଲେ, ଆମ୍ଭେ ପୂର୍ବେ ଏହାଙ୍କୁ ବାରମ୍ବାର ବାରଣ କଲେ ସୁଦ୍ଧା ଏମାନେ ଆମ୍ଭର ବାକ୍ୟ ରକ୍ଷା କଲେ ନାହିଁ । ୨୧ । ଏମାନେ ସମସ୍ତେ ଏକତ୍ରିତ ହୋଇ ପାଣ୍ଡବାସ୍ମ ସେନାର ନକଟକୁ ଧାବିତ ହେଲେ । ବୀରବୃନ୍ଦ ସମର-ସ୍ଥଳରେ କ୍ରୋଧ ହେତୁରୁ ଯଦି ପ୍ରଭୁଙ୍କ ଆଜ୍ଞା ପାଳନ ନ କରନ୍ତି, ସେମାନଙ୍କଠାରେ ପ୍ରଭୁଙ୍କର କ୍ରୋଧ କରିବା ଉଚିତ ନୁହେଁ । ଏତେବେଳେ ଗ୍ଲାଡ଼କରି ବସିବାର ସମୟ ନୁହେଁ । ଆମ୍ଭେମାନେ ସମସ୍ତେ ଅଶ୍ୱ, ଗଜ ଓ ରଥ ସହିତ ମଦ୍ରପତିଙ୍କ ମହାଧନୁର୍ଦ୍ଧର ଅନୁଚରବର୍ଗଙ୍କ ପରିତ୍ରାଣ ନମିତ୍ତ ଗ୍ଲଲିଯିବା, ଆମ୍ଭେମାନେ ଉତ୍କୃଷ୍ଟ ଯତ୍ନ ସହିତ ପରସ୍ପରର ରକ୍ଷାକର୍ତ୍ତା ହେବା, ସମସ୍ତେ ଏହିପରି ମନ୍ତ୍ରଣା କରି ସୈନିକମାନେ ଯେଉଁଠାରେ ଅବସ୍ଥାନ କରିଥିଲେ, ସେହିଠାକୁ ଗଲେ । ସଞ୍ଜୟ କହିଲେ, ରାଜା ଦୁର୍ଯ୍ୟୋଧନ ଶକୁନଙ୍କ ବାକ୍ୟାନୁସାରେ ମହାସୈନ୍ୟରେ ପରିବେଷ୍ଟିତ ହୋଇ ଘୋରତର ସିଂହନାଦଦ୍ୱାରା ଭୂମଣ୍ଡଳକୁ ବିକମ୍ପିତ କରି ରଣସ୍ଥଳକୁ ଗଲେ । ହେ ମହାରାଜ ! ଆପଣଙ୍କ ସୈନ୍ୟଗଣ ମଧ୍ୟରେ କେବଳ 'ଛେଦନ କର, ଭେଦ କର, ଗ୍ରହଣ କର, ପ୍ରହାର କର,' ଏହିସବୁ ବାକ୍ୟ ତୁମୁଳରୂପେ ଆନ୍ଦୋଳିତ ହେଲା ।

ପାଣ୍ଡବଗଣ ମହାରାଜଙ୍କ ଅନୁଚରମାନଙ୍କୁ ଯୁଦ୍ଧରେ ଏକତ୍ରିତ ହୋଇଥିବାର ଦେଖି ମଧ୍ୟମାକାର ଗୋଟିଏ ବ୍ୟୂହ ବିନ୍ୟାସ କରି ସେମାନଙ୍କର ସମ୍ମୁଖୀନ ହେଲେ । ହେ ମହାରାଜ ! ମୁହୂର୍ତ୍ତ ମଧ୍ୟରେ ଶଲ୍ୟଙ୍କ ଅନୁଚର ସେହି ବୀରମାନେ ସମସ୍ତେ ଶୀଘ୍ର ନହତ ହୋଇଥିବାର ଦେଖାଗଲା । ଆମ୍ଭେମାନେ ଯାଉଁ ଯାଉଁ ବିପକ୍ଷସମୂହ ମିଳିତ ହୋଇ ବଳବାନ୍ ମଦ୍ରସୈନ୍ୟନକରଙ୍କୁ ନହତ କରି ପ୍ରଫୁଲ୍ଲ ମନରେ କଳକଳନାଦ କଲେ । ତତ୍ପରେ ସବୁ ଦଗରେ କବନ୍ଧକୁଳ ଉଠୁଥିବାର ଦେଖାଗଲା । ରଣସ୍ଥଳ ମଧ୍ୟରେ ସୂର୍ଯ୍ୟମଣ୍ଡଳରୁ ଉଲ୍କାପାତ ହେଲା । ସମରଭୂମି ଭଗ୍ନ ରଥ ଯୁଗ, ଅକ୍ଷୟ ଓ ନହତ ଏବଂ ନପତିତ ଅଶ୍ୱବୃନ୍ଦରେ ଆଚ୍ଛନ୍ନ ହେଲା ।

ହେ ମହାରାଜ ! ସେହି ସମର ଭୂମି ମଧ୍ୟରେ କେବଳ ଯୁଗକାଷ୍ଠ-ଧାରୀ ପବନ ସମାନ ବେଗଗାମୀ ଅଶ୍ୱଗଣ ସହିତ ଯୋଦ୍ଧାମାନେ ଇତସ୍ତତଃ

ଦୃଷ୍ଟିଗୋଚର ହେଲେ । ରଣକ୍ଷେତ୍ରରେ କଳ୍ପିତପ୍ରାୟ ଅଶ୍ୱ, ଭଗ୍ନ ଚକ୍ରରଥକୁ ବହନ କରୁଥିଲେ, କଳ୍ପିତପ୍ରାୟ ଅଶ୍ୱବୃନ୍ଦ ରଥର ଅର୍ଦ୍ଧଭାଗ ଗ୍ରହଣ କରି ଦିଗମାନଙ୍କୁ ଧାବିତ ହେଲେ । ହେ ନୃପବର ! ଯୋକ୍ତ୍ର ବିଶିଷ୍ଟ ଅଶ୍ୱଗଣ ଓ ନିପତିତ ରଥୀମାନଙ୍କୁ ଦେଖିବାରୁ ଜଣାଯାଏ ଯେ ସିଦ୍ଧଗଣ ପୁଣ୍ୟକ୍ଷୟ-ବଶରୁ ଆକାଶମଣ୍ଡଳରୁ ବିଚ୍ୟୁତ ହୋଇ ପୃଥିବୀରେ ପଡ଼ିଅଛନ୍ତି । ମଦ୍ରରାଜଙ୍କ ଶୂରବର ଅନୁଚରବର୍ଗ ନିହତ ହେବାରୁ ଜୟାଭିଳାଷୀ ଯୁଦ୍ଧକାଂକ୍ଷୀ ମହାରଥ ପାଣ୍ଡବଗଣ ଅତି ବେଗରେ ଆମ୍ଭମାନଙ୍କୁ ଆକ୍ରମଣ କଲେ ଓ ଶଙ୍ଖଧ୍ୱନି ମିଶ୍ରିତ ଘୋରତର ଶବ୍ଦ କରି ଆମ୍ଭମାନଙ୍କୁ ଲକ୍ଷ୍ୟକରି ପ୍ରହାର ନିମିତ୍ତ ଉଦ୍ୟତ ହେଲେ । ସେମାନେ କାର୍ମୁକ କମ୍ପାଇ ସିଂହନାଦ କଲେ । ନିହତ ଶୂରବର ଶଲ୍ୟ ଏବଂ ତତ୍ପାର୍ଶ୍ୱ ଉତ୍କୃଷ୍ଟ ସୈନ୍ୟମାନେ ପୁନଶ୍ଚ ଯୁଦ୍ଧ ବିଷୟରେ ପରାଙ୍ମୁଖ ହେଲେ । ମହାରାଜ ! ସେମାନେ ଜୟକାଂକ୍ଷୀ ଦୃଢ଼-ଧନୁର୍ଦ୍ଧର ପାଣ୍ଡବମାନଙ୍କଦ୍ୱାରା ବଧ୍ୟମାନ, ଭୀତ ଓ ତ୍ରସ୍ତ ହୋଇ ସବୁଦିଗକୁ ପଳାଇଲେ ।

---

## ଊନବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ସମରଦୁର୍ଦ୍ଧର୍ଷ ମହାରଥ ମଦ୍ରରାଜ ରଣସ୍ଥଳରେ ପତିତ ହେଲାରୁ ଆପଣଙ୍କ ପୁତ୍ରଗଣ ଓ ସୈନ୍ୟଗଣ ମଧ୍ୟରୁ ପ୍ରାୟ ସମସ୍ତେ ବିମୁଖ ହେଲେ; ଅଗାଧ ସାଗର ଗର୍ଭରେ ନୌକା ଭଗ୍ନ ହେଲେ ବଣିକମାନେ ଯେଉଁପରି ଭେଳାଶୂନ୍ୟ ହୋଇ ସେହି ଅପାର ସାଗରରୁ ପାର ହେବା ନିମିତ୍ତ ବ୍ୟାକୁଳ ହୁଅନ୍ତି, ମହାତ୍ମା ଯୁଧିଷ୍ଠିରଙ୍କ ଦ୍ୱାରା ଶଲ୍ୟ ନିହତ ହେଲାରୁ ଶରବିକ୍ଷତ ଆପଣଙ୍କ ସୈନ୍ୟମାନେ ମଧ୍ୟ ସେହିପରି ତ୍ରସ୍ତ ହେଲେ । ତେତେବେଳେ ସେମାନେ ସିଂହଦ୍ୱାରା ଆହତ ମୃଗ, ଭଗ୍ନଶୃଙ୍ଗ ବୃଷ ଓ ବିଗଳିତଦନ୍ତ ମାତଙ୍ଗ ସଦୃଶ ଅନାଥ ହୋଇ ବାରମ୍ବାର ମହାରଥଙ୍କୁ ଅନ୍ୱେଷଣ କରି ମଧ୍ୟାହ୍ନ ସମୟରେ ଅଜାତଶତ୍ରୁ ଯୁଧିଷ୍ଠିରଙ୍କ ଦ୍ୱାରା ପରାଜିତ ହୋଇ ରଣସ୍ଥଳରୁ ପ୍ରସ୍ଥାନ କଲେ ।

ହେ ରାଜନ୍ ! ଶଲ୍ୟ ନିହତ ହେବାରୁ ଆପଣଙ୍କ ଯୋଦ୍ଧାମାନଙ୍କ ମଧ୍ୟରେ କୌଣସି ବ୍ୟକ୍ତିର ମଧ୍ୟ ସୈନ୍ୟସନ୍ଧାନ ଓ ପରାକ୍ରମ ପ୍ରକାଶ କରି-

ବାକୁ ବୁଦ୍ଧି ସ୍ଥିର ନ ଥିଲା । ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ନିହତ ହେବାରୁ ଭବଦୀୟ ସୈନ୍ୟମାନଙ୍କର ଯେଉଁ ଦୁଃଖ ଓ ଭୟ ହୋଇଥିଲା, ମହାରଥ ନିହତ ହୁଅନ୍ତେ ଆମ୍ଭମାନଙ୍କର ସେହି ଭୟ ଓ ସେହି ଶୋକ ପୁନର୍ବାର ଉପସ୍ଥିତ ହେଲା । ସେତେବେଳେ ଆମ୍ଭେମାନେ ଜୟ ବିଷୟରେ ନିତାନ୍ତ ନିରାଶ ହେଲୁ । ଯୋଦ୍ଧାମାନେ ଶତ୍ରୁବୃନ୍ଦର ଶାଣିତ ଶରରେ ହତ ବିଧ୍ୱସ୍ତ ଓ ବିଚ୍ଛିନ୍ନ ହୋଇ ଭୟରେ ପଳାଇଲେ । ମହାରଥମାନଙ୍କ ମଧ୍ୟରୁ କେହି ତୁରଗଙ୍କୁ, କେଉଁ କେଉଁମାନେ ମାତଙ୍ଗଙ୍କୁ, କେହି ଅବା ରଥକୁ ଆରୋହଣ କରି ଧାବମାନ ହେଲେ । ପଦାତିକମାନେ ଭୟ ହେତୁରୁ ଅତି ବେଗରେ ପଳାୟନ କଲେ । ଗିରିଶିର ସଦୃଶ ଦୁଇ ସହସ୍ର ସମରନିପୁଣ ମାତଙ୍ଗ ଅଙ୍କୁଶ ଓ ଅଙ୍ଗୁଷ୍ଠର ଆଘାତରେ ଚାଳିତ ହୋଇ ଅତି ବେଗରେ ଧାବିତ ହେଲେ ।

ହେ ଭରତଶ୍ରେଷ୍ଠ ! ଆପଣଙ୍କ ସୈନ୍ୟବୃନ୍ଦ ଶରଦ୍ୱାରା ଆହତ ହୋଇ ଦୀର୍ଘ ନିଶ୍ୱାସ ପରିତ୍ୟାଗପୂର୍ବକ ସମରଭୂମିର ଦଶ ଦିଗକୁ ଧାବମାନ ହେଲେ । ବିଜୟାଭିଳାଷୀ ପାଣ୍ଡବ ଓ ପାଞ୍ଚାଳଗଣ ପରାଜିତ, ପ୍ରଭଗ୍ନ ଓ ଉତ୍ସାହବିହୀନ ଭବଦୀୟ ସୈନ୍ୟସମୂହ ପଛରେ ଧାବମାନ ହେଲେ । ଶୂର-ମାନେ ସୁଦାରୁଣ ସିଂହନାଦ, ଘୋରତର ମତ୍ତ ଶବ୍ଦ ଏବଂ ଅତି ଗଭୀର ଶଙ୍ଖ-ଧ୍ୱନି କଲେ । ପାଞ୍ଚାଳମାନେ କୌରବ ସୈନ୍ୟସମୂହକୁ ଭୟଗ୍ରସ୍ତ, ତ୍ରସ୍ତ ଓ ପଳାୟମାନ ଦେଖି ପାଣ୍ଡବମାନଙ୍କ ସଙ୍ଗେ ପରସ୍ପର କଥୋପକଥନ କଲେ —"ଆଜି ସତ୍ୟସନ୍ଧ ରାଜା ଯୁଧିଷ୍ଠିର ଶତ୍ରୁଜୟ କଲେ । ଆଜି ଦୁର୍ଯ୍ୟୋଧନ ଅତି ଦେଦୀପ୍ୟମାନ ରାଜଶ୍ରୀରୁ ଭ୍ରଷ୍ଟ ହେଲେ । ଆଜି ଧୃତରାଷ୍ଟ୍ର ରାଜା ପୁତ୍ରଙ୍କ ମୃତ୍ୟୁସମ୍ବାଦ ଶ୍ରବଣ କରି ଭୂତଳରେ ପତିତ ଓ ବିହ୍ୱଳ ହୋଇ ପାପର ଫଳଭୋଗୀ ହୁଅନ୍ତୁ । ଆଜି ଅନିଷ୍ଟକାରକ ଦୁର୍ଦ୍ଧର୍ଷ ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ସମସ୍ତ ଧନୁର୍ଦ୍ଧରଙ୍କ ଅଗ୍ରଗଣ୍ୟ ବୋଲି ଜାଣନ୍ତୁ ଓ ଆପଣାକୁ ନିନ୍ଦା କରନ୍ତୁ । ଆଜିଠାରୁ ରାଜା ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ଦାସ ହୋଇ ସେମାନେ ପୂର୍ବେ ଯେଉଁ ଦାରୁଣ ଦୁଃଖ ପାଇଥିଲେ, ତାହା ଜାଣନ୍ତୁ । ୧୮ ।

"ଆଜି ମହାରାଜ କୃଷ୍ଣଙ୍କ ମାହାତ୍ମ୍ୟକୁ ଜାଣନ୍ତୁ ଏବଂ ଯୁଦ୍ଧରେ ଅର୍ଜୁନଙ୍କ ଧନୁର୍ଘୋଷ, ଅସ୍ତ୍ରବଳ ଓ ବାହୁବଳକୁ ଅବଲୋକନ କରନ୍ତୁ । ଆଜି ମହାବଳ ଭୀମ ସମରାଙ୍ଗଣରେ ଇନ୍ଦ୍ରଦେବ ବଳାସୁରକୁ ବିନାଶ କଲାପରି ଦୁର୍ଯ୍ୟୋଧନଙ୍କୁ ସଂହାର କଲେ । ଧୃତରାଷ୍ଟ୍ର ରାଜା ସେହି ମହାତ୍ମା-

ଙ୍କର ଉତ୍କୃଷ୍ଟ ବଳକୁ ବୁଝି ପାରିବେ । ମହାବଳ ଭୀମ ଦୁଃଶାସନଙ୍କ ବଧ ସମୟରେ ଯେତେବେଳେ ଯେଉଁ ଅଲୌକିକ ବୀର୍ଯ୍ୟ ପ୍ରକାଶ କରିଅଛନ୍ତି, ତାହାଙ୍କ ବ୍ୟତିରେକେ ପୃଥିବୀରେ ଅନ୍ୟ କୌଣସି ପୁରୁଷ ତାଦୃଶ ବଳରେ କର୍ମ କରିପାରିବ ନାହିଁ । ଦୁର୍ଯ୍ୟୋଧନ ଆଜି ଦେବଗଣଙ୍କଦ୍ୱାରା ଦୁର୍ଜୟ ଶଲ୍ୟଙ୍କ ମୃତ୍ୟୁସମ୍ବାଦ ଶ୍ରବଣ କରି ଜ୍ୟେଷ୍ଠ ପାଣ୍ଡବଙ୍କ ପରାକ୍ରମ ବୁଝି ପାରନ୍ତୁ । ଆଜି ଯୁଦ୍ଧରେ ଶୂରବର ଶକୁନି ଓ ସମସ୍ତ ଗାନ୍ଧାରଗଣ ନିହତ ହେଲେ ନକୁଳ ଓ ସହଦେବଙ୍କୁ ସୁଦୁଃସହ ବୋଲି ଜାଣିପାରିବେ । ଧନଞ୍ଜୟ, ଭୀମ, ନକୁଳ, ସହଦେବ, ଦ୍ରୌପଦୀଙ୍କ ପଞ୍ଚପୁତ୍ର, ସାତ୍ୟକି, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଏବଂ ମହାଧନୁର୍ଦ୍ଧର ରାଜା ଯୁଧିଷ୍ଠିର ଯେଉଁମାନଙ୍କର ଯୋଦ୍ଧା, ସେମାନଙ୍କର କାହିଁକି ଜୟ ନ ହେବ ? ଯେଉଁ ଯୁଧିଷ୍ଠିରଙ୍କର ଧର୍ମ ଓ ଯଶୋନିଧିଙ୍କୁ ହୃଷିକେଶୀ କେଶ ସର୍ବଦା ସହାୟ, ତାହାଙ୍କ ବିନା ଅନ୍ୟ କେଉଁ ବ୍ୟକ୍ତି ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ ଓ ଅନ୍ୟାନ୍ୟ ଶତ ସହସ୍ର ଭୂପତିମାନଙ୍କୁ ଜୟ କରି ପାରିବ ?"

ସୃଞ୍ଜୟଗଣ ଏହିପରି କଥୋପକଥନ କରି ମହାହର୍ଷରେ ପରିପୂର୍ଣ୍ଣ ହେଲେ ଏବଂ ଆପଣଙ୍କ ବିଚ୍ଛିନ୍ନ ସୈନ୍ୟମାନଙ୍କର ପଶ୍ଚାତ୍‌ଗମନ କଲେ । ବୀର୍ଯ୍ୟଶାଳୀ ଅର୍ଜ୍ଜୁନ, ରଥୀ ସୈନ୍ୟଗଣ ଏବଂ ନକୁଳ, ସହଦେବ ଓ ମହାରଥ ସାତ୍ୟକି ଶକୁନିଙ୍କର ଅଭିମୁଖକୁ ଗମନ କଲେ । ଦୁର୍ଯ୍ୟୋଧନ ନିଜ ସୈନ୍ୟମାନଙ୍କୁ ଭୀମଙ୍କ ଭୟରେ ପଳାୟମାନପର ଦେଖି ସାରଥିଙ୍କୁ କହିଲେ, "ହେ ରଥବାହକ ! ଅର୍ଜ୍ଜୁନ କାର୍ମୁକଧାରୀ ଆମ୍ଭଙ୍କୁ ପରାଭବ ଦେବାକୁ ଯତ୍ନଶୀଳ ହୋଇଅଛନ୍ତି, ଅତଏବ ତୁମ୍ଭେ ସମସ୍ତ ସୈନ୍ୟବୃନ୍ଦର ପଶ୍ଚାତ୍‌ଭାଗରେ ଅଶ୍ୱମାନଙ୍କୁ ଚଳାଅ । ଆମ୍ଭେ ସମସ୍ତଙ୍କ ପଛରେ ରହି ଯୁଦ୍ଧ କଲେ ମହାସମୁଦ୍ର ଯେଉଁପରି କୂଳକୁ ଲଙ୍ଘି ନ ପାରେ, ସେହିପରି ଅର୍ଜ୍ଜୁନ ଆମ୍ଭଙ୍କୁ କଦାପି ପରାଜୟ ଦେବାକୁ ଉତ୍ସାହୀ ହେବେ ନାହିଁ ।

"ହେ ରଥବାହକ ! ଦେଖ, ସୈନ୍ୟସମୂହ ପାଣ୍ଡବଙ୍କ ଭୟରେ ପଳାଇ ଯାଉଅଛନ୍ତି । ସେମାନଙ୍କ ଗମନ ହେତୁରୁ ଚତୁର୍ଦ୍ଦିଗରେ ଧୂଳିରାଶି ଉଡ୍‌ଡୀନ ହେଉଥିବା ଅବଲୋକନ କର । ମହା ଭୟଙ୍କର ଘୋରତର ସିଂହନାଦ ସବୁ ଶ୍ରବଣ କର ଏବଂ ସୈନ୍ୟମାନଙ୍କ ପଶ୍ଚାତ୍‌ଭାଗ ରକ୍ଷା-କରିବା ନିମିତ୍ତ ଧୀରେ ଧୀରେ ଅଶ୍ୱମାନଙ୍କୁ ସଞ୍ଚାଳନ କର । ଆମ୍ଭେ ଯୁଦ୍ଧରେ ଅବସ୍ଥାନ କରି ପାଣ୍ଡବମାନଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେଲେ

ଆମ୍ଭ ସୈନ୍ୟମାନେ ବଳପୂର୍ବକ ଆସି ପୁନଶ୍ଚ ଉପସ୍ଥିତ ହେବେ ।" ସାରଥି ଭବଧାୟୁ ପୁତ୍ରଙ୍କ ଶୁଭୋଚିତ ସେହି ବାକ୍ୟ ଶ୍ରବଣ କରି ସୁବର୍ଣ୍ଣାବୃତ ଅଶ୍ୱମାନଙ୍କୁ ଧୀରେ ଧୀରେ ଚଳାଇଲେ । ତେତେବେଳେ ଅଶ୍ୱ, ଗଜ ଓ ରଥବିହୀନ ଏକବିଂଶତ ସହସ୍ର ପଦାତିକମାନେ କେବଳ ଯୁଦ୍ଧ ନିମିତ୍ତ ଅବସ୍ଥିତ ଥିଲେ । ନାନା ଦେଶଜାତ ଓ ନାନା ନଗରବାସୀ ଯୋଦ୍ଧାମାନେ ମଧ୍ୟ ଉତ୍କୃଷ୍ଟ ଯଶୋଲାଭକୁ କାମନା କରି ସେଠାରେ ଉପସ୍ଥିତ ଥିଲେ । ସେମାନେ ପରସ୍ପର ସମର ନିମିତ୍ତ ହୃଷ୍ଟ ମନରେ ଏକତ୍ରିତ ହେବାରୁ ଅତି ଭୟଙ୍କର ମହାଯୁଦ୍ଧ ଉପସ୍ଥିତ ହେଲା ।

ହେ ମହାରାଜ ! ତେତେବେଳେ ଭୀମ ଓ ଧୃଷ୍ଟଦ୍ୟୁମ୍ନ, ଚତୁରଙ୍ଗ ବଳଦ୍ୱାରା ନାନାଦେଶୀୟ ସୈନ୍ୟମାନଙ୍କୁ ଆକ୍ରମଣ କଲେ । ଅନ୍ୟାନ୍ୟ ପଦାତିକମାନେ କେବଳ ଭୀମସେନଙ୍କ ଅଭିମୁଖୀନ ହୋଇ ରହିଲେ । ପରଲୋକ ଗମନାଭିଳାଷୀ ଯୁଦ୍ଧଦୁର୍ମଦ ସଂହତ କୌରବ ସୈନ୍ୟମାନେ ସିଂହନାଦ ଓ ବାହୁସ୍ଫୋଟ କରି ଅତିଶୟ ହୃଷ୍ଟ ହୋଇ ବୃକୋଦରଙ୍କ ସନ୍ନିଧିରେ ଘୋରତର ନାଦ କଲେ । ତେତେବେଳେ ସେମାନେ ଅନ୍ୟ କୌଣସି ବାକ୍ୟାଳାପ କଲେ ନାହିଁ । ସେହି ସମସ୍ତ ପଦାତିକବୃନ୍ଦ ଚତୁର୍ଦ୍ଦିଗରେ ଭୀମଙ୍କୁ ପରିବେଷ୍ଟନପୂର୍ବକ ଆଘାତ କଲେ । ସେ ଯୁଦ୍ଧରେ ପଦାତିକଗଣ କର୍ତ୍ତୃକ ପରିବେଷ୍ଟିତ ଓ ବଧ୍ୟମାନ ହୋଇ ମଧ୍ୟ ମୈନାକ ପର୍ବତ ପରି ସ୍ୱସ୍ଥାନରୁ ବିଚଳିତ ହେଲେ ନାହିଁ । ୪୫ ।

ହେ ମହାରାଜ ! କୌରବ ଯୋଦ୍ଧାମାନେ କ୍ରୁଦ୍ଧ ହୋଇ ପାଣ୍ଡବୀୟ ଅନ୍ୟାନ୍ୟ ସୈନ୍ୟମାନଙ୍କୁ ନିବାରଣ କରି ମହାରଥ ଭୀମଙ୍କୁ ପରାଭବ ଦେବା ନିମିତ୍ତ ଯତ୍ନଶୀଳ ହେଲେ । ସମାଗତ ରଥୀ ସୈନ୍ୟମାନଙ୍କଦ୍ୱାରା ଭୀମ କ୍ରୋଧାକ୍ରାନ୍ତ ହେଲେ । ୪୭ । ସେ ସୁବର୍ଣ୍ଣଦ୍ୱାରା ଆବୃତ ମହାଗଦାକୁ ଧରି ଦଣ୍ଡପାଣି ଯମଦେବଙ୍କ ପରି ଆପଣଙ୍କ ସୈନ୍ୟମାନଙ୍କୁ ସଂହାର କଲେ । ୪୮ । ମହାବଳ ଭୀମ ଅଶ୍ୱ, ଗଜ ଓ ରଥବିହୀନ ଏକବିଂଶ ଶତସହସ୍ର ପଦାତିକ ସୈନ୍ୟମାନଙ୍କୁ ଗଦାଦ୍ୱାରା ନିହତ କଲେ । ୪୯ । ସତ୍ୟପରାକ୍ରମ ଭୀମ ଏହିପରି ସୈନ୍ୟସଂହାରାନନ୍ତର ଧୃଷ୍ଟଦ୍ୟୁମ୍ନଙ୍କୁ ଅଗ୍ରସର କରି ଶୀଘ୍ର ଯୁଦ୍ଧରେ ଉପସ୍ଥିତ ହେଲେ । ୫୦ । ନିହତ ପଦାତିକବୃନ୍ଦ ରୁଧିରାକ୍ତ ହୋଇ ଭୂମିରେ ଶୟନ କଲେ । ନାନାଦେଶରୁ ସମାଗତ ନାନାଜାତୀୟ ସୈନ୍ୟଗଣ ବିବିଧ ପୁଷ୍ପମାଳ୍ୟ ଓ କୁଣ୍ଡଳଧାରଣ ପୂର୍ବକ

ସଂଗ୍ରାମରେ ବାଣଦ୍ୱାରା ଭଗ୍ନ ପୃଷ୍ଠଯୁକ୍ତ କଣ୍ଟିକାର ବୃକ୍ଷପରି ପୃଥିବୀରେ ପଡ଼ିଥିଲେ । ୫୨ ।

ପଦାତିକଦଳର ପ୍ରବଳ ସୈନ୍ୟବୃନ୍ଦ କ୍ଷତବିକ୍ଷତ ଓ ଧ୍ୱଜ-ପତାକାରେ ଆଚ୍ଛନ୍ନ ହେବାରୁ ଅତି ଘୋର ଭୟଙ୍କର ଓ ରୌଦ୍ର ରୂପରେ ପ୍ରକାଶିତ ହେଲେ । ୫୩ । ଯୁଧିଷ୍ଠିରଙ୍କ ଅଗ୍ରଗାମୀ ସୈନ୍ୟଯୁକ୍ତ ମହାରଥ-ସମୂହ ଭବଦୀୟ ସୈନ୍ୟମାନଙ୍କୁ ପରାଙ୍ମୁଖ ହୋଇଥିବାର ଅବଲୋକନ କରି ମହାତ୍ମା ଦୁର୍ଯ୍ୟୋଧନଙ୍କ ପଶ୍ଚାତ୍ ଧାବମାନ ହେଲେ । କିନ୍ତୁ କୂଳ ଯେଉଁପରି ସାଗରକୁ ଲଂଘି ନ ପାରେ, ସେହିପରି ସେମାନେ ସମସ୍ତେ ଦୁର୍ଯ୍ୟୋଧନଙ୍କ ଅଭିମୁଖକୁ ଅଗ୍ରସର ହେବା ନିମିତ୍ତ ସମର୍ଥ ହେଲେ ନାହିଁ । ୫୫ । ସେତେବେଳେ ଆମ୍ଭେମାନେ ଭବଦୀୟ ପୁତ୍ରଙ୍କର ଅତି ଅଦ୍ଭୁତ ପୌରୁଷ ଦେଖିଲୁ, କାରଣ ପାଣ୍ଡବମାନେ ସମସ୍ତେ ଏକତ୍ରିତ ହୋଇ ସୁଦ୍ଧା ଏକମାତ୍ର ଦୁର୍ଯ୍ୟୋଧନଙ୍କୁ ପରାଜୟ ଦେବାକୁ ସମର୍ଥ ହୋଇ ପାରିଲେ ନାହିଁ । ୫୬ ।

ଦୁର୍ଯ୍ୟୋଧନ ନିକଟବର୍ତ୍ତୀ ସ୍ୱୀୟ ସୈନ୍ୟମାନଙ୍କୁ ଅତିଶୟ କ୍ଷତବିକ୍ଷତ ଓ ପଳାୟନ ବିଷୟରେ ଉଦ୍ୟତ ହୋଇଥିବାର ଅବଲୋକନ କରି କହିଲେ, "ହେ ଯୋଧବୃନ୍ଦ ! ଯେଉଁ ସ୍ଥାନକୁ ପଳାୟନ କଲେ, ପାଣ୍ଡବମାନେ ତୁମ୍ଭ-ମାନଙ୍କୁ ନିଧନ କରି ନ ପାରିବେ, ଆମ୍ଭେ ତାଦୃଶ ସ୍ଥାନ ପୃଥିବୀ ଅବା ପର୍ବତ ମଧ୍ୟରେ ଦେଖୁନାହୁଁ । ଅତଏବ ଏତେବେଳେ ପଳାଇ ଯିବାରେ ପ୍ରୟୋଜନ ନାହିଁ । ସେମାନଙ୍କର ଅତି ଅଳ୍ପ ସୈନ୍ୟ ଅଛନ୍ତି ଓ ପାର୍ଥ ଅର୍ଜ୍ଜୁନ ଏବଂ କୃଷ୍ଣ ଅତିଶୟ କ୍ଷତବିକ୍ଷତ ହୋଇଅଛନ୍ତି । ଅତଏବ ଏହି ସମୟରେ ଆମ୍ଭେମାନେ ଯଦି ଏହି ସ୍ଥାନରେ ସ୍ଥିର ହୋଇ ରହି-ପାରିବା, ତେବେ ଆମ୍ଭମାନଙ୍କର ନିଶ୍ଚୟ ବିଜୟ ହେବ । ୫୯ । ତୁମ୍ଭେ-ମାନେ ଯଦି ପୃଷ୍ଠଭଙ୍ଗ ଦେଇ ଯୁଦ୍ଧରୁ ପଳାୟନ କରିବ, ତେବେ ପାପାତ୍ମା ପାଣ୍ଡବଗଣ ପଶ୍ଚାଦ୍‌ଗାମୀ ହୋଇ ତୁମ୍ଭମାନଙ୍କୁ ବିନଷ୍ଟ କରିବେ । ସେହି ହେତୁରୁ ସଂଗ୍ରାମଭୂମିରେ ବଧ ଆମ୍ଭମାନଙ୍କ ପକ୍ଷେ ଶ୍ରେୟଃ । ୬୦ ।

"ହେ ସମାଗତ କ୍ଷତ୍ରିୟବୃନ୍ଦ ! ଆପଣମାନେ ସମସ୍ତେ ଶୁଣିବା ହେଉନ୍ତୁ । ଯଦି ଯମଦେବ ଶୂର ଓ ଭୀରୁ ସମସ୍ତଙ୍କୁ ସର୍ବଦା ସଂହାର କରୁ-ଅଛନ୍ତି, ତେବେ କ୍ଷତ୍ରିୟ ବୋଲି ପରିଚୟ ଦେଇ କେଉଁ ମୂର୍ଖ ବ୍ୟକ୍ତି ଯୁଦ୍ଧରୁ ନିବୃତ୍ତ ହେବ ? ଏତେବେଳେ କ୍ରୋଧଯୁକ୍ତ ଭୀମଙ୍କ ସମ୍ମୁଖରେ

ରହିଲେ ଆମ୍ଭମାନଙ୍କର ଶ୍ରେୟଃ ହେବ । ୭୨ । କ୍ଷତ୍ରିୟ ଧର୍ମାନୁସାରେ ଯେଉଁମାନେ ଯୁଦ୍ଧ କରନ୍ତି, ସେମାନଙ୍କର ଯୁଦ୍ଧକାଳୀନ ମୃତ୍ୟୁ ସୁଖକର ଅଟେ । ଗୃହରେ ଥିଲେ ସୁଦ୍ଧା ମନୁଷ୍ୟର ନିଶ୍ଚୟ ମୃତ୍ୟୁ ହୁଏ । କ୍ଷତ୍ରିୟ ଧର୍ମାନୁସାରେ ଯୁଦ୍ଧ କରୁ କରୁ ମୃତ୍ୟୁ ହେବା ସନାତନ ଧର୍ମ ଅଟେ ; ଯୁଦ୍ଧରେ ଶତ୍ରୁଜୟ କରି କ୍ଷତ୍ରିୟ ପୁରୁଷ ସୁଖୀ ହୁଏ ଓ ହତ ହେଲେ ପରଲୋକରେ ମହାଫଳ ଲାଭ କରେ । ହେ କୌରବଗଣ ! ଯୁଦ୍ଧ ଅପେକ୍ଷା ସ୍ୱର୍ଗଲାଭର ଅନ୍ୟ କିଛିମାତ୍ର ଶ୍ରେୟସ୍କର ପଥ ନାହିଁ । ତୁମ୍ଭେମାନେ ଯୁଦ୍ଧରେ ହତ ହୋଇ ଅବିଳମ୍ବରେ ସ୍ୱର୍ଗଲୋକକୁ ଗମନ କର ।” ୭୫ ।

ନରପାଳବୃନ୍ଦ ଦୁର୍ଯ୍ୟୋଧନଙ୍କର ବାକ୍ୟ ଶୁଣି ତାହା ମାନ୍ୟ କରି ପୁନଶ୍ଚ ଆତତାୟୀ ପାଣ୍ଡବମାନଙ୍କ ସମ୍ମୁଖକୁ ଗମନ କଲେ । ସେମାନେ ଆଗମନ କରନ୍ତେ ପ୍ରହାରକାରୀ କ୍ରୋଧପରବଶ ବିଜୟାଭିଳାଷୀ ପାଣ୍ଡବମାନେ ଅବିଳମ୍ବରେ ବ୍ୟୂହ ବିନ୍ୟାସପୂର୍ବକ ସେମାନଙ୍କୁ ଆକ୍ରମଣ କଲେ । ୭୭ । ବୀର୍ଯ୍ୟଶାଳୀ ଧନଞ୍ଜୟ ସମରମଧ୍ୟରେ ରଥରେ ବସି ତ୍ରିଲୋକରେ ବିଖ୍ୟାତ ଗାଣ୍ଡିବ ଧନୁକୁ ଟଙ୍କାରିତ କଲେ । ମହାବଳ ବୀର ସାତ୍ୟକି ଏବଂ ନକୁଳ ସହଦେବ, ଏମାନେ ଯେଉଁ ସ୍ଥାନରେ ଭବଦୀୟ ସୈନ୍ୟ ଅବସ୍ଥାନ କରିଥିଲେ, ସେହିଠାରେ ଶକୁନିଙ୍କୁ ଆକ୍ରମଣ କଲେ । ୭୯ ।

---

## ବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ସୈନ୍ୟବୃନ୍ଦ ନିବୃତ୍ତ ହେବାରୁ ମ୍ଲେଚ୍ଛ ନରପତି ଶାଲ୍ୱ ଗିରିଦୁର୍ଗ ଐରାବତ ସମାନ ଶତ୍ରୁମର୍ଦ୍ଦନ ଉଦ୍ଧତ ଗୋଟିଏ ମତ୍ତଗଜ ଉପରେ ଆରୋହଣ କରି କ୍ରୋଧପରବଶ ହୋଇ ପାଣ୍ଡବୀୟ ମହାସୈନ୍ୟ ନିକଟକୁ ଧାବମାନ ହେଲେ । ମହାରାଜ ! ଯେଉଁ ହସ୍ତୀ ଅତି ଉତ୍କୃଷ୍ଟ କୁଳରେ ଜାତ ହୋଇଥିବାରୁ ଦୁର୍ଯ୍ୟୋଧନଙ୍କ ନିକଟରେ ସର୍ବଦା ପୂଜିତ ହୋଇ ଅବସ୍ଥିତ କରିଥାଏ; ଶାସ୍ତ୍ରବିତ୍‌ମାନେ ଯାହାକୁ ଯୁଦ୍ଧର ଉପଯୁକ୍ତ ବୋଲି ଜାଣି ସୁସଜ୍ଜିତ କରିଥିଲେ, ନୃପଶ୍ରେଷ୍ଠ ସେହି ହସ୍ତିବର ପୃଷ୍ଠରେ ଆରୋହଣପୂର୍ବକ ଗ୍ରୀଷ୍ମାବସାନରେ ଉଦୟଗିରିସ୍ଥିତ ସୂର୍ଯ୍ୟଦେବଙ୍କ ପରି ବିରାଜମାନ ହେଲେ । ସେ ସେହି ଗଜବର-

ଦ୍ୱାରା ପାଣ୍ଡୁପୁତ୍ରମାନଙ୍କର ଅଭିମୁଖକୁ ଗମନ କଲେ ଓ ଇନ୍ଦ୍ରଦେବଙ୍କ ବଜ୍ରସଦୃଶ ଘୋରତର ଶରନିକର ଦ୍ୱାରା ସେମାନଙ୍କୁ ବିଦାରଣ କଲେ । ସେ ମହାଯୁଦ୍ଧ ମଧ୍ୟରେ ଅବିଶ୍ରାନ୍ତ ରୂପରେ ବାଣବୃଷ୍ଟି ଶତ୍ରୁମାନଙ୍କୁ ସଂହାର କରୁଥିବାରୁ ପୂର୍ବକାଳରେ ଦେବାସୁରମାନେ ଯେଉଁପରି ଇନ୍ଦ୍ରଙ୍କ ଅବକାଶ ଦେଖିବାକୁ ଅକ୍ଷମ ହୋଇଥିଲେ, ସେହିପରି ସ୍ୱପକ୍ଷୀୟ ଅଥବା ବିପକ୍ଷ-ପକ୍ଷୀୟ କୌଣସି ବ୍ୟକ୍ତିମାନେ ସୁଦ୍ଧା ସେତେବେଳେ ତାହାଙ୍କର ଅବକାଶକୁ ଅବଲୋକନ କରିପାରିଲେ ନାହିଁ ।

ମହାରାଜ ! ପୂର୍ବକାଳରେ ଇନ୍ଦ୍ରଙ୍କ ଐରାବତ ହସ୍ତୀ ଦୈତ୍ୟ-ସେନାକୁ ବିମର୍ଦ୍ଦନ କଲାରୁ ଦାନବମାନେ ତାହାକୁ ଯେପରି ଚାହୁଁଥିଲେ, ସେହି ଗଜରାଜ ଶତ୍ରୁସେନାକୁ ବିମର୍ଦ୍ଦନପୂର୍ବକ ଚତୁର୍ଦ୍ଦିଗରେ ସହସ୍ରବାର ବିଚରଣ କରୁଥିବାରୁ ପାଣ୍ଡବଗଣ, ସୋମକ ଓ ସୃଞ୍ଜୟ ସୈନ୍ୟମାନେ ସଂଗ୍ରାମ ମଧ୍ୟରେ କେବଳ ତାହାକୁ ଅନାଇ ରହିଥିଲେ । ୭ । ବିପକ୍ଷ ସୈନ୍ୟ ସେହି ଗଜରାଜ ଦ୍ୱାରା ବିଦାରିତ ଓ ବେଷ୍ଟିତ ପରି ହୋଇ ଯେତେବେଳେ ଚତୁର୍ଦ୍ଦିଗରେ ଶୋଭା ପାଉଥିଲେ, ସେତେବେଳେ ସେମାନେ ପରସ୍ପର ଅତିଶୟ ବିମର୍ଦ୍ଦିତ ହୋଇ ଭୟ ହେତୁରୁ ଯୁଦ୍ଧରେ ଅବସ୍ଥାନ କରିପାରିଲେ ନାହିଁ । ୮ । ହେ ମହାରାଜ । ତାହା ଉତ୍ତାରେ ନରପତିଙ୍କଦ୍ୱାରା ଭଗ୍ନ ପାଣ୍ଡବମାନଙ୍କ ମହାସୈନ୍ୟବୃନ୍ଦ ସେହି ଗଜରାଜର ବେଗ ନିବାରଣ କରିବାକୁ ଅକ୍ଷମ ହୋଇ ସହସା ଚତୁର୍ଦ୍ଦିଗକୁ ଧାବିତ ହେଲେ । ପାଣ୍ଡବ ସୈନ୍ୟମାନେ ଅତିବେଗରେ ଧାବମାନ ହେବାରୁ ସେତେବେଳେ ଭବଦୀୟ ଉତ୍କୃଷ୍ଟ ଯୋଦ୍ଧାମାନେ ଦୁର୍ଯ୍ୟୋଧନଙ୍କୁ ପ୍ରଶଂସା କରି ଚନ୍ଦ୍ରସଦୃଶ ଶଙ୍ଖ-ସମୂହକୁ ନିନାଦିତ କଲେ । ୧୦ ।

ତତ୍ପରେ ପାଣ୍ଡବ ଓ ସୃଞ୍ଜୟମାନଙ୍କ ସେନାପତି ପାଞ୍ଚାଳ ରାଜପୁତ୍ର ଧୃଷ୍ଟଦ୍ୟୁମ୍ନ କୌରବମାନଙ୍କ ହର୍ଷଜନିତ ଶଙ୍ଖଧ୍ୱନି ଓ ଆନନ୍ଦସୂଚକ ନିନାଦ ଶ୍ରବଣ କରି କ୍ରୋଧ ହେତୁରୁ ତାହା ସହ୍ୟକରି ନ ପାରି ଜୟଲାଭ ନିମିତ୍ତ ସତ୍ୱର ହୋଇ ପୂର୍ବେ ଇନ୍ଦ୍ରଙ୍କ ସହିତ ଯୁଦ୍ଧ ହେଉଥିବା ସମୟରେ ଜମ୍ଭାସୁର ଯେଉଁପରି ଇନ୍ଦ୍ରଙ୍କ ବାହନ ଐରାବତକୁ ଆକ୍ରମଣ କରିଥିଲେ, ସେହିପରି ସେହି ହସ୍ତୀକୁ ଆକ୍ରମଣ କଲେ । ୧୨ । ହେ ରାଜନ୍ ! ନୃପବର ଶାଲ୍ୱ ଯୁଦ୍ଧରେ ପାଞ୍ଚାଳପତିଙ୍କୁ ଆସୁଥିବାର ଦେଖି, ଧୃଷ୍ଟଦ୍ୟୁମ୍ନ ସହସା ସେହି ମତ୍ତଗଜକୁ ଆଗମନ କରୁଥିବାର ଦେଖି ପ୍ରଜ୍ୱଳିତ ଅଗ୍ନିସଦୃଶ ଅତି ବେଗଶାଳୀ ଅତି

ଉତ୍କୃଷ୍ଟ ତିନଗୋଟି ନାରାଚଦ୍ୱାରା ତାହାକୁ ବିଦ୍ଧ କଲେ । ୧୪ । ତତ୍ପରେ ସେହି ମହାତ୍ମା ସୁତୀକ୍ଷ୍ଣ ପାଞ୍ଚଗୋଟି ଉତ୍କୃଷ୍ଟ ନାରାଚ ହସ୍ତୀର କୁମ୍ଭସ୍ଥଳକୁ ନିକ୍ଷେପ କଲେ । ସେ ତାହାଦ୍ୱାରା ବିଦ୍ଧ ହୋଇ ଯୁଦ୍ଧରୁ ପ୍ରତ୍ୟାବର୍ତ୍ତନପୂର୍ବକ ଅତିଶୟ ବେଗରେ ଧାବିତ ହେଲା । ୧୫ ।

ଗଜରାଜ ଛିନ୍ନକଳେବର ହୋଇ ସହସା ସମର ମଧ୍ୟରେ ଭ୍ରମଣ କରନ୍ତେ ଶାଲ୍ୱ ତାହାକୁ ଅଙ୍କୁଶାଘାତରେ ବଶୀଭୂତ କଲେ ଓ ଧୃଷ୍ଟଦ୍ୟୁମ୍ନଙ୍କର ରଥକୁ ଲକ୍ଷ୍ୟ କରି ଅବଲମ୍ବେ ପ୍ରେରଣ କଲେ । ୧୬ । ଧୃଷ୍ଟଦ୍ୟୁମ୍ନ ସେହି ମତ୍ତଗଜକୁ ସହସା ଆଗମନ କରୁଥିବାର ଦେଖି ଗଦା ଗ୍ରହଣପୂର୍ବକ ଭୟରେ ବିହ୍ୱଳ ହୋଇ ଶୀଘ୍ର ନିଜ ରଥରୁ ଭୂପୃଷ୍ଠରେ ଅବତୀର୍ଣ୍ଣ ହେଲେ । ୧୭ । ତତ୍ପରେ ସେହି କରୀବର ସୁବର୍ଣ୍ଣବିଭୂଷିତ ରଥକୁ ଅଶ୍ୱ ଓ ସାରଥି ସହିତ ତତ୍କ୍ଷଣାତ୍ ବିମର୍ଦ୍ଦନ ପୂର୍ବକ ଶୁଣ୍ଡଦ୍ୱାରା ଉତ୍କ୍ଷେପଣ କରି ଭୂତଳରେ ପକାଇ ଦେଲା । ୧୮ ।

ସେତେବେଳେ ସେହି କରୀବର ଧୃଷ୍ଟଦ୍ୟୁମ୍ନଙ୍କୁ ସହସା ଅତିଶୟ ପୀଡ଼ା ଦେବାର ଦେଖି ଭୀମ, ଶିଖଣ୍ଡୀ ଓ ସାତ୍ୟକ ଏହିମାନେ ଅତି ବେଗରେ ତାହାଙ୍କ ନିକଟକୁ ଧାବିତ ହେଲେ । ୧୯ । ରଥିବୃନ୍ଦ ଶରବୃନ୍ଦ-ଦ୍ୱାରା ସମ୍ମୁଖାଗତ ମାତଙ୍ଗର ବେଗ ନିବାରଣପୂର୍ବକ ତାହାକୁ ଆକ୍ରମଣ କଲେ । ସେହି ହସ୍ତୀ ତତ୍ସମୟରେ ସେମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ସୁଦ୍ଧା ରଣ ମଧ୍ୟରେ ବିଚରଣ କରୁଥିଲା । ୨୦ । ତତ୍ପରେ ଶାଲ୍ୱରାଜ ସୂର୍ଯ୍ୟଦେବ କିରଣ ବୃଷ୍ଟି କଲାପରି ଚତୁର୍ଦ୍ଦିଗରେ ଶରବୃଷ୍ଟି କଲେ । ସମସ୍ତ ରଥୀକୁଳ ସେହି ଶରବୃନ୍ଦ ଦ୍ୱାରା ବଧ୍ୟମାନ ହୋଇ ସେତେବେଳେ ସେଠାରୁ ଧାବିତ ହେଲେ । ୨୧ । ମହାରାଜ ! ପାଞ୍ଚାଳ, ମତ୍ସ୍ୟ ଓ ସୃଞ୍ଜୟ ସୈନ୍ୟଗଣ ଶାଲ୍ୱ ନରପାଳଙ୍କର ସେହି ଅଲୌକିକ କର୍ମ ଦେଖି ରଣ-ଭୂମିରେ ହାହାକାର ଶବ୍ଦ କଲେ । ନରବରମାନେ ସେହି ଗଜରାଜକୁ ଚତୁର୍ଦ୍ଦିଗରେ ରୁଦ୍ଧ କଲେ । ୨୨ । ତତ୍ପରେ ଶତ୍ରୁହନ୍ତା ବୀରବର ଧୃଷ୍ଟଦ୍ୟୁମ୍ନ ତ୍ୱରାଯୁକ୍ତ ହୋଇ ଗିରିଶୃଙ୍ଗ ସଦୃଶ ଗଦା ଗ୍ରହଣପୂର୍ବକ ଅତି ଶୀଘ୍ର ସେହି ହସ୍ତୀର ପଶ୍ଚାଦ୍‌ଗାମୀ ହେଲେ । ୨୩ । ଗିରିସଦୃଶ ଜଳଧର ସମାନ ମଦସ୍ରାବୀ ଉତ୍କୃଷ୍ଟ ହସ୍ତୀକୁ ବଳବାନ୍ ଧୃଷ୍ଟଦ୍ୟୁମ୍ନ ଗଦାଗ୍ରହଣ ପୂର୍ବକ ଅତିଶୟ ଆଘାତ କଲେ । ୨୪ । ସେହି ଆଘାତ ଦ୍ୱାରା ଭୂଧର ସଦୃଶ ଗଜର କୁମ୍ଭ-ସ୍ଥଳ ବିଦୀର୍ଣ୍ଣ ହେବାରୁ ସେ ନାଦ କରି ମୁଖରୁ ବହୁତ ଶୋଣିତ ବାରମ୍ବାର

ଛରଣପୂର୍ବକ ଭୂମିକମ୍ପ ସମୟରେ ବିଚଳିତ ଅଚଳ ସଦୃଶ ଭୂତଳରେ ପତିତ ହେଲା ।

କର୍ଣ୍ଣବର ନିପାତିତ ହେବାରୁ ଯେତେବେଳେ ଦୁର୍ଯ୍ୟୋଧନଙ୍କ ସୈନ୍ୟମାନେ ହାହାକାର କରୁଥିଲେ, ତେତେବେଳେ ବୀର ସାତ୍ୟକି ଶାଣିତ ଭଲ୍ଲଦ୍ୱାରା ଶାଲ୍ୱ ନରପାଳଙ୍କ ମସ୍ତକକୁ ଛେଦନ କଲେ । ୨୬ । ଯୁଦ୍ଧରେ ସାତ୍ୟକିଙ୍କ ଦ୍ୱାରା ଶାଲ୍ୱ ରାଜାଙ୍କ ମସ୍ତକ ଛିନ୍ନ ହେବାରୁ ସେ ଇନ୍ଦ୍ରଙ୍କ ପ୍ରେରିତ ବଜ୍ରଦ୍ୱାରା ବିଦୀର୍ଣ୍ଣ ଗିରିଶୃଙ୍ଗ ପରି ଗଜରାଜ ସହିତ ଭୂତଳରେ ପଡ଼ିଲେ । ୨୭ ।

---

## ଏକବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ସଭାଭୂଷଣ ବୀରବର ଶାଲ୍ୱ ଯୁଦ୍ଧରେ ନିହତ ହେବାରୁ ପବନ ବେଗରେ ମହାତରୁ ଯେଉଁପରି ଭଗ୍ନ ହୁଏ, ସେହିପରି ଆପଣଙ୍କ ସୈନ୍ୟକୁଳ ଭଗ୍ନ ହେଲେ । ମହାବଳଶାଳୀ ମହାରଥ ବୀରବର କୃତବର୍ମା ସେହି ସୈନ୍ୟସାମନ୍ତଙ୍କୁ ଭଗ୍ନ ହେବାର ଦେଖି ସୈନ୍ୟମାନଙ୍କୁ ଆକ୍ରମଣ କଲେ । ୨ । କୃତବର୍ମା ଯୁଦ୍ଧରେ ଶର ଦ୍ୱାରା ଆଚ୍ଛନ୍ନ ହୋଇ ପର୍ବତ ସଦୃଶ ନିଶ୍ଚଳ ଭାବରେ ଅବସ୍ଥିତି କରିଥିବାରୁ ବୀରମାନେ ତାହାଙ୍କୁ ଅବଲୋକନ କରି ନିବୃତ୍ତ ହେଲେ । ୩ । ତତ୍ପରେ ପାଣ୍ଡବମାନେ ବୃତ୍ତ ଉପରେ ନିବୃତ୍ତ କୌରବମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୪ ।

ମହାରାଜ ! ତେତେବେଳେ କୃତବର୍ମା ଶତ୍ରୁମାନଙ୍କ ସହିତ ଯେଉଁ ଯୁଦ୍ଧ କଲେ, ତାହା ଅତିଶୟ ଆଶ୍ଚର୍ଯ୍ୟଜନକ ଅଟେ । କାରଣ ସେ ଏକାକୀ ଦୁର୍ଜୟ ପାଣ୍ଡବ ସୈନ୍ୟମାନଙ୍କୁ ଆକ୍ରମଣ କଲେ । ୫ । ସେ ଦୁଷ୍କର କାର୍ଯ୍ୟ କଲାରୁ ସୁହୃଦ ସୈନ୍ୟମାନେ ପରସ୍ପର ଅତିଶୟ ଆନନ୍ଦିତ ହୋଇ ଯେଉଁ ଭୟଙ୍କର ସିଂହନାଦ କଲେ ତାହା ଗଗନକୁ ସ୍ପର୍ଶ କରିଥିଲା । ୬ । ହେ ଭରତଶ୍ରେଷ୍ଠ ! ସେହି ଭୟଙ୍କର ସିଂହନାଦରେ ପାଞ୍ଚାଳମାନେ ଅତିଶୟ ତ୍ରସ୍ତ ହେଲେ । କେବଳ ଶିନିବଂଶୀୟ ମହାବାହୁ ସାତ୍ୟକି

କୌରବ ସେନାକୁ ଆକ୍ରମଣ କଲେ । ସେ ମହାବଳ ରାଜ କ୍ଷେମଧୂର୍ତ୍ତିଙ୍କୁ ଆକ୍ରମଣପୂର୍ବକ ଶାଣିତ ସପ୍ତ ଶର ଦ୍ୱାରା ଯମାଳୟକୁ ପ୍ରେରଣ କଲେ । ୮ । ଶନିପ୍ରବୀର ସାତ୍ୟକି ଶାଣିତ ଶରବୃନ୍ଦ ନିକ୍ଷେପ ପୂର୍ବକ ଆଗମନ କରନ୍ତେ ବୁଦ୍ଧିମାନ କୃତବର୍ମା ଅତି ବେଗରେ ସେହି ମହାବାହୁଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ୯ । ସେହି ରଥୀଶ୍ରେଷ୍ଠ ଧନୁର୍ଦ୍ଧରଦ୍ୱୟ ସିଂହ ସମାନ ନାଦ କରି ଉତ୍କୃଷ୍ଟ ଅସ୍ତ୍ରଧାରଣ ପୂର୍ବକ ପରସ୍ପର ପ୍ରତି ଧାବିତ ହେଲେ । ୧୦ ।

ହେ ନୃପବର ! ସେହି ଦୁହିଁଙ୍କ ଘୋରତର ଯୁଦ୍ଧ ସମୟରେ ପାଣ୍ଡବ, ପାଞ୍ଚାଳ ଓ ଅନ୍ୟାନ୍ୟ ଯୋଦ୍ଧାମାନେ ଦର୍ଶକ ସ୍ୱରୂପ ଅବସ୍ଥିତ ହେଲେ । ମତ୍ତଗଜ ସଦୃଶ ସେହି ବୃଷ୍ଣି ଓ ଅନ୍ଧକ ବଂଶୀୟ ମହାରଥ ଦୁହେଁ ନାରାଚ ଓ ବତ୍ସଦନ୍ତ ବାଣଦ୍ୱାରା ପରସ୍ପର ପ୍ରହାର କଲେ । ୧୨ । କୃତବର୍ମା ଓ ସାତ୍ୟକି ଉଭୟ ବୀର ବିବିଧ ପଥରେ ବିଚରଣ କରି ବାରମ୍ବାର ବାଣବୃଷ୍ଟିଦ୍ୱାରା ପରସ୍ପରକୁ ପୀଡ଼ା ପ୍ରଦାନ କଲେ । ୧୩ । ସେହି କୃଷ୍ଣ ସିଂହ ବଳ ଦୁହିଁଙ୍କର ଚାପ ବେଗବଳରେ ନିପତିତ ବାଣ-ସମୂହକୁ ଆକାଶମଣ୍ଡଳରେ ଶୀଘ୍ରଗାମୀ ପତଙ୍ଗମାଳା ସଦୃଶ ଦେଖୁ-ଥିଲୁଁ । ୧୪ । ତତ୍ପରେ କୃତବର୍ମା ସାତ୍ୟକିଙ୍କ ନିକଟବର୍ତ୍ତୀ ହୋଇ ଶାଣିତ ଶର ଚତୁଷ୍ଟୟଦ୍ୱାରା ତାହାଙ୍କର ଅଶ୍ୱଚତୁଷ୍ଟୟକୁ ବିଦ୍ଧ କଲେ । ୧୫ । ତତ୍‌ସମୟରେ ଦୀର୍ଘବାହୁ ସାତ୍ୟକି ଅଙ୍କୁଶଦ୍ୱାରା ଆହତ କୁଞ୍ଜର ସମାନ କ୍ରୋଧଯୁକ୍ତ ହୋଇ ଉତ୍କୃଷ୍ଟ ଅଷ୍ଟ ଶରଦ୍ୱାରା କୃତବର୍ମାଙ୍କୁ ବିଦ୍ଧ କଲେ । ୧୬ ।

ତାହା ଉତ୍ତାରେ କୃତବର୍ମା ସନ୍ଧାନକରି ନିକ୍ଷିପ୍ତ ଶିଳାଶାଣିତ ତିନିଗୋଟି ଶରଦ୍ୱାରା ସାତ୍ୟକିଙ୍କୁ ଆହତ ପୂର୍ବକ ଗୋଟିଏ ବାଣରେ ତଦୀୟ ଧନୁକୁ ଛେଦନ କଲେ । ୧୭ । ଶିନିଶ୍ରେଷ୍ଠ ସାତ୍ୟକି ସେହି ଉତ୍କୃଷ୍ଟ ଛିନ୍ନ ଧନୁକୁ ପରିତ୍ୟାଗ କରି ତତ୍‌କ୍ଷଣାତ୍ ଅନ୍ୟ ଗୋଟିଏ ଶରଯୁକ୍ତ ଶରାସନ ଗ୍ରହଣ କଲେ । ୧୮ । ସର୍ବଧନୁର୍ଦ୍ଧର ଶ୍ରେଷ୍ଠ ମହାପରାକ୍ରମଶାଳୀ ବୁଦ୍ଧିମାନ ଅତିରଥ ମହାବଳ ସାତ୍ୟକି ସେହି ଉତ୍କୃଷ୍ଟ ଧନୁକୁ ଗ୍ରହଣ କରି ତହିଁରେ ଗୁଣଯୋଜନାପୂର୍ବକ କୃତବର୍ମାଙ୍କ ଶରାସନ ଛେଦନ ହେତୁରୁ ଆମିଷ-ପରାୟଣ ଓ କ୍ରୋଧଯୁକ୍ତ ହୋଇ ତାହାଙ୍କ ସମ୍ମୁଖକୁ ଗମନ କଲେ । ୨୦ । ତତ୍ପରେ ସାତ୍ୟକି ଶାଣିତ ଦଶଗୋଟି ଶରଦ୍ୱାରା କୃତବର୍ମାଙ୍କ ଅଶ୍ୱ ଓ ସାରଥିକୁ ସଂହାର କଲେ ଏବଂ ଧ୍ୱଜକୁ ଛେଦନ କଲେ । ୨୧ । ହେ

ରାଜନ୍ ! ତତ୍ପରେ ମହାଧନୁର୍ଦ୍ଧର ମହାରଥ କୃତବର୍ମା ସ୍ୱକୀୟ ରଥକୁ ଅଶ୍ୱବିହୀନ ଓ ସାରଥିଶୂନ୍ୟ ହେବାର ଦେଖି ଅତିଶୟ ରୋଷାବିଷ୍ଟ ଚିତ୍ତରେ ବାହୁବଳଦ୍ୱାରା ଶୂଳ ଉତ୍ତୋଳନ କରି ସାତ୍ୟକିଙ୍କୁ ସଂହାର କରିବା ନିମିତ୍ତ ନିକ୍ଷେପ କଲେ । ସାତ୍ୟକି ଶରନିକରଦ୍ୱାରା ସେହି ଶୂଳକୁ ବିଦାରଣ ପୂର୍ବକ ଚୂର୍ଣ୍ଣ କରି ପୃଥିବୀରେ ନିକ୍ଷେପ କରନ୍ତେ କୃତବର୍ମା ମୁଗ୍ଧ ପ୍ରାୟ ହେଲେ । ୨୪ ।

ପରିଚ୍ଛେଶଷରେ ସେ ଅନ୍ୟ ଗୋଟିଏ ଭଲ୍ଲଦ୍ୱାରା ତାହାଙ୍କ ବକ୍ଷସ୍ଥଳକୁ ପ୍ରହାର କଲେ । ଅସ୍ତ୍ରପଣ୍ଡିତ ସାତ୍ୟକି ଯୁଦ୍ଧରେ କୃତବର୍ମାଙ୍କର ଅଶ୍ୱ ଓ ସାରଥିଙ୍କୁ ବିନଷ୍ଟ କରନ୍ତେ ସେ ତେତେବେଳେ ଅଗତ୍ୟା ଭୂତଳରେ ଦଣ୍ଡାୟମାନ ହେଲେ । ସେହି ବୀର ସାତ୍ୟକିଙ୍କଦ୍ୱାରା ଦ୍ୱୈରଥ ଯୁଦ୍ଧରେ ବିରଥ ହେଲାରୁ ସୈନ୍ୟବୃନ୍ଦର ଅନ୍ତଃକରଣରେ ମହାଭୟ ଉପସ୍ଥିତ ହେଲା ଏବଂ ଦୁର୍ଯ୍ୟୋଧନଙ୍କ ମନରେ ଅତ୍ୟନ୍ତ ବିଷାଦ ଜନ୍ମିଲା । କୃପାଚାର୍ଯ୍ୟ ବୈରିଦଳନ କୃତବର୍ମାଙ୍କୁ ହତାଶ୍ୱ ଏବଂ ହତସାରଥି ହୋଇଥିବାର ଦେଖି ସାତ୍ୟକିଙ୍କୁ ସଂହାର କରିବା ନିମିତ୍ତ ଇଚ୍ଛୁକ ହୋଇ ତାହାଙ୍କ ସମ୍ମୁଖକୁ ଧାବମାନ ହେଲେ । ମହାବାହୁ କୃପାଚାର୍ଯ୍ୟ ସମସ୍ତ ଧନୁର୍ଦ୍ଧରମାନଙ୍କ ସାକ୍ଷାତରେ କୃତବର୍ମାଙ୍କୁ ନିଜ ରଥରେ ବସାଇ ରଣସ୍ଥଳର ବହିର୍ଭାଗକୁ ଗମନ କଲେ ।

ହେ ମହାରାଜ ! ସାତ୍ୟକିଙ୍କଦ୍ୱାରା ଆକ୍ରାନ୍ତ ହୋଇ ବିରଥ ହେଲାରୁ ଦୁର୍ଯ୍ୟୋଧନଙ୍କ ସୈନ୍ୟବୃନ୍ଦ ପୁନଶ୍ଚ ପରାଙ୍ମୁଖ ହେଲେ । ତତ୍ପରେ ସୈନ୍ୟବୃନ୍ଦ ଧୂଳିରାଶିରେ ଆଚ୍ଛନ୍ନ ହେବାରୁ କିଛି ମାତ୍ର ଦେଖି ପାରିଲେ ନାହିଁ । ରାଜା ଦୁର୍ଯ୍ୟୋଧନଙ୍କ ବ୍ୟତିରେକେ ଆପଣଙ୍କ ପକ୍ଷର ସମସ୍ତ ଲୋକ ପଳାୟନ କଲେ । ଦୁର୍ଯ୍ୟୋଧନ ସ୍ୱକୀୟ ସନ୍ନିଧିରୁ ସୈନ୍ୟମାନଙ୍କୁ ଭଗ୍ନ ହେବାର ଦେଖି ଶୀଘ୍ର ଅତି ବେଗରେ ସେମାନଙ୍କ ନିକଟକୁ ଯାଇ ପଳାୟନରୁ ନିବାରଣ କଲେ । ଶତ୍ରୁଗଣଦ୍ୱାରା ଅପରାଜିତ ଦୁର୍ଯ୍ୟୋଧନ ଅତିଶୟ କ୍ରୋଧର ଅଧୀନ ହୋଇ ପାଣ୍ଡବଗଣ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡି, ଦ୍ରୌପଦୀଙ୍କ ପଞ୍ଚପୁତ୍ର ଏବଂ ପାଞ୍ଚାଳ, କେକୟ ଓ ସୋମକ ସୈନ୍ୟମାନଙ୍କୁ ଅତି ନିର୍ଭୟରେ ଭୂରି ଭୂରି ଶାଣିତ ସାୟକ ଦ୍ୱାରା ପ୍ରହାର କଲେ । ତେତେବେଳେ ଆପଣଙ୍କ ମହାବଳ ପୁତ୍ର ଯଜ୍ଞସ୍ଥଳରେ ମନ୍ତ୍ରପୂତ ଦେଦୀପ୍ୟମାନ

ମହାନ ଦେବଙ୍କ ପରି ସଂଗ୍ରାମରେ ଅତି ଯତ୍ନରେ ଅବସ୍ଥିତ ହେଲେ । ଶତ୍ରୁଗଣ ସାକ୍ଷାତ ଯମଦେବ ସମାନ ଜାଣି କେହି ସୁଦ୍ଧା ତାହାଙ୍କ ନିକଟରେ ରହିପାରିଲେ ନାହିଁ । ତତ୍ପରେ କୃତବର୍ମା ଅନ୍ୟ ରଥରେ ବସି ରଣାଙ୍ଗନରେ ଉପସ୍ଥିତ ହେଲେ । ୩୭ ।

---

## ଦ୍ୱାବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଆପଣଙ୍କ ପୁତ୍ର ରଥିବୀର ଦୁର୍ଯ୍ୟୋଧନ ରଥରେ ଅବସ୍ଥିତ ହୋଇ ଭଗବାନ ରୁଦ୍ରଦେବଙ୍କ ପରି ପ୍ରତାପଶାଳୀ ଓ ଅସୀମ ସାହସଯୁକ୍ତ ହେଲେ । ୧ । ତାହାଙ୍କର ସହସ୍ର ସହସ୍ର ବାଣଦ୍ୱାରା ଭୂମଣ୍ଡଳ ଆଚ୍ଛନ୍ନ ହେଲା । ୨ । ସେହି ମହାଯୁଦ୍ଧରେ ପାଣ୍ଡବ ପକ୍ଷର କୌଣସି ପୁରୁଷ, କୌଣସି ଅଶ୍ୱ, କମ୍ବା କୌଣସି ଗଜ କି ରଥ ଦୁର୍ଯ୍ୟୋଧନଙ୍କ ବାଣରେ ଅବକ୍ଷତ ହୋଇ ନ ଥିଲା । ୩ । ହେ ନରପାଳ ! ତେତେବେଳେ ଆମ୍ଭେ ସମରଭୂମିରେ ଯେଉଁ ଯେଉଁ ଯୋଦ୍ଧା ପୁରୁଷଙ୍କୁ ଦେଖିଥିଲୁଁ, ସେହି ସେହି ଯୋଦ୍ଧାମାନଙ୍କ ଶରୀର ଦୁର୍ଯ୍ୟୋଧନଙ୍କ ବାଣରେ ଆଚ୍ଛନ୍ନ ହୋଇଥିଲା । ୪ । ସେନା ସମ୍ଭୂତ ଧୂଳିରାଶିରେ ସୈନ୍ୟମାନେ ଯେଉଁପରି ଆଚ୍ଛନ୍ନ ହୁଅନ୍ତି, ସେହିପରି ସେହି ମହାତ୍ମାଙ୍କ ଶରସମୂହରେ ବିପକ୍ଷକୁଳ ଆଚ୍ଛନ୍ନ ହେବାର ଦେଖାଯାଉଥିଲା । ୫ ।

ହେ ପୃଥିବୀନାଥ ! ଲଘୁହସ୍ତ ଧନୁର୍ଦ୍ଧର ଦୁର୍ଯ୍ୟୋଧନ ତେତେବେଳେ ଭୂମଣ୍ଡଳକୁ ଶରଜାଳରେ ଏପରି ଆଚ୍ଛନ୍ନ କଲେ ଯେ ତାହା ବାଣମୟ ହେଲାପରି ଜଣାଯାଉଥିଲା । ୬ । ତେତେବେଳେ ଭବଦୀୟ ଓ ପରକୀୟ ସହସ୍ର ସହସ୍ର ଯୋଦ୍ଧାମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ କେବଳ ପ୍ରଧାନ ପୁରୁଷ ବୋଲି ଆମ୍ଭଙ୍କୁ ଜଣାଯାଉଥିଲା । ୭ । ହେ ମହାରାଜ ! ତେତେବେଳେ ଆମ୍ଭେମାନେ ଦୁର୍ଯ୍ୟୋଧନଙ୍କ ବିକ୍ରମ ଦେଖି ଅତିଶୟ ଆଶ୍ଚର୍ଯ୍ୟ ଜ୍ଞାନ କଲୁଁ । କାରଣ ସମସ୍ତ ପାଣ୍ଡବମାନେ ଏକତ୍ରିତ ହୋଇ ସୁଦ୍ଧା ତାହାଙ୍କ ସମ୍ମୁଖରେ ସ୍ଥିର ରହି ପାରିଲେ ନାହିଁ । ୮ ।

ମହାରାଜ ! ତତ୍ପରେ ସେ ଯୁଦ୍ଧ ମଧ୍ୟରେ ପ୍ରଥମରେ ଯୁଧିଷ୍ଠିରଙ୍କୁ ଶତସଂଖ୍ୟକ ଶରରେ ପ୍ରହାର କଲେ । ତତ୍ପରେ ଭୀମସେନଙ୍କୁ ସପ୍ତତି

(ସତ୍ତୁରି) ବାଣରେ, ସହଦେବଙ୍କୁ ସପ୍ତ ସାୟକରେ, ନକୁଳଙ୍କୁ ଚତୁଃଷଷ୍ଠି ବିଶିଖରେ, ଧୃଷ୍ଟଦ୍ୟୁମ୍ନଙ୍କୁ ସପ୍ତ ଶିଲୀମୁଖରେ, ଦ୍ରୌପଦୀଙ୍କ ପୁତ୍ରମାନଙ୍କୁ ସପ୍ତ ବାଣରେ ଏବଂ ସାତ୍ୟକିଙ୍କୁ ତିନଗୋଟି ବାଣରେ ବିଦ୍ଧ କଲେ । ପରିଶେଷରେ ଭଲ୍ଲାଘାତରେ ସହଦେବଙ୍କ ଶରାସନକୁ ଛେଦନ କଲେ । ପ୍ରତାପଶାଳୀ ସହଦେବ ତତ୍‌କ୍ଷଣାତ୍ ସେହି ଛିନ୍ନ ଶରାସନକୁ ପରିତ୍ୟାଗ ପୂର୍ବକ ଅନ୍ୟ ଶରାସହ କାର୍ମୁକ ଗ୍ରହଣ କରି ରାଜା ଦୁର୍ଯ୍ୟୋଧନଙ୍କ ପ୍ରତି ଧାବମାନ ହେଲେ । ପରିଶେଷରେ ସେ ତାହାଙ୍କୁ ଦଶଗୋଟି ଶରରେ ବିଦ୍ଧ କଲେ ଓ ଧନୁର୍ଦ୍ଧର ବୀରବର ନକୁଳ ରାଜାଙ୍କୁ ଭୟଙ୍କର ନବ ବାଣରେ ପ୍ରହାର କରି ସିଂହନାଦ କଲେ । ୧୩ । ସାତ୍ୟକି ଦୃଢ଼ତର ଶତସଂଖ୍ୟକ ଶରରେ, ଦ୍ରୌପଦୀଙ୍କ ପୁତ୍ରମାନେ ତ୍ରିସପ୍ତତି (ତେସ୍ତରି) ସାୟକରେ, ଯୁଧିଷ୍ଠିର ପଞ୍ଚ ବିଶିଖରେ ଓ ଭୀମସେନ ଅଶୀତି ଶିଳୀମୁଖରେ ରାଜା ଦୁର୍ଯ୍ୟୋଧନଙ୍କୁ ଅତିଶୟ ପ୍ରହାର କଲେ । ସୈନ୍ୟମାନଙ୍କ ସାକ୍ଷାତରେ ଉକ୍ତ ମହାତ୍ମାମାନଙ୍କ ନିକ୍ଷିପ୍ତ ଶରବୃନ୍ଦ ଦ୍ୱାରା ଚତୁର୍ଦ୍ଦିଗରେ ଆଚ୍ଛନ୍ନ ହୋଇ ସୁଦ୍ଧା ସେ କିଞ୍ଚିନ୍ମାତ୍ର ବିଚଳିତ ହେଲେ ନାହିଁ ।

ତତ୍‌କାଳେ ସମାଗତ ନରବୃନ୍ଦ ସେହି ମହାତ୍ମାଙ୍କର ଅଲୌକିକ ବାହୁବଳ, ଶିକ୍ଷାକୌଶଳ ଓ ଅସ୍ତ୍ରପ୍ରୟୋଗ ନିପୁଣତାକୁ ପରିଦର୍ଶନ କଲେ । ହେ ରାଜେନ୍ଦ୍ର ! କବଚଧାରୀ କୌରବଗଣ ଅଳ୍ପ ଦୂରକୁ ଯାଇ ରାଜାଙ୍କୁ ନ ଦେଖି ପୁନରପି ପ୍ରତ୍ୟାଗତ ହେଲେ । ବର୍ଷାକାଳରେ ଆନ୍ଦୋଳିତ ସାଗରର ଯେଉଁପରି ଶବ୍ଦ ହୁଏ, ତଦ୍‌ବତ୍ ସେହି ଆଗତ ସୈନ୍ୟମାନଙ୍କର ଅତି ଭୟଙ୍କର ତୁମୁଳ ନିନାଦ ଉପସ୍ଥିତ ହେଲା । ସେହି ଧନୁର୍ଦ୍ଧରମାନେ କୁରୁପତିଙ୍କ ନିକଟବର୍ତ୍ତୀ ହୋଇ ଆତତାୟୀମାନଙ୍କ ପ୍ରତି-କୂଳରେ ଗମନ କଲେ । ଅଶ୍ୱତ୍ଥାମା କ୍ରୋଧଯୁକ୍ତ ହୋଇ ଭୀମଙ୍କୁ ଆକ୍ରମଣ କଲେ । ୨୦ । ହେ ମହାରାଜ ! ତତ୍ପରେ ଚତୁର୍ଦ୍ଦିଗରେ ନିକ୍ଷିପ୍ତ ଶରନିକର ଦ୍ୱାରା ବୀରମାନେ ରଣସ୍ଥଳ ମଧ୍ୟରେ ଦିଗ ଓ ବିଦିଗମାନଙ୍କୁ ଜାଣି ପାରିଲେ ନାହିଁ । ହେ ଭାରତ ! ଶତ୍ରୁଘାତରେ କଠିନକର୍ମା କ୍ରୂରକର୍ମା ଉଭୟ ବୀର ଧନୁଷ୍ଟଙ୍କାରରେ ସମସ୍ତ ବିଶ୍ୱବାସୀମାନଙ୍କୁ ତ୍ରାସ ପ୍ରଦାନ କରି ଯୁଦ୍ଧର ପ୍ରତିକାର ବିଷୟରେ ଯତ୍ନଶୀଳ ହୋଇ ଘୋରତର ସଂଗ୍ରାମ କଲେ ।

ବୀରବର ବଳବାନ୍ ସୁବଳପୁତ୍ର ଶକୁନି ଯୁଦ୍ଧରେ ଯୁଧିଷ୍ଠିରଙ୍କୁ ଶର-ସମୂହରେ ପ୍ରହାର କଲେ ଓ ତାହାଙ୍କ ଚାରି ଅଶ୍ୱକୁ ନିହତ କରି ଏକ

ପ୍ରକାର ସିଂହନାଦ କଲେ ଯେ ତାହା ଶ୍ରବଣ କରି ସମସ୍ତ ସୈନ୍ୟବୃନ୍ଦ କମ୍ପିତ ହେଲେ । ୨୪ । ଏହି ସମୟ ମଧ୍ୟରେ ପ୍ରବଳ ପ୍ରତାପଶାଳୀ ସହଦେବ ଯୁଦ୍ଧରେ ଅପରାଜିତ ଯୁଧିଷ୍ଠିରଙ୍କୁ ରଥରେ ବସାଇ ସେଠାରୁ ନିର୍ଗତ ହେଲେ । ତଦନନ୍ତର ଧର୍ମରାଜ ଯୁଧିଷ୍ଠିର ଅନ୍ୟ ରଥକୁ ଆରୋହଣ କରି ପ୍ରଥମରେ ଶକୁନିଙ୍କୁ ନବଗୋଟି ଶରରେ ପ୍ରହାର କରି ପୁନଶ୍ଚ ପାଞ୍ଚଗୋଟି ଶରରେ ବିଦ୍ଧ କଲେ ଓ ସେହି ସମସ୍ତ ଧନୁର୍ଦ୍ଧରପ୍ରବର ଓ ଯୁଧିଷ୍ଠିର ଘୋରତର ସିଂହନାଦ କଲେ । ହେ ମହାରାଜ ! ଦର୍ଶକମାନଙ୍କର ପ୍ରୀତିଜନକ ଓ ସିଦ୍ଧଚାରଣସେବିତ ସେହି ଘୋରତର ଯୁଦ୍ଧ ଅତି ବିଚିତ୍ର ହେଲା । ତତ୍ପରେ ଅନୁପମ ବଳଶାଳୀ ଉଲୂକ ଯୁଦ୍ଧ ଦୁର୍ମଦ ମହାଧନୁର୍ଦ୍ଧର ନକୁଳଙ୍କ ଉପରେ ଶରବୃଷ୍ଟି କରି ତାହାଙ୍କ ସମ୍ମୁଖକୁ ଧାବିତ ହେଲେ । ବୀର ନକୁଳ ମଧ୍ୟ ଅବିଶ୍ରାନ୍ତ ଶରବୃଷ୍ଟିଦ୍ୱାରା ଯୁଦ୍ଧରେ ଶକୁନିଙ୍କ ପୁତ୍ରକୁ ଆଚ୍ଛାଦିତ କଲେ । ତେତେବେଳେ ସତ୍କୁଳଜାତ ବୀର ସେହି ମହାରଥ ଦୁହେଁ ଯୁଦ୍ଧ ପ୍ରତିକାରେଚ୍ଛୁ ହୋଇ ଓ ପରସ୍ପର କ୍ରୋଧ ପ୍ରକାଶପୂର୍ବକ ଯୁଦ୍ଧ କଲେ ।

କୃତବର୍ମା ଶତ୍ରୁମର୍ଦ୍ଦନ ସାତ୍ୟକିଙ୍କ ସହିତ ଯୁଦ୍ଧ କରି ବଳାସୁର ସହିତ ସମରକାରୀ ଇନ୍ଦ୍ରଦେବଙ୍କ ପରି ଅତ୍ୟନ୍ତ ଶୋଭା ପାଇଲେ । ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନଙ୍କ ଶରାସନ ଛେଦନ ପୂର୍ବକ ସେହି ଛିନ୍ନଧନୁର୍ଦ୍ଧରଙ୍କୁ ଶାଣିତ ଶରସମୂହରେ ପ୍ରହାର କଲେ । ଧୃଷ୍ଟଦ୍ୟୁମ୍ନ ମଧ୍ୟ ଯୁଦ୍ଧରେ ସମସ୍ତ ଧନୁର୍ଦ୍ଧର ନୃପଙ୍କ ସାକ୍ଷାତରେ ଏକଗୋଟି ପରମ ଅସ୍ତ୍ର ଧାରଣପୂର୍ବକ ଦୁର୍ଯ୍ୟୋଧନଙ୍କ ସହିତ ସଂଗ୍ରାମ କଲେ । ହେ ଭରତଶ୍ରେଷ୍ଠ ! ବନ ମଧ୍ୟରେ ଦୁଇଗୋଟି ମତ୍ତଗଜଙ୍କର ଯେଉଁପରି ଘୋରତର ସଂଗ୍ରାମ ହୁଏ, ଏହି ସ୍ଥଳ-ଯୁଦ୍ଧରେ ସେହି ଉଭୟଙ୍କର ତାଦୃଶ ଭୟଙ୍କର ଯୁଦ୍ଧ ହେଲା । ଶୂରବର କୃପାଚାର୍ଯ୍ୟ କ୍ରୋଧାନ୍ଵିତ ହୋଇ ମହାବଳ ଦ୍ରୌପଦୀଙ୍କ ପୁତ୍ରମାନଙ୍କୁ ଅସଂଖ୍ୟ ଦୃଢ଼ତର ଶରଦ୍ୱାରା ପ୍ରହାର କଲେ । ଆତ୍ମା ଇନ୍ଦ୍ରିୟମାନଙ୍କ ସହିତ ଯେଉଁପରି ସଂଗ୍ରାମ କରନ୍ତି, କୃପାଚାର୍ଯ୍ୟ ସେମାନଙ୍କ ସହିତ ତାଦୃଶ ଅନିବାର୍ଯ୍ୟ ମର୍ଯ୍ୟାଦାଶୂନ୍ୟ ଘୋରତର ଯୁଦ୍ଧ କଲେ । ଇନ୍ଦ୍ରିୟଗଣ ଯେଉଁପରି ମୂର୍ଖ ବ୍ୟକ୍ତିକୁ ପୀଡ଼ା ପ୍ରଦାନ କରନ୍ତି, ତଦ୍ବତ୍ ସେମାନେ କୃପାଚାର୍ଯ୍ୟଙ୍କୁ ଅତ୍ୟନ୍ତ ପୀଡ଼ା ଦେଲେ । ସେ ମଧ୍ୟ ସଂଗ୍ରାମରେ ସେମାନଙ୍କ ପ୍ରତି କ୍ରୁଦ୍ଧ ହୋଇ ପ୍ରତିଯୁଦ୍ଧ କଲେ । ହେ ଭାରତ ! ଆତ୍ମା ଇନ୍ଦ୍ରିୟମାନଙ୍କ ସହିତ କ୍ଷଣ କ୍ଷଣରେ ଯୁଦ୍ଧ କଲା ପରି କୃପାଚାର୍ଯ୍ୟ ସେମାନଙ୍କ ସମଭିବ୍ୟାହାରରେ ଆଶ୍ଚର୍ଯ୍ୟ ସମର କଲେ ।

ହେ ମହାରାଜ ! ତତ୍ପରେ ପଦାତିକମାନେ ପଦାତିକୁଳ ସହିତ, ଗଜବୃନ୍ଦ ଗଜଯୂଥ ସହିତ, ଅଶ୍ୱଗଣ ଅଶ୍ୱଗଣ ସହିତ ଓ ରଥିମାନେ ରଥିମାନଙ୍କ ସହିତ ସମାସକ୍ତ ହେବାରୁ ପୁନଶ୍ଚ ଘୋରତର ସଂକୁଳ ଯୁଦ୍ଧ ହେଲା । ୪୦ । ଏହି ଯୁଦ୍ଧ ବିଚିତ୍ର, ଏହି ଯୁଦ୍ଧ ଘୋରତର, ଏହି ଯୁଦ୍ଧ ଅତି ରୁଦ୍ର—ଏହିପରି ଯୋଦ୍ଧାମାନେ କହି କହି ବହୁତର ଭୟଙ୍କର ସଂଗ୍ରାମ କଲେ । ୪୧ । ସେହି ଶତ୍ରୁଦଳନ ବୀରବୃନ୍ଦ ସମସ୍ତ ମହାଯୁଦ୍ଧରେ ପରସ୍ପର ଏକତ୍ରିତ ହୋଇ ଗର୍ଜନପୂର୍ବକ ପରସ୍ପର ଶରାଘାତରେ ପରସ୍ପରକୁ ସଂହାର କଲେ । ୪୨ ।

ହେ ରାଜନ୍ ! ସେହିମାନଙ୍କର ପରସ୍ପର ଶସ୍ତ୍ରାଘାତଜନିତ ଓ ଧାବମାନ ଅଶ୍ୱାରୋହୀମାନଙ୍କଦ୍ୱାରା ଉତ୍ଥାପିତ ଧୂଳିପଟଳ ପବନବେଗରେ ଆନ୍ଦୋଳିତ ହୋଇ ଅତିଶୟ ଭୟଙ୍କର ଦିଶୁଥିଲା । ୪୩ । ରଥନେମି ହସ୍ତୀଯୂଥର ଦୀର୍ଘ ନିଶ୍ୱାସରେ ଯେଉଁ ଧୂଳିପଟଳ ସନ୍ଧ୍ୟାକାଳୀନ କପିଳବର୍ଣ୍ଣ ମେଘପରି ଉତ୍ଥିତ ହେଲା, ତାହା ସୂର୍ଯ୍ୟଦେବଙ୍କ ପଥକୁ ଆଚ୍ଛନ୍ନ କଲା । ୪୪ । ଭଗବାନ ସୂର୍ଯ୍ୟ ସେହି ଘନିଷ୍ଠ ଧୂଳିରାଶିରେ ଆଚ୍ଛନ୍ନ ହୋଇ ପ୍ରଭାଶୂନ୍ୟ ହେଲେ । ଭୂମଣ୍ଡଳ ଓ ସେହି ସମସ୍ତ ଶୂରବର ମହାରଥବୃନ୍ଦ ମଧ୍ୟ ଆଚ୍ଛନ୍ନ ହେଲେ । ୪୫ ।

ହେ ଭରତଶ୍ରେଷ୍ଠ ! ମୁହୂର୍ତ୍ତକ ଉତ୍ତାରେ ଭୂମିତଳ ବୀରମାନଙ୍କର ରକ୍ତରେ ସିକ୍ତ ହେବାରୁ ପୁନଶ୍ଚ ଚତୁର୍ଦ୍ଦିଗ ଏକାବେଳକେ ଧୂଳିଶୂନ୍ୟ ହେଲା । ୪୬ । ତେତେବେଳେ ତୀବ୍ରତର ଅତି ଭୟଙ୍କର ସେହି ଧୂଳିପଟଳ ବିନଷ୍ଟ ହେଲା । ହେ ମହାରାଜ ! ତତ୍ପରେ ଆମ୍ଭେ ସେହି ମଧ୍ୟାହ୍ନ ସମୟରେ ପୁନଶ୍ଚ ବୀର୍ଯ୍ୟ ଓ ଶ୍ରେଷ୍ଠତ୍ୱ ଅନୁସାରେ ଆରବ୍ଧ ଓ ଅତି ଦାରୁଣ ଦ୍ୱନ୍ଦ୍ୱଯୁକ୍ତ ଯୁଦ୍ଧ ଅବଲୋକନ କଲୁ । ହେ ରାଜେନ୍ଦ୍ର ! ତେତେବେଳେ କବଚବୃନ୍ଦର ଉଜ୍ଜ୍ୱଳ ପ୍ରଭା ଦୃଷ୍ଟିଗୋଚର ହେଲା ଏବଂ ପର୍ବତ ମଧ୍ୟରେ ଦହ୍ୟମାନ ଉତ୍କୃଷ୍ଟ ବଂଶବନର ଶବ୍ଦ ପରି ପତନଶୀଳ ଶରବୃନ୍ଦର ତୁମୁଳ ଶବ୍ଦ ସମର ମଧ୍ୟରେ ନିରନ୍ତର ଉତ୍ଥିତ ହେଲା । ୪୯ ।

---

# ନବନବତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ତେତେବେଳେ ଘୋରରୂପ ଭୟାବହ ଯୁଦ୍ଧ ହେବାରୁ ଦୁର୍ଯ୍ୟୋଧନଙ୍କର ସୈନ୍ୟବୃନ୍ଦ ପାଣ୍ଡବମାନଙ୍କ-ଦ୍ୱାରା ଛିନ୍ନ ଭିନ୍ନ ହେଲେ । ୧ । ଆପଣଙ୍କ ପୁତ୍ର ଅତିଶୟ ଯତ୍ନରେ ସେହି ମହାରଥମାନଙ୍କୁ ନିବାରଣ କରି ପାଣ୍ଡବଙ୍କ ସୈନ୍ୟସହିତ ଯୁଦ୍ଧ କରାଇଲେ । ୨ । ଭବଦୀୟ ପୁତ୍ରଙ୍କ ଜୟାଭିଳାଷୀ ଯୋଦ୍ଧାମାନେ ସହସା ପଳାୟନରୁ ନିବୃତ୍ତ ହେଲେ । ସେମାନେ ନିବୃତ୍ତ ହେବାରୁ ଭବଦୀୟ ଓ ପରକୀୟ ସୈନ୍ୟମାନଙ୍କର ସୁରାସୁର ସମାନ ଅତି ଦାରୁଣ ସଂଗ୍ରାମ ହେଲା । ତେତେବେଳେ ନିଜ ପକ୍ଷ ଓ ବିପକ୍ଷର ସୈନ୍ୟମାନଙ୍କ ମଧ୍ୟରୁ ଏକଜଣ ସୁଦ୍ଧା ଯୁଦ୍ଧବିଷୟରେ ପରାଙ୍‌ମୁଖ ହେଲେ ନାହିଁ । ୪ । ସେମାନେ ଅନୁମାନରେ ଏବଂ ସଙ୍କେତ ଦ୍ୱାରା ପରସ୍ପର ଯୁଦ୍ଧ କରୁଥିଲେ । ପରିଶେଷରେ ଉଭୟ ପକ୍ଷର ବହୁ ସୈନ୍ୟ କ୍ଷୟପ୍ରାପ୍ତ ହେଲେ । ୫ ।

ଅନନ୍ତର ରାଜା ଯୁଧିଷ୍ଠିର ଘୋରତର କ୍ରୋଧର ଅଧୀନ ହୋଇ ଆପଣଙ୍କ ସୈନ୍ୟସହିତ ଓ ରାଜା ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧରେ ଜୟ କରିବାକୁ ଅଭିଳାଷୀ ହୋଇ ଶିଳାଦ୍ୱାରା ଶାଣିତ ସୁବର୍ଣ୍ଣପୁଙ୍ଖ ତିନିଗୋଟି ଶରଦ୍ୱାରା କୃତବର୍ମାଙ୍କୁ ପ୍ରହାର କଲେ ଏବଂ ଚାରିଗୋଟି ନାରାଚଦ୍ୱାରା ତଦୀୟ ଅଶ୍ୱମାନଙ୍କୁ ସଂହାର କଲେ । ୭ । ତେତେବେଳେ ଅଶ୍ୱତ୍ଥାମା ଯଶସ୍ୱୀ କୃତବର୍ମାଙ୍କୁ ନିଜ ରଥରେ ବସାଇ ସେଠାରୁ ବାହାରିଗଲେ । ତହିଁରେ କୃତବର୍ମା ଅଷ୍ଟସଂଖ୍ୟକ ବାଣଦ୍ୱାରା ଯୁଧିଷ୍ଠିରଙ୍କୁ ପ୍ରତିବିଦ୍ଧ କଲେ । ୮ ।

ତହିଁରେ ଧର୍ମପୁତ୍ର ଯୁଧିଷ୍ଠିର ରଣସ୍ଥଳରେ ଯେଉଁ ସ୍ଥାନରେ ଥିଲେ, ରାଜା ଦୁର୍ଯ୍ୟୋଧନ ତତ୍‌କ୍ଷଣାତ୍ ସେହି ସ୍ଥାନକୁ ସପ୍ତଶତ ରଥ ପ୍ରେରଣ କଲେ । ରଥବୃନ୍ଦ ରଥଯୁକ୍ତ ହୋଇ ମନ ଓ ବାୟୁ ସମାନ ବେଗରେ ଯୁଧିଷ୍ଠିରଙ୍କ ରଥ ନିକଟକୁ ଅଭିଗମନ କଲେ । ୧୦ । ହେ ମହାରାଜ ! ସେମାନେ ଚତୁର୍ଦ୍ଦିଗରେ ଯୁଧିଷ୍ଠିରଙ୍କୁ ପରିବେଷ୍ଟନ ପୂର୍ବକ ଜଳଧରବୃନ୍ଦ ଯେଉଁପରି ସୂର୍ଯ୍ୟଦେବଙ୍କୁ ଅଦୃଶ୍ୟ କରନ୍ତି, ସେହିପରି ଶରସମୂହଦ୍ୱାରା ପାଣ୍ଡୁପୁତ୍ରଙ୍କୁ ଅଦୃଶ୍ୟ କଲେ । ଶିଖଣ୍ଡି ପ୍ରଭୃତି ରଥିବୃନ୍ଦ କୌରବ ସୈନ୍ୟଦ୍ୱାରା ତାଦୃଶ ଅବସ୍ଥାପ୍ରାପ୍ତ ଯୁଧିଷ୍ଠିରଙ୍କୁ ଦେଖି ତାହା

ସହ୍ୟ କରି ନ ପାରି କିଙ୍କିଣୀଜାଲଶୋଭିତ ବେଗଶୀଳ ଅଶ୍ୱଯୁକ୍ତ ରଥ-ନିକର ଦ୍ୱାରା କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ ରକ୍ଷା କରିବା ନିମିତ୍ତ ଆଗମନ କଲେ । ୧୩ ।

ତଦନନ୍ତର କୌରବ ଓ ପାଣ୍ଡବମାନଙ୍କର ଯମରାଜ୍ୟବର୍ଦ୍ଧନ ଯେଉଁ ଭୟାବହ ଯୁଦ୍ଧ ହେଲା, ତହିଁରେ ସମରଭୂମି ଶୋଣିତ ଜଳରେ ପରିପୂର୍ଣ୍ଣ ହେଲା । ୧୪ । ପାଣ୍ଡବ ଓ ପାଞ୍ଚାଳ ଯୋଦ୍ଧାମାନେ ଆତତାୟୀ କୌରବମାନଙ୍କର ସପ୍ତଶତ ରଥ ବିନଷ୍ଟ କରି ପୁନଶ୍ଚ ସେମାନଙ୍କୁ ଆକ୍ରମଣ କଲେ । ୧୫ । ସେତେବେଳେ ପାଣ୍ଡବମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କର ଯେଉଁ ମହାଯୁଦ୍ଧ ହେଲା, ତାଦୃଶ ଯୁଦ୍ଧ କଦାପି ଆମ୍ଭମାନଙ୍କ ଦୃଷ୍ଟିଗୋଚର କିମ୍ବା ଶ୍ରୁତିଗୋଚର ହୋଇ ନ ଥିଲା । ୧୬ । ସେହି ମର୍ଯ୍ୟାଦାହୀନ ମହାଯୁଦ୍ଧ ହୁଅନ୍ତେ, ଉଭୟପକ୍ଷ ଓ ଇତର ସୈନ୍ୟବୃନ୍ଦ ବଧମାନ ହେଲେ । ଯୋଦ୍ଧାମାନେ ନିନାଦ କଲେ । ଶଂଖଶବ୍ଦ, ସିଂହନାଦ ଓ ଧନୁର୍ଦ୍ଧର-ମାନଙ୍କ ଗର୍ଜନରେ ଯୁଦ୍ଧ ଅତିଶୟ ବର୍ଦ୍ଧମାନ ହେବାରୁ ଜୟାଭିଳାଷୀ ଯୋଦ୍ଧାମାନେ ମର୍ମଚ୍ଛେଦ ପ୍ରାପ୍ତ ହୋଇ ଧାବମାନ ହେଲେ । ଭୂମଣ୍ଡଳ ମଧ୍ୟରେ ବିଷମ ଶୋକଜନକ ସଂହାର ଦଶା ଉପସ୍ଥିତ ହେଲା ଓ ଅନେକ ଅନେକ ଉତ୍ତମ ସ୍ତ୍ରୀ ସମୂହର ବୈଧବ୍ୟଦଶା ଘଟିଲା ।

ମର୍ଯ୍ୟାଦାଶୂନ୍ୟ ଅତି ଦାରୁଣ ଯୁଦ୍ଧ ହେଉଥିବା ସମୟରେ ସୈନ୍ୟମାନଙ୍କର ବିନାଶ ନିମିତ୍ତ ଅତି ଦାରୁଣ ଉତ୍ପାତ ସମୂହ ପ୍ରାଦୁର୍ଭୂତ ହେଲା । ୨୧ । ଗିରିବନପୂର୍ଣ୍ଣ ମହୀ ଶବ୍ଦ କରି ବିଚଳିତ ହେଲା । ଦଣ୍ଡଯୁକ୍ତ ଅଙ୍ଗାରସହିତ ଉଲ୍କାସମୂହ ସୂର୍ଯ୍ୟମଣ୍ଡଳକୁ ଆଘାତ କରି ପୃଥିବୀରେ ପତିତ ହେଲେ । ପ୍ରବଳ ପବନ କରକା ବର୍ଷଣ ପୂର୍ବକ ଚତୁର୍ଦ୍ଦିଗରେ ପ୍ରବାହିତ ହେଲା । ଗଜଯୂଥ କମ୍ପିତକଳେବର ହୋଇ ସର୍ବଦା ନେତ୍ରଜଳ ମୋଚନ କଲେ । କ୍ଷତ୍ରିୟକୁଳ ଏହି ଦାରୁଣ ଉତ୍ପାତ-ସମୂହକୁ ଅନାଦର କରି ସ୍ୱର୍ଗଗମନରେ ଅଭିଳାଷୀ ହୋଇ ଯୁଦ୍ଧ ନିମିତ୍ତ ମନ୍ତ୍ରଣା ପୂର୍ବକ ପବିତ୍ର ଓ ରମଣୀୟ କୁରୁକ୍ଷେତ୍ରରେ ପୁନଶ୍ଚ ଆହ୍ଲାଦ ସହିତ ସ୍ଥିର ଭାବରେ ଅବସ୍ଥାନ କଲେ । ୨୫ ।

ତତ୍ପରେ ଗାନ୍ଧାରରାଜପୁତ୍ର ଶକୁନି ସମସ୍ତଙ୍କୁ ସମ୍ବୋଧନ କରି କହିଲେ, "ହେ ଯୋଧଗଣ ! ତୁମ୍ଭେମାନେ ସମସ୍ତେ ଅଗ୍ରଭାଗରେ ରହି ଯୁଦ୍ଧ କର, ଆମ୍ଭେ ସମସ୍ତଙ୍କ ପଶ୍ଚାଦ୍‌ଗାମୀ ହୋଇ ପାଣ୍ଡବମାନଙ୍କୁ ସଂହାର

କରୁଅଛୁ ।” ୨୬ । ହେ ମହାରାଜ ! ତାହାଙ୍କର ଏହି ବାକ୍ୟ ଶ୍ରବଣ କରି ଆମ୍ଭମାନଙ୍କର ମଦ୍ରଦେଶୀୟ ଓ ଅନ୍ୟାନ୍ୟ ବେଗଶାଳୀ ଯୋଦ୍ଧାମାନେ ହୃଷ୍ଟ ଚିତ୍ତରେ କଲକଳା ଶବ୍ଦ କଲେ । ୨୭ । ଯୁଦ୍ଧ ସମାଗତ ଦୁର୍ଜ୍ଜୟ ପାଣ୍ଡବମାନେ ଶରାସନ କମ୍ପାଇ ବାଣବୃଷ୍ଟିରେ ପୁନଶ୍ଚ ଆମ୍ଭମାନଙ୍କୁ ଆଚ୍ଛନ୍ନ କଲେ । ୨୮ । ତତ୍ପରେ ଶତ୍ରୁକର୍ତ୍ତୃକ ମଦ୍ରରାଜଙ୍କ ସୈନ୍ୟକୁଳ ନିହତ ହେବାର ଦେଖି ଦୁର୍ଯ୍ୟୋଧନଙ୍କ ସୈନ୍ୟମାନେ ପୁନଶ୍ଚ ପରାଙ୍‌ମୁଖ ହେଲେ । ୨୯ । ତାହା ଉତ୍ତାରେ ବଳବାନ ଗାନ୍ଧାରରାଜ କହିଲେ, ହେ ଅଧର୍ମଜ୍ଞ ସୈନ୍ୟବୃନ୍ଦ ! ତୁମ୍ଭେମାନେ ସ୍ଥିର ହୁଅ; ଯୁଦ୍ଧ କର; ପଳାଇବାରେ କିଛି ପ୍ରୟୋଜନ ନାହିଁ । ୩୦ ।

ହେ ଭରତଶ୍ରେଷ୍ଠ ! ତେତେବେଳେ ଗାନ୍ଧାରରାଜଙ୍କର ଦଶ ସହସ୍ର ବିମଳପ୍ରାସ ଅସିଧାରୀ ଅଶ୍ୱାରୋହୀ ସୈନ୍ୟ ଉପସ୍ଥିତ ଥିଲେ । ଲୋକକ୍ଷୟ ହେଉଥିବା ସମୟରେ ଶକୁନି ବଳପୂର୍ବକ ବିକ୍ରମ ପ୍ରକାଶ କରି ପଶ୍ଚାଦ୍-ଭାଗରେ ଶାଣିତ ଶରବୃନ୍ଦ ଦ୍ୱାରା ପାଣ୍ଡବ ସୈନ୍ୟମାନଙ୍କୁ ସଂହାର କଲେ । ହେ ମହାରାଜ ! ପାଣ୍ଡବମାନଙ୍କର ଅତି ଉତ୍କୃଷ୍ଟ ସେହି ସୈନ୍ୟବୃନ୍ଦ ବାୟୁ-ଦ୍ୱାରା ପରିଚାଳିତ ଜଳଧର ସଦୃଶ ଚତୁର୍ଦ୍ଦିଗରେ ବିଚ୍ଛିନ୍ନ ହେଲେ । ୩୩ । ତତ୍ପରେ ଯୁଧିଷ୍ଠିର ନିକଟସ୍ଥିତ ସ୍ୱକୀୟ ସୈନ୍ୟମାନଙ୍କୁ ସମର ମଧ୍ୟରେ ହଠାତ୍ ବିଚ୍ଛିନ୍ନ ହେବାର ଅବଲୋକନ କରି ମଧ୍ୟ ବ୍ୟଗ୍ର ନ ହୋଇ ମହା-ଯୁଦ୍ଧରେ ସହଦେବଙ୍କୁ ବିପକ୍ଷ କୁଳର ଅଭିମୁଖକୁ ଯିବା ନିମିତ୍ତ ଅନୁମତି ଦେଲେ ଓ କହିଲେ, “ହେ ପାଣ୍ଡବ ! ଦେଖ, ଏହି ଦୁର୍ବୁଦ୍ଧି ଶକୁନି ବଦ୍ଧ-କବଚ ହୋଇ ଆମ୍ଭମାନଙ୍କ ପଶ୍ଚାଦ୍‌ଭାଗରେ ପୀଡ଼ା ପ୍ରଦାନପୂର୍ବକ ସୈନ୍ୟ-ମାନଙ୍କୁ ସଂହାର କରୁଅଛନ୍ତି । ଅତଏବ ତୁମ୍ଭେ ଦ୍ରୌପଦୀଙ୍କ ପୁତ୍ରମାନଙ୍କୁ ସଙ୍ଗରେ ନେଇ ଶୀଘ୍ର ଶକୁନିଙ୍କୁ ସଂହାର କର । ହେ ଅନଘ ! ଆମ୍ଭେ ପାଞ୍ଚାଳମାନଙ୍କ ସମଭିବ୍ୟାହାରରେ ରଥୀମାନଙ୍କୁ ଶରାଗ୍ନିରେ ଦଗ୍ଧ କରିବୁଁ । ୩୬ । ତୁମ୍ଭ ସଙ୍ଗରେ କରୀଯୂଥ, ଅଶ୍ୱବୃନ୍ଦ ଓ ତିନି ସହସ୍ର ପଦାତିକ ସୈନ୍ୟ ଗମନ କରନ୍ତୁ, ତୁମ୍ଭେ ସେମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଶକୁନିଙ୍କୁ ସଂହାର କର ।” ୩୭ ।

ଧନୁର୍ଦ୍ଧର ସୈନ୍ୟମାନଙ୍କ ଦ୍ୱାରା ବେଷ୍ଟିତ ସପ୍ତଶତ ଗଜାରୋହୀ, ପଞ୍ଚଶତ ଅଶ୍ୱାରୋହୀ, ତିନି ସହସ୍ର ପଦାତିକ, ବୀର୍ଯ୍ୟଶାଳୀ ସହଦେବ ଓ ଦ୍ରୌପଦୀଙ୍କ ପୁତ୍ରଗଣ ଯୁଦ୍ଧରେ ସମର ଦୁର୍ମଦ ଶକୁନିଙ୍କ ସମ୍ମୁଖକୁ ଧାବିତ

ହେଲେ । ୩୯ । ହେ ମହାରାଜ ! ତତ୍ପରେ ପ୍ରତାପଶାଳୀ ଶକୁନି ଜୟାଭିଳାଷୀ ହୋଇ ପାଣ୍ଡବମାନଙ୍କୁ ଅତିକ୍ରମପୂର୍ବକ ପୃଷ୍ଠଭାଗରୁ ସୈନ୍ୟମାନଙ୍କୁ ସଂହାର କଲେ । ୪୦ । ବଳଶାଳୀ ପାଣ୍ଡବମାନଙ୍କର ଅତି କ୍ରୋଧାନ୍ୱିତ ଅଶ୍ୱାରୋହୀଗଣ ରଥିସମୂହକୁ ଅତିକ୍ରମ କରି ଶକୁନିଙ୍କ ସୈନ୍ୟଦଳ ମଧ୍ୟରେ ପ୍ରବିଷ୍ଟ ହେଲେ । ୪୧ । ସେହି ସମସ୍ତ ଶୂରବର ଅଶ୍ୱାରୋହୀ ସୈନ୍ୟବୃନ୍ଦ ରଣମଧ୍ୟରେ ଅବସ୍ଥିତ ହୋଇ ଶକୁନିଙ୍କ ମହାବଳସମୂହକୁ ଶରବୃଷ୍ଟିଦ୍ୱାରା ଆଚ୍ଛନ୍ନ କଲେ । ୪୨ । ହେ ରାଜନ୍ ! ଆପଣଙ୍କ କୁମନ୍ତ୍ରଣାରେ ସେହି ଗଦା ଓ ପ୍ରାସ ଅସ୍ତ୍ର ଉତ୍ତୋଳନକାରୀ ମହାପୁରୁଷସେବିତ ଅତି ଉତ୍କୃଷ୍ଟ ମହାଯୁଦ୍ଧ ପ୍ରବର୍ତ୍ତମାନ ହେଲା । ୪୩ । ଧନୁଷ୍ଟଙ୍କାର ଉପରତ ହେଲା । ରଥିଗଣ ଦର୍ଶକ ରୂପେ ଅବସ୍ଥାନ କଲେ । ସେତେବେଳେ ସ୍ୱକୀୟ କିମ୍ବା ପରକୀୟ ସୈନ୍ୟମାନଙ୍କ ମଧ୍ୟରେ କୌଣସି ବିଶେଷ ପ୍ରଭେଦ ଦେଖାଗଲା ନାହିଁ । ୪୪ । କୌରବ ଓ ପାଣ୍ଡବବୃନ୍ଦ ଶୂରମାନଙ୍କ ବାହୁବିସୃଷ୍ଟ-ଶକ୍ତି-ପତନକୁ ଜ୍ୟୋତିଷ୍କ ପଦାର୍ଥ ପତନ ପରି ଦେଖୁଥିଲେ । ୪୫ ।

ହେ ମହାରାଜ ! ନିର୍ମଳ ଖଡ୍‌ଗବୃନ୍ଦର ନିରନ୍ତର ସଂପାତରେ ଆକାଶମଣ୍ଡଳ ଆବୃତ ଓ ଅତିଶୟ ଶୋଭିତ ହେଲା । ୪୬ । ହେ ଭରତଶ୍ରେଷ୍ଠ ! ପ୍ରାସ ଅସ୍ତ୍ରସମୂହ ନିରନ୍ତର ଅବିଶ୍ରାନ୍ତ ଭାବରେ ନିକ୍ଷିପ୍ତ ହେବାରୁ ଆକାଶମଣ୍ଡଳରେ ଶଲଭରାଶି ଉଡ୍‌ଡୀନ ହେଉଥିଲାପରି ଜଣାଗଲା । ୪୭ । ରୁଧିରଲିପ୍ତସର୍ବାଙ୍ଗ ଶତସହସ୍ର ଅଶ୍ୱ, ଶରବିଦ୍ଧ ଆରୋହୀମାନଙ୍କ ସହିତ ବସୁଧାରେ ନିପତିତ ହେଲେ । ୪୮ । ଅତିଶୟ କ୍ଷତବିକ୍ଷତ ସୈନ୍ୟଗଣ ପରସ୍ପର ନିକଟବର୍ତ୍ତୀ ଅତ୍ୟନ୍ତ ପରିପିଷ୍ଟ ହୋଇ ମୁଖଦ୍ୱାରା ନିରନ୍ତର ରୁଧିର ବମନ କରୁଥିବାର ଦେଖିଲୁ । ୪୯ । ହେ ରାଜନ୍ ! ତତ୍ପରେ ସୈନ୍ୟବୃନ୍ଦ ଧୂଳିରାଶିରେ ଆଚ୍ଛନ୍ନ ହେବାରୁ ଘୋରତର ଅନ୍ଧକାର ଆବିର୍ଭୂତ ହେଲା । ରଣଭୂମି ଅନ୍ଧକାରରେ ଆଚ୍ଛନ୍ନ ହେବାରୁ ଶତ୍ରୁହନ୍ତା ନର ଓ ଅଶ୍ୱବୃନ୍ଦ ସେହି ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ପାରିଲେ ନାହିଁ । ଅନ୍ୟାନ୍ୟ ସୈନ୍ୟଗଣ ଭୂତଳରେ ପଡ଼ି ରୁଧିର ବମନ କରୁଥିଲେ । କେହି କେହି ପରସ୍ପରର କେଶ ଗ୍ରହଣ ପୂର୍ବକ ନିଶ୍ଚେଷ୍ଟ ହୋଇ ରଣଭୂମିରେ ପଡ଼ିଥିଲେ । ମଲ୍ଲ ସଦୃଶ ମହାବଳ ସୈନ୍ୟବୃନ୍ଦ ପରସ୍ପରକୁ ଅଶ୍ୱପୃଷ୍ଠରୁ ଆକର୍ଷଣପୂର୍ବକ ସଂହାର କରୁଥିଲେ ।

ଏହି ଯୁଦ୍ଧରେ ଅନେକ ବ୍ୟକ୍ତି ପ୍ରାଣ ବିସର୍ଜନ କରି ସୁଦ୍ଧା ଅଶ୍ୱଦ୍ୱାରା ପରିଚ୍ୟୁତ ହେଉଥିଲେ । ୫୩ । ବିଜୟାଭିଳାଷୀ କଣ୍ଟକପ୍ରାୟ ବୀରଭିମାନୀ ପୁରୁଷଗଣ ଯେଉଁ ଯେଉଁ ସ୍ଥାନରେ ରହି ଯୁଦ୍ଧ କରୁଥିଲେ, ସେମାନେ ରଣଭୂମିର ସେହି ସେହି ସ୍ଥାନରେ ପତିତ ହେବାର ଦେଖିଲୁଁ । ୫୪ । ସେତେବେଳେ ଶତ ସହସ୍ର ରକ୍ତାକ୍ତ ଛିନ୍ନ ଭୁଜ ଓ ଅପକୃଷ୍ଟ କେଶରାଶିଦ୍ୱାରା ଯୁଦ୍ଧଭୂମି ଆଚ୍ଛନ୍ନ ହୋଇଥିବାର ଦେଖିଲୁଁ । ୫୫ । ହତ ଅଶ୍ୱ ଓ ଅଶ୍ୱାରୋହୀବୃନ୍ଦରେ ଭୂତଳ ଆଚ୍ଛନ୍ନ ହେବାରୁ ରଣସ୍ଥଳରେ କୌଣସି ବ୍ୟକ୍ତି ଅଶ୍ୱଦ୍ୱାରା ଦୂରକୁ ଗମନ କରିବା ନିମିତ୍ତ ସମର୍ଥ ହେଲେ ନାହିଁ । ୫୬ । ହେ ମହାରାଜ ! ପରସ୍ପର ବଧାଭିଳାଷୀ ରକ୍ତାକ୍ତ କବଚଧାରୀ ଆୟୁଧ ଉତ୍ତୋଳନକାରୀ, ଶସ୍ତ୍ରଧାରୀ ବିବିଧ ଘୋରତର ଅସ୍ତ୍ରଶାଳୀ ନିକଟସ୍ଥିତ ସୈନ୍ୟମାନଙ୍କଦ୍ୱାରା ଯୁଦ୍ଧରେ ବହୁଳ ସୈନିକ ହତ ହେବାରୁ ସୁବଳପୁତ୍ର ଶକୁନି ମୁହୂର୍ତ୍ତିକମାତ୍ର ସମର କରି ଅବଶିଷ୍ଟ ଛଅ ସହସ୍ର ଅଶ୍ୱାରୋହୀଗଣ ସହିତ ରଣସ୍ଥାନରୁ ପ୍ରସ୍ଥାନ କଲେ ।

ରୁଧିରକ୍ତକଳେବର ପାଣ୍ଡବ ସୈନ୍ୟର ବାହନବୃନ୍ଦ ଶ୍ରାନ୍ତ ହେବାରୁ ସେମାନେ ମଧ୍ୟ ସେହିପରି ଅବଶିଷ୍ଟ ଛଅ ସହସ୍ର ଅଶ୍ୱାରୋହୀ ସୈନ୍ୟ ସହିତ ସମରସ୍ଥଳରୁ ପ୍ରସ୍ଥାନ କଲେ । ମହାସଂଗ୍ରାମରେ ସନ୍ନିବିଷ୍ଟ ପାଣ୍ଡବ ପକ୍ଷର ରକ୍ତାକ୍ତ କଳେବର ଅଶ୍ୱାରୋହୀକୁଳ କହିଲେ, "ଯଦି ଏଠାରେ ରଥୀବୃନ୍ଦ ଯୁଦ୍ଧ କରିବାକୁ ସମର୍ଥ ହେବେ, ତେବେ ମହାଗଜଯୂଥ କିପରି ସମର୍ଥ ହେବେ ? ଅତଏବ ରଥୀଗଣ ରଥୀମାନଙ୍କ ନିକଟକୁ ଓ ଗଜଯୂଥ ଗଜଯୂଥର ସମୀପକୁ ଗମନ କରନ୍ତୁ । ସୁବଳପୁତ୍ର ରାଜା ଶକୁନି ଏଠାରୁ ଫେରିଯାଇ ନିଜ ସୈନ୍ୟ ମଧ୍ୟରେ ରହି ଅଛନ୍ତି । ସେ ସମ୍ମୁଖ ଯୁଦ୍ଧ କରିବାକୁ ପୁନଶ୍ଚ ଆଉ ଆସିବେ ନାହିଁ ।" ସୈନ୍ୟବୃନ୍ଦ ଏହିପରି ବାକ୍ୟ କହିଲା ଉତ୍ତାରେ ପାଞ୍ଚାଳୀଙ୍କ ପୁତ୍ରବୃନ୍ଦ ଓ ସେହି ସମସ୍ତ ମତ୍ତ ଗଜାରୋହୀ ସୈନ୍ୟମାନେ ମହାରଥ ଧୃଷ୍ଟଦ୍ୟୁମ୍ନ ଯେଉଁଠାରେ ଅବସ୍ଥାନ କରୁଥିଲେ, ତତ୍କ୍ଷଣାତ୍ ସେହି ସ୍ଥାନକୁ ଗମନ କଲେ । ସେତେବେଳେ ସମରକ୍ଷେତ୍ରରେ ଧୂଳିମୟ ମେଘ ଉତ୍ଥିତ ହେବାରୁ ଏକାକୀ ସହଦେବ ମଧ୍ୟ ଯେଉଁ ସ୍ଥାନରେ ରାଜା ଯୁଧିଷ୍ଠିର ଅବସ୍ଥିତ ହୋଇଥିଲେ, ସେଠାକୁ ଗମନ କଲେ ।

ତତ୍ପରେ ସେମାନେ ସମସ୍ତେ ପ୍ରସ୍ଥାନ କରନ୍ତେ ଶକୁନି କ୍ରୋଧଯୁକ୍ତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କ ପାର୍ଶ୍ୱଦେଶସ୍ଥ ସେନାଙ୍କୁ ପୁନଶ୍ଚ ସଂହାର କଲେ ।

ସେହି ସମୟରେ ପରସ୍ପରବଧାଭିଳାଷୀ ଭବଦୀୟ ଓ ପରକୀୟ ସୈନ୍ୟମାନେ ପ୍ରାଣପଣରେ ତୁମୁଳ ସମର କଲେ । ସେହି ବୀରମାନଙ୍କ ସଙ୍ଗମ ସମୟରେ ଶତ ସହସ୍ର ଯୋଦ୍ଧାମାନେ ଚତୁର୍ଦ୍ଦିଗରେ ପତିତ ହୋଇ ପରସ୍ପର ଦେଖାଦେଖି ହେଉଥିଲେ । ସେହି ଜନକ୍ଷୟ ସମୟରେ ପତନଶୀଳ ତାଳଫଳ ସଦୃଶ ଅସିଦ୍ୱାରା ଛିନ୍ନ ମସ୍ତକବୃନ୍ଦର ମହାନ୍ ଶବ୍ଦ ପ୍ରାଦୁର୍ଭୂତ ହେଲା । ହେ ମହାରାଜ ! କବଚହୀନ ଭଗ୍ନକଳେବର ସମୂହ, ବିଚ୍ଛିନ୍ନ ଊରୁ ଓ ଆୟୁଧଯୁକ୍ତ ଭୁଜସମୂହ ଭୂତଳରେ ପତିତ ହେବାରୁ ଯେଉଁ ଚଟାଚଟ ଶବ୍ଦ ଉତ୍ଥିତ ହେଉଥିଲା, ତାହା ଶ୍ରବଣ କରି ସର୍ବାଙ୍ଗ ପୁଲକରେ ପରିପୂର୍ଣ୍ଣ ହେଲା । ୭୦ । ଯୋଦ୍ଧାମାନେ ପିତା, ପୁତ୍ର ଓ ଭ୍ରାତାମାନଙ୍କୁ ଶାଣିତ ଶସ୍ତ୍ରବୃନ୍ଦଦ୍ୱାରା ସଂହାରପୂର୍ବକ ଆମିଷଲୋଭୀ ପକ୍ଷୀସଦୃଶ ଚତୁର୍ଦ୍ଦିଗରେ ଭ୍ରମଣ କରୁଥିଲେ । ୭୧ ।

ତେତେବେଳେ ସମସ୍ତେ ପରସ୍ପର କ୍ରୋଧାବିଷ୍ଟ ହୋଇ "ଆମ୍ଭେ ପ୍ରଥମେ ବିନାଶ କରିବୁ, ଆମ୍ଭେ ସଂହାର କରିବୁ" ଏହି ପ୍ରକାର କହି କହି ସହସ୍ର ସହସ୍ର ଯୋଦ୍ଧାଙ୍କୁ ହତ କଲେ । ୭୨ । କେତେ କେତେ ଅଶ୍ୱାରୋହୀମାନେ ପରସ୍ପର ସଂଘର୍ଷଣରେ ଆସନରୁ ଭ୍ରଷ୍ଟ ଓ ହତ ହୁଅନ୍ତେ ସେମାନଙ୍କ ଆଘାତରେ ହତ ହୋଇ ଶତସହସ୍ର ଘୋଟକ ପଡ଼ିଥିଲେ । ୭୩ । ହେ ମହାରାଜ ! ଆପଣଙ୍କ କୁମନ୍ତ୍ରଣାରେ ଶୀଘ୍ରଗାମୀ ପ୍ରତିପିଷ୍ଟ ଶତାୟୁମାନ ଅଶ୍ୱବୃନ୍ଦର ପର ମର୍ମଭେଦୀ ଗର୍ଜନକାରୀ, କବଚଧାରୀ ନରସମୂହର ଓ ଖଡ୍‌ଗ, ଶକ୍ତି ଓ ପାଶ ପ୍ରଭୃତି ଶସ୍ତ୍ରସମୂହର ତୁମୁଳ ଶବ୍ଦ ଉତ୍ଥିତ ହେଲା । ୭୫ । ଆପଣଙ୍କର କ୍ରୋଧାକ୍ରାନ୍ତ ଯୋଦ୍ଧାମାନେ, ଶ୍ରାନ୍ତବାହନ, ଅତ୍ୟନ୍ତ ପରିଶ୍ରାନ୍ତ, ପିପାସିତ ଓ ଶାଣିତ ଶରସମୂହରେ କ୍ଷତବିକ୍ଷତ ହୋଇ ଯୁଦ୍ଧ ସମ୍ମୁଖରେ ରହିଥିଲେ । ୭୬ । କେତେ କେତେ ସୈନ୍ୟ ରୁଧିର ଗନ୍ଧରେ ଅଚେତନ ଓ ମତ୍ତ ହୋଇ ସ୍ୱକୀୟ ଓ ପରକୀୟ ସୈନ୍ୟ ମଧ୍ୟରୁ ଯାହାକୁ ସମ୍ମୁଖରେ ଦେଖିଲେ, ତାହାକୁ ସଂହାର କଲେ । ୭୭ ।

ହେ ରାଜନ୍ ! ଅନେକ ଅନେକ ଜୟାଭିଳାଷୀ କ୍ଷତ୍ରିୟକୁଳ ଶରବୃଷ୍ଟିଦ୍ୱାରା ଆହତ ଓ ମୃତ ହୋଇ ପୃଥିବୀରେ ପତିତ ହେଲେ । ୭୮ । ଗୃଧ୍ର, ଶୃଗାଳ ଓ ବୃକ ପ୍ରଭୃତିଙ୍କର ତୁମୁଳ ଆନନ୍ଦଦାୟକ ସେହି ଦିବସରେ ଭବଦୀୟ ପୁତ୍ରଙ୍କ ସାକ୍ଷାତରେ ଘୋରତର ସୈନ୍ୟକ୍ଷୟ ହେଲା । ହେ

ନରେନ୍ଦ୍ର ! ଭୀରୁକୁଳର ଭୟବର୍ଦ୍ଧକ ରକ୍ତଜଳଦ୍ୱାରା ବିଚିତ୍ର ସମରସ୍ଥଳ ଅଶ୍ୱ ଓ ନର ଶରୀର ସମୂହରେ ଆଚ୍ଛନ୍ନ ହେଲା । ୮୦ । ହେ ମହାରାଜ ! ଭବଦୀୟ ଓ ପାଣ୍ଡବୀୟ ସୈନ୍ୟଗଣ ଅସି, ପଟ୍ଟିଶ ଓ ଶୂଳସମୂହଦ୍ୱାରା ବାରମ୍ବାର ଆଘାତପ୍ରାପ୍ତ ହୋଇ ସୁଦ୍ଧା ଯୁଦ୍ଧରୁ ନିବର୍ତ୍ତିଲେ ନାହିଁ । ୮୧ । ଯୋଦ୍ଧାମାନେ ପ୍ରାଣାନ୍ତ ପର୍ଯ୍ୟନ୍ତ ସାଧ୍ୟାନୁସାରେ ସଂଗ୍ରାମ କରି ବ୍ରଣମାନଙ୍କ-ଦ୍ୱାରା ରୁଧିର ବମନ ପୂର୍ବକ ଚତୁର୍ଦ୍ଦିଗରେ ପତିତ ହେଲେ । ୮୨ । କବନ୍ଧକୁଳ ଉତ୍ଥିତ ହୋଇ ଯୋଦ୍ଧାମାନଙ୍କ କେଶାକର୍ଷଣପୂର୍ବକ ରକ୍ତଲିପ୍ତ ଶାଣିତ ଅସିକୁ ଉତ୍ତୋଳନ କଲେ । ୮୩ । ହେ ମହାରାଜ ! କ୍ରମେ କ୍ରମେ ଅନେକ ଅନେକ କବନ୍ଧ ଉତ୍ଥିତ ହେବାରୁ ଯୋଦ୍ଧାମାନେ ଶୋଣିତ ଗନ୍ଧରେ ହତଜ୍ଞାନ ହେଲେ । ୮୪ । ତତ୍ପରେ ଯୁଦ୍ଧର ସେହି ତୁମୁଳ ଶବ୍ଦ ମନ୍ଦୀଭୂତ ହୁଅନ୍ତେ ଶକୁନି ଅଳ୍ପାବଶିଷ୍ଟ ଅଶ୍ୱାରୋହୀମାନଙ୍କ ସହିତ ପାଣ୍ଡବୀୟ ମହାସୈନ୍ୟର ଅଭିମୁଖକୁ ଗମନ କଲେ । ୮୫ ।

ତତ୍ପରେ ବିଜୟାଭିଳାଷୀ ପାଣ୍ଡବଗଣ ତ୍ୱରାଯୁକ୍ତ ହୋଇ ଶକୁନିଙ୍କ ସମ୍ମୁଖକୁ ଧାବମାନ ହେଲେ । ରଣସିନ୍ଧୁ ସନ୍ତରଣେଚ୍ଛୁ ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକବୃନ୍ଦ ଅସ୍ତ୍ର ଶସ୍ତ୍ର ଉତ୍ତୋଳନପୂର୍ବକ ଶକୁନିଙ୍କୁ ବେଢ଼ି ଓ ନିରୁଦ୍ଧ କରି ନାନା ପ୍ରକାର ଅସ୍ତ୍ରଶସ୍ତ୍ରଦ୍ୱାରା ପ୍ରହାର କଲେ । ୮୬ । ପାଣ୍ଡବଙ୍କ ସୈନ୍ୟଗଣ ଚତୁର୍ଦ୍ଦିଗରେ ବ୍ୟାପ୍ତ ହେବାର ଦେଖି ଭବଦୀୟ ଚତୁରଙ୍ଗ ସୈନ୍ୟଗଣ ସେମାନଙ୍କ ନିକଟକୁ ଧାବମାନ ହେଲେ । ୮୮ । କୌଣସି କୌଣସି ଶୂରବର ପଦାତିକ ଅସ୍ତ୍ରଶସ୍ତ୍ରହୀନ ହୋଇ ପାଦ-ପ୍ରହାର ଓ ମୁଷ୍ଟି ଆଘାତଦ୍ୱାରା ପରସ୍ପରକୁ ନିହତ କଲେ ଓ ପୃଥିବୀରେ ନିପତିତ ହେଲେ । ୮୯ । ପୁଣ୍ୟକ୍ଷୟକାଳରେ ସିଦ୍ଧଗଣ ବିମାନରୁ ଭ୍ରଷ୍ଟ ହେଲାପରି ରଥୀବୃନ୍ଦ ରଥରୁ ଓ ଗଜାରୋହୀ ସୈନ୍ୟ ଗଜପୃଷ୍ଠରୁ ଭୂତଳରେ ପତିତ ହେଲେ । ୯୦ । ସେହି ମହାଯୁଦ୍ଧରେ ଯୋଧବୃନ୍ଦ ଏହି ପ୍ରକାର ପରସ୍ପରକୁ ଆକ୍ରମଣପୂର୍ବକ ପିତା, ପୁତ୍ର ଓ ଭ୍ରାତାମାନଙ୍କୁ ସଂହାର କଲେ । ୯୧ । ହେ ଭରତଶ୍ରେଷ୍ଠ ! ପାଶ, ଅସି ଓ ଶରପୂର୍ଣ୍ଣ ଅତି ଦାରୁଣ ସ୍ଥଳରେ ଏହିପରି ମର୍ଯ୍ୟାଦାଶୂନ୍ୟ ମହାସମର ହେଲା । ୯୨ ।

---

# ଚତୁର୍ବିଂଶତତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଯୁଦ୍ଧଭୂମିରେ ତୁମୁଳ ଶବ୍ଦ କ୍ରମେ କ୍ରମେ ମନ୍ଦୀଭୂତ ହେଲାରୁ ଓ ପାଣ୍ଡବମାନେ ସୈନ୍ୟସମୂହକୁ କ୍ଷୟ କରିବାରୁ ମହାବଳ ଶକୁନି ଅବଶିଷ୍ଟ ସପ୍ତଶତ ଅଶ୍ୱାରୋହୀ ସୈନ୍ୟମାନଙ୍କ ସହିତ ରଣସ୍ଥଳରେ ଉପସ୍ଥିତ ହେଲେ । ୧ । ସେ ବାହିନୀ ମଧ୍ୟକୁ ଶୀଘ୍ର ଗମନ କରି କହିଲେ, ହେ ଶତ୍ରୁଦଳନକୁଳ ! ତୁମ୍ଭେମାନେ ଏତେବେଳେ ଆନନ୍ଦିତ ହୋଇ ବାରମ୍ବାର ଯୁଦ୍ଧ କର । ୨ । ତତ୍ପରେ ସେ ସେହି ସ୍ଥାନରେ କ୍ଷତ୍ରିୟମାନଙ୍କୁ ପଚାରିଲେ, ହେ ସୈନିକବଳ ! ସଂପ୍ରତି ଦୁର୍ଯ୍ୟୋଧନ ରାଜା କେଉଁଠାରେ ଅଛନ୍ତି ? ମହାରଥ କ୍ଷତ୍ରିୟମାନେ ଶକୁନିଙ୍କ ବାକ୍ୟ ଶୁଣି କହିଲେ, ହେ ରାଜନ୍ ! ମହାରଥ କୁରୁପତି ରଣମଧ୍ୟରେ ଅଛନ୍ତି । ଯେଉଁ-ଠାରେ ପୂର୍ଣ୍ଣଚନ୍ଦ୍ର ସଦୃଶ ଅତି ଉତ୍କୃଷ୍ଟ ଛତ୍ର ରହିଅଛି, ଯେଉଁଠାରେ କବଚଦ୍ୱାରା ଆଚ୍ଛାଦିତ ରଥଗଣ ସୁସଜ୍ଜିତ ହୋଇ ରହିଅଛନ୍ତି, ଯେଉଁ-ଠାରେ ମେଘ ଗର୍ଜନ ସମାନ ଏହି ତୁମୁଳ ଶବ୍ଦ ହେଉଅଛି, ଆପଣ ଶୀଘ୍ର ସେଠାକୁ ଗମନ କରିବା ହୁଅନ୍ତୁ । ତାହା ହେଲେ ସେଠାରେ କୁରୁପତିଙ୍କୁ ଦେଖିବା ହେବେ ।

ହେ ମହାରାଜ ! ବୀରବୃନ୍ଦ ଏହିପରି କହିଲା ପରେ ରାଜା ଦୁର୍ଯ୍ୟୋଧନ ଚତୁର୍ଦ୍ଦିଗରେ ଅପରାଙ୍ମୁଖ ବୀରବୃନ୍ଦରେ ବେଷ୍ଟିତ ହୋଇ ରଣଭୂମିର ଯେଉଁଠାରେ ଅବସ୍ଥିତ କରିଥିଲେ, ଶକୁନି ସେହିଠାରେ ପ୍ରବେଶ କଲେ । ୭ । ତତ୍ପରେ ଶକୁନି ଦୁର୍ଯ୍ୟୋଧନଙ୍କୁ ରଥ ସୈନ୍ୟରେ ଅବସ୍ଥିତ ହୋଇଥିବାର ଦେଖି ପ୍ରସନ୍ନ ବଦନରେ ଆପଣଙ୍କ ରଥ ସୈନ୍ୟ-ମାନଙ୍କୁ ଆନନ୍ଦିତ କରି ଓ ଆପଣାକୁ କୃତକାର୍ଯ୍ୟ ହେଲାପରି ଜାଣି ନରପାଳଙ୍କୁ କହିଲେ, ହେ ମହାରାଜ ! ଆମ୍ଭେ ଅଶ୍ୱାରୋହୀମାନଙ୍କୁ ଜୟ କରିଅଛୁ । ସଂପ୍ରତି ଆପଣ ରଥୀମାନଙ୍କୁ ସଂହାର କରିବା ହେଉନ୍ତୁ । ଏତେବେଳେ ଯୁଦ୍ଧରେ ପ୍ରାଣ ପରିତ୍ୟାଗ ନ କଲେ ଯୁଧିଷ୍ଠିରଙ୍କୁ ପରାଜୟ ଦେଇ ପାରିବା ନାହିଁ । ପାଣ୍ଡବଙ୍କ ଦ୍ୱାରା ପରିପାଳିତ ରଥବୃନ୍ଦ ନିହତ ହେଲା ଉତ୍ତାରେ ଏହି ସମସ୍ତ ଗଜାରୋହୀ ସୈନ୍ୟ, ପଦାତିକ ଓ ଇତର ସୈନ୍ୟମାନଙ୍କୁ ସଂହାର କରିବା । ୧୧ ।

ଆପଣଙ୍କ ଜୟାଭିଳାଷୀ ଯୋଦ୍ଧାମାନେ ଶକୁନିଙ୍କର ଏହି ବାକ୍ୟ ଶ୍ରବଣ କରି ହୃଷ୍ଟ ହୋଇ ବେଗରେ ପାଣ୍ଡବଙ୍କ ସେନା ନିକଟକୁ ଧାବମାନ ହେଲେ । ସମସ୍ତେ ତୂଣୀରକୁ ବିସ୍ତାର କରି ଓ ଶରାସନ ଗ୍ରହଣପୂର୍ବକ ତାହାକୁ କମ୍ପାଇ ସିଂହନାଦ କଲେ । ୧୩ । ହେ ରାଜନ୍ ! ତତ୍ପରେ ନିକ୍ଷିପ୍ତ ଶରସମୂହର ଅତି ଦାରୁଣ ନିନାଦ ଓ କୋଦଣ୍ଡଟଙ୍କାରର ଘୋର ନିର୍ଘୋଷ ପୁନଶ୍ଚ ପ୍ରାଦୁର୍ଭୂତ ହେଲା । ୧୪ । ସେମାନେ ଶରାସନ ଉତ୍ତୋଳନ କରି ଅତି ବେଗରେ ନିକଟବର୍ତ୍ତୀ ହେବାର ଅବଲୋକନ କରି କୁନ୍ତୀପୁତ୍ର ଅର୍ଜ୍ଜୁନ ଦେବକୀ ନନ୍ଦନଙ୍କୁ ସମ୍ବୋଧନପୂର୍ବକ କହିଲେ, ହେ ଜନାର୍ଦ୍ଦନ ! ସଂପ୍ରତି ଅଶ୍ୱମାନଙ୍କୁ ଅସମ୍ଭ୍ରାନ୍ତ ଭାବରେ ଚଳାଇ ଏହି ସୈନ୍ୟସାଗର-ମଧ୍ୟରେ ପ୍ରବେଶ କର । ଆଜି ଆମ୍ଭେ ଶାଣିତ ଶର ନିକରଦ୍ୱାରା ଶତ୍ରୁ-ମାନଙ୍କ ସୈନ୍ୟସିନ୍ଧୁକୁ ପାର ହେବୁ । ୧୬ । ହେ ମାଧବ ! ଆଜିକୁ ଅଷ୍ଟାଦଶ ଦିବସ ହେଲା ଆମ୍ଭ ଉଭୟପକ୍ଷର ପରସ୍ପର ଯୁଦ୍ଧ ହେଉଅଛି । ଏହି ଯୁଦ୍ଧରେ ମହାନୁଭବ କୌରବମାନଙ୍କର ଅନନ୍ତ ସୈନ୍ୟ କ୍ଷୟପ୍ରାପ୍ତ ହେଲେ; ଅତଏବ ଦୈବର ବିଚିତ୍ର ଗତିକୁ ଅବଲୋକନ କର । ୧୮ ।

ହେ କେଶବ ! ଦୁର୍ଯ୍ୟୋଧନଙ୍କର ଯେଉଁ ଅସଂଖ୍ୟ ସୈନ୍ୟ ସମୁଦ୍ର-ବତ୍ ଅଟେ, ତାହା ଆମ୍ଭମାନଙ୍କ ସମୀପକୁ ଆସି ସଂପ୍ରତି ଗୋଷ୍ପଦ ସଦୃଶ ହୋଇଅଛି । ୧୯ । ଭୀଷ୍ମଦେବ ହତ ହେଲା ଉତ୍ତାରେ ଦୁର୍ଯ୍ୟୋଧନ ଯଦି ସନ୍ଧିବନ୍ଧ କରିଥାନ୍ତେ, ତେବେ ତାହାଙ୍କର ମଙ୍ଗଳ ହୋଇଥାଆନ୍ତା । କିନ୍ତୁ କାର୍ଯ୍ୟାକାର୍ଯ୍ୟ ବିଚାରଶୂନ୍ୟ ଅତି ମୂର୍ଖ ଦୁର୍ଯ୍ୟୋଧନ ତାହା କଲେ ନାହିଁ । ୨୦ । ହେ ମାଧବ ! ଭୀଷ୍ମଦେବ ତାହାଙ୍କୁ ଯେଉଁସବୁ ହିତକର ଓ ପଥ୍ୟ ବାକ୍ୟ କହିଥିଲେ, ହତବୁଦ୍ଧି ଦୁର୍ଯ୍ୟୋଧନ ତାହା ମଧ୍ୟ ଶୁଣିଲେ ନାହିଁ ।୨୧। ମହାବୀର ଭୀଷ୍ମ ଭୂମଣ୍ଡଳ ରଣଭୂମିରେ ଶୟନ କଲା ଉତ୍ତାରେ ପୁନଶ୍ଚ କେଉଁ କାରଣରେ ଯୁଦ୍ଧ ହେଲା, ତାହା ମୁଁ ଜାଣିପାରୁ ନାହିଁ । ୨୨ । ଭୀଷ୍ମଦେବ ପତିତ ହେଲା ଉତ୍ତାରେ ଯେଉଁମାନେ ପୁନଶ୍ଚ ସଂଗ୍ରାମ କଲେ, ସେହି ଧୃତରାଷ୍ଟ୍ରଙ୍କ ପୁତ୍ରମାନେ ଅତି ମୂର୍ଖ ଅଟନ୍ତି । କେଉଁ କଥା କରିବାର ଉଚିତ ଓ କେଉଁ କଥା କରିବାର ଅନୁଚିତ, ତାହା ସେମାନେ ଜାଣନ୍ତି ନାହିଁ । କି ଆଶ୍ଚର୍ଯ୍ୟ ! ବ୍ରହ୍ମଜ୍ଞାନୀ ଶ୍ରେଷ୍ଠ ଦ୍ରୋଣାଚାର୍ଯ୍ୟ, କର୍ଣ୍ଣ ଓ ବିକର୍ଣ୍ଣ ନିହତ ହେଲା ଉତ୍ତାରେ ଯୁଦ୍ଧ ନିବୃତ୍ତ ହେଲା ନାହିଁ । ୨୪ । ଅନନ୍ତ ସୈନ୍ୟ ମଧ୍ୟରୁ ଅଳ୍ପମାତ୍ର ସୈନ୍ୟ ଅବଶିଷ୍ଟ ରହିଲେ, ନରବର ସୂତପୁତ୍ର କର୍ଣ୍ଣ ଓ ତାହାଙ୍କ

ସ୍ୱଜ ନିହତ ହେଲେ । ତଥାପି ସେମାନେ ଯୁଦ୍ଧରୁ ନିବୃତ୍ତ ହେଲେ ନାହିଁ । ୨୫ । ଶୂରବର ଶ୍ରୁତାୟୁ, ପୁରୁବଂଶୀୟ ଜଳସନ୍ଧ ଓ ନରପତି ଶ୍ରୁତାୟୁଧ ହତ ହେଲା ଉତ୍ତାରେ ଯୁଦ୍ଧ ନିବୃତ୍ତ ହେଲା ନାହିଁ । ୨୭ ।

ହେ କୃଷ୍ଣ ! ଭୂରିଶ୍ରବା, ଶଲ୍ୟ, ଶାଲ୍ୱ ଓ ଅବନ୍ତିଦେଶୀୟ କେତେ କେତେ ବୀର ନିହତ ହେଲେ ସୁଦ୍ଧା ଯୁଦ୍ଧ ନିବୃତ୍ତ ହେଲା ନାହିଁ । ୨୮ । ଶୂରବର ଭଗଦତ୍ତ, ସୁଦାରୁଣ କାମ୍ବୋଜ ଦେଶୀୟ ରାଜା ଓ ମହାବୀର ଦୁଃଶାସନ ନିହତ ହେଲେ, ତଥାପି ଯୁଦ୍ଧ ନିବୃତ୍ତ ହେଲା ନାହିଁ । ୨୯ । ହେ କୃଷ୍ଣ ! ଶୂର ଓ ବଳିଷ୍ଠ ମାତୁଳ ବଂଶୀୟ ନରପାଳଗଣ ନିହତ ହେଲେ; ତାହା ଦେଖି ସୁଦ୍ଧା ଦୁର୍ଯ୍ୟୋଧନ ଯୁଦ୍ଧରୁ ନିବୃତ୍ତ ହେଲେ ନାହିଁ । ୩୦ । ଯୁଦ୍ଧରେ ବୃକୋଦରଙ୍କଦ୍ୱାରା ଅକ୍ଷୌହିଣୀ ସେନାପତି ନିହତ ହେବାର ଦେଖି ସୁଦ୍ଧା ଦୁର୍ଯ୍ୟୋଧନ ମୋହ ଅବା ଲୋଭ ହେତୁରୁ ସଂଗ୍ରାମରୁ ନିବୃତ୍ତ ହେଲେ ନାହିଁ । ୩୧ । ସତ୍‌କୁଳରେ ଜାତ ହୋଇ ବିଶେଷତଃ କୁରୁବଂଶରେ ଜନ୍ମପରିଗ୍ରହ କରି ଦୁର୍ଯ୍ୟୋଧନଙ୍କ ବ୍ୟତିରେକେ ଅନ୍ୟ କୌଣସି ରାଜା ନିରର୍ଥକ ମହାନ୍ ଶତ୍ରୁପଣ କରିବ କି ? ୩୨ । ଯେଉଁମାନେ ବଳବୀର୍ଯ୍ୟ ଓ ସକଳ ଗୁଣରେ ଉତ୍କୃଷ୍ଟ ଅଟନ୍ତି ବୋଲି ଜଣାଅଛି, ପଣ୍ଡିତାଭିମାନୀ ପ୍ରାଜ୍ଞ ବ୍ୟକ୍ତି ଆପଣାର ହିତାହିତ ଜାଣୁ ଜାଣୁ ସେମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି କି ? ୩୩ ।

ହେ କୃଷ୍ଣ ! ତୁମ୍ଭେ ହିତବାକ୍ୟ କହିଲରୁ ତାହା ପ୍ରତିପାଳନ କରିବା ନିମିତ୍ତ ଯଦି ତାହାଙ୍କର ମନଯୋଗ ନ ହେଲା ତେବେ ସେ ଆମ୍ଭମାନଙ୍କ ସହିତ ସନ୍ଧିବନ୍ଧନ ବିଷୟରେ ଅନ୍ୟ ବ୍ୟକ୍ତିର ବାକ୍ୟକୁ କି ନିମିତ୍ତ ଶୁଣିବେ ? ଯେଉଁ ବ୍ୟକ୍ତି ସାନ୍ତନୁନନ୍ଦନ ଭୀଷ୍ମ, ଦ୍ରୋଣ ଓ ବିଦୁରଙ୍କ ବାକ୍ୟକୁ ପ୍ରତିପାଳନ କରିନାହାନ୍ତି, ତାହାଙ୍କ ଶାନ୍ତିନିମିତ୍ତ ଏତେବେଳେ ଆଉ କେଉଁ ଔଷଧ ଅଛି ? ୩୫ । ହେ ଜନାର୍ଦ୍ଦନ ! ଯେଉଁ ଦୁର୍ବୁଦ୍ଧି ମୂଢ଼ ପଣବଶରେ ବୃଦ୍ଧ ପିତା ଓ ହିତବାଦିନୀ ହିତୈଷିଣୀ ଜନନୀଙ୍କୁ ଅମାନ୍ୟ କରି ତାହାଙ୍କ ବାକ୍ୟ ପ୍ରତିପାଳନ କରିନାହାନ୍ତି, ସେ ଏତେବେଳେ କି ନିମିତ୍ତ ଅନ୍ୟର ବାକ୍ୟ ଶ୍ରବଣ କରିବେ ? ହେ ଜନାର୍ଦ୍ଦନ ! ଦୁର୍ଯ୍ୟୋଧନ ଯେଉଁପରି ଅତି ସ୍ପଷ୍ଟରୂପେ ବଂଶଧ୍ୱଂସର କାରଣ ହୋଇ ଜନ୍ମପରିଗ୍ରହ କରିଅଛନ୍ତି, ତଦନୁସାରେ ତାହାଙ୍କର ନ୍ୟାୟ ବିଚାର ଓ ଆଚରଣ ଦେଖାଯାଉଅଛି ! ହେ ଅଚ୍ୟୁତ ! ଜଣାଯାଉଅଛି, ସେ ଆମ୍ଭମାନଙ୍କୁ ରାଜ୍ୟ ପ୍ରଦାନ କରିବେ ନାହିଁ । ୩୮ ।

ହେ ମାନଦ ! ପୂର୍ବେ ମହାନୁଭବ ବିଦୁର ଆମ୍ଭଙ୍କୁ ବାରମ୍ବାର କହିଥିଲେ ଯେ "ଦୁର୍ଯ୍ୟୋଧନ ଜୀବିତ ଥିବାଯାଏ ତୁମ୍ଭମାନଙ୍କୁ ରାଜ୍ୟଭାଗ କଦାପି ପ୍ରଦାନ କରିବେ ନାହିଁ । ଧୃତରାଷ୍ଟ୍ର ପୁତ୍ର ଯେତେଦିନ ପର୍ଯ୍ୟନ୍ତ ପ୍ରାଣଧାରଣ କରିଥିବେ ତେତେଦିନ ଯାଏ ଏହି ପାପାତ୍ମା ତୁମ୍ଭମାନଙ୍କଠାରେ ପାପାଚରଣ କରିବାକୁ ନିବୃତ୍ତ ହେବନାହିଁ । ଯୁଦ୍ଧ ବ୍ୟତିରେକେ ଅନ୍ୟ କୌଣସି ଉପାୟରେ ତାହାଙ୍କୁ ଜୟ କରି ପାରିବ ନାହିଁ ।" ହେ ମାଧବ ! ସତ୍ୟଦର୍ଶନ ବିଦୁର ଆମକୁ ସର୍ବଦା ଏହି ବାକ୍ୟସବୁ କହୁଥିଲେ । ସେହି ମହାତ୍ମା ଯାହା କହିଥିଲେ, ତଦନୁସାରେ ଏତେବେଳେ ଏହି ଦୁରାତ୍ମାର ଆଚରଣସବୁ ସାକ୍ଷାତ ଦେଖୁଅଛୁଁ । ୪୨ । ଯେଉଁ ଦୁର୍ବୁଦ୍ଧି ପରଶୁରାମଙ୍କଠାରୁ ପଥ୍ୟବାକ୍ୟମାନ ଶୁଣି ତାହା ଅବଜ୍ଞା କରିଅଛନ୍ତି, ସେ କାଳମୁଖରେ ନିଶ୍ଚୟ ଉପସ୍ଥିତ ହେବେ । ୪୨ । ଦୁର୍ଯ୍ୟୋଧନ ଜାତ ହେବା ମାତ୍ରେ ଅନେକ ଅନେକ ସିଦ୍ଧ ପୁରୁଷ କହିଲେ—କ୍ଷତ୍ରିୟକୁଳ ଏହି ଦୁରାତ୍ମାଙ୍କୁ ଲାଭ କରି କ୍ଷୟପ୍ରାପ୍ତ ହେବ । ୪୪ । ହେ କୃଷ୍ଣ ! ସେହିମାନଙ୍କର ସେହି ନିଶ୍ଚିତ ବାକ୍ୟ ଏତେବେଳେ ସିଦ୍ଧ ହେଲା । ଦୁର୍ଯ୍ୟୋଧନଙ୍କ ନିମିତ୍ତ ଅସଂଖ୍ୟ ଶତ ରାଜା ଏକାବେଳକେ କ୍ଷୟପ୍ରାପ୍ତ ହେଲେ । ୪୫ ।

ହେ ମାଧବ ! ଆମ୍ଭେ ଯୁଦ୍ଧରେ ସୈନ୍ୟ ସମସ୍ତଙ୍କୁ ସଂହାର କରିବୁ । ଆଜ କ୍ଷତ୍ରିୟଗଣ ହତ ଓ ଶିବିର ଜନଶୂନ୍ୟ ହେଲା ଉତ୍ତାରେ ଦୁର୍ଯ୍ୟୋଧନ ଆମ୍ଭମାନଙ୍କ ହସ୍ତରେ ଆପଣାର ବଧ ନିମିତ୍ତ ସମରରେ ଅଭିଳାଷୀ ହେବେ । ତା ହେଲେ ବୈରଭାବ ମଧ୍ୟ ଶେଷ ହେବ । ହେ ବୃଷ୍ଣିବଂଶାବତଂସ ମାଧବ ! ବିଦୁରଙ୍କ ବାକ୍ୟ ଏବଂ ଦୁରାତ୍ମା ଦୁର୍ଯ୍ୟୋଧନଙ୍କ କାର୍ଯ୍ୟଦ୍ୱାରା ଆମ୍ଭେ ସ୍ୱକୀୟ ବୁଦ୍ଧିପ୍ରଭାବରେ ଚିନ୍ତା କରି ଅନୁମାନଦ୍ୱାରା ଏହି କଥା ସ୍ଥିର କରିଅଛୁ । ହେ ବୀର ! ଆମ୍ଭେ ଶାଣିତ ଶରଦ୍ୱାରା ଯାବତ୍‌କାଳ ପର୍ଯ୍ୟନ୍ତ ଦୁରାତ୍ମା ଦୁର୍ଯ୍ୟୋଧନ ଓ ତାହାଙ୍କ ସୈନ୍ୟମାନଙ୍କୁ ସଂହାର କରିବୁ, ତାବତ୍‌କାଳ ପର୍ଯ୍ୟନ୍ତ ତୁମ୍ଭେ ଭାରତୀ ସେନା ମଧ୍ୟରେ ଅଶ୍ୱମାନଙ୍କୁ ଚଳାଅ । ୪୯ । ହେ ମାଧବ ! ଆଜ ଦୁର୍ଯ୍ୟୋଧନଙ୍କ ସାକ୍ଷାତରେ ଆମ୍ଭେ ଏହି ଦୁର୍ବଳ ସୈନ୍ୟକୁ ବିନଷ୍ଟ କରି ଧର୍ମରାଜଙ୍କର ମଙ୍ଗଳ ବିଧାନ କରିବୁ । ୫୦ ।

ସଞ୍ଜୟ କହିଲେ—ମହାରାଜ ! ସବ୍ୟସାଚୀ କୃଷ୍ଣଙ୍କୁ ଏହି ସମସ୍ତ ବାକ୍ୟ କହିବାରୁ ସେ ରଶ୍ମି ଧାରଣପୂର୍ବକ ସଂଗ୍ରାମରେ ବିପକ୍ଷ ସେନା

ମଧ୍ୟରେ ନିର୍ଭୟ ହୋଇ ପ୍ରବେଶ କଲେ । ୫୧ । ମହାଯଶା ମାଧବ ଅଭି-ପତାକାରଥଦ୍ୱାରା ଯେଉଁ ଭୟଙ୍କର ରଣ ରୂପ କାନନରେ ପ୍ରବେଶ କରି ସୁଶୋଭିତ ହେଲେ, ତହିଁରେ ଶରାସନ ସମୂହ ବୃକ୍ଷ ସଦୃଶ, ଶକ୍ତି କଣ୍ଟକ ସଦୃଶ, ଗଦା ଓ ପରିଘ ପଥ ସଦୃଶ, ରଥ ଓ ଗଜଯୂଥ ମହାବୃକ୍ଷ ସମାନ୍, ଅଶ୍ୱ ଓ ପଦାତିକମାନେ ଲତା ସମାନ ଅଟନ୍ତି । ୫୩ । ହେ ମହାରାଜ ! ସେହି ପାଣ୍ଡୁରବର୍ଣ୍ଣ ଅଶ୍ୱବର୍ଗ ଅର୍ଜ୍ଜୁନଙ୍କୁ ବହନ କରି କୃଷ୍ଣଙ୍କ କୌଶଳରେ ଚାଳିତ ହେବାରୁ ସବୁଦିଗରେ ସମ୍ପୂର୍ଣ୍ଣ ରୂପେ ପରିଦୃଷ୍ଟ ହେଉଥିଲେ । ୫୪ । ତତ୍ପରେ ଜଳଧର ଯେଉଁପରି ଜଳଧାରା ବର୍ଷଣ କରେ, ସେହିପରି ଶତ୍ରୁମର୍ଦ୍ଦନ ଅର୍ଜ୍ଜୁନ ସୁତୀକ୍ଷ୍ଣ ଶରସମୂହ ବର୍ଷଣ କରି ରଥଦ୍ୱାରା ରଣସ୍ଥଳରେ ସଞ୍ଚାର କଲେ ।

ସେତେବେଳେ ଧନଞ୍ଜୟଙ୍କ ନିକ୍ଷିପ୍ତ ଦୃଢ଼ତର ସାୟକସମୂହର ଅତି ମହାଶବ୍ଦ ପ୍ରାଦୁର୍ଭୂତ ହେଲା । ବଜ୍ରସାର ବିଶିଖସମୂହ ଗାଣ୍ଡିବ କୋଦଣ୍ଡରୁ ନିକ୍ଷିପ୍ତ ହୋଇ ଶରାସନ୍ନ ସୈନ୍ୟବୃନ୍ଦର କବଚ ମଧ୍ୟରେ ଆବଦ୍ଧ ନ ହୋଇ ତାହା ସବୁ ଭେଦ କରି ଧରାତଳରେ ପତିତ ହେଲେ । ହେ ମହାରାଜ ! ଶରବୃନ୍ଦ ଅଶ୍ୱ, ଗଜ ଓ ନରମାନଙ୍କୁ ସମ୍ପୂର୍ଣ୍ଣ ଆହତ କରି ଶବ୍ଦାୟମାନ ପତଙ୍ଗକୁଳ ସଦୃଶ ସମରାଙ୍ଗଣରେ ପତିତ ହେଲେ । ୫୮ । ସେତେବେଳେ ଗାଣ୍ଡିବ ପ୍ରେରିତ ଶରନିକର ଦ୍ୱାରା ସମୁଦାୟ ସ୍ଥାନ ଆଚ୍ଛନ୍ନ ହେଲା । ସୁତରାଂ ସମର ମଧ୍ୟରେ ଦିଗ ବା ବିଦିଗ କିଛି ଜଣାଗଲା ନାହିଁ । ୫୯ । ପାର୍ଥଙ୍କ ନାମାଙ୍କିତ ସୁବର୍ଣ୍ଣପୁଙ୍ଖ ତୈଳଧୌତ କର୍ମାର ଦ୍ୱାରା ମାର୍ଜିତ ଶରନିକର ଦ୍ୱାରା ସମୁଦାୟ ଜଗତ ପରିପୂର୍ଣ୍ଣ ହେଲା । ୬୦ । ଅଗ୍ନି ଦ୍ୱାରା ଦହ୍ୟମାନ ଗଜଯୂଥ ସଦୃଶ କୌରବଗଣ ଅର୍ଜ୍ଜୁନଙ୍କ ଶାଣିତ ଶର-ଦ୍ୱାରା ଦହ୍ୟମାନ ହୋଇ ଅତିଶୟ ଅବସନ୍ନ ହେଲେ । ୬୧ । ପ୍ରଜ୍ୱଳିତ ଅଗ୍ନି ଯେଉଁପରି ତୃଣ ଓ କାଷ୍ଠ ପ୍ରଭୃତିକୁ ଦହନ କରେ, ସେହିପରି ପ୍ରଦୀପ୍ତ ସୂର୍ଯ୍ୟସମ ଶରରୂପଧାରୀ ଧନଞ୍ଜୟ ସମର ମଧ୍ୟରେ ଯୋଦ୍ଧାମାନଙ୍କୁ ଦଗ୍ଧ କଲେ । ବନ ମଧ୍ୟରେ ବନଚରମାନଙ୍କ ଦ୍ୱାରା ବିସୃଷ୍ଟ ଶବ୍ଦାୟମାନ ଦେଦୀପ୍ୟ ଅଗ୍ନି ଯେଉଁପରି ଭୂରି ଭୂରି ଶୁଷ୍କ ଲତାସମୂହ ଓ ତରୁ-ମାନଙ୍କୁ ଦହନ କରେ, ସେହିପରି ପ୍ରତାପଶାଳୀ ପ୍ରଖର ତେଜସ୍ୱୀ ବଳବାନ୍ ଅର୍ଜ୍ଜୁନ ବହୁବିଧ ନାରାଚନିକରଦ୍ୱାରା ଭବଦୀୟ ପୁତ୍ରଙ୍କ ସୈନ୍ୟମାନଙ୍କୁ ଦୟା ନ କରି ବଳପୂର୍ବକ ଦଗ୍ଧ କଲେ । ୬୪ ।

ତାହାଙ୍କ ନିକ୍ଷିପ୍ତ ସୁବର୍ଣ୍ଣପୁଙ୍ଖ ପ୍ରାଣହର ଶରବୃନ୍ଦ ଶତ୍ରୁମାନଙ୍କ କବଚସମୂହରେ ଆବଦ୍ଧ ହେଲା ନାହିଁ । ସେ ମନୁଷ୍ୟ, ଅଶ୍ୱ ଅଥବା ମହାଗଜମାନଙ୍କ ମଧ୍ୟରୁ କାହାର ଉପରେ ଦ୍ୱିତୀୟ ବାଣ ନିକ୍ଷେପ କଲେ ନାହିଁ । ୭୫ । ବଜ୍ରପାଣି ଇନ୍ଦ୍ର ଯେଉଁପରି ଅସୁରମାନଙ୍କୁ ସଂହାର କରିଥିଲେ, ଧନଞ୍ଜୟ ସେହିପରି ବିବିଧ ରୂପ ଓ ଆକୃତିଶୀଳ ବାଣ ନିକ୍ଷେପ କରି ମହାରଥମାନଙ୍କ ମଧ୍ୟରେ ପ୍ରବିଷ୍ଟ ହୋଇ ଭବଦୀୟ ପୁତ୍ରଙ୍କ ସେନାଙ୍କୁ ସଂହାର କଲେ । ୭୬ ।

---

## ପଞ୍ଚବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଅନବର୍ତ୍ତୀ ଶରବୃନ୍ଦ ଅତି ଯତ୍ନରେ ଅସ୍ତ୍ରଶସ୍ତ୍ର ନିକ୍ଷେପ କଲାରୁ ଧନଞ୍ଜୟ କେବଳ ଗାଣ୍ଡିବଦ୍ୱାରା ସେମାନଙ୍କ ସଂକଳ୍ପ ସମୂହକୁ ବିଫଳ କଲେ । ୧ । ସେ ବଜ୍ରସାର ଅସହ୍ୟ ସୁତୀକ୍ଷ୍ଣ ଶରନିକର ବର୍ଷଣ କରି ଜଳଧାରା ବର୍ଷଣକାରୀ ଜଳଧର ସଦୃଶ ଦୃଶ୍ୟ ହେଲା । ୨ । ହେ ଭରତଶ୍ରେଷ୍ଠ ! ସେହି ସମସ୍ତ ସୈନ୍ୟଗଣ କିରୀଟୀଙ୍କଦ୍ୱାରା ବଧ୍ୟମାନ ହୋଇ ଦୁର୍ଯ୍ୟୋଧନଙ୍କ ସମରଭୂମିରୁ ପଳାୟନ କଲେ । ୩ । କେହି କେହି ଅଶ୍ୱବିହୀନ, କେହି କେହି ଅବା ସାରଥିବିହୀନ ହୋଇ ପିତା, ଭ୍ରାତା ଓ ବୟସ୍ୟମାନଙ୍କୁ ପରିତ୍ୟାଗପୂର୍ବକ ଧାବମାନ ହେଲେ । କାହାର ମଧ୍ୟ ଇଷା ଅକ୍ଷ, ଯୁଗ ଚକ୍ର ପ୍ରଭୃତି ରଥର ଅଂଶ ସମୂହ ଭଗ୍ନ ହେଲା । କେଉଁ ବ୍ୟକ୍ତିର ବାଣସମୂହ ନିଃଶେଷ ହେଲା । କେହି କେହି ଶରସମୂହରେ ଜର୍ଜରିତ ହେଲେ । କୌଣସି କୌଣସି ବୀରମାନେ କ୍ଷତବିକ୍ଷତ ନୋହି-ଥିଲେ ସୁଦ୍ଧା ଭୟ ହେତୁରୁ ଯୁଗପତ୍ ଅତି ବେଗରେ ପଳାୟନ କଲେ । କେହି କେହି ବହୁଳ ବାନ୍ଧବ ନଷ୍ଟ ହେବାର ଦେଖି ପୁତ୍ରମାନଙ୍କୁ ଘେନି ପଳାୟନ କଲେ । କେହି କେହି ଅବା ପିତୃଗଣଙ୍କୁ, କେହି କେହି ଅବା ଅନ୍ୟାନ୍ୟ ସହାୟମାନଙ୍କୁ ଆହ୍ୱାନ କଲେ । ହେ ନରନାଥ ! କେହି କେହି ଭ୍ରାତା, ବନ୍ଧୁ, ସମ୍ବନ୍ଧୀ ପ୍ରଭୃତି ଆତ୍ମୀୟଗଣଙ୍କୁ ପରିତ୍ୟାଗପୂର୍ବକ ଧାବମାନ ହେଲେ ।

ହେ ମହାରାଜ ! ଏହି ଯୁଦ୍ଧରେ ଅନେକ ମହାରଥ ବାଣବଦ୍ଧ ହୋଇ ମୂର୍ଚ୍ଛିତ ହେଲେ । ୮ । କେତେ କେତେ ବ୍ୟକ୍ତି ପାର୍ଥଙ୍କ ବାଣରେ ଆହତ ହୋଇ ଉଚ୍ଚ ସ୍ୱରରେ ଆର୍ତ୍ତନାଦ କରୁଥିବାର ଦୃଶ୍ୟ ହେଲା । ଅନ୍ୟାନ୍ୟ ବ୍ୟକ୍ତିଗଣ ସେମାନଙ୍କୁ ରଥରେ ବସାଇ ମୁହୂର୍ତ୍ତିକ ମାତ୍ର ଆଶ୍ୱାସ ପ୍ରଦାନ କଲା ପରେ ସେମାନେ ଶ୍ରାନ୍ତିବିହୀନ ଓ ତୃଷାଶୂନ୍ୟ ହୋଇ ପୁନଶ୍ଚ ସମରାର୍ଥେ ସମାଗତ ହେଲେ । କୌଣସି କୌଣସି ଯୁଦ୍ଧଦୁର୍ମଦ ସମରା-ଭିଳାଷୀ ବ୍ୟକ୍ତି ସେମାନଙ୍କୁ ପରିତ୍ୟାଗ କରି ଦୁର୍ଯ୍ୟୋଧନଙ୍କ ଶାସନ ପ୍ରତି-ପାଳନ ପୂର୍ବକ ପୁନଶ୍ଚ ଗମନ କଲେ । ହେ ଭରତଶ୍ରେଷ୍ଠ ! କେହି କେହି ଜଳପାନରେ ପରିତୃପ୍ତ ହୋଇ ନିଜ ବାହନମାନଙ୍କୁ ଆଶ୍ୱାସ ପ୍ରଦାନପୂର୍ବକ କବଚଧାରୀ ହୋଇ ଯୁଦ୍ଧ ନିମିତ୍ତ ଯାତ୍ରା କଲେ, କେହି କେହି ଅବା ପୁତ୍ର, ଭ୍ରାତା ପ୍ରଭୃତିଙ୍କୁ ଆଶ୍ୱାସ ପ୍ରଦାନପୂର୍ବକ ଶିବିରରେ ରଖି ସ୍ୱୟଂ ଯୁଦ୍ଧ କରିବାକୁ ପୁନଶ୍ଚ ଅଭିଳାଷୀ ହେଲେ । କେହି କେହି ବ୍ୟକ୍ତି ନିଜ ପ୍ରଧାନତାନୁସାରେ ରଥସଜ୍ଜା କରି ପାଣ୍ଡବୀ ସେନା ମଧ୍ୟରେ ପ୍ରବିଷ୍ଟ ହୋଇ ସଂଗ୍ରାମ ନିମିତ୍ତ ଅଭିଳାଷୀ ହେଲେ ।

ସେହି ସମସ୍ତ ବୀରବୃନ୍ଦ କିଙ୍କିଣୀଜାଲରେ ଆଚ୍ଛନ୍ନ ହୋଇ ତ୍ରୈଲୋକ୍ୟ-ବିଜୟୀ ବିଷୟରେ ଉଦ୍ଧତ ପୂର୍ବ ଦାନବବୃନ୍ଦ ପରି ସୁଶୋଭିତ ହେଲେ । କତିପୟ ବୀର ସୁବର୍ଣ୍ଣ ବିଭୂଷିତ ରଥ ଦ୍ୱାରା ହଠାତ୍ ପାଣ୍ଡବ ସୈନ୍ୟ ମଧ୍ୟକୁ ଆଗମନପୂର୍ବକ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ସଂଗ୍ରାମ କଲେ । ପାଞ୍ଚାଳରାଜ ଧୃଷ୍ଟଦ୍ୟୁମ୍ନ, ମହାରଥ ଶିଖଣ୍ଡି ଓ ନକୁଳପୁତ୍ର ଶତାନୀକ ରଥସୈନ୍ୟଙ୍କ ସହିତ ଯୁଦ୍ଧ କଲେ । ପରିଶେଷରେ ପାଞ୍ଚାଳରାଜା ଧୃଷ୍ଟଦ୍ୟୁମ୍ନ ଅତିଶୟ କ୍ରୋଧାବିଷ୍ଟ ଓ ମହତ୍ସେନାରେ ପରିବୃତ ହୋଇ ଆପଣଙ୍କ ସମସ୍ତ ସୈନ୍ୟଙ୍କୁ ସଂହାର କରିବା ନିମିତ୍ତ ଉଦ୍ୟତ ହୋଇ ଧାବମାନ ହେଲେ । ହେ ରାଜନ୍ ! ଦୁର୍ଯ୍ୟୋଧନ ତାହାଙ୍କୁ ଆସୁଥିବାର ଅବଲୋକନ କରି ଅନେକ ଅନେକ ବାଣ ନିକ୍ଷେପ କଲେ । ତତ୍ପରେ ଆପଣଙ୍କ ପୁତ୍ର ଧନୁର୍ଦ୍ଧର ଦୁର୍ଯ୍ୟୋଧନ କର୍ମାର ଦ୍ୱାରା ପରିମାର୍ଜିତ ନାରାଚ, ଅର୍ଦ୍ଧନାରାଚ ଓ ବତ୍ସଦନ୍ତ ବାଣରେ ଧୃଷ୍ଟଦ୍ୟୁମ୍ନଙ୍କ ଚାରି ଅଶ୍ୱ ବିନାଶ କରି ତାହାଙ୍କ ବାହୁଦ୍ୱୟ ଓ ବକ୍ଷ-ସ୍ଥଳକୁ ବହୁତ ନାରାଚ ନିକ୍ଷେପ କଲେ । ମହାଧନୁର୍ଦ୍ଧର ଧୃଷ୍ଟଦ୍ୟୁମ୍ନ ଅଙ୍କୁଶ ଦ୍ୱାରା ଆହତ ମାତଙ୍ଗ ପରି ଅତ୍ୟନ୍ତ ବିଦ୍ଧ ହୋଇ ସୁଦ୍ଧା ଶରାଘାତ ଦ୍ୱାରା

ଦୁର୍ଯ୍ୟୋଧନଙ୍କ ଅଶ୍ୱଚତୁଷ୍ଟୟକୁ ଯମଦେବ ସନ୍ନିଧିକି ପ୍ରେରଣ କଲେ ଓ ଭଲ୍ଲଦ୍ୱାରା ତାହାଙ୍କ ସାରଥିର ମସ୍ତକକୁ କଳେବରରୁ ପୃଥକ୍ କଲେ । ୨୨ ।

ତଦନନ୍ତର ଶତ୍ରୁଦଳନ ରାଜା ଦୁର୍ଯ୍ୟୋଧନ ରଥହୀନ ହୋଇ ଅଶ୍ୱ-ପୃଷ୍ଠରେ ଆରୋହଣପୂର୍ବକ ଅତି ଦୂରକୁ ଯାଇ ଅବସ୍ଥିତ ହେଲେ । ୨୩ । ହେ ମହାରାଜ ! ଆପଣଙ୍କ ପୁତ୍ର ମହାବଳ ଦୁର୍ଯ୍ୟୋଧନ ନିଜ ସୈନ୍ୟମାନଙ୍କୁ ହତବିକ୍ରମ ଦର୍ଶନ କରି ଯେଉଁଠାରେ ଅବସ୍ଥିତ କରିଥିଲେ, ସେହି ସ୍ଥାନକୁ ଗମନ କଲେ । ୨୪ । କୌରବପକ୍ଷୀୟ ରଥସମୂହ ଭଗ୍ନ ହେବାରୁ ତିନି ସହସ୍ର ଗଜାରୋହୀ ସୈନ୍ୟ, ରଥାରୋହୀ ପଞ୍ଚପାଣ୍ଡବଙ୍କ ଚତୁର୍ଦ୍ଦିଗରେ ବେଷ୍ଟନ କଲେ । ହେ ନରଶ୍ରେଷ୍ଠ ଭରତ ! ସେହି ପଞ୍ଚପାଣ୍ଡବ ଗଜାରୋହୀ ସୈନ୍ୟ-ବୃନ୍ଦରେ ଆବୃତ ହୋଇ ମେଘମଣ୍ଡଳରେ ଆବୃତ ଗ୍ରହଗଣ ପରି ସୁଶୋଭିତ ହେଲେ । ୨୬ ।

ହେ ମହାରାଜ ! ତତ୍ପରେ ଶ୍ୱେତାଶ୍ୱ ଓ କୃଷ୍ଣସାରଥି ମହାବାହୁ ଅର୍ଜ୍ଜୁନ ଲକ୍ଷ କରି ରଥରେ ଆରୋହଣ ପୂର୍ବକ ଗମନ କଲେ । ୨୭ । ଅର୍ଜ୍ଜୁନ ପର୍ବତ ସମାନ ସେହି ଗଜଯୂଥଦ୍ୱାରା ଚତୁର୍ଦ୍ଦିଗରେ ବେଷ୍ଟିତ ହୋଇ ଅତି ତୀକ୍ଷ୍ଣ ନାରାଚନିକରଦ୍ୱାରା ଗଜାରୋହୀ ସୈନ୍ୟମାନଙ୍କୁ ପ୍ରହାର କଲେ । ୨୮ । ତେତେବେଳେ ଆମ୍ଭେ ଦେଖିଥିଲୁଁ, ସବ୍ୟସାଚୀଙ୍କ ଗୋଟିଏ ବାଣରେ ମହାଗଜମାନେ ନିହତ, ପତିତ, ପୀଡ୍ୟମାନ ଓ ନିର୍ଭିନ୍ନ ହେଲେ । ୨୯ ।

ତତ୍ପରେ ମତ୍ତମାତଙ୍ଗ ସମାନ ବଳବାନ ଭୀମ ସେହିମାନଙ୍କୁ ସନ୍ଦର୍ଶନ କରି ଶୀଘ୍ର ରଥରୁ ଓହ୍ଲାଇ ଦଣ୍ଡପାଣି ଯମଦେବଙ୍କ ସଦୃଶ ହସ୍ତରେ ମହାଗଦା ଧାରଣ କରି ସେମାନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଭବଦୀୟ ସୈନ୍ୟବୃନ୍ଦ ପାଣ୍ଡବମାନଙ୍କ ମହାରଥକୁ ଗଦା ଉତ୍ତୋଳନ କରିବାର ଦେଖି ବିଶେଷ ତ୍ରସ୍ତ ହେଲେ ଓ ଭୟବଶରୁ ମଳମୂତ୍ର ପରିତ୍ୟାଗ କଲେ । ଭୀମ ଗଦାହସ୍ତ ହେବାରୁ ସମସ୍ତ ସୈନ୍ୟ ଚିନ୍ତାରେ ଆକୁଳ ହେଲେ । ୩୨ । ଭୀମସେନଙ୍କ ଗଦାଘାତରେ ଭଗ୍ନକୁମ୍ଭ ପର୍ବତ ସଦୃଶ ହସ୍ତୀଯୂଥ ଧୂଳିଧୂସର ହେଉଥିବାର ଦେଖିଲୁଁ । ଭୀମଙ୍କ ଗଦାଦ୍ୱାରା ଆଘାତପ୍ରାପ୍ତ ସେହି ଗଜଯୂଥ ଧାବିତ ହୋଇ ଆର୍ତ୍ତନାଦ

କରି ଛିନ୍ନପକ୍ଷ ପର୍ବତ ସମୂହ ପରି ଭୂତଳରେ ନିପତିତ ହେଲେ । ୩୪ । ସେହି ଭଗ୍ନକୁମ୍ଭ ହସ୍ତୀମାନେ ଚତୁର୍ଦ୍ଦିଗରେ ଧାବମାନ ଓ ପତିତ ହେଉଥିବାର ଦେଖି ଆପଣଙ୍କ ସୈନିକ ପୁରୁଷଗଣ ଅତ୍ୟନ୍ତ ତ୍ରସ୍ତ ହେଲେ । ୩୫ ।

ଯୁଧିଷ୍ଠିର, ନକୁଳ ଓ ସହଦେବ ଅତିଶୟ କ୍ରୋଧାନ୍ଧ ହୋଇ ଗୃଧ୍ରପକ୍ଷସଂଯୁକ୍ତ ଶାଣିତ ଶାୟକସମୂହଦ୍ୱାରା ଗଜଯୋଦ୍ଧାମାନଙ୍କୁ ନିହତ କଲେ । ୩୬ । ହେ ମହାରାଜ ! ଧୃଷ୍ଟଦ୍ୟୁମ୍ନ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କୁ ପରାଜିତ କରିବାରୁ ସେ ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ସଂଗ୍ରାମରୁ ପ୍ରସ୍ଥାନ କଲେ । ତତ୍ପରେ ପାଞ୍ଚାଳପୁତ୍ର ଧୃଷ୍ଟଦ୍ୟୁମ୍ନ ପାଣ୍ଡବମାନଙ୍କୁ ଗଜଯୂଥଦ୍ୱାରା ପରିବେଷ୍ଟିତ ହୋଇଥିବାର ଦେଖି ସମସ୍ତ ପ୍ରଭଦ୍ରକଗଣ ସହିତ ଗଜାରୋହୀ ସୈନ୍ୟମାନଙ୍କୁ ସଂହାର କରିବା ଇଚ୍ଛାରେ ଯାତ୍ରା କଲେ ।

ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ ସାତ୍ୱତ କୃତବର୍ମା ଶତ୍ରୁତାପନ ଦୁର୍ଯ୍ୟୋଧନଙ୍କୁ ରଥିସୈନ୍ୟ ମଧ୍ୟରେ ଅବଲୋକନ ନ କରି କ୍ଷତ୍ରିୟମାନଙ୍କୁ ପଚାରିଲେ, ହେ କ୍ଷତ୍ରିୟବୃନ୍ଦ, ରାଜା ଦୁର୍ଯ୍ୟୋଧନ କେଉଁ ସ୍ଥାନକୁ ଯାଇଅଛନ୍ତି ? ୪୦ । ମହାରଥମାନେ ଉପସ୍ଥିତ ଜନକ୍ଷୟସମୂହରେ ରାଜାଙ୍କୁ ନିରୀକ୍ଷଣ ନ କରି ତାହାଙ୍କର ମୃତ୍ୟୁ ହୋଇଅଛି ବୋଲି ଜାଣି ବିଷଣ୍ଣବଦନ ହୋଇ, ପୁନଶ୍ଚ, ଦୁର୍ଯ୍ୟୋଧନ କେଉଁଠାରେ ଅଛନ୍ତି ବୋଲି ପଚାରିଲେ ! କେହି କେହି କହିଲେ, ତାହାଙ୍କ ସାରଥି ନିହତ ହୁଅନ୍ତେ ଦୁଃସହ ପାଞ୍ଚାଳ ରାଜାଙ୍କ ସୈନ୍ୟମାନଙ୍କୁ ପରିତ୍ୟାଗ ପୂର୍ବକ ସେ ଶକୁନିଙ୍କ ନିକଟକୁ ଗମନ କରିଅଛନ୍ତି । ୪୨ ।

ଅତିଶୟ କ୍ଷତବିକ୍ଷତ ଅନ୍ୟାନ୍ୟ ସୈନ୍ୟମାନେ କହିଲେ, ଦୁର୍ଯ୍ୟୋଧନଙ୍କଦ୍ୱାରା କେଉଁ ପ୍ରୟୋଜନ ? ସେ ଯଦି ଜୀବିତ ଅଛନ୍ତି, ତେବେ ତାଙ୍କୁ ଦେଖ । ଏତେବେଳେ ସମସ୍ତେ ଏକତ୍ରିତ ହୋଇ ସଂଗ୍ରାମ କରି, ରାଜା ତୁମ୍ଭମାନଙ୍କର କଅଣ କରିବେ ? ସେହି ସମସ୍ତ କ୍ଷତ୍ରିୟମାନେ ହତବାହନ, କ୍ଷତକଳେବର ଓ ଶରବୃନ୍ଦରେ ପୀଡ଼ିତ ହୋଇ ସ୍ପଷ୍ଟରୂପେ କହି ପାରିଲେ ନାହିଁ । କେବଳ ଏହି କଥା କହିଲେ ଯେ, ଯେଉଁ ସୈନ୍ୟବୃନ୍ଦ ଆମ୍ଭଙ୍କୁ ବେଷ୍ଟନ କରିଅଛନ୍ତି, ସେହି ସମସ୍ତଙ୍କୁ ସଂହାର କରିବା, ସମସ୍ତ ପାଣ୍ଡବମାନେ ଗଜଯୂଥକୁ ବିନଷ୍ଟ କରି ଆମ୍ଭମାନଙ୍କ ସମୀପଗାମୀ ହୋଇଅଛନ୍ତି । ୪୬ । ଶୂରବର ସୁଦୃଢ଼ ଧନୁର୍ଦ୍ଧର ମହାବଳ ଅଶ୍ୱତ୍ଥାମା,

କୃପାଚାର୍ଯ୍ୟ ଓ କୃତବର୍ମା ସେମାନଙ୍କର ଏହି ବାକ୍ୟ ଶ୍ରବଣ କରି ପାଞ୍ଚାଳପତିଙ୍କର ଦୁଃସହ ସୈନ୍ୟଭେଦପୂର୍ବକ ରଥୀ ସୈନ୍ୟଗଣଙ୍କୁ ପରିତ୍ୟାଗ କରି ଶକୁନିଙ୍କ ନିକଟକୁ ଗଲେ । ୪୮ ।

ତତ୍ପରେ ସେମାନେ ପ୍ରସ୍ଥାନ କଲା ଉତ୍ତାରେ ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ପାଣ୍ଡବମାନେ ଭବଦୀୟ ସୈନ୍ୟମାନଙ୍କୁ ସଂହାର କରି ଆଗତ ହେଲେ । ୪୯ । ଆପଣଙ୍କ ସୈନ୍ୟ ମଧ୍ୟରେ ପରାକ୍ରମଶାଳୀ ଅତି ଆନନ୍ଦିତ ସେହି ବୀରବର ମହାରଥମାନଙ୍କୁ ଆସୁଥିବାର ଅବଲୋକନ କରି ବିବର୍ଣ୍ଣ ହେଲେ ଓ ଜୀବନ ଆଶା ପରିତ୍ୟାଗ କଲେ । ହେ ମହାରାଜ ! ଆମ୍ଭେ ସେହି ସମସ୍ତ ସୈନ୍ୟଙ୍କୁ କ୍ଷୀଣବଳ ଓ ଶତ୍ରୁ ପକ୍ଷଙ୍କ ଦ୍ୱାରା ବେଷ୍ଟିତ ହୋଇଥିବାର ଦେଖି କୃପାଚାର୍ଯ୍ୟ ଯେଉଁଠାରେ ଅବସ୍ଥାନ କରିଥିଲେ, ସେହି ସ୍ଥାନରେ ସେମାନଙ୍କୁ ରଖି ସ୍ୱୟଂ ପଞ୍ଚମ ହୋଇ ପ୍ରାଣପଣରେ ପାଞ୍ଚାଳ ସୈନ୍ୟମାନଙ୍କ ସହିତ ଯୁଦ୍ଧ କଲୁ । ସେହି ଯୁଦ୍ଧରେ ଆମ୍ଭେ ପାଞ୍ଚଜଣ ମାତ୍ର ଅର୍ଜୁନଙ୍କ ଶରରେ ପୀଡ଼ିତ ହୋଇ ବିରତ ହେଲୁ । ୫୩ । ତତ୍ପରେ ସୈନ୍ୟଯୁକ୍ତ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ଆମ୍ଭମାନଙ୍କର ମହାନ୍ ସଂଗ୍ରାମ ହେଲା । ପରିଶେଷରେ ଆମ୍ଭେମାନେ ସମସ୍ତେ ତାହାଙ୍କ ଦ୍ୱାରା ପରାସ୍ତ ହୋଇ ରଣଭୂମିରୁ ପ୍ରସ୍ଥାନ କଲୁ । ୫୪ ।

ତତ୍ପରେ ଆମ୍ଭେ ବହୁଶତ ରଥୀମାନଙ୍କୁ ସଙ୍ଗରେ ଘେନି ଆସୁଥିବା ମହାରଥ ସାତ୍ୟକିଙ୍କୁ ଦେଖିଲୁ । ସେହି ବୀର ଯୁଦ୍ଧରେ ଆମ୍ଭଙ୍କୁ ଆକ୍ରମଣ କଲେ । ୫୫ । ଧୃଷ୍ଟଦ୍ୟୁମ୍ନଙ୍କ ଅଶ୍ୱମାନେ ଶାନ୍ତ ହେବାରୁ ଆମ୍ଭେମାନେ ବହୁ କଷ୍ଟରେ ତାହାଙ୍କ ହସ୍ତରୁ ପରିତ୍ରାଣ ଲାଭ କଲୁ । କିନ୍ତୁ ତତ୍ପରେ ଦୁଷ୍କୃତୀ ବ୍ୟକ୍ତି ଯେଉଁପରି ନରକରେ ପତିତ ହୁଏ, ଆମ୍ଭେ ସେହିପରି ସାତ୍ୟକିଙ୍କ ସୈନ୍ୟ ମଧ୍ୟରେ ପଡ଼ିଲୁ । ସେହିଠାରେ ଅତି ଅଳ୍ପ ସମୟ ଘୋରତର ଅତି ଦାରୁଣ ଯୁଦ୍ଧ ହେଲା । ସେହି ଯୁଦ୍ଧରେ ମହାବାହୁ ସାତ୍ୟକି ଆମ୍ଭର ପରିଚ୍ଛଦ ସବୁ ବିଧ୍ୱଂସ କରିବାରୁ ଆମ୍ଭେ ମୂର୍ଚ୍ଛିତ ହୋଇ ଭୂତଳରେ ପତିତ ହେଲୁଁ । ତତ୍ପରେ ସେ ଆମ୍ଭର ପ୍ରାଣସ୍ୱରୂପ ହୋଇ ଆମ୍ଭଙ୍କୁ ଘେନି ଗମନ କଲେ ।

ତଦନନ୍ତର ମୁହୂର୍ତ୍ତକ ସମୟ ମଧ୍ୟରେ ଭୀମ ଗଦାଘାତ ଦ୍ୱାରା ଓ ଅର୍ଜୁନ ନାରାଚସମୂହ ଦ୍ୱାରା ସେହି ଗଜାରୋହୀ ସୈନ୍ୟମାନଙ୍କୁ ବଧ କଲେ । ଚତୁର୍ଦ୍ଦିଗରେ ପତିତ ପର୍ବତସଦୃଶ ମହାଗଜମାନଙ୍କଦ୍ୱାରା ପାଣ୍ଡବ-

ମାନଙ୍କ ଗତ୍ତବୃନ୍ଦ ହେଲା ପରି ହୋଇଥିଲା । ମହାବଳୀ ଭୀମ ତତ୍‌କ୍ଷଣାତ୍ ମୃତମାନଙ୍କୁ ଦୂରକୁ ନିକ୍ଷେପ କରି ପାଣ୍ଡବମାନଙ୍କର ରଥଗମନର ପଥ ପ୍ରସ୍ତୁତ କଲେ । ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ରଥୀସୈନ୍ୟ ମଧ୍ୟରେ ଶତ୍ରୁଦମନ ମହାରଥ ଭବଦୀୟ ପୁତ୍ର ଦୁର୍ଯ୍ୟୋଧନଙ୍କୁ ନ ଦେଖି ତାହାଙ୍କୁ ଅନ୍ୱେଷଣ କଲେ । ଅସଂଖ୍ୟ ଜନକ୍ଷୟ ହେଲାରୁ ସେମାନେ ରାଜାଙ୍କୁ ନ ଦେଖି ଅତିଶୟ ଉଦ୍‌ବେଗଯୁକ୍ତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ପରିତ୍ୟାଗପୂର୍ବକ ଶକୁନିଙ୍କ ନିକଟକୁ ଗଲେ । ୭୩ ।

---

## ଷଡ଼ବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ହେ ଭରତଶ୍ରେଷ୍ଠ ! ପାଣ୍ଡୁପୁତ୍ର ଭୀମ ଯୁଦ୍ଧରେ ଗଜାରୋହୀ ସୈନ୍ୟମାନଙ୍କୁ ସଂହାର କରନ୍ତେ ସୈନିକବୃନ୍ଦ ତାହାଙ୍କଦ୍ୱାରା ବଧମାନ ହେଉଥିବାରୁ ଆପଣଙ୍କ ଅବଶିଷ୍ଟ ସନ୍ତାନବୃନ୍ଦ ଶତ୍ରୁତାପନ ଭୀମସେନଙ୍କୁ ପ୍ରାଣହାରକ ଦଣ୍ଡପାଣି କ୍ରୋଧଯୁକ୍ତ ଯମଦେବ ସଦୃଶ ବିଚରଣ କରୁଥିବାର ଦେଖି ଓ କୁରୁରାଜ ଦୁର୍ଯ୍ୟୋଧନଙ୍କୁ ଅବଲୋକନ ନ କରି ଏକତ୍ରିତ ହୋଇ ତାହାଙ୍କ ନିକଟକୁ ଧାବିତ ହେଲେ । ଦୁର୍ମର୍ଷଣ, ଶ୍ରୁତାନ୍ତ, ଜୈତ୍ର, ଭୂରିବଳ, ରବି, ଜୟତ୍ସେନ, ସୁଜାତ, ଶତ୍ରୁହନ୍ତା ଦୁର୍ବିସହ, ଦୁର୍ବିମୋଚନ, ଦୁଷ୍ପ୍ରଧର୍ଷ ଓ ମହାବାହୁ ଶ୍ରୁତର୍ବା ପ୍ରଭୃତି ଭବଦୀୟ ଯୁଦ୍ଧ-ବିଶାରଦ ପୁତ୍ରଗଣ ଏକତ୍ରିତ ହୋଇ ଭୀମସେନଙ୍କ ସମ୍ମୁଖକୁ ଧାବମାନ ହେଲେ ଓ ତାହାଙ୍କୁ ଚତୁର୍ଦିଗରେ ରୋଧ କଲେ । ମହାରାଜ ! ତତ୍ପରେ ବୃକୋଦର ପୁନଶ୍ଚ ନିଜ ରଥରେ ବସି ଆପଣଙ୍କ ପୁତ୍ରସମୂହର ମର୍ମସ୍ଥାନକୁ ଶାଣିତ ଶରନିକର ନିକ୍ଷେପ କଲେ ।

ମହାରାଜ ! ଭବଦୀୟ ପୁତ୍ରବୃନ୍ଦ ଭୀମଙ୍କ ଶରଜାଳରେ ଆଚ୍ଛନ୍ନ ହୋଇ ଜଳାଶୟରୁ ମାତଙ୍ଗକୁ ଆକର୍ଷଣ କଲାପରି ଭୀମଙ୍କୁ ଆକର୍ଷଣ କଲେ । ତତ୍ପରେ ଭୀମ କ୍ରୋଧାକ୍ରାନ୍ତ ହୋଇ ଅବଲମ୍ବରେ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଦୁର୍ମର୍ଷଣଙ୍କ ମସ୍ତକ ଛେଦନ କରି ଭୂତଳରେ ପକାଇଲେ । ତତ୍ପରେ ସର୍ବାବରଣଭେଦୀ ଅନ୍ୟ ଏକ ଭଲ୍ଲଦ୍ୱାରା ଆପଣଙ୍କ ପୁତ୍ର ମହାରଥ

ଶ୍ରୁତାନ୍ତଙ୍କୁ ନିହତ କଲେ । ତତ୍ପରେ ସେହି ଅରିନ୍ଦମ ଅନାୟାସରେ କୌରବ ଜୟତ୍ସେନଙ୍କୁ ନାରାଚଦ୍ୱାରା ବିଦ୍ଧ କରି ରଥ ଉପରୁ ପୃଥିବୀ-ପୃଷ୍ଠରେ ପକାଇଲେ । ହେ ରାଜନ୍ ! ସେ ରଥରୁ ଭୂମିତଳରେ ପଡ଼ିଲାମାତ୍ରେ ପଞ୍ଚତ୍ୱ ପ୍ରାପ୍ତ ହେଲେ । ୯୨ ।

ତଦନନ୍ତର ଆପଣଙ୍କର ପୁତ୍ର ଶ୍ରୁତର୍ବା କ୍ରୋଧଯୁକ୍ତ ହୋଇ ଗୃଧ୍ରପକ୍ଷ ସଂଯୁକ୍ତ ଦୃଢ଼ତର ଶତସଂଖ୍ୟକ ଶରଦ୍ୱାରା ବୃକୋଦରଙ୍କୁ ବିଦ୍ଧ କଲେ । ସେହି କାରଣରୁ ଭୀମ ଯୁଦ୍ଧରେ କ୍ରୋଧାକ୍ରାନ୍ତ ହୋଇ ଜୈତ୍ର, ଭୂରିବଳ ଓ ରବି ଏହି ତିନଜଣଙ୍କୁ ବିଷ ଓ ଅଗ୍ନିସଦୃଶ ତିନଗୋଟି ବାଣ ନିକ୍ଷେପ କଲେ । ସେହି ବାଣସବୁ ନିକ୍ଷିପ୍ତ ହେଲାମାତ୍ରେ ମହାରଥମାନେ ନିହତ ହୋଇ ବସନ୍ତ କାଳରେ ପୁଷ୍ପିତ ଛିନ୍ନକିଂଶୁକ ତରୁ ପରି ତତ୍କ୍ଷଣାତ୍ ରଥରୁ ଭୂପୃଷ୍ଠରେ ପତିତ ହେଲେ । ୧୫ ।

ତତ୍ପରେ ଶତ୍ରୁତାପନ ଭୀମ ଅନ୍ୟ ଗୋଟିଏ ସୁତୀକ୍ଷ୍ଣ ଭଲ୍ଲାସ୍ତ୍ରଦ୍ୱାରା ଦୁର୍ବିମୋଚନଙ୍କୁ ପୀଡ଼ା ଦେଇ ଯମାଳୟକୁ ପ୍ରେରଣ କଲେ । ୧୬ । ଗିରିଶୃଙ୍ଗରେ ଜନ୍ମିଥିବା ବୃକ୍ଷ ଯେଉଁପରି ପବନବେଗରେ ଭଗ୍ନ ହୁଏ, ସେହିପରି ସେହି ରଥିବର ହତ ହୋଇ ସ୍ୱକୀୟ ରଥରୁ ଭୂମିତଳରେ ପତିତ ହେଲେ । ୧୭ । ଭୀମ କ୍ରମେ କ୍ରମେ ଆପଣଙ୍କ ପୁତ୍ର ଦୁଷ୍ପ୍ରଧର୍ଷ ଓ ସୁଜାତଙ୍କୁ ପ୍ରତ୍ୟେକ ସୈନ୍ୟମାନଙ୍କ ସାକ୍ଷାତରେ ଦୁଇ ଦୁଇ ବାଣରେ ବଧ କଲେ । ୧୮ । ସେହି ରଥିଶ୍ରେଷ୍ଠ ବୀର ଦୁହେଁ ଶରଦ୍ୱାରା ବିଦ୍ଧକଳେବର ହୋଇ ପତିତ ହେଲେ । ତତ୍ପରେ ଭୀମ ଆପଣଙ୍କ ଅପର ପୁତ୍ର ଦୁର୍ବିସହଙ୍କୁ ଯୁଦ୍ଧ ଅଭିମୁଖକୁ ଆସୁଥିବାର ଦେଖି ଭଲ୍ଲ ଅସ୍ତ୍ର ଆଘାତରେ ପ୍ରହାର କଲେ । ସେ ହତ ହୋଇ ଧନୁର୍ଦ୍ଧରମାନଙ୍କ ସାକ୍ଷାତରେ ଅଶ୍ୱପୃଷ୍ଠରେ ନିପତିତ ହେଲେ । ୨୦ । ପରିଶେଷରେ ଶ୍ରୁତର୍ବା ଏକାକୀ ଭୀମଙ୍କଦ୍ୱାରା ନିଜର ବହୁ ସୋଦରମାନେ ନିହତ ହେବାର ଦେଖି ଯୁଦ୍ଧରେ କ୍ରୋଧବଶ ହୋଇ ଭୀମଙ୍କ ଅଭିମୁଖକୁ ଗମନ କଲେ ଓ ସୁବର୍ଣ୍ଣ ବିଭୂଷିତ ଅତି ଉତ୍କୃଷ୍ଟ କୋଦଣ୍ଡ ଟଙ୍କାରିତ କରି ବିଷ ଓ ଅଗ୍ନି ସଦୃଶ ବିବିଧ ଶରସମୂହ ନିକ୍ଷେପ କଲେ । ୨୨ । ହେ ମହାରାଜ ! ସେତେବେଳେ ଭୀମଙ୍କ ଶରାସନ ଛେଦନ କରି ସେହି ଛିନ୍ନ ଧନୁର୍ଦ୍ଧରଙ୍କୁ ବିଂଶତି ବାଣରେ ଆଚ୍ଛନ୍ନ କଲେ । ୨୩ ।

ତତ୍ପରେ ମହାରଥ ଭୀମ ଅନ୍ୟ ଶରାସନ ଗ୍ରହଣପୂର୍ବକ ଆପଣଙ୍କ ପୁତ୍ରଙ୍କୁ ଶରବୃନ୍ଦରେ ଆଚ୍ଛନ୍ନ କଲେ ଓ 'ରହ ରହ' ବୋଲି କହିଲେ ।୨୪। ହେ ରାଜନ୍ ! ପୂର୍ବକାଳରେ ଜମ୍ଭାସୁର ଓ ଇନ୍ଦ୍ରଙ୍କ ଯୁଦ୍ଧପରି ସେହି ଉଭୟଙ୍କର ଅତି ବିଚିତ୍ର ଉଭୟଙ୍କର ସଂଗ୍ରାମ ହେଲା । ୨୫ । ସେତେବେଳେ ସେମାନଙ୍କ ନିକ୍ଷିପ୍ତ ଯମଦଣ୍ଡ ସଦୃଶ ଶାଣିତ ଶରବୃନ୍ଦଦ୍ୱାରା ଭୂମଣ୍ଡଳ, ଆକାଶମଣ୍ଡଳ ଦିଙ୍ମଣ୍ଡଳସବୁ ଆଚ୍ଛନ୍ନ ହେଲା । ୨୬ । ତତ୍ପରେ ଶ୍ରୁତର୍ବା ଅତିଶୟ କ୍ରୋଧାନ୍ୱିତ ହୋଇ ଶରାସନ ଗ୍ରହଣପୂର୍ବକ ଭୀମସେନଙ୍କ ବାହୁଦ୍ୱୟ ଓ ବକ୍ଷସ୍ଥଳକୁ ବହୁ ବହୁ ବାଣ ନିକ୍ଷେପ କଲେ । ୨୭ । ହେ ମହାରାଜ ! ଭୀମସେନ ଭବଦୀୟ ଧନୁର୍ଦ୍ଧର ପୁତ୍ରଙ୍କଦ୍ୱାରା ଅତ୍ୟନ୍ତ ବିଦ୍ଧ ହୋଇ ପୂର୍ବକାଳୀନ ମହାସିନ୍ଧୁ ସଦୃଶ କ୍ଷୋଭଯୁକ୍ତ ହେଲେ । ୨୮ ।

ହେ ମହାରାଜ ! ତତ୍ପରେ କ୍ରୋଧାବିଷ୍ଟ ଭୀମସେନ ଦୁଇ ଶରନିକର ଦ୍ୱାରା ଭବଦୀୟ ପୁତ୍ରଙ୍କ ସାରଥି ଓ ଅଶ୍ୱଚତୁଷ୍ଟୟକୁ ଯମାଳୟକୁ ପଠାଇଲେ । ୨୯ । ଅପରିମେୟ ପ୍ରଭାବଶାଳୀ ପାଣ୍ଡୁପୁତ୍ର ଶ୍ରୁତର୍ବାଙ୍କୁ ବିରଥ ହୋଇଥିବାର ଦେଖି ଲଘୁହସ୍ତତା ପ୍ରଦର୍ଶନ ପୂର୍ବକ ଲୋମବାହୀ ବାଣବୃନ୍ଦ-ଦ୍ୱାରା ତାହାଙ୍କୁ ଆଚ୍ଛନ୍ନ କଲେ । ୩୦ । ହେ ମହାରାଜ ! ଶ୍ରୁତର୍ବା ବିରଥ ହୋଇ ଖଡ୍‌ଗ ଓ ଚର୍ମ ଗ୍ରହଣ କଲେ । ସେ ତତ୍‌କ୍ଷଣ ଅସି ଓ ଚନ୍ଦ୍ରଯୁକ୍ତ ଚର୍ମ ଧାରଣ କରିବା ମାତ୍ରେ ପାଣ୍ଡୁପୁତ୍ର କ୍ଷୁରପ୍ର ଅସ୍ତ୍ରଦ୍ୱାରା ତାହାଙ୍କ ମସ୍ତକକୁ କଳେବରରୁ ପୃଥକ୍ ଭାବରେ ଛିନ୍ନ କଲେ । କ୍ଷୁରପ୍ର-ଛିନ୍ନ-ମସ୍ତକ ମହାତ୍ମା ଶ୍ରୁତର୍ବାଙ୍କର ଶରୀର ଭୂମଣ୍ଡଳକୁ ଅନୁନାଦିତ କରି ରଥରୁ ପତିତ ହେଲା । ସେହି ବୀର ନିପତିତ ହେବାରୁ ଭୟରେ ମୋହିତ ଆପଣଙ୍କ ଯୋଦ୍ଧାଗଣ ଯୁଦ୍ଧ କାମନା କରି ସଂଗ୍ରାମରେ ଭୀମଙ୍କ ସମ୍ମୁଖକୁ ଧାବିତ ହେଲେ ।

କବଚ ପ୍ରତାପଶାଳୀ ଭୀମ ହତାବଶିଷ୍ଟ ସୈନ୍ୟସାଗର ମଧ୍ୟରୁ ଅବିଳମ୍ବରେ ଆଗତ ସେହି ସୈନ୍ୟମାନଙ୍କୁ ଆକ୍ରମଣ କଲେ । ସୈନ୍ୟବୃନ୍ଦ ତାଙ୍କ ସମୀପକୁ ଆସି ଚତୁର୍ଦ୍ଦିଗରେ ବେଢ଼ିଗଲେ । ୩୫ । ତତ୍ପରେ ଭୀମସେନ ଆପଣଙ୍କ ସୈନ୍ୟସମୂହରେ ବେଷ୍ଟିତ ହୋଇ ଇନ୍ଦ୍ରଦେବ ଯେଉଁପରି ଅସୁରମାନଙ୍କୁ ମର୍ଦ୍ଦନ କରିଥିଲେ, ତଦ୍‌ବତ୍ ଶାଣିତ ଶରନିକର-ଦ୍ୱାରା ସେମାନଙ୍କୁ ପୀଡ଼ା ପ୍ରଦାନ କଲେ । ୩୬ ! ସେ ଯୁଦ୍ଧରେ ପଞ୍ଚଶତ କବଚଧାରୀ ମହାରଥଙ୍କୁ ନିହତ କରି ସପ୍ତଶତ ଗଜାରୋହୀ ସୈନ୍ୟମାନଙ୍କୁ

ସଂହାର କଲେ । ପରଶେଷରେ ଉତ୍କୃଷ୍ଟ ବାଣରାଶିଦ୍ୱାରା ଶତସହସ୍ର ପଦାତିକ ଓ ଅଷ୍ଟଶତ ଅଶ୍ୱାରୋହୀମାନଙ୍କୁ ସଂହାର କରି ବିରାଜିତ ହେଲେ । ୩୮ ।

ହେ ମହାରାଜ ! କୁନ୍ତୀପୁତ୍ର ଭୀମ ଯୁଦ୍ଧରେ ଭବଦୀୟ ପୁତ୍ର ସମସ୍ତଙ୍କୁ ସଂହାର କରି ଆପଣାକୁ କୃତାର୍ଥ ଓ ନିଜର ଜନ୍ମକୁ ସଫଳ ବୋଲି ଜାଣିଲେ । ୩୯ । ହେ ମହାରାଜ ! ସେ ତାଦୃଶ ଭାବରେ ଯୁଦ୍ଧରେ ପ୍ରବୃତ୍ତ ହୋଇ ଅନେକ ବ୍ୟକ୍ତିଙ୍କୁ ସଂହାର କରିଥିବାରୁ ଆପଣଙ୍କ ସୈନ୍ୟମାନେ ତାହାଙ୍କୁ ଚାହିଁପାରିଲେ ନାହିଁ । ୪୦ । ତତ୍ପରେ ମହାବଳ ଭୀମ, କୌରବ ପକ୍ଷର ସମସ୍ତ ପଦାତିକ ସୈନ୍ୟଙ୍କୁ ନିହତ କରି, ମତ୍ତଗଜୟୂଥଙ୍କୁ ତ୍ରାସ ଦେଇ ବାହୁଦ୍ୱୟ ଦ୍ୱାରା ଭୟଙ୍କର ଶବ୍ଦ କଲେ । ୪୧ । ମହାରାଜ ! ଏହି ଯୁଦ୍ଧରେ ଆପଣଙ୍କ ସେନାର ଅଧିକାଂଶ ହତ ହେଲେ । କିଞ୍ଚିନ୍ମାତ୍ର ଯାହା ଅବଶିଷ୍ଟ ଥିଲେ, ସେମାନେ ଅତି ଦୁଃଖିତ ହୋଇ କାଳଯାପନ କଲେ । ୪୨ ।

---

## ସପ୍ତବିଂଶତିତମ ଅଧ୍ୟାୟ

*    *    *    *

( ପରିଶିଷ୍ଟ ଦ୍ରଷ୍ଟବ୍ୟ )

*    *    *    *

ନକୁଳ ଓ ସହଦେବ ମଧ୍ୟ ଧୃତରାଷ୍ଟ୍ରଙ୍କ ଦୁରାତ୍ମା ପୁତ୍ରବୃନ୍ଦ ଓ ସେମାନଙ୍କ ଅନୁଚରଗଣ ସହିତ ବହୁତ ସମୟ ସଂଗ୍ରାମ କରି ଅତିଶୟ ପରିଶ୍ରାନ୍ତ ହୋଇଅଛନ୍ତି । ୪ । କୃପାଚାର୍ଯ୍ୟ, କୃତବର୍ମା ଓ ଅଶ୍ୱତ୍ଥାମା, ଏହି ତିନି ମହାରଥ ଦୁର୍ଯ୍ୟୋଧନଙ୍କୁ ପରିତ୍ୟାଗ କରି ଅବସ୍ଥିତ ହୋଇଅଛନ୍ତି । ୫ । ପାଞ୍ଚାଳରାଜ ଦୁର୍ଯ୍ୟୋଧନଙ୍କ ସୈନ୍ୟସମୂହକୁ ସଂହାର କରି ସମସ୍ତ ପ୍ରଭଦ୍ରକଗଣ ସହିତ ଉତ୍କୃଷ୍ଟ ଯୋଦ୍ଧୃବେଶରେ ଶୋଭିତ ହୋଇ ଅବସ୍ଥିତ କରିଅଛନ୍ତି । ୬ । ହେ ପାର୍ଥ ! ଦୁର୍ଯ୍ୟୋଧନ ଅଶ୍ୱସୈନ୍ୟ ମଧ୍ୟରେ ଅବସ୍ଥିତ

ହୋଇଅଛନ୍ତି । ତାହାଙ୍କ ମସ୍ତକ ଉପରେ ଛତ୍ରଧାରୀ ହୋଇଥିବାରୁ ସେ ବାରମ୍ବାର ଅବଲୋକିତ ହେଉଅଛନ୍ତି । ୭ । ସେ ଏତେବେଳେ ସୈନ୍ୟ-ବୃନ୍ଦରେ ବ୍ୟୂହବିନ୍ୟାସ କରି ସଂଗ୍ରାମମଧ୍ୟରେ ଅବସ୍ଥିତ ହୋଇଅଛନ୍ତି । ତୁମ୍ଭେ ଶାଣିତ ଶରଦ୍ୱାରା ତାଙ୍କୁ ବିନାଶ କରି କୃତକୃତ୍ୟ ହେବ । ୮ । ତଦୀୟ ସୈନ୍ୟବୃନ୍ଦ କାଳଗ୍ରାସରେ ନିପତିତ ଗଜାରୋହୀ ସୈନ୍ୟମାନଙ୍କୁ ଦେଖି ଓ ଶତ୍ରୁଦଳନକାରୀ ତୁମ୍ଭଙ୍କୁ ପ୍ରାପ୍ତ ହୋଇ ଯାବତ୍‌କାଳ ପର୍ଯ୍ୟନ୍ତ ପଳାୟନ କରି ନାହାନ୍ତି, ତାହା ପୂର୍ବରୁ ତୁମ୍ଭେ ଦୁର୍ଯ୍ୟୋଧନଙ୍କୁ ବିନାଶ କର । ୯ ।

କେହି ଜଣେ ପାଞ୍ଚାଳ ନରପତିଙ୍କ ନିକଟକୁ ଯାଉ ଓ ତାହାଙ୍କୁ ଶୀଘ୍ର ଆନୟନ କରୁ । ପାପିଷ୍ଠ ଦୁର୍ଯ୍ୟୋଧନଙ୍କ ସମସ୍ତ ବଳ ପରିଶ୍ରାନ୍ତ ହୋଇଅଛନ୍ତି ; ଅତଏବ ଏତେବେଳେ ତାହାଙ୍କୁ ଛାଡ଼ି ଦେବାର ଉଚିତ ନୁହେଁ । ୧୦ । ଦୁର୍ଯ୍ୟୋଧନ ଯୁଦ୍ଧରେ ତୁମ୍ଭର ସୈନ୍ୟ ସମସ୍ତଙ୍କୁ ସଂହାର କରିଥିବାରୁ ପାଣ୍ଡବମାନେ ପରାସ୍ତ ହୋଇଅଛନ୍ତି ବୋଲି ଜାଣି ଉତ୍କୃଷ୍ଟ ରୂପକୁ ଧାରଣ କରି ଅଛନ୍ତି । ୧୧ । ସେ ଏତେବେଳେ ଯୁଦ୍ଧରେ ପାଣ୍ଡବ-ମାନଙ୍କଦ୍ୱାରା ନିଜ ବଳ ପୀଡ଼ିତ ଓ ହତ ହେବେ ବୋଲି ଜାଣି ଆତ୍ମବଧ ନିମିତ୍ତ ନିଶ୍ଚୟ ଆଗମନ କରିବେ । ୧୨ ।

ଧନଞ୍ଜୟ ଶ୍ରୀକୃଷ୍ଣଙ୍କ ଏହି ବାକ୍ୟ ଶ୍ରବଣ କରି ତାହାଙ୍କୁ କହିଲେ, ହେ ମାନଦ କୃଷ୍ଣ ! ଭୀମସେନ ଧୃତରାଷ୍ଟ୍ରଙ୍କ ସମସ୍ତ ପୁତ୍ରମାନଙ୍କୁ ସଂହାର କରୁଅଛନ୍ତି । ଏତେବେଳେ ଯେଉଁ ଦୁଇଜଣ ଅଛନ୍ତି, ସେ ଦୁହେଁ ସମର କରିବାକୁ ସମର୍ଥ ହେବେ ନାହିଁ । ଭୀଷ୍ମ, ଦ୍ରୋଣ, ସୂର୍ଯ୍ୟପୁତ୍ର କର୍ଣ୍ଣ, ମଦ୍ରରାଜ ଶଲ୍ୟ ଓ ଜୟଦ୍ରଥ ହତ ହୋଇଅଛନ୍ତି । ହେ କୃଷ୍ଣ ! ସଂପ୍ରତି ସୁବଳନନ୍ଦନ ଶକୁନିଙ୍କର ପଞ୍ଚଶତ ଅଶ୍ୱ, ଦୁଇଶତ ରଥ, ଏକଶତ ହସ୍ତୀ ଓ ତିନି ସହସ୍ର ପଦାତିକ ମାତ୍ର ଅବଶିଷ୍ଟ ଅଛନ୍ତି । ୧୭ । ହେ ମାଧବ ! ଦୁର୍ଯ୍ୟୋଧନ ସୈନ୍ୟ ମଧ୍ୟରୁ ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ତ୍ରିଗର୍ତ୍ତାଧିପତି ଉଲୂକ, ଶକୁନି, ସାତ୍ୱତ, କୃତବର୍ମା ଏହି କେତେଜଣ ମାତ୍ର ଅବଶିଷ୍ଟ ରହିଅଛନ୍ତି । କିନ୍ତୁ ହେ ମାଧବ ! ଏହିମାନଙ୍କ ମଧ୍ୟରୁ କେହି ସୁଦ୍ଧା କାଳଗ୍ରାସରୁ ପରିତ୍ରାଣ ଲଭ କରି ପୃଥିବୀରେ ରହିବେ ନାହିଁ । ୧୮ । ଦେଖ, ସୈନ୍ୟସମୂହ ନିହତ ହେଲା ଉତ୍ତାରେ ଦୁର୍ଯ୍ୟୋଧନ ଯୁଦ୍ଧ କରିବାକୁ ଉପସ୍ଥିତ ହୋଇଅଛନ୍ତି । ଯାହା ହେଉ, ମହାରାଜ ଯୁଧିଷ୍ଠିର ଆଜି ଶତ୍ରୁହୀନ ହେବେ । ୧୯ । ଆମ୍ଭେ

ଚନ୍ତା କରୁଅଛୁ ଯେ ଆଜ ଏହି ଯୁଦ୍ଧରେ ଆମ୍ଭ ହସ୍ତରୁ ଶତ୍ରୁଦଳର କୌଣସି ଜଣେ ବ୍ୟକ୍ତି ସୁଦ୍ଧା ବିମୁକ୍ତ ହେବେ ନାହିଁ ।

ହେ କୃଷ୍ଣ ! ଆଜ ଯେଉଁ ସବୁ ସମରମତ୍ତ ବୀରମାନେ ଯୁଦ୍ଧଭୂମି ପରତ୍ୟାଗ ନ କରିବେ, ସେମାନେ ଯଦି ଅମାନୁଷ କାର୍ଯ୍ୟ କରିବେ, ତଥାପି ଆମ୍ଭେ ସେମାନଙ୍କୁ ସଂହାର କରିବୁ । ଆମ୍ଭେ ଆଜ କ୍ରୋଧଯୁକ୍ତ ହୋଇ ରଣସ୍ଥଳରେ ଶାଣିତ ଶର ନିକରଦ୍ୱାରା ଗାନ୍ଧାରୀପୁତ୍ର ଦୁର୍ଯ୍ୟୋଧନଙ୍କୁ ନିପାତିତ କରି ଯୁଧିଷ୍ଠିରଙ୍କ ଦୀର୍ଘକାଳ ପର୍ଯ୍ୟନ୍ତ ଜାଗରିତ ହୋଇଥିବା ଦୁଃଖକୁ ଦୂର କରିବୁ । ଦୁରାତ୍ମା ଶକୁନି ସଭା ମଧ୍ୟରେ ଅବମାନନା ପ୍ରଦାନ ପୂର୍ବକ ଦ୍ୟୂତକ୍ରୀଡ଼ା ସମୟରେ ଆମ୍ଭମାନଙ୍କର ଯେଉଁସବୁ ରତ୍ନ ହରଣ କରିଥିଲେ, ଆମ୍ଭେ ଆଜ ତାହା ପ୍ରତିହରଣ କରିବୁ । ଆଜ ହସ୍ତିନା ନଗରୀର ଅନ୍ତଃପୁରବାସିନୀ ସ୍ତ୍ରୀମାନେ ନିଜ ନିଜ ପତି ଓ ପୁତ୍ରମାନଙ୍କୁ ଯୁଦ୍ଧରେ ପାଣ୍ଡବମାନଙ୍କ ଦ୍ୱାରା ହତ ହୋଇଅଛନ୍ତି ବୋଲି ଜାଣିବେ । ହେ କୃଷ୍ଣ ! ଆଜ ସମସ୍ତ କର୍ମ ସମାପ୍ତ ହେବ । ୨୦ । ଆଜ ଦୁର୍ଯ୍ୟୋଧନ ଅତି ଉଜ୍ଜ୍ୱଳ ରାଜଶ୍ରୀ ଓ ପ୍ରାଣକୁ ପରିତ୍ୟାଗ କରିବେ । ହେ ମାଧବ ! ଅତି ମୂର୍ଖ ଦୁର୍ଯ୍ୟୋଧନ ଯଦି ଆଜ ଆମ୍ଭ ଉପରେ ଯୁଦ୍ଧରୁ ପ୍ରଳାୟନ ନ କରିବେ, ତେବେ ତୁମ୍ଭେ ଜାଣିଥାଅ, ସେ ନିଶ୍ଚୟ ନିହତ ହେବେ । ହେ ବୈରି-ଦଳନ ! ଆମ୍ଭର ଅଶ୍ୱବୃନ୍ଦ ଧନୁଷ୍ଟଙ୍କାରର ନିର୍ଘୋଷ ଶ୍ରବଣ କରି ନିତାନ୍ତ ଅସମର୍ଥ ହେବେ । ଅତଏବ ଆମ୍ଭେ ଯାବତ୍ କାଳ ପର୍ଯ୍ୟନ୍ତ ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କରିନାହୁଁ, ତାବତ୍ କାଳ ପର୍ଯ୍ୟନ୍ତ ତୁମ୍ଭେ ରଥକୁ ଚାଳନା କର ।

ହେ ମହାରାଜ ! ବାସୁଦେବ ଯଶସ୍ୱୀ ପାଣ୍ଡୁନନ୍ଦନଙ୍କର ଏହି ବାକ୍ୟ ଶ୍ରବଣ କରି ଦୁର୍ଯ୍ୟୋଧନ ସୈନ୍ୟସମୀପକୁ ଅଶ୍ୱମାନଙ୍କୁ ଚଳାଇଲେ । ଭୀମ, ଅର୍ଜ୍ଜୁନ ଓ ସହଦେବ ଏହି ତିନିଜଣ, ମହାରଥ ସେହି ସୈନ୍ୟସମୂହଙ୍କୁ ଦେଖି ସୁସଜ୍ଜିତ ହୋଇ ଦୁର୍ଯ୍ୟୋଧନଙ୍କୁ ସଂହାର କରିବା ଇଚ୍ଛାରେ ସିଂହନାଦପୂର୍ବକ ପ୍ରସ୍ଥାନ କଲେ । ସୁବଳନନ୍ଦନ ଶକୁନି ଏକତ୍ର ମିଳିତ ଆତତାୟୀ ପାଣ୍ଡବମାନଙ୍କୁ କାର୍ମ୍ମୁକ ଉତ୍ତୋଳନ କରି ଅତି ବେଗରେ ଆସୁଥିବାର ଦେଖି ସେମାନଙ୍କ ସମ୍ମୁଖକୁ ଧାବମାନ ହେଲେ । ସୁଶର୍ମା ଓ ଶକୁନି ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କଲେ ଏବଂ ଅଶ୍ୱାରୋହୀ ଦୁର୍ଯ୍ୟୋଧନ ସ୍ୱୟଂ ସହଦେବଙ୍କ ସହିତ ସମର କରିବାକୁ ପ୍ରସ୍ତୁତ ହେଲେ । ହେ ନରନାଥ !

ଆପଣଙ୍କ ପୁତ୍ର କମ୍ପିତ୍ କାଳବଲମ୍ବରେ ଦୃଢ଼ତର ସନ୍ନରେ ପ୍ରାସ ଅସ୍ତ୍ରଦ୍ୱାରା ସହଦେବଙ୍କ ମସ୍ତକରେ ପ୍ରହାର କଲେ । ସହଦେବ ଭବଦୀୟ ପୁତ୍ରଙ୍କଦ୍ୱାରା ତାଡ଼ିତ ହୋଇ ରକ୍ତାକ୍ତ ଶରୀରରେ ସର୍ପସଦୃଶ ନିଃଶ୍ୱାସ ତ୍ୟାଗ କରି ରଥ ଉପରେ ଉପବିଷ୍ଟ ହେଲେ । ହେ ମହାରାଜ ! ତଦନନ୍ତର ସହଦେବ ସଂଜ୍ଞା-ଲାଭ ପୂର୍ବକ ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ ପ୍ରଖର ଶରନିକରଦ୍ୱାରା ଦୁର୍ଯ୍ୟୋଧନଙ୍କୁ ଆଚ୍ଛନ୍ନ କଲେ । କୁନ୍ତୀପୁତ୍ର ଅର୍ଜ୍ଜୁନ ମଧ୍ୟ ଯୁଦ୍ଧରେ ବିପୁଳ ବିକ୍ରମ ପ୍ରକାଶ କରି ଅଶ୍ୱାରୋହୀ ଶୂର ସମସ୍ତଙ୍କର ମସ୍ତକ ଛେଦନ କଲେ । ସେତେବେଳେ ଅର୍ଜ୍ଜୁନ ଶରନିକରଦ୍ୱାରା ସେହି ସୈନ୍ୟସମସ୍ତଙ୍କୁ ଦଗ୍ଧ କଲେ । ସେ ଅଶ୍ୱାରୋହୀମାନଙ୍କୁ ଭୂପୃଷ୍ଠରେ ପକାଇ ତ୍ରିଗର୍ତ୍ତ ଦେଶୀୟ ରଥୀମାନଙ୍କୁ ଆକ୍ରମଣ କଲେ ।

ତଦନନ୍ତର ତ୍ରିଗର୍ତ୍ତଦେଶୀୟ ମହାରଥମାନେ ଏକତ୍ର ମିଳିତ ହୋଇ କୃଷ୍ଣ ଓ ଅର୍ଜ୍ଜୁନଙ୍କୁ ଶରବୃଷ୍ଟିରେ ଆଚ୍ଛନ୍ନ କଲେ । ମହାଯଶା ପାଣ୍ଡବ ପ୍ରଥମରେ କ୍ଷୁରପ୍ର ଅସ୍ତ୍ରଦ୍ୱାରା ସତ୍ୟକର୍ମାଙ୍କୁ କ୍ଷତବିକ୍ଷତ କରି ତଦୀୟ ରଥର ଈଷାକୁ ଛେଦନ କଲେ । ତତ୍ପରେ ଶାଣିତ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଅନାୟାସରେ ତାହାଙ୍କ ତପ୍ତକୁଣ୍ଡଳଯୁକ୍ତ ମସ୍ତକକୁ ଛେଦନ କଲେ । ହେ ମହାରାଜ ! ଅରଣ୍ୟ ମଧ୍ୟରେ ଅତିଶୟ କ୍ଷୁଧାରେ ସିଂହ ଯେଉଁପରି ମୃଗକୁ ଧାରଣ କରେ, ତଦ୍‌ବତ୍ ଧନଞ୍ଜୟ ସୈନ୍ୟମାନଙ୍କ ସାକ୍ଷାତରେ ସତ୍ୟେଷୁଙ୍କୁ ଗ୍ରହଣ କଲେ ଓ ତାହାଙ୍କୁ ନିହତ କରି ସୁଶର୍ମାଙ୍କୁ ତିନିଗୋଟି ଶରଦ୍ୱାରା ବିଦ୍ଧକରି ସୁବର୍ଣ୍ଣବିଭୂଷିତ ସମସ୍ତ ରଥୀମାନଙ୍କୁ ସଂହାର କଲେ । ତଦନନ୍ତର ଅର୍ଜ୍ଜୁନ ତ୍ୱରାଯୁକ୍ତ ହୋଇ ଅତି ଦୀର୍ଘକାଳରୁ ସୁସଞ୍ଚିତ ଓ ତୀକ୍ଷ୍ଣ-ତର କ୍ରୋଧବିଷକୁ ବିମୋଚନ କରି ପ୍ରସ୍ଥଳାଧିପତି ସୁଶର୍ମାଙ୍କ ନିକଟକୁ ଯାତ୍ରା କଲେ । ପାର୍ଥ ପ୍ରଥମରେ ଶତସଂଖ୍ୟକ ଶରଦ୍ୱାରା ତାହାଙ୍କୁ ଆଚ୍ଛନ୍ନ କରି ପରିଶେଷରେ ସେହି ଧନୁର୍ଦ୍ଧରମାନଙ୍କୁ ନିହତ କଲେ । ତତ୍ପରେ ସେ ଯମଦେବଙ୍କ ସଦୃଶ ଗୋଟିଏ ଶର ସନ୍ଧାନ ପୂର୍ବକ ଅନାୟାସରେ ସୁଶର୍ମାଙ୍କୁ ଲକ୍ଷ୍ୟ କରି ଅତି ଶୀଘ୍ର ନିକ୍ଷେପ କଲେ । ଯୁଦ୍ଧରେ କ୍ରୋଧପ୍ରଦୀପ୍ତ ଧନୁର୍ଦ୍ଧର ଧନଞ୍ଜୟଙ୍କଦ୍ୱାରା ପ୍ରେରିତ ସେହି ଶର ସୁଶର୍ମାଙ୍କ ନିକଟକୁ ଯାଇ ତାହାଙ୍କ ହୃଦୟ ଭେଦ କଲା । ହେ ମହାରାଜ ! ସେତେବେଳେ ସୁଶର୍ମା ହତ ହୋଇ ପାଣ୍ଡବମାନଙ୍କ ଆନନ୍ଦ ବର୍ଦ୍ଧନ ଓ କୌରବମାନଙ୍କୁ ବ୍ୟଥା ପ୍ରଦାନ କରି ଧରାତଳରେ ପତିତ ହେଲେ । ଧନଞ୍ଜୟ ସୁଶର୍ମାଙ୍କୁ ସଂହାର କରି ତାହାଙ୍କର ପଞ୍ଚତ୍ରିଂଶତ୍ ମହାରଥ ପୁତ୍ରମାନଙ୍କୁ ଶରସମୂହଦ୍ୱାରା

ବିନଷ୍ଟ କଲେ । ତତ୍ପରେ ସେହି ମହାରଥ ଶାଣିତ ବାଣସମୂହଦ୍ୱାରା ସୁଶର୍ମାଙ୍କ ସମସ୍ତ ଅନୁଚରବର୍ଗଙ୍କୁ ସଂହାର କରି ହତାବଶିଷ୍ଟ ଭାରତ-ସେନାର ସମ୍ମୁଖଗାମୀ ହେଲେ ।

ହେ ମହାରାଜ ! ଭୀମ କ୍ରୋଧାବିଷ୍ଟ ହୋଇ ଆପଣଙ୍କ ପୁତ୍ର ସୁଦର୍ଶନଙ୍କୁ ଯୁଦ୍ଧରେ ଶରନିକରଦ୍ୱାରା ଅନାୟାସରେ ଅଦୃଶ୍ୟ କଲେ । ତତ୍ପରେ ସେହି କ୍ରୋଧଯୁକ୍ତ ଭୀମ ଅତି ତୀକ୍ଷ୍ଣ କ୍ଷୁରପ୍ର ଅସ୍ତ୍ରଦ୍ୱାରା ଅନାୟାସରେ ସୁଦର୍ଶନଙ୍କ ଶରୀରରୁ ମସ୍ତକଟିକୁ ଛେଦନ କଲେ । ସେ ହତ ହୋଇ ଭୂତଳରେ ପତିତ ହେଲେ । ସେହି ବୀର ହତ ହେବାରୁ ତାହାଙ୍କ ଅନୁଚରମାନେ ଶାଣିତ ଶରନିକର ନିକ୍ଷେପ ପୂର୍ବକ ଯୁଦ୍ଧରେ ଭୀମଙ୍କୁ ପରିବେଷ୍ଟନ କଲେ । ହେ ଭରତଶ୍ରେଷ୍ଠ ! ତତ୍ପରେ ଭୀମ ବଜ୍ରସାର ଶାଣିତ ବାଣସମୂହଦ୍ୱାରା ସେହି ସମସ୍ତ ସୈନ୍ୟବୃନ୍ଦଙ୍କୁ ଆଚ୍ଛନ୍ନ କଲେ ଓ କ୍ଷଣକ ମଧ୍ୟରେ ସେମାନଙ୍କୁ ସଂହାର କଲେ । ୫୩ । ହେ ଭାରତ ! ସେହି ସମସ୍ତ ସୈନ୍ୟବୃନ୍ଦ ଉଚ୍ଛିଦ୍ୟମାନ ହେଲାରୁ ସେନାଧ୍ୟକ୍ଷଗଣ ଭୀମଙ୍କ ନିକଟକୁ ଯାଇ ଯୁଦ୍ଧ କଲେ । ୫୪ । ପାଣ୍ଡୁନନ୍ଦନ ଘୋରତର ଶରବୃଷ୍ଟିଦ୍ୱାରା ସେମାନଙ୍କୁ ଯେଉଁପରି ଆଚ୍ଛନ୍ନ କଲେ, ଆପଣଙ୍କ ଯୋଦ୍ଧା-ମାନେ ସେହିପରି ପାଣ୍ଡବମାନଙ୍କ ମହାରଥମାନଙ୍କୁ ଉତ୍କୃଷ୍ଟ ବାଣବୃଷ୍ଟି-ଦ୍ୱାରା ଚତୁର୍ଦ୍ଦିଗରେ ଆଚ୍ଛନ୍ନ କଲେ । ହେ ମହାରାଜ ! ପାଣ୍ଡବମାନଙ୍କର ସମସ୍ତ ଲୋକେ ବ୍ୟାକୁଳ ହେଲେ । ହେ ମହାରାଜ ! ସେହି ଯୁଦ୍ଧରେ ଉଭୟ ସେନା ମଧ୍ୟରେ ଯୋଦ୍ଧାମାନେ ବାନ୍ଧବମାନଙ୍କ ନିମିତ୍ତ ବାରମ୍ବାର ଶୋକପ୍ରକାଶ କରି ପରସ୍ପର ଆହତ ହୋଇ ଭୂତଳରେ ପଡ଼ିଲେ । ୫୬ ।

---

## ଅଷ୍ଟାବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ଏହିପରି ଅଶ୍ୱ, ଗଜ ଓ ନରକ୍ଷୟ-କାରକ ସମର ଆରମ୍ଭ ହେଲାରୁ ସୁବଳପୁତ୍ର ଶକୁନି ସହଦେବଙ୍କ ସମୀପକୁ ଧାବମାନ ହେଲେ । ୧ । ପ୍ରତାପଶାଳୀ ସହଦେବ ତାହାଙ୍କୁ ନିଜର ସମୀପଗାମୀ ହେଉଥିବାର ଦେଖି ଶୀଘ୍ରଗାମୀ ପତଙ୍ଗ ସଦୃଶ ଶରସମୂହକୁ ନିକ୍ଷେପ କଲେ । ମହାରାଜ ! ଉଲୂକ ଯୁଦ୍ଧରେ ଭୀମଙ୍କୁ ଦଶଗୋଟି ଶରରେ

ପ୍ରହାର କଲେ । ଶକୁନ ମଧ୍ୟ ଭୀମଙ୍କୁ ତିନିଗୋଟି ଶରରେ ବିଦ୍ଧ କରି ନବବିଂଶ ବାଣରେ ସହଦେବଙ୍କୁ ଆଚ୍ଛନ୍ନ କଲେ । ସେହି ଶୂରମାନେ ଏହିପରି ଯୁଦ୍ଧରେ ପରସ୍ପର ନିକଟବର୍ତ୍ତୀ ହୋଇ କଙ୍କ ଓ ମୟୂରପୁଚ୍ଛ ମଣ୍ଡିତ ସୁବର୍ଣ୍ଣପୁଙ୍ଖ ଶିଳାଧୌତ ଶାଣିତ ଉତ୍କୃଷ୍ଟ ଶରବୃନ୍ଦ ଦ୍ୱାରା ଆକର୍ଣ୍ଣ ପୂର୍ଣ୍ଣ ସନ୍ଧାନ ପୂର୍ବକ ଶତ୍ରୁଙ୍କୁ ପ୍ରହାର କଲେ । ହେ ମହାରାଜ ! ଜଳଧାରା ସଦୃଶ ସେମାନଙ୍କ ହସ୍ତସ୍ଥିତ ଗୃପଦ୍ୱାରା ନିକ୍ଷିପ୍ତ ଶରବୃଷ୍ଟି ସମସ୍ତ ଦିଗମାନଙ୍କୁ ଆଚ୍ଛନ୍ନ କଲା । ତଦନନ୍ତର ମହାବଳ ବୃକୋଦର ଓ ବୀର୍ଯ୍ୟବାନ୍ ସହଦେବ କ୍ରୋଧପରତନ୍ତ୍ର ହୋଇ ରଣସ୍ଥଳରେ ବିପକ୍ଷ ଦଳ ଦଳନ କରି ବିଚରଣ କଲେ । ୭ ।

ହେ ଭାରତ ! ସେହି ଉଭୟଙ୍କ ଶତ ଶତ ଶରଦ୍ୱାରା ଆପଣଙ୍କର ସେହି ସୈନ୍ୟ ସମସ୍ତେ ଆଚ୍ଛନ୍ନ ହେଲେ ଓ ତତ୍ ପ୍ରଦେଶରେ ଆକାଶମଣ୍ଡଳ ଅନ୍ଧକାରରେ ଆବୃତ ହେଲା ପରି ଜଣାଗଲା । ୮ । ଶରାଚ୍ଛନ୍ନ ଅଶ୍ୱବୃନ୍ଦ ଅସଂଖ୍ୟ ହତ ବ୍ୟକ୍ତିମାନଙ୍କୁ ଆକର୍ଷଣ କରି ଧାବମାନ ହେବାରୁ ରଣସ୍ଥଳର ମାର୍ଗ ଆବୃତ ହେଲା । ୯ । ନିହତ ଆରୋହୀ ସହିତ ହସ୍ତିସମୂହ, ଛିନ୍ନଚର୍ମ, ବିଚ୍ଛିନ୍ନ ଶକ୍ତି, ପ୍ରାସ, ଖଡ୍‌ଗ ଓ ପରଶୁସମୂହ ଦ୍ୱାରା ଧରାତଳ କୁସୁମ-ରାଶିରେ କର୍ବୂର ପୂର୍ଣ୍ଣ ପରି ଜଣାଗଲା । ୧୦ । ହେ ମହାରାଜ ! କ୍ରୋଧଯୁକ୍ତ ଯୋଦ୍ଧାମାନେ ସେହି ରଣଭୂମିରେ ପରସ୍ପର ନିକଟବର୍ତ୍ତୀ ହୋଇ ବିଚରଣ ପୂର୍ବକ ପ୍ରହାର କଲେ । ୧୨ । ପଦ୍ମକେଶର ସଦୃଶ କୁଣ୍ଡଳଯୁକ୍ତ ମୁଖ-ମଣ୍ଡଳରେ ଭୂମଣ୍ଡଳ ଆଚ୍ଛନ୍ନ ହୋଇଥିଲା । ଉକ୍ତ ମୁଖମଣ୍ଡଳରେ ଲୋଚନ-ବୃନ୍ଦ ଉଦ୍‌ବୃତ ହୋଇ ଯାଇଥିଲା ଓ ରୋଷ ହେତୁରୁ ଓଷ୍ଠପୁଟ ସବୁ ଦନ୍ତ ଦ୍ୱାରା ସଂଦଷ୍ଟ ହୋଇଥିଲା । ୧୩ । ହେ ମହାରାଜ ! ଅଙ୍ଗଦଯୁକ୍ତ କବଚଯୁକ୍ତ ଅସି, ପ୍ରାସ ଓ ପରଶୁ ସହିତ ହସ୍ତୀଶିଶୁ ସଦୃଶ ଛିନ୍ନ ବାହୁସମୂହ ଓ ଦ୍ରୁତକାରୀ ଉତ୍‌ଥିତ କବନ୍ଧବୃନ୍ଦ ଦ୍ୱାରା ସମାକୀର୍ଣ୍ଣ ଏବଂ ରାକ୍ଷସଗଣ ପରିପୂର୍ଣ୍ଣ ହୋଇ ସେହି ସମରସ୍ଥଳ ଭୟଙ୍କର ମୂର୍ତ୍ତି ଧାରଣ କଲା । ୧୫ । ସେହି ମହାଯୁଦ୍ଧରେ କୌରବମାନଙ୍କର ଅଳ୍ପମାତ୍ରାବଶିଷ୍ଟ ସୈନ୍ୟଙ୍କୁ ଦର୍ଶନ କରି ପାଣ୍ଡବସମୂହ ଆହ୍ଲାଦିତ ହୋଇ ସେମାନଙ୍କୁ ଯମାଳୟକୁ ପ୍ରେରଣ କଲେ । ୧୬ ।

ହେ ମହାରାଜ ! ଏହି ଅବସର ମଧ୍ୟରେ ମହାବୀର ପ୍ରତାପଶାଳୀ ସୁବଳପୁତ୍ର ଶକୁନ ପ୍ରାସ ଅସ୍ତ୍ରଦ୍ୱାରା ସହଦେବଙ୍କ ମସ୍ତକରେ ଅତ୍ୟନ୍ତ ପ୍ରହାର କଲେ । ସେ ତଦ୍ଦ୍ୱାରେ ବିହ୍ୱଳ ହୋଇ ରଥ ଉପରେ ଉପବିଷ୍ଟ ହେଲେ ।

ପ୍ରବଳ ପ୍ରତାପଯୁକ୍ତ ଶତ୍ରୁଦଳନ ଭୀମ ସହଦେବଙ୍କୁ ତାଦୃଶ ଅବସ୍ଥାରେ ପତିତ ହେବାର ଦେଖି ଅତିଶୟ କ୍ରୋଧଯୁକ୍ତ ହେଲେ ଓ ସମସ୍ତ ସୈନ୍ୟଙ୍କୁ ଆକ୍ରମଣପୂର୍ବକ ଶତ ସହସ୍ର ନାରାଚଦ୍ୱାରା ସେମାନଙ୍କୁ ବିଦାରଣ କରି ଘୋରତର ସିଂହନାଦ କଲେ । ଶକୁନିଙ୍କ ସହଚରମାନେ ଭୀଷଣ ଶବ୍ଦଦ୍ୱାରା ତ୍ରସ୍ତ ଓ ଭୀତ ହୋଇ ଅଶ୍ୱ ଓ ଗଜ ସହିତ ପଳାୟନ କଲେ । ରାଜା ଦୁର୍ଯ୍ୟୋଧନ ସେମାନଙ୍କୁ ଯୁଦ୍ଧରେ ପରାଙ୍ମୁଖ ହେବାର ଦେଖି ଉଚ୍ଚୈଃ-ସ୍ୱରରେ କହିଲେ, "ହେ ଅଧାର୍ମିକଗଣ ! ତୁମ୍ଭେମାନେ ସମସ୍ତେ ନିବୃତ୍ତ ହୁଅ । ପଳାୟନ କଲେ କେଉଁ ଫଳ ହେବ ? ଏତେବେଳେ ସମସ୍ତେ ମିଳିତ ହୋଇ ଯୁଦ୍ଧ କର । ଯେଉଁ ବୀର ଯୁଦ୍ଧରେ ବିମୁଖ ନ ହୋଇ ପ୍ରାଣ ପରିତ୍ୟାଗ କରନ୍ତି, ସେ ଇହଲୋକରେ କୀର୍ତ୍ତି ସ୍ଥାପନ କରି ଶେଷରେ ସ୍ୱର୍ଗଲୋକକୁ ଗମନ କରନ୍ତି । ହେ ମହାରାଜ ! ଶକୁନିଙ୍କ ସହଚରବୃନ୍ଦ ଦୁର୍ଯ୍ୟୋଧନ ବାକ୍ୟ ଶ୍ରବଣ କରି ମୃତ୍ୟୁ ସମୟ ପର୍ଯ୍ୟନ୍ତ ପଣ କରି ପାଣ୍ଡବ-ମାନଙ୍କ ସମ୍ମୁଖକୁ ଗମନ କଲେ । ହେ ରାଜେନ୍ଦ୍ର ! ସେମାନେ ଯେତେବେଳେ ଧାବମାନ ହେଉଥିଲେ, ତେତେବେଳେ ସାଗର ଆନ୍ଦୋଳନ ସଦୃଶ ଯେଉଁ ଅତି ଦାରୁଣ ଶବ୍ଦ କଲେ, ତାହାଦ୍ୱାରା ସମସ୍ତ ଦିଗ ପ୍ରତିଧ୍ୱନିରେ ପରିପୂର୍ଣ୍ଣ ହେଲା ।

ତତ୍ପରେ ବିଜୟଶୀଳ ପାଣ୍ଡବମାନେ ଶକୁନିଙ୍କ ଅନୁଚରବର୍ଗଙ୍କୁ ସମ୍ମୁଖରେ ଉପସ୍ଥିତ ହେବାର ଦେଖି ତତ୍କ୍ଷଣାତ୍ ସେମାନଙ୍କ ନିକଟକୁ ଧାବମାନ ହେଲେ । ହେ ନରେନ୍ଦ୍ର ! ଦୁର୍ଦ୍ଧର୍ଷ ସହଦେବ ସ୍ୱପକ୍ଷ ସମସ୍ତଙ୍କୁ ସମ୍ପୂର୍ଣ୍ଣରୂପେ ଆଶ୍ୱାସ ଦେଇ ଶକୁନିଙ୍କୁ ଦଶଗୋଟି ଶରରେ ବିଦ୍ଧ କଲେ ଓ ତାହାଙ୍କ ଅଶ୍ୱମାନଙ୍କୁ ତିନଗୋଟି ବାଣରେ ବିଶେଷରୂପେ ବିଦ୍ଧ କରି ଶକୁନିଙ୍କ ଶରାସନକୁ ଶରବୃନ୍ଦଦ୍ୱାରା ଛେଦନ କଲେ । ଯୁଦ୍ଧଦୁର୍ମଦ ଶକୁନି ତତ୍କ୍ଷଣାତ୍ ଅନ୍ୟ ଗୋଟିଏ ଶରାସନ ଧାରଣ କରି ନକୁଳଙ୍କୁ ଷଷ୍ଟି-ଶରରେ ଓ ଭୀମଙ୍କୁ ସପ୍ତ ସାୟକରେ ବିଦ୍ଧ କଲେ । ୨୮ । ତତ୍ପରେ ଉଲୂକ ଯୁଦ୍ଧରେ ପିତାଙ୍କ ରକ୍ଷାରେ ଇଚ୍ଛୁକ ହୋଇ ଭୀମଙ୍କୁ ସପ୍ତ ଶରରେ ଓ ସହଦେବଙ୍କୁ ସପ୍ତତିସଂଖ୍ୟକ ଶରରେ ବିଦ୍ଧ କଲେ । ୨୯ । ଭୀମ ଉଲୂକଙ୍କୁ ଶାଣିତ ନବ ଶରଦ୍ୱାରା, ଶକୁନିଙ୍କୁ ଚତୁଃଷଷ୍ଟି ଶାୟକରେ ଓ ପାର୍ଶ୍ୱସ୍ଥିତ ପ୍ରତ୍ୟେକ ବ୍ୟକ୍ତିଙ୍କୁ ତିନ ତିନ ବାଣରେ ବିଦ୍ଧ କଲେ । ୩୦ । ସୌଦାମିନୀଦ୍ୱାରା ବିରାଜିତ ମେଘସମୂହ ଯେଉଁପରି ଜଳଧାରଦ୍ୱାରା ପର୍ବତକୁ

ଆଚ୍ଛନ୍ନ କରନ୍ତ, ତେତେବେଳେ ସେମାନେ ସେହିପରି ଭୀମସେନଙ୍କ ତୈଳଧୌତ ଧାରନାରାଚଦ୍ୱାରା ହନ୍ୟମାନ ହୋଇ ସଂଗ୍ରାମରେ ଅତିଶୟ କ୍ରୋଧପ୍ରକାଶ ପୂର୍ବକ ବାଣବୃଷ୍ଟିଦ୍ୱାରା ସହଦେବଙ୍କୁ ଆବୃତ କଲେ ।

ହେ ମହାରାଜ ! ତପୂରେ ଉଲୂକ ଅତି ବେଗରେ ସମୀପକୁ ଆସିବାରୁ ସେହି ବୀରବର ପ୍ରତାପଶାଳୀ ସହଦେବ ଭଲ୍ଲ ଅସ୍ତ୍ରଦ୍ୱାରା ତାହାଙ୍କ ମସ୍ତକ ଛେଦନ କଲେ । ସହଦେବଙ୍କଦ୍ୱାରା ହତ ଉଲୂକ ପାଣ୍ଡବମାନଙ୍କ ଆନନ୍ଦ ବର୍ଦ୍ଧନ କରି ରକ୍ତାକ୍ତକଳେବର ହୋଇ ଭୂତଳରେ ପଡ଼ିଲେ । ହେ ଭରତଶ୍ରେଷ୍ଠ ! ଶକୁନି ନିଜ ସନ୍ତାନଙ୍କୁ ସମରସ୍ଥଳରେ ନିହତ ହେବାର ଦେଖି ଅଶ୍ରୁ ପୂର୍ଣ୍ଣ କଣ୍ଠରେ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ ପୂର୍ବକ ବିଦୁରଙ୍କ ବାକ୍ୟ ସ୍ମରଣ କଲେ ଓ ବାଷ୍ପାକୁଳ ନୟନରେ ବାରମ୍ବାର ନିଃଶ୍ୱାସ ତ୍ୟାଗ କରି ମୁହୂର୍ତ୍ତକ କାଳ ଚିନ୍ତାକଲା ଉତ୍ତାରେ ସହଦେବଙ୍କୁ ତିନିଗୋଟି ଶରରେ ବିଦ୍ଧ କଲେ । ପ୍ରତାପଶାଳୀ ସହଦେବ ସେହି ନିକ୍ଷିପ୍ତ ସାୟକସମୂହକୁ ଶରନିକରଦ୍ୱାରା ନିବାରଣ ପୂର୍ବକ ଶକୁନିଙ୍କ ଶରାସନକୁ ଛେଦନ କଲେ । ହେ ରାଜେନ୍ଦ୍ର ! ଶରାସନ ଛିନ୍ନ ହେବାରୁ ସୁବଳପୁତ୍ର ଶକୁନି ଗୋଟିଏ ଉତ୍କୃଷ୍ଟ ଖଡ଼୍‌ଗ ଧାରଣ କରି ସହଦେବଙ୍କ ଉପରକୁ ନିକ୍ଷେପ କଲେ । ହେ ମହାରାଜ ! ପ୍ରତାପଶାଳୀ ସହଦେବ ହଠାତ୍ ସେହି ଖଡ଼୍‌ଗ ଆସୁଥିବାର ଦେଖି ଅନାୟାସରେ ତାହାକୁ ଦ୍ୱିଖଣ୍ଡ କଲେ । ସୌବଳ ଖଡ଼୍‌ଗ ଛିନ୍ନ ହେବାର ଦେଖି ତତ୍କ୍ଷଣାତ୍ ଗୋଟିଏ ଉତ୍କୃଷ୍ଟ ଗଦା ଧାରଣ ପୂର୍ବକ ତାହା ପାଣ୍ଡବଙ୍କ ଉପରକୁ ପ୍ରେରଣ କଲେ । ତାହା ମଧ୍ୟ ନିଷ୍ଫଳ ହୋଇ ଭୂତଳରେ ପଡ଼ିଲା ।

ତପୂରେ ସେ ଅତିଶୟ କ୍ରୋଧଯୁକ୍ତ ହୋଇ କାଳରାତ୍ରି ସଦୃଶ ଦେଦୀପ୍ୟମାନ ଏକଗୋଟି ଭୟଙ୍କର ଶକ୍ତି ଧାରଣ କରି ପାଣ୍ଡବଙ୍କ ଉପରକୁ ନିକ୍ଷେପ କଲେ । ସହଦେବ ହଠାତ୍ ସେହି ଶକ୍ତିକୁ ଆସୁଥିବାର ଦେଖି ସୁବର୍ଣ୍ଣବିଭୂଷିତ ଶରସମୂହ ଦ୍ୱାରା ତାହାକୁ ଅନାୟାସରେ ତିନିଖଣ୍ଡ କରି ଛେଦନ କଲେ । ପ୍ରଦୀପ୍ତ ବଜ୍ର ଯେଉଁପରି ଶୀର୍ଣ୍ଣ ହୋଇ ଆକାଶମଣ୍ଡଳରୁ ନିପତିତ ହୁଏ, ସେହିପରି ସୁବର୍ଣ୍ଣମଣ୍ଡିତ ସେହି ଶକ୍ତି ଅସ୍ତ୍ର ତିନି ଭାଗରେ ବିଚ୍ଛିନ୍ନ ହୋଇ ପୃଥିବୀରେ ପଡ଼ିଲା । ଆପଣଙ୍କ ଯୋଦ୍ଧାମାନେ ବିଚ୍ଛିନ୍ନ ଶକ୍ତି ଓ ଭୟାର୍ତ୍ତ ଶକୁନିଙ୍କୁ ଅବଲୋକନ କରି ଭୟଗ୍ରସ୍ତ ହେଲେ ଓ ଚତୁର୍ଦ୍ଦିଗକୁ ପଳାୟନ କଲେ । ତତ୍ସମୟରେ ଜୟଲକ୍ଷଣାକ୍ରାନ୍ତ ପାଣ୍ଡବମାନେ ଅତି

ମହାନ୍ ଜୟଧ୍ୱନି କଲେ ଓ କୌରବମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତି ବିମୁଖ ହେଲେ । ପ୍ରତାପଶାଳୀ ମାଦ୍ରୀନନ୍ଦନ ସେମାନଙ୍କୁ ବିମନା ହୋଇଥିବାର ଦେଖି ବହୁ ସହସ୍ର ଶରଦ୍ୱାରା ସମସ୍ତଙ୍କୁ ଆଚ୍ଛନ୍ନ କଲେ ।

ତତ୍ପରେ ଶକୁନି ଗାନ୍ଧାରପରିପୁଷ୍ଟ ଅଶ୍ୱଗଣ ଦ୍ୱାରା ଗୁପ୍ତ ଭାବରେ ଅବସ୍ଥାନ କରି ସମରକୁ ଯାଉଥିଲେ । ପାଣ୍ଡୁପୁତ୍ର ସହଦେବ ତାହା ଜାଣି ସହସା ତାହାଙ୍କ ସମ୍ମୁଖକୁ ଗଲେ ଓ ସେ ତାହାଙ୍କ ବିଭାଗରେ ଅବସ୍ଥିତ ଥିବାର ସ୍ମରଣ କରି ସୁବର୍ଣ୍ଣବିଭୂଷିତ ରଥରେ ଆରୂଢ଼ ହୋଇ ତାହାଙ୍କ ଅଭିମୁଖକୁ ଗମନ କଲେ । ପରିଶେଷରେ ସେହି ବୀର କ୍ରୋଧଯୁକ୍ତ ହୋଇ ଦୃଢ଼ତର ଶରାସନରେ ଗୁଣ ଦେଇ ତାହାକୁ ନିକ୍ଷେପ କଲେ ଓ ଅଙ୍କୁଶ ଦ୍ୱାରା ମହାଗଜକୁ ଆଘାତ କଲା ପରି ଗୃଧ୍ର ପକ୍ଷଯୁକ୍ତ ଶାଣିତ ଶରନିକର ଦ୍ୱାରା ଶକୁନିଙ୍କୁ ଅତିଶୟ ପ୍ରହାର କଲେ ଓ ସେହି ମେଧାବୀ ଶକୁନିଙ୍କ ଅନ୍ତଃକରଣରେ ପୂର୍ବ ବୃତ୍ତାନ୍ତସବୁ ସ୍ମରଣ କରାଇବା ନିମିତ୍ତ ବିଗ୍ରହ ପ୍ରକାଶ କରି କହିଲେ, ହେ ମୂଢ଼ ! ଏତେବେଳେ ତୁମ୍ଭେ କ୍ଷତ୍ରିୟ ଧର୍ମରେ ସ୍ଥିର ଭାବରେ ଅବସ୍ଥାନ କରି ଯୁଦ୍ଧରେ ପ୍ରବୃତ୍ତ ହୁଅ ଓ ପୌରୁଷକୁ ଦେଖାଅ । ୫୦ । ହେ ଦୁର୍ବୁଦ୍ଧେ ! ସଭା ମଧ୍ୟରେ ଅକ୍ଷକ୍ରୀଡ଼ାରେ ଯେଉଁ ଅସୀମ ଆନନ୍ଦ ଲାଭ କରିଥିଲ, ଏତେବେଳେ ନିଜର ସେହି କର୍ମଫଳକୁ ଦେଖ । ୫୧ । ପୂର୍ବେ ଯେଉଁ ଦୁରାତ୍ମାମାନେ ଆମ୍ଭମାନଙ୍କୁ ଉପହାସ କରିଥିଲେ, ସେମାନେ ସମସ୍ତେ ନିହତ ହୋଇଅଛନ୍ତି । କେବଳ କୁଳାଙ୍ଗାର ଦୁର୍ଯ୍ୟୋଧନ ଓ ତାହାଙ୍କ ମାତୁଳ ତୁମ୍ଭେ ମାତ୍ର ଅବଶିଷ୍ଟ ଅଛ । ବୃକ୍ଷରୁ ଫଳ ଆହରଣକାରୀ ବ୍ୟକ୍ତି ଯେଉଁପରି ଲଗୁଡ଼ଦ୍ୱାରା ଫଳମାନଙ୍କୁ ଝଡ଼ାନ୍ତି, ଆମ୍ଭେ ଆଜି ସେହିପରି କ୍ଷୁର ଅସ୍ତ୍ରଦ୍ୱାରା ତୁମ୍ଭର ମସ୍ତକ ଛେଦନପୂର୍ବକ ତୁମ୍ଭଙ୍କୁ ସଂହାର କରିବୁ ।

ହେ ମହାରାଜ ! ନରଶ୍ରେଷ୍ଠ ମହାବଳ ସହଦେବ ଶକୁନିଙ୍କୁ ଏହିପରି କହି ଅତିଶୟ କ୍ରୋଧଯୁକ୍ତ ହୋଇ ଅତି ଶୀଘ୍ର ତାହାଙ୍କ ସମ୍ମୁଖକୁ ଗମନ କଲେ ଓ ସେହି ଦୁର୍ଦ୍ଧର୍ଷ ଯୋଦ୍ଧାଶ୍ରେଷ୍ଠ ସହଦେବ ସମ୍ମୁଖଗାମୀ ହୋଇ ଓ ଦୃଢ଼ତର ଶରାସନ ଆକର୍ଷଣପୂର୍ବକ କ୍ରୋଧରେ ପ୍ରଜ୍ୱଳିତ ହୋଇ ଶକୁନିଙ୍କୁ ଦଶସଂଖ୍ୟକ ଶରରେ ଓ ତାହାଙ୍କ ଅଶ୍ୱମାନଙ୍କୁ ଚାରିଗୋଟି ସାୟକଦ୍ୱାରା ବିଦ୍ଧ କରି ତାହାଙ୍କ ଧ୍ୱଜ, ଶରାସନ ଛେଦନପୂର୍ବକ ସିଂହ ସଦୃଶ ଗର୍ଜନ କଲେ । ୫୬ । ସହଦେବଙ୍କ ଶରବୃନ୍ଦ ଦ୍ୱାରା ଶକୁନିଙ୍କ ଧ୍ୱଜ, ଛତ୍ର ଓ ଶରାସନ ଛିନ୍ନ ଓ ମର୍ମସ୍ଥାନ ସବୁ ଅତିଶୟ ବିଦ୍ଧ ହେଲା । ୫୭ । ତତ୍ପରେ

ପ୍ରତାପଶାଳୀ ସହଦେବ ପୁନଶ୍ଚ ଶକୁନିଙ୍କୁ ଅନିବାର୍ଯ୍ୟ ଶର ବୃଷ୍ଟି କଲେ । ୫୮ । ସୁବଳପୁତ୍ର ଶକୁନି ଯୁଦ୍ଧରେ କ୍ରୋଧଯୁକ୍ତ ହୋଇ ସୁବର୍ଣ୍ଣଭୂଷିତ ପ୍ରାସ ଅସ୍ତ୍ରଦ୍ୱାରା ମାଦ୍ରୀପୁତ୍ର ସହଦେବଙ୍କୁ ବିନଷ୍ଟ କରିବା ଇଚ୍ଛାରେ ଅବିଳମ୍ବେ ତାହାଙ୍କ ସମ୍ମୁଖବର୍ତ୍ତୀ ହେଲେ । ୫୯ । ପାଣ୍ଡୁପୁତ୍ର ସମର ମଧ୍ୟରେ ତାହାଙ୍କ ଉତ୍ତୋଳିତ ସେହି ପ୍ରାସ ଅସ୍ତ୍ର ଓ ବର୍ତ୍ତୁଳ ଭୁଜଦ୍ୱୟକୁ ତିନିଗୋଟି ଭଲ୍ଲଦ୍ୱାରା ଯୁଗପତ୍ ଛେଦ କରି ଉଚ୍ଚୈଃସ୍ୱରରେ ନାଦ କଲେ । ୬୦ । ତତ୍ପରେ ଯୁଦ୍ଧ-ବିଶାରଦ ସେହି ବୀରବର ସର୍ବବିଧ ଆବରଣ ଭେଦକାରୀ, ଲୌହମୟ ସୁବର୍ଣ୍ଣପୁଙ୍ଖ ଦୃଢ଼ତର ଅନ୍ୟ ଗୋଟିଏ ଶାଣିତ ଭଲ୍ଲଦ୍ୱାରା ଶକୁନିଙ୍କ ମସ୍ତକକୁ ଶରୀରରୁ ପୃଥକ୍ ଭାବରେ ଛେଦନ କଲେ । ୬୧ ।

ସେତେବେଳେ ସହଦେବଙ୍କ ସୁବର୍ଣ୍ଣଭୂଷିତ, ସୁଶାଣିତ ଓ ସୂର୍ଯ୍ୟ-କିରଣ ସଦୃଶ ପ୍ରଭାଯୁକ୍ତ ଶରାଘାତରେ ଶକୁନିଙ୍କ ମସ୍ତକ ଛିନ୍ନ ହେବାରୁ ସେ ସମରଭୂମିରେ ପତିତ ହେଲା । ୬୨ । ଯେଉଁ ମସ୍ତକ କୌରବ-ମାନଙ୍କର ସର୍ବପ୍ରକାର ଅନ୍ୟାୟର ମୂଳ କାରଣ, ତାହାକୁ ସହଦେବ କୋପପରାୟଣ ହୋଇ ସୁବର୍ଣ୍ଣପୁଙ୍ଖ ଶାଣିତ ଓ ବେଗଶାଳୀ ଶରନିକରଦ୍ୱାରା ଦୂରରେ ନିକ୍ଷେପ କଲେ । ୬୩ । ମହାରାଜ ! ଶକୁନିଙ୍କ ମସ୍ତକ ଛିନ୍ନ ହେବାରୁ ସେ ରକ୍ତାକ୍ତକଳେବର ହୋଇ ଭୂତଳରେ ଶୟନ କଲେ । ଆପଣଙ୍କ ଯୋଦ୍ଧାମାନେ ତାହାଙ୍କୁ ଦେଖି ଭୟ ହେତୁରୁ ଉତ୍ସାହଶୂନ୍ୟ ହୋଇ ଅସ୍ତ୍ରଶସ୍ତ୍ର ଗ୍ରହଣପୂର୍ବକ ନାନା ଦିଗକୁ ପଳାୟନ କଲେ । ଦୁର୍ଯ୍ୟୋଧନଙ୍କ ଚତୁରଙ୍ଗ ସୈନ୍ୟ ଭଗ୍ନରଥ, ଭୟାର୍ତ୍ତ ଓ ଗାଣ୍ଡିବ ଶବ୍ଦ-ଶ୍ରବଣରେ ଅଚେତନ ହୋଇ ଶୁଷ୍କ ମୁଖରେ ପଳାୟନ କଲେ !

ହେ ଭରତଶ୍ରେଷ୍ଠ ! କେଶବ ଓ ପାଣ୍ଡବମାନେ ଶକୁନିଙ୍କୁ ରଥରୁ ଭୂମିତଳକୁ ପକାଇ ଆହ୍ଲାଦିତ ହୋଇ ସୈନିକମାନଙ୍କ ହର୍ଷବର୍ଦ୍ଧନପୂର୍ବକ ଶଙ୍ଖଧ୍ୱନି କଲେ ଓ ସମସ୍ତେ ସନ୍ତୁଷ୍ଟ ହୋଇ ସହଦେବଙ୍କୁ ପ୍ରଶଂସା କରି କହିଲେ, ହେ ବୀରବର ! ତୁମ୍ଭେ ଆଜ ଭାଗ୍ୟବଳରେ ଏହି ଯୁଦ୍ଧରେ ପାପାଚାର ଦୁରାତ୍ମା ଶକୁନିଙ୍କୁ ଓ ତାହାଙ୍କ ପୁତ୍ରଙ୍କୁ ସଂହାର କଲ । ୬୮ ।

---

# ନବବିଂଶତିତମ ଅଧ୍ୟାୟ

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ଶକୁନିଙ୍କ ଅନୁଚର ସୈନ୍ୟଗଣ ଯୁଦ୍ଧରେ କ୍ରୋଧାକ୍ରାନ୍ତ ହୋଇ ପ୍ରାଣ ଆଶା ପରିତ୍ୟାଗ କରି ପାଣ୍ଡବମାନଙ୍କୁ ପରିବେଷ୍ଟନପୂର୍ବକ ଗର୍ଜନ କଲେ । କ୍ରୋଧଯୁକ୍ତ ସର୍ପ ସଦୃଶ ତେଜସ୍ୱୀ ଭୀମ ଓ ଅର୍ଜ୍ଜୁନ ସହଦେବଙ୍କ ରକ୍ଷାପୂର୍ବକରେ ଆନନ୍ଦିତ ହୋଇ ସେମାନଙ୍କ ସମ୍ମୁଖକୁ ଗମନ କଲେ । ୨ । ଶକୁନିଙ୍କ ଅନୁଚରଗଣ ଖଡ୍‌ଗ, ଶକ୍ତି ଓ ପ୍ରାସ ପ୍ରଭୃତି ଅସ୍ତ୍ର ଧାରଣ କରି ସହଦେବଙ୍କୁ ବିନଷ୍ଟ କରିବା ନିମିତ୍ତ ଯେଉଁ ସଂକଳ୍ପ କରିଥିଲେ, ଅର୍ଜ୍ଜୁନ ଗାଣ୍ଡିବ ପ୍ରଭାବରେ ତାହା ବ୍ୟର୍ଥ କଲେ । ୩ । ସେ ଧାବମାନ ଯୋଦ୍ଧାଗଣର ଆୟୁଧ, ଧ୍ୱଂସଯୁକ୍ତ ବାହୁ, ମସ୍ତକ ଓ ଅଶ୍ୱମାନଙ୍କୁ ଭଲ୍ଲ ଅସ୍ତ୍ରଦ୍ୱାରା ଛେଦନ କଲେ । ୪ । ଭୂରିଯୁକ୍ତ ଲୋକବିଖ୍ୟାତ ବୀରବୃନ୍ଦର ସେହି ସମସ୍ତ ଅଶ୍ୱନିକର ଅର୍ଜ୍ଜୁନଙ୍କ ଶରାଘାତରେ ନିଧନପ୍ରାପ୍ତ ହୋଇ ଭୂମିତଳକୁ ଆଶ୍ରୟ କଲେ । ୫ ।

ତତ୍ପରେ ରାଜା ଦୁର୍ଯ୍ୟୋଧନ ନିଜ ସୈନ୍ୟବୃନ୍ଦର ନିଧନ ଦର୍ଶନରେ କ୍ରୋଧଯୁକ୍ତ ହୋଇ ଅବଶିଷ୍ଟ ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ପ୍ରଭୃତି ଚତୁରଙ୍ଗ ବଳ ସମୂହକୁ ନାନା ସ୍ଥାନରୁ ସମୀପବର୍ତ୍ତୀ କରି କହିଲେ, ହେ ବୀରବୃନ୍ଦ ! ତୁମ୍ଭେମାନେ ସମସ୍ତେ ଶୀଘ୍ର ଯୁଦ୍ଧରେ ସୁହୃଦ୍‌ଗଣଯୁକ୍ତ ପାଣ୍ଡବମାନଙ୍କୁ ଓ ବଳସଂଯୁକ୍ତ ପାଞ୍ଚାଳପତିଙ୍କୁ ବିନଷ୍ଟ କରି ଯୁଦ୍ଧରୁ ନିବୃତ୍ତ ହୁଅ । ୮ । ସମରମତ୍ତ ସୈନ୍ୟବୃନ୍ଦ ତାହାଙ୍କ ବାକ୍ୟକୁ ଶିରୋଧାର୍ଯ୍ୟ କରି ନରପାଳଙ୍କ ଶାସନାନୁସାରେ ତତ୍‌କ୍ଷଣାତ୍ ପାଣ୍ଡବମାନଙ୍କ ନିକଟକୁ ଧାବମାନ ହେଲେ ।୯। ପାଣ୍ଡବଗଣ ହତାବଶେଷ ସେହି ସୈନ୍ୟସମୂହକୁ ନିକଟବର୍ତ୍ତୀ ହେବାର ଦେଖି ବିଷଧର ସଦୃଶ ଶର ସମୂହଦ୍ୱାରା ସେମାନଙ୍କୁ ଆଚ୍ଛନ୍ନ କଲେ । ୧୦ । ମହାରାଜ ! ସେହି ମହାତ୍ମାମାନେ ମୁହୂର୍ତ୍ତକ ମଧ୍ୟରେ ଯୁଦ୍ଧରେ ସେହି ସୈନ୍ୟ ସମସ୍ତଙ୍କୁ ସଂହାର କଲେ । ସେତେବେଳେ ସେମାନଙ୍କର ପରିତ୍ରାତା କେହି ନ ଥିଲେ । ସୈନ୍ୟମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି କିଛିତ ସମୟ ପର୍ଯ୍ୟନ୍ତ ରଣସ୍ଥଳରେ ସ୍ଥିର ଭାବରେ ଅବସ୍ଥାନ କରିପାରନ୍ତି, ସେହି ବ୍ୟକ୍ତି ମଧ୍ୟ ସେତେବେଳେ ବଦ୍ଧକବଚ ହୋଇଥିବା ହେତୁରୁ ଅବସ୍ଥାନ କରିପାରିଲେ ନାହିଁ । ସେତେବେଳେ ସୈନ୍ୟମାନଙ୍କ ଧୂଳିଦ୍ୱାରା ଆବୃତ ବିପରୀତ ଭାବରେ ଧାବମାନ ଅଶ୍ୱବୃନ୍ଦଦ୍ୱାରା ଦିଗବିଦିଗ ସବୁ ଜଣାଗଲା ନାହିଁ ।

ତଦନନ୍ତର ପାଣ୍ଡବସେନା ମଧ୍ୟରୁ ଅନେକ ଅନେକ ସୈନିକ ପୁରୁଷ ନିର୍ଗତ ହୋଇ ଯୁଦ୍ଧରେ ମୁହୂର୍ତ୍ତକ ସମୟ ମଧ୍ୟରେ ଆପଣଙ୍କ ସୈନ୍ୟସମୂହକୁ ସଂହାର କଲେ । ହେ ଭରତଶ୍ରେଷ୍ଠ ! ଅନନ୍ତର ଆପଣଙ୍କ ସୈନ୍ୟବୃନ୍ଦ ପ୍ରାୟ ନିଃଶେଷ ହେଲେ । ୧୪ । ପାଣ୍ଡବ ଓ ସୃଞ୍ଜୟଗଣ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ଏକାଦଶ ଅକ୍ଷୌହିଣୀ ସେନା ସଂହାର କଲେ । ୧୫ । ଭବଦୀୟ ସେହି ସହସ୍ର ସହସ୍ର ମହାନୁଭବ ଭୂପାଳମାନଙ୍କ ମଧ୍ୟରୁ କେବଳ ଅତ୍ୟନ୍ତ କ୍ଷତବିକ୍ଷତ ଦୁର୍ଯ୍ୟୋଧନ ଦୃଷ୍ଟିଗୋଚର ହେଉ-ଥିଲେ । ୧୬ । ହେ ମହାରାଜ ! ତତ୍ପରେ ଦୁର୍ଯ୍ୟୋଧନଙ୍କର ଯୋଧବୃନ୍ଦ ଓ ବଳବାହନ ସମୂହ ବିନଷ୍ଟ ହେବାରୁ ସେ ଦିଙ୍‌ମଣ୍ଡଳ ଓ ଭୂମଣ୍ଡଳକୁ ଶୂନ୍ୟମୟ ପରି ଦର୍ଶନ କଲେ ଓ ପାଣ୍ଡବମାନଙ୍କୁ କୃତକାର୍ଯ୍ୟ, ଆନନ୍ଦିତ ଓ ସିଂହନାଦ କରୁଥିବାର ଅବଲୋକନ କରି ସେହି ମହାତ୍ମାମାନଙ୍କର ଶରଶବ୍ଦ ଶ୍ରବଣରେ ମୂର୍ଚ୍ଛିତ ହେଲପରି ହୋଇ ରଣସ୍ଥଳରୁ ପଳାୟନ କରିବାକୁ ଇଚ୍ଛା କଲେ । ୧୯ ।

ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ମଦୀୟ ସୈନ୍ୟ ସମସ୍ତେ ନିହତ ଓ ଶିବିରମାନ ଜନଶୂନ୍ୟ ହେବାରୁ ପାଣ୍ଡବମାନଙ୍କ ସୈନ୍ୟ ମଧ୍ୟରୁ କେତେଜଣ ଅବଶିଷ୍ଟ ଥିଲେ ଓ ଆମ୍ଭ ପୁତ୍ର ମୂଢ଼ବୁଦ୍ଧି ରାଜା ଦୁର୍ଯ୍ୟୋଧନ ଏକାକୀ ନିଜର ବଳକ୍ଷୟ ହେବାର ଅବଲୋକନ କରି ଅବା କଣ କଲେ, ଏହି ସମସ୍ତ ବିଷୟ ତୁମ୍ଭଙ୍କୁ ଜଣା ଅଛି । ଅତଏବ ଆମ୍ଭେ ପଚାରୁଅଛୁ ସେହି ସମସ୍ତ ବୃତ୍ତାନ୍ତ ଆମ୍ଭଙ୍କୁ କହ । ସଞ୍ଜୟ କହିଲେ, ମହାରାଜ ! ତେତେବେଳେ ପାଣ୍ଡବମାନଙ୍କ ମହା ସୈନ୍ୟମଧ୍ୟରୁ ଦୁଇସହସ୍ର ରଥ, ସପ୍ତଶତ ହସ୍ତୀ, ପଞ୍ଚସହସ୍ର ଅଶ୍ୱ ଓ ଦଶସହସ୍ର ପଦାତିକ ମାତ୍ର ଅବଶିଷ୍ଟ ଥିଲେ ! ଧୃଷ୍ଟଦ୍ୟୁମ୍ନ ଏହି ସମସ୍ତ ସୈନିକ ସମଭିବ୍ୟାହାରରେ ତେତେବେଳେ ରଣସ୍ଥଳରେ ଯୁଦ୍ଧ ନିମିତ୍ତ ପ୍ରସ୍ତୁତ ଥିଲେ ।

ହେ ଭରତଶ୍ରେଷ୍ଠ ମହାରାଜ ! ତତ୍ପରେ ରଥିଶ୍ରେଷ୍ଠ ରାଜା ଦୁର୍ଯ୍ୟୋଧନ ଏକାକୀ ରଣସ୍ଥଳରେ ଆପଣାର ସହାୟମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିକୁ ସୁଦ୍ଧା ଦେଖିଲେ ନାହିଁ । ସେହି ଏକାକୀ ଦୁର୍ଯ୍ୟୋଧନ ବିପକ୍ଷମାନଙ୍କ ଗର୍ଜନ ଶୁଣି ଓ ନିଜ ପକ୍ଷର ସୈନ୍ୟକ୍ଷୟ ଦେଖି ସ୍ୱକୀୟ ନିହତ ଅଶ୍ୱକୁ ପରିତ୍ୟାଗ ପୂର୍ବକ ରଣସ୍ଥଳରୁ ପୂର୍ବମୁଖରେ ପଳାଇଲେ । ୨୬ । ହେ ମହାରାଜ ! ଯେଉଁ ବୀର ଏକାଦଶ ଅକ୍ଷୌହିଣୀ ସେନାର ଅଧିପତି ଥିଲେ, ସେହି

ଆପଣଙ୍କ ପୁତ୍ର ତେଜସ୍ୱୀ ଦୁର୍ଯ୍ୟୋଧନ ଏକମାତ୍ର ଗଦାକୁ ଧାରଣ କରି ପଦାତିକ ସଦୃଶ ହ୍ରଦ ଅଭିମୁଖରେ ପ୍ରସ୍ଥାନ କଲେ । ୨୭ । ରାଜା ପଦ-ବ୍ରଜରେ ଅଧିକ ଦୂରକୁ ଗମନ କରି ନ ପାରି ଧର୍ମଶୀଳ ବୁଦ୍ଧିମାନ୍ ବିଦୁରଙ୍କ ବାକ୍ୟ ସ୍ମରଣ କଲେ । ୨୮ । ଆମ୍ଭମାନଙ୍କର କ୍ଷତ୍ରିୟବୃନ୍ଦର ଯୁଦ୍ଧରେ ଯେ ଏତାଦୃଶ ଅତି ମହାସଂହାର ଦଶା ଉପସ୍ଥିତ ହେବ, ମହାପ୍ରାଜ୍ଞ ବିଦୂର ପୂର୍ବରୁ ଜାଣିଥିଲେ । ୨୯ । ହେ ନରନାଥ ! ରାଜା ଦୁର୍ଯ୍ୟୋଧନ ଏହି ପ୍ରକାର ଚିନ୍ତା କରି ସୈନ୍ୟକ୍ଷୟ ଦେଖି ଦୁଃଖରେ ସନ୍ତପ୍ତହୃଦୟ ହୋଇ ହ୍ରଦ ମଧ୍ୟରେ ପ୍ରବେଶ କରିବାକୁ ଇଚ୍ଛା କଲେ । ୩୦ ।

ହେ ରାଜନ୍ ! କ୍ରୋଧଯୁକ୍ତ ପାଣ୍ଡବମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ଅଗ୍ରଗାମୀ କରାଇ ଆପଣଙ୍କ ଅଳ୍ପାବଶିଷ୍ଟ ସୈନ୍ୟମାନଙ୍କ ନିକଟକୁ ଧାବମାନ ହେଲେ । ୩୧ । ସୈନ୍ୟବୃନ୍ଦ ଶକ୍ତି, ଖଡ଼୍‌ଗ, ପ୍ରାସ ପ୍ରଭୃତି ଅସ୍ତ୍ରଶସ୍ତ୍ର ହସ୍ତରେ ଧରି ଘୋରତର ଗର୍ଜନ କଲାରୁ ଧନଞ୍ଜୟ ଗାଣ୍ଡିବ ଦ୍ୱାରା ସେମାନଙ୍କ ସଂକଳ୍ପ-ସମୂହକୁ ବିଫଳ କଲେ । ୩୨ । ଅର୍ଜୁନ ଶାଣିତ ଶରନିକର ଦ୍ୱାରା ସେ-ମାନଙ୍କୁ, ତଦୀୟ ଅମାତ୍ୟ ଏବଂ ବାନ୍ଧବମାନଙ୍କୁ ବିନଷ୍ଟ କରି ଶ୍ୱେତଅଶ୍ୱଯୁକ୍ତ ରଥରେ ଅବସ୍ଥାନ କରି ଅତିଶୟ ଶୋଭା ପାଇଲେ । ୩୩ । ସୁବଳପୁତ୍ର ଶକୁନି ଓ ତଦୀୟ ଅଶ୍ୱଗଜରଥ ପ୍ରଭୃତି ସହ ସୈନ୍ୟବୃନ୍ଦ ନିହତ ହେବାରୁ ଆପଣଙ୍କ ସୈନ୍ୟସମୂହ ଛିନ୍ନ ମହାବନ ପରି ଦୃଶ୍ୟ ହେଲା । ୩୪ । ଦୁର୍ଯ୍ୟୋଧନଙ୍କ ବହୁ ଶତ ସହସ୍ର ସୈନ୍ୟ ମଧ୍ୟରୁ ମହାବୀର ଅଶ୍ୱତ୍ଥାମା, କୃତବର୍ମା, କୃପାଚାର୍ଯ୍ୟ ଓ ରାଜା ଦୁର୍ଯ୍ୟୋଧନଙ୍କ ବ୍ୟତିରେକେ ଅନ୍ୟ ଗୋଟିଏ ହେଲେ ମହାରଥ ଜୀବିତ ଥିବାର ଦେଖାଗଲେ ନାହିଁ । ୩୫ ।

ତଦନନ୍ତର ଧୃଷ୍ଟଦ୍ୟୁମ୍ନ ଆମ୍ଭଙ୍କୁ ଅବଲୋକନ କରି ଉଚ୍ଚ ହାସ ପ୍ରକାଶ ପୂର୍ବକ ସାତ୍ୟକିଙ୍କୁ କହିଲେ, ହେ ଶିନିନନ୍ଦନ ! ଏହାଙ୍କୁ ଆକ୍ରମଣ କରି ରଖିବାର କେଉଁ ଫଳ ? ଏହାଙ୍କ ପ୍ରାଣରକ୍ଷାରେ କୌଣସି ଫଳ ନାହିଁ । ୩୬ । ମହାରଥ ସାତ୍ୟକି ଧୃଷ୍ଟଦ୍ୟୁମ୍ନଙ୍କ ବାକ୍ୟ ଶ୍ରବଣ କଲା ମାତ୍ରେ ତତ୍କ୍ଷଣାତ୍ ଶାଣିତ ଖଡ଼୍‌ଗ ଉତ୍ତୋଳନ ପୂର୍ବକ ଆମ୍ଭର ବିନାଶ ନିମିତ୍ତ ଉଦ୍ୟତ ହେଲେ । ୩୭ । ଏହି ଅବସର ମଧ୍ୟରେ ମହାପ୍ରାଜ୍ଞ କୃଷ୍ଣଦ୍ୱୈପାୟନ ହଠାତ୍ ସେଠାରେ ଉପସ୍ଥିତ ହୋଇ ସାତ୍ୟକିଙ୍କୁ କହିଲେ, "ହେ ଶୈନେୟ ? ଏ ଜୀବିତ ଥାଉଁ ଥାଉଁ ଏହାଙ୍କୁ ଛାଡ଼ିଦିଅ, କଦାପି ଏହାଙ୍କୁ ବଧ କରନା ।" ୩୮ । ସାତ୍ୟକି ବ୍ୟାସଦେବଙ୍କ ଏହି ଆଦେଶ ବାକ୍ୟକୁ

କୃତାଞ୍ଜଳି ପୂର୍ବକରେ ଶ୍ରବଣ କରି ତତ୍‌କ୍ଷଣାତ୍ ଆମ୍ଭଙ୍କୁ ତ୍ୟାଗ କରି କହିଲେ, "ହେ ସଞ୍ଜୟ ! ତୁମ୍ଭେ ମଙ୍ଗଳଲାଭ କର ଓ ଯଥେଚ୍ଛ ଗମନ କର ।"

ଆମ୍ଭେ ସେତେବେଳେ ତାହାଙ୍କ ଅନୁମତି ପ୍ରାପ୍ତ ହୋଇ ଅସ୍ତ୍ରହୀନ, କବଚବିହୀନ ଓ ରକ୍ତାକ୍ତ କଳେବର ହୋଇ ନଗରକୁ ଆଗମନ କଲୁ । ୪୧ । ଗମନ ସମୟରେ ରଣସ୍ଥଳରୁ ଏକକ୍ରୋଶ ଦୂରରେ ଅବସ୍ଥିତ କ୍ଷତବିକ୍ଷତାଙ୍ଗ ଗଦାଧାରୀ ଦୁର୍ଯ୍ୟୋଧନଙ୍କୁ କେବଳ ଅବଲୋକନ କଲୁ ।୪୨। ହେ ରାଜନ୍ ! ସେତେବେଳେ ତାହାଙ୍କ ନୟନଦ୍ୱୟ ଲୋତକଜଳରେ ପରିପୂର୍ଣ୍ଣ ହୋଇଥିବାରୁ ସେ ଆମ୍ଭଙ୍କୁ ସହସା ଅବଲୋକନ କରି ପାରିଲେ ନାହିଁ । ପଶ୍ଚାତ୍ ପରସ୍ପର ଅତି ନିକଟବର୍ତ୍ତୀ ହେବାରୁ ସେ ଆମ୍ଭଙ୍କୁ ଅତିଶୟ ଦୁଃଖିତ ହୋଇଥିବାର ଅବଲୋକନ କଲେ ଏବଂ ଆମ୍ଭେ ମଧ୍ୟ ତାହାଙ୍କୁ ଶୋକାର୍ତ୍ତ ଓ ଏକାକୀ ହୋଇ ବସିଥିବାର ଦେଖି ଅତି ଦୁଃଖିତ ଓ କାତର ଚିତ୍ତରେ ମୁହୂର୍ତ୍ତ କାଳ ପର୍ଯ୍ୟନ୍ତ ତାହାଙ୍କୁ କୌଣସି ବାକ୍ୟ କହି ପାରିଲୁ ନାହିଁ । ୪୪ ।

ତତ୍‌ପରେ ସାତ୍ୟକି ଆମ୍ଭଙ୍କୁ ଯେଉଁପରି ଆକ୍ରମଣ କରିଥିଲେ ଜୀବିତ ଥାଉଁ ଥାଉଁ କୃଷ୍ଣ ଦ୍ୱୈପାୟନଙ୍କ ପ୍ରସାଦରେ ତାହାଙ୍କ ହସ୍ତରୁ ଯେଉଁପରି ମୁକ୍ତିଲାଭ କଲୁଁ, ସେହି ସମସ୍ତ ବୃତ୍ତାନ୍ତ ତାହାଙ୍କ ନିକଟରେ ବିସ୍ତାର ରୂପେ କୀର୍ତ୍ତନ କଲୁ । ୪୫ । ଦୁର୍ଯ୍ୟୋଧନ ସେହି ବୃତ୍ତାନ୍ତ ଶ୍ରବଣ କରି କିଛି କାଳ ଅଚେତନ ପରି ରହିଲେ । ପରେ କିଛିକ୍ଷଣ ବିଳମ୍ବରେ ଚୈତନ୍ୟ ଲାଭ କରି ଆମ୍ଭଙ୍କୁ ଭ୍ରାତୃମାନଙ୍କର ଓ ସୈନ୍ୟସମୂହର ସମ୍ବାଦ ପ୍ରଶ୍ନ କଲେ । ୪୭ । ହେ ମହାରାଜ ! ଆମ୍ଭେ ପ୍ରତ୍ୟକ୍ଷରେ ଯାହା ଦେଖିଥିଲୁ, ତାହାସବୁ ତାହାଙ୍କୁ କହିଲୁ । ସେତେବେଳେ ତାହାଙ୍କର ଭ୍ରାତୃବୃନ୍ଦ ନିହତ ଓ ସୈନ୍ୟସମୂହ ନିପାତିତ ହୋଇଥିଲେ । କୌରବସେନା ମଧ୍ୟରୁ କେବଳ ତିନିଜଣ ରଥୀ ଜୀବିତ ଅଛନ୍ତି ବୋଲି କୃଷ୍ଣଦ୍ୱୈପାୟନ ପ୍ରସ୍ଥାନ ସମୟରେ ଆମ୍ଭଙ୍କୁ କହିଥିଲେ । ୪୮ ।

ହେ ରାଜନ୍ ! ଦୁର୍ଯ୍ୟୋଧନ ଏହି ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ଦୀର୍ଘ ନିଃଶ୍ୱାସ ପରିତ୍ୟାଗପୂର୍ବକ ଆମ୍ଭଙ୍କୁ ବାରମ୍ବାର ଚାହିଁ ଓ କଳେବର ସ୍ପର୍ଶ କରି କହିଲେ, ହେ ସଞ୍ଜୟ ! ଏହି ଯୁଦ୍ଧରେ ତୁମ୍ଭ ବ୍ୟତିରେକ ଅନ୍ୟ କେହି ଜୀବିତ ନାହାନ୍ତି । ଏତେବେଳେ ଆମ୍ଭେ ଅନ୍ୟ ଦ୍ୱିତୀୟ ବ୍ୟକ୍ତି ଦେଖୁନାହୁଁ । ପାଣ୍ଡବମାନେ ସହାୟଶାଳୀ ହୋଇଅଛନ୍ତି । ଅତଏବ ଏତେବେଳେ

ତୁମ୍ଭେ ପ୍ରଜ୍ଞାଚକ୍ଷୁ ଭୂପତିଙ୍କ ସମୀପକୁ ଯାଇ ନିବେଦନ କରିବ ଯେ 'ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ହ୍ରଦ ମଧ୍ୟରେ ପ୍ରବିଷ୍ଟ ହୋଇ ଅବସ୍ଥିତ କରିଅଛନ୍ତି ।' ହେ ସୂତ ! ତାଦୃଶ ସୁହୃଦ୍‌ଜନସମୂହ, ପୁତ୍ରଗଣ ଓ ଭ୍ରାତୃବୃନ୍ଦଙ୍କୁ ହରାଇ ପାଣ୍ଡବମାନଙ୍କଦ୍ୱାରା ରାଜ୍ୟଭ୍ରଷ୍ଟ ହୋଇ ମୋ ପରି କେଉଁ ଲୋକ ପ୍ରାଣ ଧରିପାରେ ? ଯାହା ହେଉ, ମୁଁ ସଂଗ୍ରାମରୁ ମୁକ୍ତ ହୋଇ ଅତିଶୟ କ୍ଷତବିକ୍ଷତ ହେଲେ ସୁଦ୍ଧା ପ୍ରାଣରକ୍ଷାର୍ଥ ଜଳହ୍ରଦ ମଧ୍ୟରେ ଶୟନ କଲି । ଏହି ସମସ୍ତ ବୃତ୍ତାନ୍ତ ତୁମ୍ଭେ ରାଜାଙ୍କ ନିକଟରେ ଜଣାଇବ । ୫୩ ।

ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ ଆମ୍ଭଙ୍କୁ ଏହିପରି କହି ସେହି ଜଳହ୍ରଦରେ ପ୍ରବେଶ କଲେ ଓ ମାୟାବଳରେ ଜଳସ୍ତମ୍ଭନ କରି ରହିଲେ । ୫୩ । ସେ ହ୍ରଦ ମଧ୍ୟରେ ପ୍ରବିଷ୍ଟ ହେଲାପରେ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଏହି ତିନିଜଣ ରଥୀ ଶରବିକ୍ଷତ ଶରୀରରେ ପରିଶ୍ରାନ୍ତ ବାହନ ସହିତ ସେହି ସ୍ଥାନକୁ ଆସୁଥିବାର ଦେଖିଲୁଁ । ସେମାନେ ଆମ୍ଭଙ୍କୁ ଦେଖିଲା ମାତ୍ରେ ତ୍ୱରାଯୁକ୍ତ ହୋଇ ଅତି ଶୀଘ୍ର ଅଶ୍ୱଚାଳନା କଲେ । କ୍ଷଣକ ମଧ୍ୟରେ ନିକଟକୁ ଆସି ଆମ୍ଭଙ୍କୁ କହିଲେ, ହେ ସଞ୍ଜୟ ! ତୁମ୍ଭେ ଭାଗ୍ୟବଳରେ ଜୀବିତ ଅଛ । ହେ ମହାରାଜ ! ସେମାନେ ଆମ୍ଭଙ୍କୁ ଏହି ବାକ୍ୟ କହି ଭବଦୀୟ ପୁତ୍ର ସମ୍ବାଦ ପଚାରିଲେ—"ହେ ସଞ୍ଜୟ ! ଆମ୍ଭମାନଙ୍କ ରାଜା ଦୁର୍ଯ୍ୟୋଧନ କି ଜୀବିତ ଅଛନ୍ତି ?" ତେତେବେଳେ ଆମ୍ଭେ ତାହାଙ୍କୁ ନୃପତି କୁଶଳରେ ଅଛନ୍ତି ବୋଲି କହିଲୁ । ଦୁର୍ଯ୍ୟୋଧନ ଆମ୍ଭଙ୍କୁ ଯେଉଁ ବାକ୍ୟସବୁ କହିଲେ ଓ ସେହି ରାଜା ଯେଉଁ ହ୍ରଦରେ ପ୍ରବେଶ କରିଥିଲେ, ତାହା ମଧ୍ୟ ସେମାନଙ୍କୁ କହିଲୁ ।

ହେ ମହାରାଜ ! ଅଶ୍ୱତ୍ଥାମା ଆମ୍ଭର ସେହି ବାକ୍ୟସବୁ ଶ୍ରବଣ କଲାପରେ ସେହି ବିସ୍ତୀର୍ଣ୍ଣ ହ୍ରଦକୁ ଚାହିଁ କରୁଣ ସ୍ୱରରେ ବିଳାପ କଲେ ଏବଂ କହିଲେ, ଅହୋ, ଆମ୍ଭମାନଙ୍କୁ ଧିକ୍ ଧିକ୍ ! ଆମ୍ଭେମାନେ ଜୀବିତ ଅଛୁ ବୋଲି ରାଜା ଦୁର୍ଯ୍ୟୋଧନ ଜାଣନ୍ତି ନାହିଁ । ତଥାପି ଆମ୍ଭେମାନେ ତାହାଙ୍କୁ ଅଗ୍ରସର କରି ବିପକ୍ଷମାନଙ୍କ ସହିତ ଯୁଦ୍ଧ କରାଇବାକୁ ପର୍ଯ୍ୟାପ୍ତ ଅଛୁ । ସେଠାରେ ରଥୀଶ୍ରେଷ୍ଠ ମହାରଥମାନେ ବହୁତ ସମୟ ଏହିପରି ବିଳାପ କରି ପାଣ୍ଡବମାନଙ୍କୁ ରଣଭୂମିରେ ଉପସ୍ଥିତ ଥିବାର ଦେଖି ଧାବମାନ ହେଲେ । ପରିଶେଷରେ ହତାବଶିଷ୍ଟ ସେହି ରଥୀତ୍ରୟ ଏକତ୍ରିତ

ହୋଇ ଆମ୍ଭଙ୍କୁ କୃପାଗୃର୍ଯ୍ୟଙ୍କ ପରିଷ୍କୃତ ରଥରେ ବସାଇ ସେନାନିବେଶକୁ ଆଗମନ କଲେ ।

ତେତେବେଳେ ଭଗବାନ ସୂର୍ଯ୍ୟଦେବ ଅସ୍ତଗିରରେ ଆରୋହଣ କରନ୍ତେ ସମସ୍ତ ସୈନ୍ୟବୃନ୍ଦ ଅତ୍ୟନ୍ତ ବ୍ୟସ୍ତ ହେଲେ ଓ ଆପଣଙ୍କ ପୁତ୍ରମାନଙ୍କ ନିଧନ ସମ୍ବାଦ ଶୁଣି ଉଚ୍ଚ ସ୍ୱରରେ କ୍ରନ୍ଦନ କଲେ । ତତ୍ପରେ ଯେଉଁ ସମସ୍ତ ବୃଦ୍ଧମାନେ ଅନ୍ତଃପୁରବାସିନୀ କାମିନୀମାନଙ୍କୁ ରକ୍ଷଣାବେକ୍ଷଣ କରନ୍ତି, ସେମାନେ ତେତେବେଳେ ରାଜସ୍ତ୍ରୀମାନଙ୍କ ସଙ୍ଗରେ ଘେନି ଗମନ କଲେ । କୌରବକୁଳର ଅବଳାମାନେ ସୈନ୍ୟକ୍ଷୟ ସମ୍ବାଦ ଶ୍ରବଣ କରି ଉଚ୍ଚୈଃସ୍ୱରରେ ରୋଦନ କଲେ । ଚତୁର୍ଦ୍ଦିଗରେ ସୁମହାନ୍ ଶବ୍ଦ ପ୍ରାଦୁର୍ଭୂତ ହେଲା । ହେ ରାଜନ୍ ! ସେହି କୁଳାଙ୍ଗନାଗଣ କୁରରୀ ପକ୍ଷୀକୁଳ ସଦୃଶ ବାରମ୍ବାର କ୍ରନ୍ଦନ କଲେ ଓ କରୁଣ ସ୍ୱରରେ ଭୂମଣ୍ଡଳକୁ ବାରମ୍ବାର ନିନାଦିତ କରି ନିଜ ନିଜ ମସ୍ତକରେ କରାଘାତ କଲେ ଏବଂ ଉଚ୍ଚୈଃସ୍ୱରରେ କାନ୍ଦି କାନ୍ଦି କେଶପାଶ ସବୁ ବିଚ୍ଛିନ୍ନ କଲେ । ମହାରାଜ ! ସେମାନେ ହାହାକାର ଶବ୍ଦ କରି ବକ୍ଷସ୍ଥଳରେ କରାଘାତ ପୂର୍ବକ ରୋଦନ କଲେ ।

ତଦନନ୍ତର ଦୁର୍ଯ୍ୟୋଧନଙ୍କ ଅମାତ୍ୟମାନେ ଅତିଶୟ କାତର ଓ ଅଶ୍ରୁକଣ୍ଠ ହୋଇ ରାଜସ୍ତ୍ରୀମାନଙ୍କୁ ସମଭିବ୍ୟାହାରରେ ଘେନି ନଗରକୁ ଗଲେ । ହେ ମହାରାଜ ! ଦ୍ୱାରପାଳଗଣ ହସ୍ତରେ ବେତ୍ରଧାରଣ ପୂର୍ବକ ମହାମୂଲ୍ୟ ଆସ୍ତରଣବିଶିଷ୍ଟ ଶୁଭ୍ରଶଯ୍ୟା ସମୂହକୁ ସଂଗ୍ରହ କରି ହସ୍ତିନାପୁରକୁ ଗମନ କଲେ । ୭୨ । ଅନେକ ବ୍ୟକ୍ତି ସ୍ୱ ସ୍ୱ ପତ୍ନୀମାନଙ୍କୁ ସଙ୍ଗରେ ଘେନି ଅଶ୍ୱତରୀଯୁକ୍ତ ରଥରେ ଆରୋହଣ ପୂର୍ବକ ନଗରୀକୁ ପ୍ରସ୍ଥାନ କଲେ । ୭୩ । ହେ ମହାରାଜ ! ପୂର୍ବରୁ ସୂର୍ଯ୍ୟଦେବ ଯେଉଁ ଅନ୍ତଃପୁରବାସିନୀ କୁଳକାମିନୀମାନଙ୍କୁ ଦେଖି ନ ଥିଲେ, ସେହିମାନେ ପୁରକୁ ପ୍ରସ୍ଥାନ କରୁଥିବା ସମୟରେ ସେମାନଙ୍କୁ ସମସ୍ତେ ଅନାୟାସରେ ଦର୍ଶନ କଲେ । ୭୪ । ହେ ଭରତଶ୍ରେଷ୍ଠ ! ସେହି ସମସ୍ତ ନାରୀବୃନ୍ଦ ସ୍ୱଜନବନ୍ଧୁହୀନ ହୋଇ ଅବିଳମ୍ବରେ ନଗରକୁ ଗମନ କଲେ । ତେତେବେଳେ ମେଷପାଳଠାରୁ ଗୋପାଳ ପର୍ଯ୍ୟନ୍ତ ଲୋକେ ଓ ସମ୍ଭ୍ରାନ୍ତ ମନୁଷ୍ୟମାନେ ମଧ୍ୟ ଭୀମଙ୍କ ଭୟରେ ଅତି ପୀଡ଼ିତ ହୋଇ ନଗରୀକୁ ଗମନ କଲେ । ୭୬ । ସେମାନେ ସମସ୍ତେ ପରସ୍ପରକୁ ନିରୀକ୍ଷଣ କରି ନଗରୀକୁ ଧାବମାନ ହେଲେ । ସେ ସମୟରେ ପାଣ୍ଡବମାନଙ୍କଠାରୁ ସମସ୍ତ ଲୋକବୃନ୍ଦର ଅତି ଦାରୁଣ ଭୟ ଉପସ୍ଥିତ ହେଲା ।

ମହାରାଜ ! ଏହିପରି ଅତିଶୟ ଦାରୁଣ ଯୁଦ୍ଧ ହୁଅନ୍ତେ ଶୋକ ହେତୁରୁ ଅତି ବିହ୍ୱଳ ଯୁଯୁତ୍ସୁ ଉପସ୍ଥିତ ନୂତନ ବିଷୟକୁ ସ୍ମରଣ କଲେ । ୭୮ । ହା ! ଯେଉଁ ଦୁର୍ଯ୍ୟୋଧନ ଏକାଦଶ ଅକ୍ଷୌହିଣୀ ସେନାର ଅଧିପତି ଥିଲେ, ସେ ଏତେବେଳେ ମହାବଳ ପରାକ୍ରାନ୍ତ ପାଣ୍ଡବମାନଙ୍କ ଦ୍ୱାରା ଯୁଦ୍ଧରେ ପରାସ୍ତ ହେଲେ । ତାହାଙ୍କ ସମସ୍ତ ଭ୍ରାତୃବର୍ଗ ଓ ଭୀଷ୍ମ ଦ୍ରୋଣ ପ୍ରଭୃତି କୌରବ ମହାରଥବୃନ୍ଦ ନିହତ ହେଲେ । କେବଳ ଆମ୍ଭେ ଏକମାତ୍ର ଦୈବବଶରୁ ରଣରେ ମୁକ୍ତ ହୋଇ ଜୀବିତ ଅଛୁ । ୮୧ । ଶିବିରସମୂହ ଭଗ୍ନ ହେଉଅଛି । ସୈନ୍ୟସମୂହ ପ୍ରଭାହୀନ ଓ ନାଥ ବିହୀନ ହୋଇ ଚତୁର୍ଦ୍ଦିଗକୁ ପଳାୟନ କରୁଅଛନ୍ତି । ୮୧ । ପୂର୍ବେ ଯେଉଁମାନଙ୍କୁ କେହି ଦେଖି ନ ଥିଲେ, ସେମାନେ ସମସ୍ତେ ଦୁଃଖାର୍ତ୍ତ ଓ ଭୟରେ ବ୍ୟାକୁଳଲୋଚନ ହୋଇ ଅତିଶୟ ତ୍ରାସଯୁକ୍ତ ହରିଣ ପରି ଦଶଦିଗକୁ ଚାହିଁ ଚାହିଁ ପଳାୟନ କଲେ । ୮୨ । ଦୁର୍ଯ୍ୟୋଧନଙ୍କ ସଚିବଗଣ ମଧ୍ୟରୁ ଯେଉଁ-ମାନେ ଅବଶିଷ୍ଟ ଅଛନ୍ତି, ସେମାନେ ରାଜପତ୍ନୀମାନଙ୍କୁ ସମଭିବ୍ୟାହାରରେ ଘେନି ନଗରୀକୁ ଯାଉଅଛନ୍ତି । ଏତେବେଳେ ଯୁଧିଷ୍ଠିର ଓ ବାସୁଦେବଙ୍କ ଅନୁମତି ଗ୍ରହଣ କରି ସେମାନଙ୍କ ସହିତ ଆମ୍ଭେ ପୁର ମଧ୍ୟରେ ପ୍ରବେଶ କରିବାର ବିହିତ ହେଉଅଛି । ୮୪ ।

ମହାବାହୁ ଯୁଯୁତ୍ସୁ ଏହି ବିଷୟ ଉଭୟଙ୍କ ନିକଟରେ ନିବେଦନ କଲେ । ସର୍ବଦା ଦୟାଳୁ ମହାବାହୁ ରାଜା ଯୁଧିଷ୍ଠିର ତାଙ୍କ ଠାରେ ପ୍ରୀତିଯୁକ୍ତ ହୋଇ ତାହାଙ୍କୁ ଆଲିଙ୍ଗନ ପୂର୍ବକ ସେମାନଙ୍କ ସହିତ ଯିବା ନିମିତ୍ତ ଅନୁ-ମତି ଦେଲେ । ତତ୍ପରେ ସେ ସ୍ୱକୀୟ ରଥରେ ଆରୋହଣ ପୂର୍ବକ ଅତି ବେଗରେ ଅଶ୍ୱମାନଙ୍କୁ ଚଳାଇଲେ ଏବଂ ବିନା ବିଳମ୍ବରେ ରାଜପତ୍ନୀ-ବୃନ୍ଦର ବାହକମାନଙ୍କୁ ମଧ୍ୟ ନଗରାଭିମୁଖରେ ଚଳାଇଲେ । ସୂର୍ଯ୍ୟଦେବ ଅସ୍ତ ହେଉଥିବା ସମୟରେ ସେ ରାଜପତ୍ନୀମାନଙ୍କ ସହିତ ଅଶ୍ରୁଯୁକ୍ତ ଲୋଚନରେ ଓ ବାଷ୍ପାକୁଳ କଣ୍ଠରେ ହସ୍ତିନାପୁରରେ ପ୍ରବିଷ୍ଟ ହେଲେ । ସେ ସେଠାରେ ପ୍ରବିଷ୍ଟ ହେବା ମାତ୍ରେ ଶୋକରେ ହତଚିତ୍ତ ରାଜାଙ୍କ ନିକଟରୁ ଆଗତ ଓ ଅଶ୍ରୁପୂର୍ଣ୍ଣଲୋଚନ ମହାପ୍ରାଜ୍ଞ ବିଦୁରଙ୍କୁ ଦେଖିଲେ । ଯୁଯୁତ୍ସୁ ବିଦୁରଙ୍କ ଅଗ୍ରଭାଗରେ ପ୍ରଣତ ଭାବରେ ଦଣ୍ଡାୟମାନ ହୁଅନ୍ତେ ସତ୍ୟଧୃତି ବିଦୁର ତାହାଙ୍କୁ କହିଲେ, (୮୯) ହେ ବତ୍ସ ! ତୁମ୍ଭେ ଏହି କୁରୁକୁଳର ଦାରୁଣ କ୍ଷୟକାଳରେ ଭାଗ୍ୟବଳରେ ଜୀବିତ ଅଛ । ଏତେ-ବେଳେ ରାଜାଙ୍କ ଆଦେଶ ବ୍ୟତିରେକେ ତୁମ୍ଭେ ଏଠାକୁ କି ନିମିତ୍ତ ଆସିଲ ? ଏହି ସମସ୍ତ କାରଣ ବିସ୍ତାର କରି ଆମ୍ଭଙ୍କୁ ଜଣାଅ ।

ଯୁଯୁତ୍ସୁ କହିଲେ, ହେ ତାତ ! ଶକୁନି ନିଜ ପୁତ୍ର ଓ ଜ୍ଞାତି ବନ୍ଧୁଗଣ ସହିତ ହତ ଓ ରାଜା ଦୁର୍ଯ୍ୟୋଧନଙ୍କ ଅବଶିଷ୍ଟ ପରିବାର ସମୂହ ନିହତ ହେବାରୁ ନିଜ ଅଶ୍ୱକୁ ପରିତ୍ୟାଗ ପୂର୍ବକ ପୂର୍ବଦିଗକୁ ଗମନ-କରି ଅଛନ୍ତି । ୯୨ । ଦୁର୍ଯ୍ୟୋଧନ ରାଜା ସ୍କନ୍ଧାବାର ନିବାସରୁ ନିଷ୍କ୍ରାନ୍ତ ହେବାରୁ ସମସ୍ତ ଲୋକେ ଭୟରେ ବ୍ୟାକୁଳ ହୋଇ ଏହି ନଗରୀକୁ ଧାବମାନ ହେଲେ । ୯୩ । ତତ୍ପରେ ରାଜପତ୍ନୀକୁଳର ଭୟ ହେତୁରୁ ରକ୍ଷକବୃନ୍ଦ ନୃପତି ଓ ତଦୀୟ ଭ୍ରାତୃଗଣର ପରିବାରମାନଙ୍କୁ ଯାନ ମଧ୍ୟରେ ଆରୋହଣ କରାଇ ପ୍ରସ୍ଥାନ କଲେ । ୯୪ । ତଦନନ୍ତର ଆମ୍ଭେ କେଶବ ଓ ଯୁଧିଷ୍ଠିରଙ୍କ ଅନୁମତି ଗ୍ରହଣ ପୂର୍ବକ ଧାବିତ ଲୋକମାନଙ୍କୁ ରକ୍ଷାକରି ହସ୍ତିନାପୁରରେ ପ୍ରବିଷ୍ଟ ହେଲୁ । ୯୫ ।

ହେ ମହାରାଜ ! ଅସୀମ ବୁଦ୍ଧିମାନ ସର୍ବଧର୍ମବିଶାରଦ ବିଦୁର ବୈଶ୍ୟାପୁତ୍ର ଯୁଯୁତ୍ସୁଙ୍କର ସେହି ସମସ୍ତ ବାକ୍ୟ ଶୁଣି ତାହା ବର୍ତ୍ତମାନ ଉପଯୁକ୍ତ ହୋଇଅଛି ବୋଲି ବିବେଚନା କରି ଯୁଯୁତ୍ସୁଙ୍କୁ ପ୍ରଶଂସା କରି କହିଲେ, ହେ ବତ୍ସ ! ତୁମ୍ଭେ ସମୟୋଚିତ କାର୍ଯ୍ୟର ଅନୁଷ୍ଠାନ ଓ ନିଜ କୁଳର ଧର୍ମ ରକ୍ଷା କରିଅଛ । ଜନସମୂହ ଯେଉଁପରି ସୂର୍ଯ୍ୟଦେବଙ୍କ ପୁନାରାଗମନକୁ ଦେଖନ୍ତି, ଆମ୍ଭେ ସେହିପରି ଭାଗ୍ୟ ବଳରେ ବୀରକୁଳର କ୍ଷୟକାରକ ସେହି ଯୁଦ୍ଧସ୍ଥଳରୁ ତୁମ୍ଭେ ପ୍ରତ୍ୟାଗତ ହେବାର ଦର୍ଶନ କଲୁଁ । ତୁମ୍ଭେ ଅଦୂରଦର୍ଶୀ, ଅବ୍ୟବସ୍ଥିତଚିତ୍ତ, ବହୁପ୍ରକାର ବିଳାପ-କରି ଦୈବଙ୍କଦ୍ୱାରା ହତବୁଦ୍ଧି ଓ ସର୍ବ ପ୍ରକାର ଦୁଃଖରେ ଆର୍ତ୍ତ, ରାଜ୍ୟ-ଲୋଲୁପ, ହତଭାଗ୍ୟ ଅନ୍ଧ ନରପାଳଙ୍କର ଏକ ଯଷ୍ଟିସ୍ୱରୂପ ହୋଇ ରହିଲ । ଏଠାରେ ତୁମ୍ଭେ ଆଜି ବିଶ୍ରାମ କରି କାଲି ପ୍ରଭାତରେ ଯୁଧିଷ୍ଠିରଙ୍କ ନିକଟକୁ ଗମନ କରିବ । ସର୍ବଧର୍ମବିଶାରଦ ବିଦୁର ଯୁଯୁତ୍ସୁଙ୍କୁ କାଳୋଚିତ ଏହି ବାକ୍ୟ କହି ତାହାଙ୍କଠାରୁ ବିଦାୟ ଗ୍ରହଣ ପୂର୍ବକ ରାଜସଦନରେ ପ୍ରବିଷ୍ଟ ହେଲେ ।

ହେ ମହାରାଜ ! ସେତେବେଳେ ସମସ୍ତ ପୁରବାସୀ ଓ ଜନପଦବାସୀମାନେ ହାହାକାର କଲେ । ରାଜମନ୍ଦିର ଆନନ୍ଦଶୂନ୍ୟ ଓ ଶୋଭାବିହୀନ ହେଲା । କାହାରି ମଧ୍ୟ କୌଣସି ବିଷୟରେ କିଛି ମାତ୍ର ସୁଖ ରହିଲା ନାହିଁ । ସମସ୍ତେ ଅତିଶୟ ଦୁଃଖରେ ଦୁଃଖିତ ହେଲେ । ସେହି ସମୟରେ ସର୍ବଧର୍ମବିଶାରଦ ବିଦୁର ନିତାନ୍ତ ଦୁଃଖିତ ହୋଇ

ବାରମ୍ବାର ଦୀର୍ଘନିଶ୍ୱାସ ପରିତ୍ୟାଗ କରି କ୍ରମେ କ୍ରମେ ଆବାସରେ ପ୍ରବେଶ କଲେ । ମହାମତି ଯୁଯୁତ୍ସୁ ମଧ୍ୟ ସ୍ୱକୀୟ ଆବାସରେ ସେହି ରଜନୀ ଅତିବାହିତ କଲେ । ବନ୍ଦୀଗଣ ତାହାଙ୍କର ସ୍ତବ ପାଠ କଲେ । କିନ୍ତୁ ପରସ୍ପର ସଂଗ୍ରାମରେ ପ୍ରବୃତ୍ତ ଭରତବଂଶୀୟମାନଙ୍କ କ୍ଷୟବୃତ୍ତାନ୍ତ ତାହାଙ୍କ ହୃଦୟରେ ଜାଗରୂକ ହୋଇ ରହିଥିବାରୁ ସେହି ଦୁଃଖରେ ଆକ୍ରାନ୍ତ ହୋଇ ସେ ସ୍ତବ ପାଠଦ୍ୱାରା ଆନନ୍ଦ ଅନୁଭବ କରି ପାରିଲେ ନାହିଁ । ୧୦୫ ।

---

## ତ୍ରିଂଶତମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭର ସୈନ୍ୟବୃନ୍ଦ ପାଣ୍ଡବମାନଙ୍କଦ୍ୱାରା ହତ ହେଲା ଉତ୍ତାରେ ଅବଶିଷ୍ଟ କୃତବର୍ମା, କୃପାଚାର୍ଯ୍ୟ ଓ ବୀର୍ଯ୍ୟଶାଳୀ ଅଶ୍ୱତ୍ଥାମା କଣ କଲେ ? ଆମ୍ଭ ପୁତ୍ର ମୂଢ଼ବୁଦ୍ଧି ରାଜା ଦୁର୍ଯ୍ୟୋଧନ ଅବା କଣ କଲେ ? ୨ ।

ସଞ୍ଜୟ କହିଲେ, ମହାରାଜ ! ମହାତ୍ମା କ୍ଷତ୍ରିୟମାନଙ୍କ ସ୍ତ୍ରୀସମୂହ ଶିବିରରୁ ଆଗତ ହେବାରୁ ଶିବିର ଜନଶୂନ୍ୟ ହେଲା । ଅବଶିଷ୍ଟ ତିନିଜଣ ରଥୀ ଅତିଶୟ ଉଦ୍‌ବେଗଯୁକ୍ତ ହେଲେ । ୩ । ସେମାନେ ସାୟାହ୍ନ ସମୟରେ ବିଜୟୀ ବୀର ପାଣ୍ଡବମାନଙ୍କ ଜୟଧ୍ୱନି ଶୁଣି ଓ ଶିବିରମାନ ନିର୍ଜନ ହୋଇଥିବାର ଦେଖି ସେଠାରେ ରହିବାକୁ ଅନିଚ୍ଛୁକ ହେଲେ । ସୁତରାଂ ରାଜାଙ୍କ ଦର୍ଶନେଚ୍ଛୁ ହୋଇ ହ୍ରଦକୁ ଅଭିଗମନ କଲେ ।

ମହାରାଜ ! ମହାତ୍ମା ଯୁଧିଷ୍ଠିର ଓ ତଦୀୟ ଭ୍ରାତୃଗଣ ହୃଷ୍ଟ ହୋଇ ଦୁର୍ଯ୍ୟୋଧନଙ୍କ ବଧ ଇଚ୍ଛାରେ ଯୁଦ୍ଧକ୍ଷେତ୍ରରେ ବିଚରଣ କଲେ । ଜୟାଭିଳାଷୀ ଅତିଶୟ କ୍ରୋଧପରାୟଣ ପାଣ୍ଡବଗଣ ସର୍ବତ୍ର ଅତ୍ୟନ୍ତ ଯତ୍ନରେ ଦୁର୍ଯ୍ୟୋଧନଙ୍କୁ ଅନ୍ୱେଷଣ କଲେ । ତଥାପି କୌଣସି ସ୍ଥାନରେ ସୁଦ୍ଧା ରାଜାଙ୍କୁ ଦେଖିଲେ ନାହିଁ । ଏହା ପୂର୍ବରୁ ରାଜା ଦୁର୍ଯ୍ୟୋଧନ ଗଦାପାଣି ହୋଇ ରଣସ୍ଥଳରୁ ଅତି ବେଗରେ ପ୍ରସ୍ଥାନ କରି ସ୍ୱକୀୟ ମାୟା ପ୍ରଭାବରେ ଜଳସ୍ତମ୍ଭନ କରି ହ୍ରଦ ମଧ୍ୟରେ ପ୍ରବିଷ୍ଟ ହୋଇଥିଲେ । ପାଣ୍ଡବମାନେ ସର୍ବତ୍ର ତାହାଙ୍କୁ ଅନ୍ୱେଷଣ କଲାରୁ ତେତେବେଳେ ସେମାନଙ୍କ ବାହନବୃନ୍ଦ

ଅତିଶୟ ପରିଶ୍ରାନ୍ତ ହେଲେ । ସେତେବେଳେ ସେମାନେ ସୈନିକଗଣ ସହିତ ସ୍ୱକୀୟ ଶିବିରକୁ ଗମନ କରି ଅବସ୍ଥିତ ହେଲେ । ପାଣ୍ଡବମାନେ ଶିବିରରେ ପ୍ରବିଷ୍ଟ ହେଲାପରେ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଧୀରେ ଧୀରେ ଯାଇ ଯେଉଁ ହ୍ରଦରେ ରାଜା ଶୟନ କରିଥିଲେ, ସେହି ହ୍ରଦରେ ପ୍ରବିଷ୍ଟ ହୋଇ ସେଠାରେ ନିଦ୍ରିତ ଦୁର୍ଦ୍ଧର୍ଷ ରାଜାଙ୍କୁ ସମ୍ଭାଷଣ କରି କହିଲେ, ହେ ରାଜନ୍ ! ଉଠିବା ହେଉନ୍ତୁ । ଏତେବେଳେ ଆମ୍ଭମାନଙ୍କ ସମଭିବ୍ୟାହାରରେ ଯୁଧିଷ୍ଠିରଙ୍କ ସହିତ ପୁନଶ୍ଚ ଯୁଦ୍ଧରେ ପ୍ରବୃତ୍ତ ହେଉନ୍ତୁ । ୧୧ । ହେ ରାଜନ୍ ! ତାହାଙ୍କୁ ଜୟ କରି ପୃଥିବୀ ଭୋଗ କରନ୍ତୁ, ଅଥବା ଯୁଦ୍ଧରେ ହତ ହୋଇ ସ୍ୱର୍ଗ ଲାଭ କରନ୍ତୁ । ଆପଣ ସେମାନଙ୍କ ଅକ୍ଷୟ ସୈନ୍ୟକ୍ଷୟ କରିଅଛନ୍ତି । ଯେଉଁମାନେ ଅବଶିଷ୍ଟ ଅଛନ୍ତି, ତନ୍ମଧ୍ୟରୁ ଅନେକ ବ୍ୟକ୍ତି ପ୍ରତିବଦ୍ଧ ହୋଇ ହୋଇଅଛନ୍ତି । ଏତେବେଳେ ଆମ୍ଭମାନଙ୍କଦ୍ୱାରା ଆପଣ ରକ୍ଷିତ ହେଲେ ପାଣ୍ଡବବୃନ୍ଦ ଭବଦୀୟ ଉତ୍କୃଷ୍ଟ ବେଗକୁ ସହ୍ୟ କରିବା ନିମିତ୍ତ ସମର୍ଥ ହେବେ ନାହିଁ । ଅତଏବ ଶୀଘ୍ର ଉଠିବା ହୁଅନ୍ତୁ ।

ଦୁର୍ଯ୍ୟୋଧନ କହିଲେ, ହେ ବୀରବୃନ୍ଦ ! କୁରୁ ପାଣ୍ଡବମାନଙ୍କ ଏତାଦୃଶ ଜନସଂହାର ସମୟରେ ଆମ୍ଭେ ଭାଗ୍ୟବଳରେ ଆପଣଙ୍କୁ ଶତ୍ରୁହସ୍ତରୁ ବିମୁକ୍ତ ଓ ଜୀବିତ ଥିବାର ଅବଲୋକନ କଲୁଁ । ଆମ୍ଭେମାନେ ସମସ୍ତେ ଶ୍ରାନ୍ତିଶୂନ୍ୟ ଓ ଗ୍ଲାନିହୀନ ହୋଇ ଶତ୍ରୁବୃନ୍ଦଙ୍କୁ ଜୟ କରିବା । ୧୫ । ସମ୍ପ୍ରତି ଆପଣମାନେ ଅତିଶୟ ଶ୍ରାନ୍ତ ହୋଇଅଛନ୍ତି ଓ ଆମ୍ଭେମାନେ ମଧ୍ୟ ଅତ୍ୟନ୍ତ କ୍ଷତବିକ୍ଷତ ହୋଇଅଛୁ ଏବଂ ବିପକ୍ଷଙ୍କ ସୈନ୍ୟସମୂହ ଏତେବେଳେ ଯୁଦ୍ଧରେ ଉନ୍ମତ୍ତ ହୋଇଅଛନ୍ତି । ଅତଏବ ଆମ୍ଭେ ସମ୍ପ୍ରତି ସଂଗ୍ରାମ ନିମିତ୍ତ ଇଚ୍ଛା କରୁନାହୁଁ । ୧୬ । ହେ ବୀରବୃନ୍ଦ ! ଆପଣମାନଙ୍କର ଏତାଦୃଶୀ ଉତ୍କୃଷ୍ଟ ଶକ୍ତି ଓ ଆମ୍ଭଠାରେ ଯେଉଁ ପରମ ଭକ୍ତି ଅଛି, ତାହା ଆଶ୍ଚର୍ଯ୍ୟ ନୁହେଁ, କିନ୍ତୁ ଏ ପରାକ୍ରମ ପ୍ରକାଶ କରିବାର ସମୟ ନୁହେଁ । ୧୭ । ଆଜି ଏକମାତ୍ର ରାତି ଆପଣମାନେ ବିଶ୍ରାମ କରନ୍ତୁ । ଆଗାମୀ ଦିବସରେ ଆମ୍ଭେ ଆପଣମାନଙ୍କ ସମଭିବ୍ୟାହାରରେ ସମରସ୍ଥଳରେ ଶତ୍ରୁମାନଙ୍କ ସହିତ ସଂଗ୍ରାମ କରିବୁ । ଏ ବିଷୟରେ କିଛି ସଂଶୟ ନାହିଁ । ୧୮ ।

ସଞ୍ଜୟ କହିଲେ—ମହାରାଜ ! ଦୁର୍ଯ୍ୟୋଧନ ଏହିପରି କହିବାରୁ ଅଶ୍ୱତ୍ଥାମା ଯୁଦ୍ଧଦୁର୍ମଦ ସେହି ରାଜାଙ୍କୁ ସମ୍ବୋଧନ କରି କହିଲେ, ରାଜନ୍ ! ଉଠିବା ହେଉନ୍ତୁ । ଆପଣଙ୍କର ମଙ୍ଗଳ ହେଉ । ଆମ୍ଭେମାନେ ଯୁଦ୍ଧରେ

ଶତ୍ରୁଙ୍କୁ ଜୟ କରିବା । ଆମ୍ଭେ ଅଭୀଷ୍ଟ ପୂରଣ ସୂଚକ ଦାନ ଓ ଜପ ଏହି ସମସ୍ତ ଦ୍ୱାରା ଶପଥ କରି କହୁଅଛୁ, ଆଜି ବିପକ୍ଷ ପକ୍ଷର ସମସ୍ତ ସୋମକ-ମାନଙ୍କୁ ସଂହାର କରିବୁ । ୨୦ । ପ୍ରଭାତ ହେଲେ ସେମାନଙ୍କୁ ସଂହାର କରିବୁ ନାହିଁ । ଯଦି ଏହି ରାତ୍ରି ମଧ୍ୟରେ ଯୁଦ୍ଧରେ ଶତ୍ରୁମାନଙ୍କୁ ସଂହାର କରି ନ ପାରୁ, ତା ହେଲେ ସଜ୍ଜନୋଚିତ ଯାଜ୍ଞିକମାନଙ୍କ ପ୍ରୀତି ଲାଭ କରି ପାରିବୁ ନାହିଁ । ୨୧ । ହେ ନରନାଥ ! ଆମ୍ଭେ ସତ୍ୟ କହୁଅଛୁ, ଆପଣ ଶୁଣିବା ହେଉନ୍ତୁ । ଆମ୍ଭେ ସମସ୍ତ ପାଞ୍ଚାଳମାନଙ୍କୁ ନିହତ ନକଲେ କଦାପି ଦେହରୁ କବଚ ବାହାର କରିବୁ ନାହିଁ । ୨୨ ।

ହେ ମହାରାଜ ! ସେମାନେ ଏହିପରି କଥୋପକଥନ କରୁଥିବା ସମୟରେ କେତେଜଣ ବ୍ୟାଧ ମାଂସଭାର ବହନ ଦ୍ୱାରା ପରିଶ୍ରାନ୍ତ ହୋଇ ଜଳପାନ ଇଚ୍ଛାରେ ଦୈବବଶରେ ସେହି ସ୍ଥାନକୁ ଆସିଲେ । ସେହି ସମସ୍ତ ବ୍ୟାଧମାନେ ପରମ ଭକ୍ତିରେ ପ୍ରତିଦିନ ଭୀମସେନଙ୍କ ଆହାର ନିମିତ୍ତ ମାଂସଭାର ବହନ କରନ୍ତି । ୨୪ । ସେମାନେ ସେଠାରେ କିଛି ସମୟ ବିଶ୍ରାମ କରି ରହି ସେମାନଙ୍କର ପରସ୍ପର ଗୋପନୀୟ ସମସ୍ତ କଥା ଓ ଦୁର୍ଯ୍ୟୋଧନଙ୍କ ବାକ୍ୟସମୂହ ଶ୍ରବଣ କଲେ । ୨୫ । ତେତେବେଳେ କୁରୁରାଜ ଦୁର୍ଯ୍ୟୋଧନ ଯୁଦ୍ଧ ବିଷୟରେ ଅନିଚ୍ଛା ପ୍ରକାଶ କରନ୍ତେ ସେହି ସମସ୍ତ ଯୁଦ୍ଧାକାଙ୍କ୍ଷୀ ମହାଧନୁର୍ଦ୍ଧରମାନେ ଅତ୍ୟନ୍ତ ନିର୍ବନ୍ଧ କଲେ । ୨୬ । ରାଜା ସମର ବିଷୟରେ ଅନିଚ୍ଛୁକ ହୋଇ ଜଳାଶୟ ମଧ୍ୟରେ ଅବସ୍ଥିତ କରିଅଛନ୍ତି, କୌରବ କୁଳର ମହାରଥମାନେ ସେଠାରେ ଦଣ୍ଡାୟମାନ ହୋଇଅଛନ୍ତି । ଏହା ଦେଖି ଓ ସେମାନଙ୍କ କଥୋପକଥନ ଶୁଣି ରାଜା ଦୁର୍ଯ୍ୟୋଧନ ଜଳ ମଧ୍ୟରେ ଗୋପନ ଭାବରେ ରହିଅଛନ୍ତି ବୋଲି ସେ ବ୍ୟାଧମାନେ ଜାଣି ପାରିଲେ । ୨୮ ।

ହେ ରାଜେନ୍ଦ୍ର ! ଏହା ପୂର୍ବେ ପାଣ୍ଡବବୃନ୍ଦ ଯେତେବେଳେ ଆପଣଙ୍କ ପୁତ୍ରଙ୍କୁ ଅନ୍ୱେଷଣ କରୁଥିଲେ, ତେତେବେଳେ ସେମାନେ ଦୈବବଶରେ ସେହି ବ୍ୟାଧମାନଙ୍କୁ ଦେଖି ଦୁର୍ଯ୍ୟୋଧନଙ୍କ ବାର୍ତ୍ତା ପଚାରିଲେ । ୨୯ । ତେତେବେଳେ ସେମାନଙ୍କ ମନରେ ଦୁର୍ଯ୍ୟୋଧନଙ୍କ ସେହି ବାକ୍ୟ ଉଦିତ ହେବାରୁ ବ୍ୟାଧମାନେ ପରସ୍ପର ଅତି ମୃଦୁ ସ୍ୱରରେ କହିଲେ, (୩୦) ରାଜା ଦୁର୍ଯ୍ୟୋଧନ ଗୋପନ ଭାବରେ ହ୍ରଦ ମଧ୍ୟରେ ଲୁଚି କରି ଅଛନ୍ତି । ଆମ୍ଭେମାନେ ପାଣ୍ଡବମାନଙ୍କ ନିକଟକୁ ଯାଇ ଏହି ସମ୍ବାଦ ପ୍ରକାଶ କଲେ

ସେମାନେ ଆମ୍ଭମାନଙ୍କୁ ପ୍ରଚୁର ଧନ ଦେବେ । ଅତଏବ ରାଜା ଯୁଧିଷ୍ଠିର ଯେଉଁଠାରେ ଅଛନ୍ତି, ଆମ୍ଭେମାନେ ସେହି ସ୍ଥାନକୁ ଯାଇ ବୁଦ୍ଧିଶାଳୀ ଧନୁର୍ଦ୍ଧାରୀ ଭୀମଙ୍କ ନିକଟରେ ଦୁର୍ଯ୍ୟୋଧନ ଜଳ ମଧ୍ୟରେ ଶୟନ କରିଅଛନ୍ତି ବୋଲି କହିବା । ୩୩ । ଦୁର୍ଯ୍ୟୋଧନ ଜଳ ମଧ୍ୟରେ ଶୟନ କରିଅଛନ୍ତି ବୋଲି ଭୀମଙ୍କ ନିକଟରେ କହିଲେ ସେ ଆମ୍ଭମାନଙ୍କୁ ଅତି ପ୍ରସନ୍ନ ହୋଇ ଅନେକ ଧନ ଦେବେ । ଏହି ସବୁ ଅସାର ଓ ଶୁଷ୍କ ମାଂସରେ କିଛି ପ୍ରୟୋଜନ ନାହିଁ । ବ୍ୟାଧମାନେ ଏହିପରି ପରାମର୍ଶ କରି ଆହ୍ଲାଦିତ ହୋଇ ମାଂସଭାର ପରିତ୍ୟାଗ ପୂର୍ବକ ଧନଲୋଭରେ ପାଣ୍ଡବମାନଙ୍କ ଶିବିରକୁ ଗଲେ । ୩୫ ।

ହେ ମହାରାଜ ! ବିଜୟଶୀଳ ପାଣ୍ଡବମାନେ ସମରାଙ୍ଗଣରେ ଦୁର୍ଯ୍ୟୋଧନଙ୍କୁ ନ ଦେଖି ସେହି ପାପାତ୍ମାଙ୍କ ପ୍ରତାରଣା-ସାଗରକୁ ପାର ହେବା ଇଚ୍ଛାରେ ତାହାଙ୍କ ଅନ୍ୱେଷଣ ନିମିତ୍ତ ଚତୁର୍ଦ୍ଦିଗକୁ ଦୂତ ପଠାଇଲେ । ୩୭ । ସେହି ସୈନିକ ଦୂତମାନେ ନାନା ସ୍ଥାନରେ ପରିଭ୍ରମଣ କରି ଅନ୍ୱେଷଣରେ ଅକୃତକାର୍ଯ୍ୟ ହୋଇ ପ୍ରତ୍ୟାଗମନପୂର୍ବକ, ଦୁର୍ଯ୍ୟୋଧନ ନଷ୍ଟ ହୋଇଅଛନ୍ତି ବୋଲି ଯୁଧିଷ୍ଠିରଙ୍କ ନିକଟରେ ନିବେଦନ କଲେ । ୩୮ । ହେ ଭରତଶ୍ରେଷ୍ଠ ! ଯୁଧିଷ୍ଠିର ଚରମାନଙ୍କର ଏହି ବାକ୍ୟ ଶ୍ରବଣ କରି ଅତିଶୟ ଚିନ୍ତାକୁଳ ହେଲେ ଓ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ କଲେ । ୩୯ ।

ହେ ପ୍ରଭୋ ! ପାଣ୍ଡବମାନେ ଏହିପରି ଦୀନ ଭାବରେ ରହିଥିବାର କିଛି ସମୟ ପରେ ବିଳମ୍ବରେ ବ୍ୟାଧଗଣ ଦୁର୍ଯ୍ୟୋଧନଙ୍କୁ ଅବଲୋକନ କରି ସତ୍ୱର ହୋଇ ଶିବିର ସମୀପକୁ ଆସିଲେ ଓ ନିଷେଧକାରୀ ଦ୍ୱାରପାଳମାନଙ୍କୁ ଅତିକ୍ରମ କରି ତନ୍ମଧ୍ୟରେ ଭୀମଙ୍କ ସମ୍ମୁଖରେ ପ୍ରବିଷ୍ଟ ହେଲେ । ୪୧ । ତତ୍ପରେ ବ୍ୟାଧମାନେ ମହାବଳ ପାଣ୍ଡବ ଭୀମସେନଙ୍କ ସମୀପରେ ଉପସ୍ଥିତ ହୋଇ ଯାହା ଦେଖିଥିଲେ ଓ ଯାହାସବୁ ଶୁଣିଥିଲେ, ତାହା ସବିଶେଷରେ ଜଣାଇଲେ । ୪୨ । ହେ ମହାରାଜ ! ଶତ୍ରୁଦଳନ ଭୀମ ସେମାନଙ୍କୁ ପ୍ରଚୁର ଧନ ଦେଇ ଧର୍ମରାଜଙ୍କ ସମୀପରେ ସେହି ସମସ୍ତ ବୃତ୍ତାନ୍ତ କହିଲେ । ୪୩ । ଭୀମ କହିଲେ, ମହାରାଜ ! ଆପଣ ଯେଉଁ ଦୁର୍ଯ୍ୟୋଧନ ନିମିତ୍ତ ପରିତାପ କରୁଅଛନ୍ତି, ସେ ସପ୍ରତି ସ୍ତମ୍ଭନପୂର୍ବକ ହ୍ରଦ ମଧ୍ୟରେ ଶୟନ କରିଅଛନ୍ତି ବୋଲି ଆମ୍ଭ ବ୍ୟାଧମାନେ ଜାଣନ୍ତି । ହେ ମହାରାଜ ! ଅଜାତଶତ୍ରୁ କୁନ୍ତୀପୁତ୍ର ଯୁଧିଷ୍ଠିର ଓ ତାହାଙ୍କ ସମସ୍ତ ଭ୍ରାତାମାନେ ଭୀମଙ୍କ ମୁଖରୁ ଏହି

ବାକ୍ୟ ଶ୍ରବଣ କରି ଅତି ଆହ୍ଲାଦିତ ହେଲେ । ୪୫ । ମହାଧନୁର୍ଦ୍ଧର ଦୁର୍ଯ୍ୟୋଧନ ଜଳରେ ପ୍ରବିଷ୍ଟ ହୋଇଅଛନ୍ତି, ଏହି ବାକ୍ୟ ଶ୍ରବଣ କରି ମାତ୍ରେ ଯୁଧିଷ୍ଠିର କୃଷ୍ଣଙ୍କୁ ଅଗ୍ରଗାମୀ କରାଇ ହ୍ରଦକୁ ଯାତ୍ରା କଲେ । ୪୬ । ହେ ମହାରାଜ ! ଅତି ଆହ୍ଲାଦିତ ପାଣ୍ଡବ ଓ ପାଞ୍ଚାଳମାନଙ୍କର କଳକଳା ଶବ୍ଦ ପ୍ରାଦୁର୍ଭୂତ ହେଲା । ୪୭ । ସେହି ସମସ୍ତ ଦୁର୍ଜୟ କ୍ଷତ୍ରିୟମାନେ ଉଚ୍ଚୈଃସ୍ୱରରେ ସିଂହନାଦ ଓ ବାହୁ ଆସ୍ଫାଳନପୂର୍ବକ କ୍ରମେ କ୍ରମେ ଦ୍ୱୈପାୟନ ହ୍ରଦର ନିକଟକୁ ଗମନ କଲେ । ୪୮ ।

ଯେଉଁ ପାପାତ୍ମା ଦୁର୍ଯ୍ୟୋଧନ ସର୍ବଦା ହୃଷ୍ଟ ହେଉଥାଆନ୍ତି, ଏତେବେଳେ ସେ ଜଳରେ ଲୁଚି ଅଛନ୍ତି ବୋଲି ଶୁଣାଗଲା । ଏହି କଥା ସୋମକଗଣ ଆନନ୍ଦିତ ହୋଇ ଚତୁର୍ଦ୍ଦିଗରେ ଉଚ୍ଚନାଦରେ କହୁଥିଲେ । ୪୯ । ହେ ରାଜନ୍ ! ସେଠାରେ ସେମାନଙ୍କର ବେଗଗାମୀ ରଥବୃନ୍ଦର ଗଗନସ୍ପର୍ଶୀ ତୁମୁଳ ଶବ୍ଦ ଉତ୍ଥିତ ହେଲା । ୫୦ । ସେତେବେଳେ ସମସ୍ତଙ୍କର ବାହନସମୂହ ଶ୍ରାନ୍ତ ହୋଇଥିଲେ ସୁଦ୍ଧା ସେମାନେ ଦୁର୍ଯ୍ୟୋଧନଙ୍କ ଦର୍ଶନ ନିମିତ୍ତ ଯୁଧିଷ୍ଠିରଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ୫୧ । ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଧୃଷ୍ଟଦ୍ୟୁମ୍ନ, ଅପରାଜିତ ଶିଖଣ୍ଡି, ଉତ୍ତମୌଜା, ଯୁଧାମନ୍ୟୁ, ମହାରଥ ସାତ୍ୟକି, ପାଞ୍ଚାଳଙ୍କ ପାଞ୍ଚପୁତ୍ର ଓ ଅବଶିଷ୍ଟ ପାଞ୍ଚାଳ ସୈନ୍ୟଗଣ, ଅଶ୍ୱାରୋହୀ, ଗଜାରୋହୀ ଓ ଶତ ଶତ ପଦାତିକମାନେ ମଧ୍ୟ ଯୁଧିଷ୍ଠିରଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କଲେ ।

ହେ ରାଜନ୍ ! ତଦନନ୍ତର ଦୁର୍ଯ୍ୟୋଧନ ଅତି ଅଦ୍ଭୁତ ବିଧି ଅନୁସାରେ ଦୈବଯୋଗରେ ମାୟାଦ୍ୱାରା ଜଳସ୍ତମ୍ଭନ କରି ଯେଉଁଠାରେ ଥିଲେ, ପ୍ରବଳ ପ୍ରତାପଶାଳୀ ଯୁଧିଷ୍ଠିର, ଅତି ନିର୍ମଳ ଶୀତଳ ଜଳପୂର୍ଣ୍ଣ ଦ୍ୱିତୀୟ ସାଗର ସଦୃଶ ସୁବିଖ୍ୟାତ ସେହି ଦ୍ୱୈପାୟନ ହ୍ରଦ ନିକଟରେ ଉପସ୍ଥିତ ହେଲେ । ୫୨ । ହେ ନରନାଥ ! ରାଜା ଦୁର୍ଯ୍ୟୋଧନ ଗଦାପାଣି ହୋଇ ମନୁଷ୍ୟମାନଙ୍କ ଅଦୃଶ୍ୟ ଭାବରେ ଜଳରାଶି ମଧ୍ୟରେ ଶୟାନ ଆକ୍ରାନ୍ତ କରିଥିଲେ । ୫୨ । ଏହି ସମୟରେ ସେ ଜଳମଧ୍ୟରେ ଥାଇ ଜଳଧର ସଦୃଶ ତୁମୁଳ ଧ୍ୱନି ଶ୍ରବଣ କଲେ । ୫୮ ।

ତତ୍ପରେ ଯୁଧିଷ୍ଠିର ଓ ତାହାଙ୍କ ସହୋଦରବୃନ୍ଦ ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କ ବଧ ନିମିତ୍ତ ଘୋରତର ଶଙ୍ଖ ଶବ୍ଦ ଓ ରଥନେମିର

ନିନାଦ ଦ୍ୱାରା ପ୍ରଭୂତ ଧୂଳି ସମାଚ୍ଛନ୍ନ ଗଗନ ଓ ଭୂମଣ୍ଡଳକୁ କମ୍ପମାନ କରି ସେହି ହ୍ରଦର ସମୀପକୁ ଆଗତ ହେଲେ । ୬୦ । ମହାରଥ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଯୁଧିଷ୍ଠିରଙ୍କ ସୈନ୍ୟମାନଙ୍କ ଶବ୍ଦ ଶ୍ରବଣ କରି ରାଜାଙ୍କୁ କହିଲେ, ହେ ମହାରାଜ ! ଜୟ ଚିହ୍ନଧାରୀ ପାଣ୍ଡବମାନେ ପ୍ରସନ୍ନମନା ହୋଇ ଏଠାକୁ ଆସୁଅଛନ୍ତି । ଅତଏବ ଆପଣ ଆମ୍ଭମାନଙ୍କୁ ସ୍ଥାନାନ୍ତରିତ ହେବାକୁ ଅନୁମତି ଦେବା ହୁଅନ୍ତୁ । ୬୨ ।

ଦୁର୍ଯ୍ୟୋଧନ ସେମାନଙ୍କ ବାକ୍ୟ ଶ୍ରବଣ କରି ସେମାନଙ୍କୁ ସ୍ଥାନାନ୍ତର ଯିବା ବିଷୟରେ ଅନୁମତି ଦେଲେ ଓ ମାୟା ବଳରେ ସେହି ହ୍ରଦକୁ ସ୍ତମ୍ଭିତ କଲେ । ୬୩ । ହେ ମହାରାଜ ! କୃପାଚାର୍ଯ୍ୟ ପ୍ରଭୃତି ଅତି ଶୋକପରିପୂର୍ଣ୍ଣ ମହାରଥମାନେ ଦୁର୍ଯ୍ୟୋଧନଙ୍କ ଅନୁମତି ଲାଭ କରି ସେଠାରୁ ଦୂରକୁ ଗଲେ ଓ କ୍ରମେ କ୍ରମେ ଦୂର ପଥ ଗମନରେ ଅତିଶୟ ଶ୍ରାନ୍ତ ହୋଇ ଗୋଟିଏ ବଟବୃକ୍ଷ ମୂଳରେ ଉପବେଶନ କରି ଦୁର୍ଯ୍ୟୋଧନଙ୍କ ବିଷୟ କେବଳ ଚିନ୍ତା କଲେ । ୬୫ । ମହାବଳ ଦୁର୍ଯ୍ୟୋଧନ ଜଳସ୍ତମ୍ଭନ ପୂର୍ବକ ଅବସ୍ଥାନ କରିଅଛନ୍ତି, ପାଣ୍ଡବମାନେ ମଧ୍ୟ ଯୁଦ୍ଧ କରିବା ଇଚ୍ଛାରେ ସେହି ସ୍ଥାନକୁ ଆସିଅଛନ୍ତି; ଏତେବେଳେ ଉଭୟ ପକ୍ଷର କପରି ଯୁଦ୍ଧ ହେବ, ରାଜାଙ୍କର ଅବା କେଉଁପରି ଦଶା ଘଟିବ, ପାଣ୍ଡବମାନେ ଦୁର୍ଯ୍ୟୋଧନଙ୍କଠାରେ କପରି ବ୍ୟବହାର କରିବେ, କୃପାଚାର୍ଯ୍ୟ ପ୍ରଭୃତି ମହାରଥିଗଣ ଏହିପରି ଚିନ୍ତା କରି ଅଶ୍ୱମାନଙ୍କୁ ରଥରୁ ବିମୋଚନ ପୂର୍ବକ ସେହିଠାରେ ଅବସ୍ଥିତ ହେଲେ । ୬୮ ।

---

## ଅଧ୍ୟାୟ—୩୧

ସଞ୍ଜୟ କହିଲେ—ମହାରାଜ ! ସେହି ତିନ ଜଣ ମହାରଥ ପ୍ରସ୍ଥାନ କରନ୍ତେ ଯେଉଁ ହ୍ରଦରେ ଦୁର୍ଯ୍ୟୋଧନ ବାସ କରିଥିଲେ, ପାଣ୍ଡବମାନେ ସେହିଠାରେ ପ୍ରବିଷ୍ଟ ହେଲେ । ୧ । ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କ ଦ୍ୱାରା ସ୍ତମ୍ଭିତ ଦ୍ୱୈପାୟନ ହ୍ରଦର ନିକଟକୁ ଆସି ସେହି ହ୍ରଦକୁ ଚାହିଁ କୃଷ୍ଣଙ୍କୁ କହିଲେ, ହେ ବାସୁଦେବ ! ଦେଖ, ଦୁର୍ଯ୍ୟୋଧନ କପରି ମାୟା ବିସ୍ତାର କରି ଜଳ-ସ୍ତମ୍ଭନ ପୂର୍ବକ ଅନାୟାସରେ ଶୟନ କରିଅଛନ୍ତି । ଏଠାରେ ଏହାଙ୍କର ମନୁଷ୍ୟ ଭୟ ନାହିଁ । ସମ୍ପ୍ରତି ଦୈବୀମାୟା ଅବଲମ୍ବନ ପୂର୍ବକ ଜଳଗର୍ଭରେ

ବାସ କରିଅଛନ୍ତି । ପ୍ରବଞ୍ଚକ ଦୁର୍ଯ୍ୟୋଧନଙ୍କ ଜୀବନ ଥାଉଁ ଥାଉଁ ସେ ଆମ୍ଭଠାରୁ କଦାପି ପରିତ୍ରାଣ ପାଇ ପାରିବେ ନାହିଁ । ହେ ମାଧବ ! ବଜ୍ରପାଣି ପୁରନ୍ଦରଦେବ ସ୍ୱୟଂ ଯଦି ଯୁଦ୍ଧରେ ଉପସ୍ଥିତ ହୋଇ ତାହାଙ୍କୁ ସାହାଯ୍ୟ କରିବେ, ତେବେ ସୁଦ୍ଧା ସମସ୍ତଙ୍କ ସାକ୍ଷାତରେ ସେ ହତ ହେବେ । କୃଷ୍ଣ କହିଲେ, ହେ ଭରତଶ୍ରେଷ୍ଠ ଯୁଧିଷ୍ଠିର ! ମାୟାବୀ ଦୁର୍ଯ୍ୟୋଧନଙ୍କ ଏହି ମାୟାକୁ ମାୟାଦ୍ୱାରା ବିନାଶ କର । ମାୟାବୀ ବ୍ୟକ୍ତିକୁ ମାୟାଦ୍ୱାରା ବିନଷ୍ଟ କରିବା ଉଚିତ ବୋଲି ଯଥାର୍ଥବାଦୀମାନେ କହନ୍ତି । ଆପଣ ନାନାବିଧ ଉପାୟ ଦ୍ୱାରା ଜଳ ମଧ୍ୟରେ ମାୟା ପ୍ରୟୋଗ ପୂର୍ବକ ମାୟାବୀ ଦୁର୍ଯ୍ୟୋଧନଙ୍କୁ ସଂହାର କରନ୍ତୁ । ସାମ, ଦାନ, ଭେଦ, ଦଣ୍ଡ, ମାୟା ଓ ଇନ୍ଦ୍ରଜାଲ ପ୍ରଭୃତି ଉପାୟ ଦ୍ୱାରା ଇନ୍ଦ୍ର, ଦୈତ୍ୟ ଓ ଦାନବମାନଙ୍କୁ ବିନାଶ କରିଅଛନ୍ତି । ମହାତ୍ମା ବାମନଦେବ ମଧ୍ୟ ଏହିପରି ଉପାୟ ଦ୍ୱାରା ବଳି ରାଜାଙ୍କୁ ବନ୍ଧନ କରିଥିଲେ । ହିରଣ୍ୟାକ୍ଷ, ହିରଣ୍ୟକଶିପୁ ନାମକ ଦୁଇଗୋଟି ମହାସୁର ଏହି କ୍ରିୟାର ଉପାୟ ଦ୍ୱାରା କେବଳ ନିହତ ହୋଇଥିଲେ ।

ଏହିପରି କ୍ରିୟାରେ ବୃତ୍ରାସୁର ମଧ୍ୟ ନିହତ ହୋଇଥିଲେ । ଏ ବିଷୟରେ କିଛି ସଂଶୟ ନାହିଁ । ୧୦ । ଶ୍ରୀରାମଚନ୍ଦ୍ରଙ୍କ କ୍ରିୟା କୌଶଳରେ ପୁଲସ୍ତ୍ୟ ମୁନିଙ୍କ ପୁତ୍ର ରାବଣ ନାମକ ରାକ୍ଷସ ସପରିବାରରେ ହତ ହୋଇ ଥିଲେ । ଅତଏବ ହେ ମହାରାଜ ! ଆପଣ ମଧ୍ୟ କ୍ରିୟାଯୋଗକୁ ଅବଲମ୍ବନ କରି ଦୃପ୍ତ ବିକ୍ରମ ପ୍ରକାଶ କରିବା ହେଉନ୍ତୁ । ପୂର୍ବକାଳରେ ମୋ କର୍ତ୍ତୃକ କ୍ରିୟା କୌଶଳଦ୍ୱାରା ମହାବଳ ବିପ୍ରଚିତ୍ତି ଓ ତାରକନାମକ ମହାସୁର ନିହତ ହୋଇଥିଲେ । ଏହିପରି ଇଲ୍ବଳ, ବାତାପି, ତ୍ରିଶିରା, ସୁନ୍ଦ, ଉପସୁନ୍ଦ ପ୍ରଭୃତି ଦୈତ୍ୟଗଣ କେବଳ କ୍ରିୟାକୌଶଳରେ ନିହତ ହୋଇଥିଲେ । ଦେବରାଜ ଇନ୍ଦ୍ର ମଧ୍ୟ କ୍ରିୟାର ଉପାୟ ବଳରେ ସ୍ୱର୍ଗଲୋକରେ ଆଧିପତ୍ୟ କରୁଅଛନ୍ତି । ୧୪ । ମହାରାଜ ! କ୍ରିୟାର ବଳ ଅତି ଉତ୍କୃଷ୍ଟ । ପୃଥିବୀରେ ତାହା ବିନା ଅନ୍ୟ କିଛି ମାତ୍ର ବଳବାନ ପଦାର୍ଥ ନାହିଁ । ଦୈତ୍ୟ, ଦାନବ, ରାକ୍ଷସ ଓ ଅନେକ ଅନେକ ମହାବଳ ପରାକ୍ରାନ୍ତ ଭୂପାଳମାନେ ମଧ୍ୟ କ୍ରିୟାକୌଶଳରେ ନିହତ ହୋଇଅଛନ୍ତି ; ସୁତରାଂ ଆପଣ ସେହିପରି ଆଚରଣ କରିବା ହେଉନ୍ତୁ ।

ସଞ୍ଜୟ କହିଲେ, ହେ ଭରତନନ୍ଦନ ! ପ୍ରଶଂସିତ ବ୍ରତପରାୟଣ କୁନ୍ତୀପୁତ୍ର ଯୁଧିଷ୍ଠିର ବାସୁଦେବଙ୍କ ଏହି ବାକ୍ୟ ଶୁଣି ହାସ୍ୟ କରି ଜଳ

ମଧ୍ୟସ୍ଥିତ ଭୂବର୍ଦ୍ଧାପୁତ୍ର ସୁତ ମହାବଳ ଦୁର୍ଯ୍ୟୋଧନଙ୍କୁ କହିଲେ (୧୭) ହେ ଦୁର୍ଯ୍ୟୋଧନ ! ତୁମ୍ଭର ଯଦି ଜଳମଧ୍ୟରେ ରହିବାକୁ ଇଚ୍ଛା ଥିଲା, ତେବେ କି ନିମିତ୍ତ ଯୁଦ୍ଧାରମ୍ଭ କଲ ? ତୁମ୍ଭେ ସମସ୍ତ କ୍ଷତ୍ରିୟକୁଳ ଓ ନିଜ ବଂଶ ଧ୍ୱଂସ କରାଇ ପରିଶେଷରେ ଆପଣାର ପ୍ରାଣରକ୍ଷା ନିମିତ୍ତ ଜଳାଶୟରେ ପ୍ରବିଷ୍ଟ ହେଲ । ହେ ରାଜନ୍ ! ଶୀଘ୍ର ଉଠ ଓ ଆମ୍ଭମାନଙ୍କ ସହିତ ଯୁଦ୍ଧ କର । ୧୯ । ହେ ନରବର ! ଭୀତ ହୋଇ ତୁମ୍ଭେ ଜଳସ୍ତମ୍ଭନ କରି ରହିଅଛ । ଏତେବେଳେ ତୁମ୍ଭର ସେହି ଗର୍ବ, ସେହି ଦୁର୍ଜୟ ଅଭିମାନ କେଉଁଠି ଆଉକୁ ଗଲା ? ୨୦ । ସମସ୍ତ ଲୋକେ ସଭାମଧ୍ୟରେ ତୁମ୍ଭଙ୍କୁ ବୀରପୁରୁଷ ବୋଲି କହନ୍ତି । ଏତେବେଳେ ଜଳରେ ଶୟନ କରନ୍ତେ ଜାଣିଲୁ ଯେ ତୁମ୍ଭର ସେହି ଶୂରତା ବ୍ୟର୍ଥ ହେଲା । ୨୧ । ହେ ରାଜନ୍ ! ଶୀଘ୍ର ଉତ୍ଥିତ ହୋଇ ସଂଗ୍ରାମ କର । ତୁମ୍ଭେ ଉତ୍ତମ ବଂଶଜାତ କ୍ଷତ୍ରିୟ, ବିଶେଷରେ କୁରୁ-କୁଳରେ ଜନ୍ମିଅଛ । ଅତଏବ ଏତେବେଳେ ଥରେ କୁଳମର୍ଯ୍ୟାଦାକୁ ସ୍ମରଣ କର । ୨୨ । କୌରବ ବଂଶରେ ଜନ୍ମିଥିବାରୁ ତୁମେ ପ୍ରଶଂସିତ ଅଟ । ଏତେବେଳେ ଯୁଦ୍ଧକୁ ଭୟ କରି କି ନିମିତ୍ତ ଜଳରେ ପ୍ରବିଷ୍ଟ ହୋଇ ଅବସ୍ଥିତ କରିଅଛ ? । ୨୩ ।

ହେ ରାଜନ୍ ! ବିନା ଯୁଦ୍ଧରେ ଅବସ୍ଥିତ ହେବାର ସନାତନ ଧର୍ମ ନୁହେଁ । ଯୁଦ୍ଧରେ ପଳାୟନ କଲେ ନରକଗାମୀ ହେବାକୁ ହୁଏ ବୋଲି ସାଧୁମାନେ ତାହା ଆଚରଣ କରନ୍ତି ନାହିଁ । ତୁମେ ଯୁଦ୍ଧସିନ୍ଧୁରୁ ଉତ୍ତୀର୍ଣ୍ଣ ନ ହୋଇ କି ନିମିତ୍ତ ପ୍ରାଣଧାରଣ କରି ରହିବାକୁ ଇଚ୍ଛୁକ ହୋଇଅଛ ? ପିତା, ପୁତ୍ର, ଭ୍ରାତା, ମାତୁଳ, ବୟସ୍ୟ, ସମ୍ବନ୍ଧୀ ଇତ୍ୟାଦି ବନ୍ଧୁବାନ୍ଧବ-ମାନଙ୍କୁ ବିନଷ୍ଟ କରାଇ ଓ ସେମାନଙ୍କୁ ଭୂମିରେ ପତିତ ହୋଇଥିବାର ଦେଖି ହେ ତାତ ! ଏତେବେଳେ କପରି ସ୍ଥିର ଭାବରେ ହ୍ରଦ ମଧ୍ୟରେ ରହିଅଛ ? ୨୬ । ହେ ଦୁର୍ବୁଦ୍ଧେ ! ତୁମ୍ଭେ ଲୋକମାନଙ୍କ ସାକ୍ଷାତରେ ଯେ ଶୂର ବୋଲି ଗର୍ବ କରୁଥାଅ, ତାହା ତୁମ୍ଭର ମିଥ୍ୟା କଥନ ଅଟେ । ତୁମ୍ଭେ କଦାପି ଶୂର ପୁରୁଷ ନୁହଁ, ଶୂର ବ୍ୟକ୍ତିମାନଙ୍କର ପ୍ରାଣ ଥିଲେ ସେମାନେ ଶତ୍ରୁକୁ ଦେଖି କଦାପି ପଳାୟନ କରନ୍ତେ ନାହିଁ । ହେ ଶୂର ! ତୁମ୍ଭେ ଯେଉଁ ବୃତ୍ତି ଦ୍ୱାରା ସମର ପରିତ୍ୟାଗ କଲ, ତାହା କହ ଓ ଗାତ୍ରୋତ୍ଥାନ ପୂର୍ବକ ଭୟ ଛାଡ଼ି ଆମ୍ଭମାନଙ୍କ ସହିତ ଯୁଦ୍ଧ କର ।

ହେ ଦୁର୍ଯ୍ୟୋଧନ ! ସହୋଦର ଓ ସୈନ୍ୟମାନଙ୍କୁ ସଂହାର କରାଇ କ୍ଷତ୍ରିୟ ଧର୍ମକୁ ପରିତ୍ୟାଗ ପୂର୍ବକ ଅଧର୍ମ କାର୍ଯ୍ୟ କରିବା ଇଚ୍ଛାରେ ନିଜର

ପ୍ରାଣରକ୍ଷା ବିଷୟରେ ଯତ୍ନଶୀଳ ହେବାର ତୁମ୍ଭ ପରି ବ୍ୟକ୍ତିର ଉଚିତ ନୁହେଁ । ୩୦ । ତୁମ୍ଭେ ଯେ ପୂର୍ବେ କର୍ଣ୍ଣ ଓ ସୁବଳପୁତ୍ର ଶକୁନିଙ୍କୁ ଆଶ୍ରୟ କରି ମୋ ହାତରୁ ଆପଣାକୁ ଅଜର ଓ ଅମର ବୋଲି ଜାଣି ଯୁଦ୍ଧରୁ ନିବୃତ୍ତ ହେବାର ଉଚିତ ବୋଲି ଜାଣି ପାରି ନ ଥିଲ, ସେହି ମହାପାପକୁ ଭୋଗ କରି ଏତେବେଳେ ସଂଗ୍ରାମ କର । ତୁମ୍ଭ ପରି ବ୍ୟକ୍ତି ମୋ ହାତରୁ ପଳାୟନରେ କିପରି ଅବା ଅଭିଳାଷୀ ହେବ । ୩୨ । ହେ ଦୁର୍ଯ୍ୟୋଧନ ! ତୁମ୍ଭର ସେହି ଯତ୍ନ, ଅଭିମାନ, ବିକ୍ରମ, ବଜ୍ର ସଦୃଶ ଗର୍ଜନ ଓ ଅସ୍ତ୍ର-ନିପୁଣତା କେଉଁ ଆଡ଼କୁ ଗଲା ? ତୁମ୍ଭେ ହ୍ରଦରେ ଶୟନ କଲ । ହେ ଭାରତ ! ଏତେବେଳେ ତୁମ୍ଭେ ଉତ୍ଥିତ ହୋଇ କ୍ଷତ୍ରିୟ ଧର୍ମାନୁସାରେ ଯୁଦ୍ଧ କର । ତୁମ୍ଭେ ଆମ୍ଭମାନଙ୍କୁ ପରାଭବ ଦେଇ ପୃଥିବୀ ଶାସନ କର ଅଥବା ଆମ୍ଭମାନଙ୍କ ଦ୍ୱାରା ନିହତ ହୋଇ ଭୂତଳଶାୟୀ ହୁଅ । ୩୫ । ହେ ମହାରଥ ! ମହାତ୍ମା ବିଧାତା ତୁମ୍ଭ ନିକଟ ଉତ୍କୃଷ୍ଟ କ୍ଷତ୍ରିୟ ଧର୍ମର ସୃଷ୍ଟି କରିଅଛନ୍ତି । ଅତଏବ ତୁମ୍ଭେ ସେହି ଧର୍ମକୁ ଯଥାର୍ଥ ରୂପେ ପ୍ରତିପାଳନ କରି ରାଜା ହୁଅ । ୩୬ ।

ସଞ୍ଜୟ କହିଲେ—ମହାରାଜ ! ବୁଦ୍ଧିମାନ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କୁ ଏହିପରି କହିବାରୁ ସେ ଜଳ ମଧ୍ୟରେ ଥାଇ ଏହିପରି ଉତ୍ତର ଦେଲେ ।୩୭।

ଦୁର୍ଯ୍ୟୋଧନ କହିଲେ—ମହାରାଜ ! ପ୍ରାଣିବୃନ୍ଦର ଅନ୍ତଃକରଣରେ ଯେ ଭୟ ପ୍ରବେଶ କରିଥାଏ, ତାହା ବିଚିତ୍ର ନୁହେଁ । କିନ୍ତୁ ଆମ୍ଭେ ପ୍ରାଣ-ଭୟରେ ଭୀତ ହୋଇ ପଳାଇ ଆସିନାହୁଁ । ୩୮ । ଆମ୍ଭ ରଥହୀନ ଓ ତୂଣୀରହୀନ ହେଲୁଁ । ଆମ୍ଭର ପୃଷ୍ଠରକ୍ଷକ ଓ ସାରଥି ନିହତ ହେଲେ । ସେହି କାରଣରୁ ଆମ୍ଭେ ସମର ମଧ୍ୟରୁ ଏକାକୀ ଓ ନିଃସହାୟ ହୋଇ ଆଶ୍ୱାସିତ ହେଲୁଁ । ହେ ମହାରାଜ ! ଆମ୍ଭେ ନିଜର ପ୍ରାଣ ନିମିତ୍ତ କି ଭୟ ହେତୁରୁ ଅଥବା ବିଷାଦ ହେତୁରୁ ଜଳ ମଧ୍ୟରେ ପ୍ରବେଶ କରିନାହୁଁ । କେବଳ ଶ୍ରମ ହେତୁରୁ ହ୍ରଦ ମଧ୍ୟରେ ପ୍ରବିଷ୍ଟ ହୋଇଅଛୁ । ୪୦ । ହେ କୁନ୍ତୀସୁତ ! ଏତେବେଳେ ତୁମ୍ଭେ ଆଶ୍ୱାସିତ ହୁଅ ଓ ତୁମ୍ଭର ଆଶ୍ରିତ ଜନମାନେ ମଧ୍ୟ ଆଶ୍ୱାସ ଲାଭ କରନ୍ତୁ । ଆମ୍ଭେ ଉତ୍ଥିତ ହୋଇ ତୁମ୍ଭମାନଙ୍କ ସଙ୍ଗେ ପ୍ରୀତି ଲାଭ କରିବୁ । ୪୧ ।

ଯୁଧିଷ୍ଠିର କହିଲେ, ହେ ଦୁର୍ଯ୍ୟୋଧନ ! ଆମ୍ଭେମାନେ ସମସ୍ତେ ଆଶ୍ୱାସିତ ହୋଇଅଛୁ ଏବଂ ବହୁକାଳରୁ ତୁମ୍ଭଙ୍କୁ ଅନ୍ୱେଷଣ କରୁଅଛୁ ।

ଅତଏବ ତୁମ୍ଭେ ଏତେବେଳେ ଉଠ ଓ ଏହି ସ୍ଥାନରେ ଯୁଦ୍ଧ କର । ୪୨ । ତୁମ୍ଭେ ଆମ୍ଭମାନଙ୍କୁ ବିନାଶ କରି ସାମ୍ରାଜ୍ୟ ଭୋଗ କର ଅଥବା ଯୁଦ୍ଧରେ ଆମ୍ଭମାନଙ୍କ ଦ୍ୱାରା ନିହତ ହୋଇ ବୀରଲୋକକୁ ଗମନ କର । ୪୩ ।

ଦୁର୍ଯ୍ୟୋଧନ କହିଲେ, ହେ ନରେଶ୍ୱର କୁରୁନନ୍ଦନ ! ଆମ୍ଭେ ଯେଉଁମାନଙ୍କ ନିମିତ୍ତ କୁରୁସାମ୍ରାଜ୍ୟକୁ ଗ୍ରହଣ କରିବାକୁ ଅଭିଳାଷୀ ହେବୁ, ଆମ୍ଭର ସେହି ସହୋଦରମାନେ ନିହତ ହୋଇଅଛନ୍ତି । ୪୪ । ପୃଥିବୀ ରତ୍ନହୀନା ଓ ହତ କ୍ଷତ୍ରିୟମାନଙ୍କରେ ପରିପୂର୍ଣ୍ଣ ହୋଇଅଛି । ଅତଏବ ଆମ୍ଭେ ବିଧବା ସ୍ତ୍ରୀ ସଦୃଶ ଏହି ପୃଥିବୀକୁ ଭୋଗ କରିବା ନିମିତ୍ତ ଆଉ ଇଚ୍ଛୁକ ହେଉନାହୁଁ । ୪୫ । ହେ ଭରତଶ୍ରେଷ୍ଠ ଯୁଧିଷ୍ଠିର ! ଆମ୍ଭେ ଆଜି ପାଣ୍ଡବ ଓ ପାଞ୍ଚାଳମାନଙ୍କ ଉତ୍ସାହ ଭଙ୍ଗ କରି ତୁମ୍ଭଙ୍କୁ ପରାଭବ ଦେବାକୁ ଅଭିଳାଷୀ ହୋଇଅଛୁ, କିନ୍ତୁ ଏତେବେଳେ ଯେ ଯୁଦ୍ଧରେ କୌଣସି ପ୍ରୟୋଜନ ଅଛି, ତାହା ଆମ୍ଭଙ୍କୁ ଜଣାଯାଉ ନାହିଁ । ଦ୍ରୋଣ ଓ କର୍ଣ୍ଣ ନିହତ ଓ ପିତାମହ ଭୀଷ୍ମ ମରଣଶଯ୍ୟାରେ ରହିଥିବାରୁ ଏତେବେଳେ ଏହି ବୀରଶୂନ୍ୟ ପୃଥିବୀ ତୁମ୍ଭ ହସ୍ତରେ ରହି । ତାଦୃଶ ସୁହୃଦ୍, ପିତା, ପୁତ୍ର, ଭ୍ରାତା ପ୍ରଭୃତିଙ୍କୁ ନିହତ କରାଇ ସହାୟହୀନ ହୋଇ କେଉଁ ରାଜା ରାଜ୍ୟଶାସନ କରିବାକୁ ଇଚ୍ଛାକରେ କି ? ତୁମ୍ଭେମାନେ ରାଜ୍ୟ ହରଣ କରନ୍ତେ ମୋ ପରି କେଉଁ ବ୍ୟକ୍ତି ପ୍ରାଣ ଧରି ରହି ପାରେ କି ? ଆମ୍ଭେ ଚର୍ମାମ୍ବର ପରିଧାନ କରି ବନଗାମୀ ହେବୁ । ଆମ୍ଭର ଆତ୍ମୀୟ ସ୍ୱଜନଗଣ ହତ ହୋଇଥିବାରୁ ରାଜ୍ୟଭୋଗ ବିଷୟରେ କିଛି ମାତ୍ର ପ୍ରୀତି ଜନ୍ମୁନାହିଁ । ୫୦ । ହେ ରାଜନ୍ ! ଏହି ପୃଥିବୀରୁ ଅସଂଖ୍ୟ ଅସଂଖ୍ୟ ବନ୍ଧୁ ବାନ୍ଧବ ଓ ଅଶ୍ୱ ଗଜ ଯୂଥ ହତ ହୋଇଅଛନ୍ତି । ଏହି ପୃଥିବୀ ତୁମ୍ଭର ହେଲା । ଏତେବେଳେ ତୁମ୍ଭେ ଏହାକୁ ନିଷ୍କଣ୍ଟକ ଭାବରେ ଭୋଗ କର । ହେ ରାଜନ୍ ! ଆମ୍ଭେ ଆଜି ମୃଗଚର୍ମ ପରିଧାନ କରି ବନଗାମୀ ହେବୁ । ସହାୟହୀନ ହୋଇ ଜୀବନରକ୍ଷା ବିଷୟରେ ଆଉ ଆମ୍ଭର ସ୍ପୃହା ହେଉନାହିଁ । ୫୨ । ହେ ରାଜେନ୍ଦ୍ର ! ଯାଅ, ଏତେବେଳେ ଯୋଦ୍ଧାଶୂନ୍ୟ ରତ୍ନବିହୀନ ଅରାଜକ ଭୂମଣ୍ଡଳକୁ ଯଥାସୁଖରେ ଭୋଗକର । ୫୩ ।

ସଞ୍ଜୟ କହିଲେ, ମହାରାଜ ! ମହାଯଶସ୍ୱୀ ଯୁଧିଷ୍ଠିର ଏତାଦୃଶ କରୁଣ ବାଣୀ ଶ୍ରବଣ କରି ଜଳମଧ୍ୟସ୍ଥିତ ଦୁର୍ଯ୍ୟୋଧନଙ୍କୁ କହିଲେ, ହେ ତାତ, ତୁମ୍ଭେ ଆର୍ତ୍ତ ବ୍ୟକ୍ତିର ପ୍ରଳାପ ସଦୃଶ ଜଳରେ ଥାଇ ଏପରି

ବାକ୍ୟ କହନାହିଁ । ତୁମ୍ଭର ଏହି ସମସ୍ତ ବାକ୍ୟ ପକ୍ଷୀଧ୍ୱନି ସଦୃଶ ଆମ୍ଭ ହୃଦୟରେ ସଂଲଗ୍ନ ହେଉନାହିଁ । ୫୫ । ତୁମ୍ଭେ ଯଦି ପୃଥିବୀ ଦେବାକୁ ସମର୍ଥ ହୁଅ, ତଥାପି ଆମ୍ଭେ ତୁମ୍ଭ ପ୍ରଦତ୍ତ ଭୂମଣ୍ଡଳକୁ ଶାସନ କରିବା ନିମିତ୍ତ ଇଚ୍ଛୁକ ହେଉନାହୁଁ । ୫୬ । ଆମ୍ଭେ ତୁମ୍ଭ ପ୍ରଦତ୍ତ ଭୂମଣ୍ଡଳକୁ ଅଧର୍ମରେ ଗ୍ରହଣ କରିବୁ ନାହିଁ, କାରଣ ପ୍ରତିଗ୍ରହ କ୍ଷତ୍ରିୟର ଧର୍ମ ନୁହେଁ । ୫୭ । ଆମ୍ଭେ ତୁମ୍ଭ ପ୍ରଦତ୍ତ ସମସ୍ତ ଭୂମଣ୍ଡଳ ଗ୍ରହଣ ବିଷୟରେ ଇଚ୍ଛୁକ ହେଉନାହୁଁ । ଆମ୍ଭେ ଯୁଦ୍ଧରେ ତୁମ୍ଭଙ୍କୁ ବିଶେଷ ରୂପେ ପରାଭବ ଦେଇ ଏହି ପୃଥିବୀକୁ ଭୋଗ କରିବୁ । ୫୮ । ତୁମ୍ଭେ ପ୍ରଭୁତ୍ୱଶୂନ୍ୟ ହୋଇ ପୃଥିବୀ ଦେବାକୁ କିପରି ଇଚ୍ଛା କରୁଅଛ । ଯେତେବେଳେ ଆମ୍ଭେମାନେ କୁଳର ବିନାଶ ଶାନ୍ତି ନିମିତ୍ତ ଧର୍ମରେ ପୃଥିବୀ ପ୍ରାର୍ଥନା କରୁଥିଲୁ, ସେତେବେଳେ ତୁମ୍ଭେ କାହିଁକି ନ ଦେଲ ? ପ୍ରଥମରେ ମହାବଳାନ୍ତ ବାସୁଦେବଙ୍କ ଅନୁରୋଧ ରକ୍ଷା ନ କରି ଏତେବେଳେ ତାହା ଦେବାକୁ ଯାହା ଇଚ୍ଛା କରୁଅଛ, ଏ ତୁମ୍ଭର କପରି ଚିତ୍ତ ବିଭ୍ରମର କାର୍ଯ୍ୟ ଅଟେ ।

ହେ କୌରବନନ୍ଦନ ! ପୃଥିବୀ ଦାନ ନିମିତ୍ତ ଆଜ ତୁମ୍ଭର ପ୍ରଭୁପଣ ନାହିଁ, କାରଣ କେହି ରାଜା ଶତ୍ରୁ ଦ୍ୱାରା ଆକ୍ରାନ୍ତ ହୋଇ ପୃଥିବୀ ପ୍ରଦାନ କରିବାକୁ ଇଚ୍ଛୁକ ହୁଏ କି ? ଯେଉଁ ବ୍ୟକ୍ତି ପୂର୍ବେ ଯେଉଁମାନଙ୍କୁ ବଳପୂର୍ବକ ଉଚ୍ଛେଦନ କରିବା ନିମିତ୍ତ ଇଚ୍ଛୁକ ଥିଲ, ସେ ଏତେବେଳେ ସେମାନଙ୍କୁ ରାଜ୍ୟ ପ୍ରଦାନ କରିବାକୁ କିପରି ଅଭିଳାଷୀ ହେଲ ? ତୁମ୍ଭେ ଏତେବେଳେ ଆମ୍ଭଙ୍କୁ ଯୁଦ୍ଧରେ ଜୟକରି ପୃଥିବୀକି ପାଳନ କର । ହେ ନୃପବର ! ସୂଚୀର ଅଗ୍ରଭାଗଦ୍ୱାରା ଯେତେ ପରିମିତ ଭୂମି ଆଚ୍ଛାଦିତ ହୁଏ, ସେତିକି ମାତ୍ର ଭୂମିଦାନ କରିବାକୁ ପୂର୍ବେ ସ୍ୱୀକୃତ ନ ହେଲ । ଏତେବେଳେ କେଉଁ ପ୍ରକାରରେ ସମଗ୍ର ଭୂମଣ୍ଡଳ ପ୍ରଦାନ କରିବ ? ପୂର୍ବେ ତୁମ୍ଭେ ସୂଚ୍ୟଗ୍ର ପରିମିତ ଭୂମି ତ୍ୟାଗ ନ କରି ଏତେବେଳେ ସମଗ୍ର ବସୁଧାକୁ କି ନିମିତ୍ତ ପରିତ୍ୟାଗ କରୁଅଛ ? ଏତାଦୃଶ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇ ଏହି ପୃଥିବୀକି ଶାସନ କରୁ କରୁ କେଉଁ ମୂଢ଼ ବ୍ୟକ୍ତି ଶତ୍ରୁକୁ ପୃଥିବୀ ଦେବା ନିମିତ୍ତ ଉଦ୍ୟମଶୀଳ ହୁଏ ? ହେ ସୁଯୋଧନ ! ତୁମ୍ଭେ କେବଳ ମୂର୍ଖତା ହେତୁରୁ କାର୍ଯ୍ୟାକାର୍ଯ୍ୟ ବିଚାରଶୂନ୍ୟ ହୋଇ ଏହା ସବୁ ବୁଝି ପାରୁ-ନାହିଁ । ୬୭ ।

ତୁମ୍ଭେ ଏତେବେଳେ ପ୍ରାଣରକ୍ଷା ନିମିତ୍ତ ପୃଥିବୀ ପ୍ରଦାନ କଲେ ସୁଦ୍ଧା ମୁକ୍ତ ହେବ ନାହିଁ । ଯାହା ହେଉ, ଯୁଦ୍ଧରେ ଆମ୍ଭମାନଙ୍କୁ

ପଗ୍ରାଭବ ଦେଇ ପୃଥିବୀ ଶାସନ କର, ଅଥବା ଆମ୍ଭମାନଙ୍କଦ୍ୱାରା ହତ ହୋଇ ଉତ୍କୃଷ୍ଟ ମନୋହର ସ୍ୱର୍ଗ ଭବନରେ ବାସ କର । ହେ ରାଜନ୍ ! ଏତେବେଳେ ଆମ୍ଭ ପ୍ରାଣ ତୁମ୍ଭ ହସ୍ତରେ, ଓ ତୁମ୍ଭ ପ୍ରାଣ ଆମ୍ଭ ହସ୍ତରେ ରହିଅଛି ବୋଲି ତୁମ୍ଭେ ନିଶ୍ଚୟ କରି ଜାଣିଥାଅ । ଆମ୍ଭମାନଙ୍କ ବିଜୟରେ ସର୍ବପ୍ରାଣୀମାନଙ୍କର ସଂଶୟ ହେବ । ହେ ଦୁର୍ବୁଦ୍ଧେ ! ଏତେବେଳେ ତୁମ୍ଭର ପ୍ରାଣ ଆମ୍ଭ ହସ୍ତରେ ଅଛି । ଆମ୍ଭେ ଅନାୟାସରେ ଜୀବିତ ହୋଇ ରହିବୁ । କିନ୍ତୁ ତୁମ୍ଭେ କଦାପି ପ୍ରାଣ ଧରି ରହିପାରିବ ନାହିଁ । ତୁମ୍ଭେ ଆମ୍ଭଙ୍କୁ ଅଗ୍ନି ପ୍ରାଣରେ ଦଗ୍ଧ କରିବା ନିମିତ୍ତ ଯତ୍ନଶୀଳ ହୋଇଥିଲ । ସର୍ପବିଷ ଭକ୍ଷଣ କରାଇ ଜଳମଧ୍ୟରେ ପ୍ରବେଶ କରାଇବାକୁ ମଧ୍ୟ ତ୍ରୁଟି କରିଲ ନ ଥିଲ । ତୁମ୍ଭେ ରାଜ୍ୟ ହରଣ କରି ଆମ୍ଭମାନଙ୍କୁ ବଞ୍ଚିତ କରିଥିଲ । ଅପ୍ରିୟ ଦୁର୍ବାକ୍ୟଦ୍ୱାରା ଓ ଦ୍ରୌପଦୀଙ୍କ କେଶାକର୍ଷଣଦ୍ୱାରା ନିଜର ମନୋରଥ ସିଦ୍ଧ କରିଥିଲ । ହେ ପାପାତ୍ମନ୍ ! ଏହିସବୁ କାରଣବଶରୁ ତୁମ୍ଭେ ଜୀବନ ଧରି ରହି ପାରିବ ନାହିଁ । ସଂପ୍ରତି ଉଠ ଉଠ, ଆମ୍ଭମାନଙ୍କ ସଙ୍ଗେ ଯୁଦ୍ଧ କର, ତୁମ୍ଭର ମଙ୍ଗଳ ହେବ ।

ହେ ମହାରାଜ ! ସେହି ସ୍ଥାନରେ ପାଣ୍ଡବପକ୍ଷୀୟ ସେହି ବିଜୟୀ ବୀରବୃନ୍ଦ ଏହିପରି ନାନାପ୍ରକାର ବାକ୍ୟ କହିଲେ । ୭୩ ।

---

## ଅଧ୍ୟାୟ—୩୨

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭ ପୁତ୍ର ରାଜା ଦୁର୍ଯ୍ୟୋଧନ ସ୍ୱଭାବରେ କ୍ରୋଧପରାୟଣ, ଅତଏବ ସେ ତେତେବେଳେ ଶତ୍ରୁତାପନ ସେହି ବୀର ବିପକ୍ଷମାନଙ୍କ ଏତାଦୃଶ ତର୍ଜନ ବାକ୍ୟ ଶୁଣି କିପରି ସହ୍ୟ କଲେ ? ସେ ପୂର୍ବେ କୌଣସି ସମୟରେ କାହାରି ସୁଦ୍ଧା ତର୍ଜନ ବାକ୍ୟ ଶୁଣି ନ ଥିଲେ; ରାଜତ୍ୱ ଥିବା ହେତୁରୁ ତାହାଙ୍କୁ ସମସ୍ତ ଲୋକେ ମାନ୍ୟ କରୁଥିଲେ । ଯାହାଙ୍କ ଛତ୍ରର ଛାୟା ସୂର୍ଯ୍ୟଦେବଙ୍କ ସ୍ୱକୀୟ ପ୍ରଭା ସମାନ, ଅଭିମାନ ବଶରେ ଏତାଦୃଶ ତିରସ୍କାର ବାକ୍ୟ ସବୁ କିପରି ସହିଲେ ? ୩ । ହେ ସଞ୍ଜୟ ! ତୁମ୍ଭେ ଦେଖିଅଛ, ଯାହାଙ୍କ ପ୍ରସାଦରେ ମ୍ଳେଚ୍ଛ ଓ ବନ୍ୟ ଜନ ସହିତ ଏହି ଭୂମଣ୍ଡଳ ନିର୍ଜନରେ ଭୃତ୍ୟବର୍ଗ ବିହୀନ ହୋଇ ପ୍ରତି-

ପାଳତ ହୋଇଅଛୁ, ସେ ପାଣ୍ଡବମାନଙ୍କ ଦ୍ୱାରା ତର୍ଜ୍ଜିତ ହେଲେ । ସେ ସ୍ୱପକ୍ଷଗଣରେ ଆବୃତ ହୋଇ ସେମାନଙ୍କର ଏତାଦୃଶ ଜୟଯୁକ୍ତ କଟୁ ବାକ୍ୟ ଶ୍ରବଣ କରି ପାଣ୍ଡବମାନଙ୍କୁ କଣ କହିଲେ, ତୁମ୍ଭେ ତାହା ସବୁ ଆମ୍ଭ ନିକଟରେ କୀର୍ତ୍ତନ କର । ୭ ।

ସଞ୍ଜୟ କହିଲେ, ମହାରାଜ ! ଆପଣଙ୍କ ପୁତ୍ର ରାଜା ଦୁର୍ଯ୍ୟୋଧନ ଜଳ ମଧ୍ୟରେ ଥାଇ ଯୁଧିଷ୍ଠିର ଓ ତଦୀୟ ଭ୍ରାତୃଗଣର ତର୍ଜନ ଗର୍ଜନ ଏବଂ କଟୁ ବାକ୍ୟ ଶ୍ରବଣ କରି ବିଷଣ୍ଣ ହେଲେ । ସଲିଳ ମଧ୍ୟରେ ରହି ବାରମ୍ବାର ଦୀର୍ଘ ଓ ଉଷ୍ଣ ନିଃଶ୍ୱାସ ପରିତ୍ୟାଗ କଲେ । ପରିଶେଷରେ ବାହୁଦ୍ୱୟକୁ କମ୍ପନ କରି ଜଳ ମଧ୍ୟରେ ଥାଇ ସଂଗ୍ରାମ ନିମିତ୍ତ ମନଯୋଗୀ ହେଲେ ଓ ଧର୍ମରାଜଙ୍କୁ ସମ୍ବୋଧନ ପୂର୍ବକ କହିଲେ, ହେ ପାଣ୍ଡବଗଣ ! ଏତେବେଳେ ତୁମ୍ଭେମାନେ ସମସ୍ତେ ନିଜର ସୁହୃଦ, ବନ୍ଧୁ ଓ ରଥ ବାହନରେ ପରିବୃତ୍ତ ହୋଇଅଛ । ଆମ୍ଭେ ଏକାକୀ ବିରଥ ଓ ହତବାହନ ହୋଇ ଅତିଶୟ ଦୁଃଖ ଅନୁଭବ କରୁଅଛୁ । ତୁମ୍ଭେ ଅନେକ ଅନେକ ଅସ୍ତ୍ରଧାରୀ ରଥବୃନ୍ଦରେ ପରିବେଷ୍ଟିତ ହୋଇ ରହିଅଛ । ଆମ୍ଭେ ଏକାକୀ ଓ ଅସ୍ତ୍ରହୀନ ଅତଏବ ପଦାତିକ ଭାବରେ ଯୁଦ୍ଧ କରିବାକୁ କିପରି ଉତ୍ସାହିତ ହେବୁ ? । ୧୧ ।

ହେ ଯୁଧିଷ୍ଠିର ! ତୁମ୍ଭେମାନେ ସମସ୍ତେ ଜଣ ଜଣ ହୋଇ ଆମ୍ଭ ସହିତ ଯୁଦ୍ଧ କର । ଯୁଦ୍ଧ ସ୍ଥଳରେ ଏକ ବ୍ୟକ୍ତି ସହିତ ଯୁଗପତ୍ ବହୁତ ଲୋକଙ୍କର ଯୁଦ୍ଧ ହେବାର ନ୍ୟାୟସଙ୍ଗତ ନୁହେଁ । ୧୨ । ବିଶେଷତଃ ଆମ୍ଭେ କବଚବିହୀନ, ଶ୍ରାନ୍ତ ଓ ଅପଦସ୍ଥ ହୋଇଅଛୁ । ଆମ୍ଭର ସର୍ବାଙ୍ଗ ଅତିଶୟ କ୍ଷତବିକ୍ଷତ ; ସୈନ୍ୟ ଓ ବାହକବୃନ୍ଦ ମଧ୍ୟ ନିତାନ୍ତ ଶ୍ରାନ୍ତ ହୋଇଅଛନ୍ତି । ୧୩ । ଆମ୍ଭେ ତୁମ୍ଭଠାରୁ ଏବଂ ବୃକୋଦର, ଧନଞ୍ଜୟ, କୃଷ୍ଣ, ନକୁଳ, ସହଦେବ, ଯୁଯୁଧାନ ଓ ତଦୀୟ ଅନ୍ୟାନ୍ୟ ସୈନ୍ୟଙ୍କଠାରୁ ସୁଦ୍ଧା ଭୀତ ହୋଇନାହୁଁ । ଆମ୍ଭେ ଏକାକୀ ଯୁଦ୍ଧରେ ତୁମ୍ଭ ସମସ୍ତଙ୍କୁ ନିବାରଣ କରିବୁ । ହେ ନରେନ୍ଦ୍ର ! ସାଧୁ ପୁରୁଷମାନେ କୀର୍ତ୍ତିକୁ ଧର୍ମର ମୂଳ ବୋଲି କହନ୍ତି । ଅତଏବ ଆମ୍ଭେ ଏତେବେଳେ ସେହି ଧର୍ମ ଓ କୀର୍ତ୍ତିକି ପ୍ରତିପାଳନ ପୂର୍ବକ ଏହିପରି କହୁଅଛୁ । ୧୪ । ସମ୍ବତ୍ସର ଯେଉଁପରି ହେମନ୍ତ ପ୍ରଭୃତି ସମସ୍ତ ଋତୁମାନଙ୍କୁ ଅନୁଗତ ହୋଇ ଭୋଗ କରେ, ଆମ୍ଭେ ସେହି ଅନୁସାରେ ଉତ୍ଥିତ ହୋଇ ତୁମ୍ଭମାନଙ୍କ ସହିତ ପ୍ରତିଯୁଦ୍ଧ କରିବୁ । ୧୨ । ନିଶାବସାନ

ସମୟରେ ସୂର୍ଯ୍ୟଦେବ ଯେଉଁପରି ସ୍ୱକୀୟ ତେଜୋରାଶି ଦ୍ୱାରା ନକ୍ଷତ୍ରମାନଙ୍କୁ ଅଦୃଶ୍ୟ କରନ୍ତି, ଏତେବେଳେ ଆମ୍ଭେ ସେହିପରି ଅସ୍ତ୍ରବିହୀନ ଓ ରଥବିହୀନ ହୋଇଥିଲେ ସୁଦ୍ଧା ଅଶ୍ୱରଥଯୁକ୍ତ ତୁମ୍ଭ ସମସ୍ତଙ୍କୁ ସ୍ୱକୀୟ ତେଜୋରାଶି ଦ୍ୱାରା ବିନଷ୍ଟ କରିବୁ । ଅତଏବ ହେ ପାଣ୍ଡବଗଣ ! ରହ ରହ, ଆମ୍ଭେ ଯଶସ୍ୱୀ କ୍ଷତ୍ରିୟମାନଙ୍କ ନିକଟରେ ଋଣମୁକ୍ତ ହେବୁ । ୧୯ । ଆଜି ଭ୍ରାତୃମାନଙ୍କ ସହିତ ତୁମ୍ଭଙ୍କୁ ନିହତ କରି ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ମହାବୀର ଜୟଦ୍ରଥ, ଭଗଦତ୍ତ, ସୋମଦତ୍ତ, ମଦ୍ର ଅଧିପତି ଶଲ୍ୟ, ଭୂରିଶ୍ରବା, ସୁବଳପୁତ୍ର ଶକୁନି ଏବଂ ପୁତ୍ର, ମିତ୍ର, ସୁହୃଦ, ବନ୍ଧୁ ଓ ସହୋଦରମାନଙ୍କ ଋଣ ପରିଶୋଧ କରିବୁ । ୨୨ । ହେ ରାଜନ୍ ! ନରେଶ୍ୱର ଦୁର୍ଯ୍ୟୋଧନ ଏହି ବାକ୍ୟ କହି ନିବୃତ୍ତ ହେଲେ ।

ଯୁଧିଷ୍ଠିର କହିଲେ, ହେ ମହାବାହୁ ଦୁର୍ଯ୍ୟୋଧନ ! ତୁମ୍ଭେ ଭାଗ୍ୟବଳରେ କ୍ଷତ୍ରିୟ ଧର୍ମକୁ ଜାଣ ଓ ଭାଗ୍ୟକ୍ରମରେ ତୁମ୍ଭର ବୁଦ୍ଧିବୃତ୍ତି ଯୁଦ୍ଧ ନିମିତ୍ତ ଜାଗରୁକ ହୋଇଅଛି । ଭାଗ୍ୟକ୍ରମରେ ତୁମ୍ଭେ ଶୂର ହୋଇ ସଂଗ୍ରାମ କରିବାକୁ ଇଚ୍ଛୁକ ହୋଇଅଛ । ଭାଗ୍ୟଚକ୍ରରେ ତୁମ୍ଭେ ଏକାକୀ ଆମ୍ଭ ସମସ୍ତଙ୍କ ସହିତ ଯୁଦ୍ଧ କରିବ ବୋଲି ଯଦି ସ୍ୱୀକାର କଲ ତେବେ ଯାହାଙ୍କ ସହିତ ଯୁଦ୍ଧ କରିବାକୁ ଅଭିଳାଷ ହୁଏ, ତାହାଙ୍କ ସଙ୍ଗେ ଯୁଦ୍ଧ କର । ଆମ୍ଭେମାନେ ସମସ୍ତେ ଯୁଦ୍ଧକ୍ଷେତ୍ରରେ ରହି ସମରର ଘଟନାକୁ ଅବଲୋକନ କରିବୁ । ହେ ବୀର ! ତୁମ୍ଭେ ଯାହାଙ୍କ ସହିତ ଯୁଦ୍ଧ କାମନା କରୁଅଛ, ଆମ୍ଭେ ତାହାଙ୍କୁ ଦେଉଅଛୁ । ତୁମ୍ଭେ ଆମ୍ଭମାନଙ୍କ ମଧ୍ୟରୁ ଏକ ବ୍ୟକ୍ତିକୁ ହତ କରି ରାଜା ହୁଅ, ଅଥବା ସ୍ୱୟଂ ଆମ୍ଭମାନଙ୍କ ହସ୍ତରେ ନିହତ ହୋଇ ସ୍ୱର୍ଗଲାଭ କର ।

ଦୁର୍ଯ୍ୟୋଧନ କହିଲେ, ହେ ମହାରାଜ ! ଏକ ବ୍ୟକ୍ତି ସହିତ ଯୁଦ୍ଧ କରିବାର ଯଦି ସ୍ଥିର ହେଲା, ତେବେ ଆମ୍ଭ ସହିତ ସଂଗ୍ରାମ କରିବା ନିମିତ୍ତ କୌଣସି ଗୋଟିଏ ବୀରକୁ ପ୍ରଦାନ କର, ଏବଂ ସମସ୍ତ ଅସ୍ତ୍ରଶସ୍ତ୍ର ମଧ୍ୟରେ କେବଳ ଗଦା ଆମ୍ଭର ଅଭିମତ । ଅତଏବ ଆମ୍ଭେ ତାହାକୁ ଧରିଅଛୁ । ତୁମ୍ଭମାନଙ୍କ ମଧ୍ୟରେ ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ହତ କରିବାକୁ ସମର୍ଥ ହେବ ବୋଲି ଜାଣୁଅଛ, ସେହି ବ୍ୟକ୍ତି ରଣସ୍ଥଳରେ ପଦାତିକ ହୋଇ ଗଦାଦ୍ୱାରା ଆମ୍ଭ ସଙ୍ଗେ ସଂଗ୍ରାମ କରୁ । ଏହା ପୂର୍ବେ ବିଚିତ୍ର ରଥଯୁଦ୍ଧ ଅନେକବାର ହୋଇଥିଲା । ଆଜି ଏକପ୍ରକାର ଅତି ଉତ୍କୃଷ୍ଟ ଅଦ୍ଭୁତ ଗଦାଯୁଦ୍ଧ ହେଉ ।

ନରବୃନ୍ଦ ଯେଉଁପରି ସମସ୍ତ ସମୟରେ ଅସ୍ମାନଙ୍କର ପରିବର୍ତ୍ତନ କରିବାକୁ ଇଚ୍ଛା କରନ୍ତି, ସେହିପରି ତୁମ୍ଭର ଅଭିମତାନୁସାରେ ଆଜ ଯୁଦ୍ଧର ମଧ୍ୟ ପରିବର୍ତ୍ତନ ହେଉ ।

ହେ ମହାବାହୋ ! ଆଜ ପାଞ୍ଚାଳ, ସୃଞ୍ଜୟ ଓ ତୁମ୍ଭର ଯେଉଁ ଅନ୍ୟାନ୍ୟ ସୈନିକବୃନ୍ଦ ଅଛନ୍ତି, ସେମାନଙ୍କ ସହିତ ଓ ତୁମ୍ଭର ସହୋଦରମାନଙ୍କ ସହିତ ଆମ୍ଭେ ଏକ ସମୟରେ ଗଦାଯୁଦ୍ଧ ଦ୍ୱାରା ତୁମ୍ଭଙ୍କୁ ପରାଭବ ଦେବୁ । ହେ ଯୁଧିଷ୍ଠିର ! ଏହି ବିଷୟରେ ଦେବରାଜଙ୍କଠାରୁ ମଧ୍ୟ ଭୀତ ହେଉନାହୁଁ । ୩୨ । ଯୁଧିଷ୍ଠିର କହିଲେ, ହେ ଗାନ୍ଧାରୀପୁତ୍ର ଦୁର୍ଯ୍ୟୋଧନ ! ଉଠ, ଉଠ, ତୁମ୍ଭେ ବଳବାନ ; ଅତଏବ ଏକାକୀ ଏକ ବ୍ୟକ୍ତିଙ୍କ ସହିତ ସଙ୍ଗତ ହୋଇ ଗଦା ଗ୍ରହଣ ପୂର୍ବକ ଆମ୍ଭ ସହିତ ସମର କର ।୩୩ । ତୁମ୍ଭେ ପୁରୁଷର କାର୍ଯ୍ୟ କର, ସ୍ଥିରଚିତ୍ତ ହୋଇ ଯୁଦ୍ଧରେ ପ୍ରବୃତ୍ତ ହୁଅ । ଆଜ ଇନ୍ଦ୍ରଦେବଙ୍କ ସୂର୍ଯ୍ୟ ଆସି ଯଦି ତୁମ୍ଭର ସହାୟ ହେବେ, ତଥାପି ତୁମ୍ଭର ପ୍ରାଣ ରକ୍ଷା ହେବ ନାହିଁ । ୩୪ ।

ସଞ୍ଜୟ କହିଲେ, ମହାରାଜ ! ବୀରମାନଙ୍କ ମଧ୍ୟରେ ଅବସ୍ଥିତ ଭବଦୀୟ ପୁତ୍ର ଦୁର୍ଯ୍ୟୋଧନ ବାରମ୍ବାର ବିପକ୍ଷମାନଙ୍କ ବାଗଙ୍କୁଶଦ୍ୱାରା ବ୍ୟଥା ପ୍ରାପ୍ତ ହୋଇ ଗର୍ତ୍ତ ମଧ୍ୟସ୍ଥିତ ଭୟଙ୍କର ଭୁଜଗ ସଦୃଶ ନିଃଶ୍ୱାସ ପରିତ୍ୟାଗ କଲେ ଓ ଉତ୍ତମ ଅଶ୍ୱ ଯେଉଁପରି କଶାର ଆଘାତ ସହିବାକୁ ଅସମର୍ଥ ହୁଏ, ସେହିପରି ଏହି ବାକ୍ୟସବୁ ସହ୍ୟ କରିପାରିଲେ ନାହିଁ । ୩୨ । ସେହି ବୀର ତତ୍କ୍ଷଣାତ୍ ଅତିବେଗରେ ଜଳରାଶିକୁ ଅତ୍ୟନ୍ତ କ୍ଷୁବ୍ଧ କରି ସୁବର୍ଣ୍ଣନିର୍ମିତ ଅଙ୍ଗଦଭୂଷଣ ପର୍ବତ ସାରମୟୀ ଗୋଟିଏ ଗୁରୁତର ଗଦା ଗ୍ରହଣ ପୂର୍ବକ ନାଗେଶ୍ୱର ସଦୃଶ ବାରମ୍ବାର ନିଃଶ୍ୱାସ ପରିତ୍ୟାଗ କରି ଜଳମଧ୍ୟରୁ ଉତ୍ଥିତ ହେଲେ । ଆପଣଙ୍କ ସେହି ସନ୍ତାନ ସ୍ତମ୍ଭିତ ଜଳରାଶିକୁ ଭେଦକରି ଲୌହମୟୀ ଗଦାକୁ ସ୍କନ୍ଧରେ ଧାରଣ ପୂର୍ବକ ସନ୍ତାପଦାୟକ ତପନ ଦେବ ସଦୃଶ ଉତ୍ଥିତ ହେଲେ । ଆପଣଙ୍କର ସେହି ମହାବଳ ବୁଦ୍ଧିମାନ ପୁତ୍ର ସୁବର୍ଣ୍ଣ ପରିଷ୍କୃତ ଶିକଦେଶୀୟ ଲୌହନିର୍ମିତ ଗୁରୁତର ଗଦା ଧାରଣ କରି ତେତେବେଳେ ପ୍ରତାପଶାଳୀ ସୂର୍ଯ୍ୟଦେବଙ୍କ ପରି ଅତିଶୟ ଶୋଭା ପାଇଲେ । ଶତ୍ରୁଦଳନ ମହାବାହୁ ଦୁର୍ଯ୍ୟୋଧନ ଗଦାଧାରଣ କରି ଜଳରୁ ଉତ୍ତୀର୍ଣ୍ଣ ହେବା ସମୟରେ ପ୍ରଳୟକାଳୀନ ପ୍ରଜାକୁଳର ସଂହାରକାରୀ ଶୂଳପାଣି ମହାଦେବଙ୍କ ସଦୃଶ

ଶୃଙ୍ଗଯୁକ୍ତ ପର୍ବତ ସମାନ ଓ ଦଣ୍ଡପାଣି ଯମଦେବଙ୍କ ପରି ଦୃଶ୍ୟମାନ ହେଲେ । ୪୨ ।

ପାଞ୍ଚାଳ ସୈନ୍ୟମାନେ ଆପଣଙ୍କର ସେହି ନରେଶ୍ୱର ପୁତ୍ରଙ୍କୁ ବଜ୍ରପାଣି ଇନ୍ଦ୍ର ଓ ଶୂଳଧାରୀ ଶିବଙ୍କ ସଦୃଶ ପରିଦର୍ଶନ କଲେ । ୪୩ । ପାଣ୍ଡବ ଓ ପାଞ୍ଚାଳମାନେ ତାହାଙ୍କୁ ଜଳରୁ ଉତ୍ତୀର୍ଣ୍ଣ ହେବାର ଦେଖି ସର୍ବ ପ୍ରକାରରେ ହର୍ଷଯୁକ୍ତ ହେଲେ ଓ ସମସ୍ତେ ପରସ୍ପର କରତାଳି ପ୍ରଦାନ କଲେ । ୪୪ । ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ଦଗ୍ଧ କଲପରି ତାହା ଉପହାସ ଜ୍ଞାନ କରି କ୍ରୋଧଯୁକ୍ତ ହେଲେ ଓ ନୟନ-ଦ୍ୱୟର ଘୂର୍ଣ୍ଣନ ପୂର୍ବକ ତ୍ରିଶାଖାଯୁକ୍ତ ଭ୍ରୂକୁଟୀ ବିସ୍ତାର କଲେ ଓ ଓଷ୍ଠାଧର ଦଂଶନ ପୂର୍ବକ କୃଷ୍ଣଙ୍କୁ ଓ ପାଣ୍ଡବମାନଙ୍କୁ କହିଲେ, ହେ ପାଣ୍ଡବଗଣ ! ତୁମ୍ଭେମାନେ ସମସ୍ତେ ଏ ଉପହାସର ଫଳକୁ ନିଶ୍ଚୟ ଭୋଗ କରିବ ଓ ଅବିଳମ୍ବରେ ପାଞ୍ଚାଳମାନଙ୍କ ସହିତ ହତ ହୋଇ ଯମାଳୟକୁ ଗମନ କରିବ । ୪୭ ।

ସଞ୍ଜୟ କହିଲେ, ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ରୁଧିର-ମିଶ୍ରିତ ସେହି ଜଳରାଶି ମଧ୍ୟରୁ ଉତ୍ଥିତ ହୋଇ ଓ ଗଦା ଧରି ଦଣ୍ଡାୟମାନ ହେଲେ । ୪୮ । ସେହି ରକ୍ତାକ୍ତ ପୁରୁଷଙ୍କ ଜଳାର୍ଦ୍ର ଶରୀର ତେତେବେଳେ ନିର୍ଝର ଜଳସ୍ରାବୀ ପର୍ବତ ସଦୃଶ ଶୋଭା ପାଇଲା । ୪୯ । ଦୁର୍ଯ୍ୟୋଧନ ଗଦା ଉତ୍ତୋଳନ କଲା ସମୟରେ ପାଣ୍ଡବମାନେ ତାହାଙ୍କୁ କିଙ୍କର-ମାନଙ୍କଠାରେ କ୍ରୋଧଯୁକ୍ତ ହୋଇ ହସ୍ତ ଉତ୍ତୋଳନକାରୀ ଯମଦେବଙ୍କ ସଦୃଶ ଜ୍ଞାନ କଲେ । ୫୦ । ତତ୍ପରେ ମେଘ ସଦୃଶ ଗର୍ଜନକାରୀ ସେହି ବୀର୍ଯ୍ୟଶାଳୀ ଦୁର୍ଯ୍ୟୋଧନ ଉନ୍ମତ୍ତ ବୃଷଭ ପରି ନାଦ କରି ରଣସ୍ଥଳରେ ଗଦାଦ୍ୱାରା ପାଣ୍ଡବମାନଙ୍କୁ ଆହ୍ୱାନ କଲେ ।

ଦୁର୍ଯ୍ୟୋଧନ କହିଲେ, ହେ ଯୁଧିଷ୍ଠିର ! ତୁମ୍ଭେମାନେ ଜଣ ଜଣ ହୋଇ ଆମ୍ଭ ନିକଟକୁ ଆସ । ଯୁଦ୍ଧରେ ବହୁତ ବୀର ଯୁଗପତ୍ ଏକ ବୀର ସହିତ ଯୁଦ୍ଧ କରିବାର ନ୍ୟାୟସଙ୍ଗତ ନୁହେଁ । ୫୨ । ଆମ୍ଭେ କବଚ ପରିତ୍ୟାଗ କରିଅଛୁ, ବିଶେଷତଃ ବହୁତ ସମୟ ଜଳରେ ଅବସ୍ଥିତି କରିଥିବାରୁ ନିତାନ୍ତ ଶ୍ରାନ୍ତ ହୋଇଅଛୁ । ଆମ୍ଭ ଶରୀର ଅତ୍ୟନ୍ତ କ୍ଷତବିକ୍ଷତ ହୋଇଅଛି । ବାହନ ଏବଂ ସୈନ୍ୟବୃନ୍ଦ ହତ ହୋଇଅଛନ୍ତି । ୫୩ । ଯୁଦ୍ଧର ଉପକରଣଶୂନ୍ୟ, କବଚ ଓ ଅସ୍ତ୍ରଶସ୍ତ୍ରବିହୀନ ମୋ ସହିତ ଏକାକୀ

ଯୁଦ୍ଧ କରିବା ନ୍ୟାୟସଙ୍ଗତ ହେଉ ଅଥବା ନ ହେଉ, ତୁମ୍ଭେମାନେ ସମସ୍ତେ ଆମ୍ଭ ସହିତ ନିଶ୍ଚୟ ଯୁଦ୍ଧ କରିବ ବୋଲି ସ୍ଥିର କରିଅଛ । ୫୪ ।

ଯୁଧିଷ୍ଠିର କହିଲେ, ହେ ଦୁର୍ଯ୍ୟୋଧନ ! ଯେତେବେଳେ ବହୁ ରଥ ଏକତ୍ର ମିଳିତ ହୋଇ ଅଭିମନ୍ୟୁଙ୍କୁ ବିନାଶ କରିଥିଲେ, ତେତେବେଳେ ତୁମ୍ଭର ଏହିପରି ବୁଦ୍ଧି କାହିଁକି ନ ହେଲା ? କ୍ଷତ୍ରିୟ ଧର୍ମ ଅତିଶୟ କ୍ରୂର, ନିରପେକ୍ଷ ଓ ନିତାନ୍ତ ଘୃଣାଶୂନ୍ୟ । କଥିତ ଅଛି ଯେ ଯେଉଁମାନେ ନ୍ୟାୟାନୁସାରେ ଯୁଦ୍ଧ କରନ୍ତି, ସେମାନେ ସ୍ୱର୍ଗଗାମୀ ହୁଅନ୍ତି । ଏଥିକୁ ତୁମ୍ଭେମାନେ ସମସ୍ତେ ଧର୍ମଜ୍ଞ, ଶୂର ଓ ନ୍ୟାୟ ଯୁଦ୍ଧରେ ଦେହ ପରିତ୍ୟାଗ କରିବାକୁ ସମର୍ଥ ଅଟ, ତେବେ କ୍ଷତ୍ରିୟ ଧର୍ମକୁ ଅନ୍ୟଥା କରି ଅଭିମନ୍ୟୁଙ୍କୁ କି ନିମିତ୍ତ ବିନାଶ କଲ ? ୫୬ । କ୍ଷତ୍ରିୟ ଧର୍ମାନୁସାରେ ବହୁତ ବ୍ୟକ୍ତି ଯଦି ଏକ ବ୍ୟକ୍ତିକୁ ବିନାଶ କରିବାର ଅନ୍ୟାୟ ଅଟେ, ତେବେ ତୁମ୍ଭ ମତାନୁସାରେ ଅନେକ ମହାରଥ ଏକତ୍ର ମିଳିତ ହୋଇ ଅଭିମନ୍ୟୁଙ୍କୁ କି ନିମିତ୍ତ ହତ କଲ ? ୫୮ । ପ୍ରାଣୀଗଣ ମହାକଷ୍ଟରେ ନିପତିତ ହେଲେ ଧର୍ମ ବିଚାର କରନ୍ତି । ପଦସ୍ଥ ହୋଇ ସୁଖ ଅନୁଭବ କରୁଥିବା ସମୟରେ ସ୍ୱର୍ଗଦ୍ୱାରର କବାଟ ଫିଟାଇବାର ଚିନ୍ତା କରନ୍ତି ନାହିଁ । ୫୯ । ହେ ଭାରତ ! ହେ ବୀର ! ଏତେବେଳେ କବଚ ପରିଧାନ ଓ କେଶ ବନ୍ଧନ କର ଓ ଯେଉଁ ଅନ୍ୟ ପ୍ରକାର ଅଭାବ ଅଛି, ତାହା ଗ୍ରହଣ କର । ୬୦ । ହେ ବୀର ! ଆମ୍ଭେ ତୁମ୍ଭଙ୍କୁ ପୁନଶ୍ଚ ଅନ୍ୟ ଗୋଟିଏ ଅଭିଳଷିତ ବିଷୟ ପ୍ରଦାନ କରୁଅଛୁ କି ପଞ୍ଚପାଣ୍ଡବଙ୍କ ମଧ୍ୟରେ ଯାହାଙ୍କ ସହିତ ତୁମ୍ଭେ ଯୁଦ୍ଧ କରିବାକୁ ଇଚ୍ଛା କର, ତାହାଙ୍କୁ ହତ କରି ରାଜା ହୁଅ, ଅବା ତାହାଙ୍କଦ୍ୱାରା ହତ ହୋଇ ସ୍ୱର୍ଗଲୋକକୁ ଗମନକର । ହେ ବୀର ! ତୁମ୍ଭର ଏହି ସଂଗ୍ରାମରେ ପ୍ରାଣଦାନ ବ୍ୟତିରେକେ ଅନ୍ୟ କେଉଁ ପ୍ରିୟଜନ କାର୍ଯ୍ୟ କରିବୁ ? ୬୨ ।

ସଞ୍ଜୟ କହିଲେ, ମହାରାଜ ! ତଦନନ୍ତର ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ସୁବର୍ଣ୍ଣମୟ କବଚ ଓ ସୁବର୍ଣ୍ଣ ପରିଷ୍କୃତ ବିଚିତ୍ର ଗୋଟିଏ ଶିରସ୍ତ୍ରାଣ (ପଗଡ଼ି) ଗ୍ରହଣ କଲେ । ୬୩ । ହେ ନରନାଥ ! ତେତେବେଳେ ଦୁର୍ଯ୍ୟୋଧନ ଉତ୍ତମ ସୁବର୍ଣ୍ଣ କବଚ ଓ ସୁବର୍ଣ୍ଣ ଶିରସ୍ତ୍ରାଣ ଧାରଣ କରି ସୁବର୍ଣ୍ଣ ପର୍ବତ ପରି ଶୋଭା ପାଇଲେ । ୬୪ । ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ଏହିପରି ସମର ଭୂମିର ସମ୍ମୁଖରେ ସୁସଜ୍ଜିତ ହୋଇ କବଚ ଓ ଗଦା ଗ୍ରହଣ ପୂର୍ବକ ପାଣ୍ଡବମାନଙ୍କୁ କହିଲେ (୬୫), ହେ ଭରତଶ୍ରେଷ୍ଠ ବୃନ୍ଦ !

ତୁମ୍ଭମାନଙ୍କ ଭ୍ରାତୃଗଣ ମଧ୍ୟରୁ ଜଣେ ବ୍ୟକ୍ତି ଗଦାଦ୍ୱାରା ଆମ୍ଭ ସହିତ ଯୁଦ୍ଧ କରନ୍ତୁ । ହେ ଭରତଶ୍ରେଷ୍ଠ ପୁରୁଷବ୍ୟାଘ୍ର ଯୁଧିଷ୍ଠିର ! ଆମ୍ଭେ ଆଜ ସହଦେବ, ନକୁଳ, ଭୀମ କି ଅର୍ଜ୍ଜୁନ ଅଥବା ତୁମ୍ଭ ସହିତ ଗଦାଯୁଦ୍ଧ କରିବୁ । ଆମ୍ଭେ ସମରାଙ୍ଗଣରେ ସଂଗ୍ରାମ କରି ନିଶ୍ଚୟ ଜୟୀ ହେବୁ । ଏହି ସୁବର୍ଣ୍ଣପଟ୍ଟନବଦ୍ଧ ଗଦାଦ୍ୱାରା ଦୁର୍ଜ୍ଜୟ ଶତ୍ରୁ ସଂହାର କରିବୁ । ୬୮ । ଆମ୍ଭେ ଜାଣୁ ଗଦାଯୁଦ୍ଧରେ କେହି ଆମ୍ଭ ସଦୃଶ ନାହାନ୍ତି; ଅତଏବ ଯୁଦ୍ଧଭୂମିରେ ଉପସ୍ଥିତ ତୁମ୍ଭ ସମସ୍ତଙ୍କୁ ଗଦାଦ୍ୱାରା ବିନାଶ କରିବୁ । ୬୯ । ଆମ୍ଭ ସହିତ ନ୍ୟାୟାନୁସାରେ ଯୁଦ୍ଧ କରିବାକୁ କେହି ସମର୍ଥ ହେବେ ନାହିଁ । ଯଦି ନିଜ ମୁଖରେ ଏତାଦୃଶ ଗର୍ବୋଦ୍ଧତ ବାକ୍ୟ ପ୍ରକାଶ କରିବାର ଉଚିତ ନୁହେଁ, ତଥାପି ତୁମ୍ଭମାନଙ୍କ ସାକ୍ଷାତରେ ଏହି ବାକ୍ୟ ସବୁ ସଫଳ କରିବା । ୭୦ । ଏହି ମୁହୂର୍ତ୍ତରେ ଏହି ବାକ୍ୟ ସତ୍ୟ ହେବ, ଅଥବା ମିଥ୍ୟା ହେବ । ଯେ ଆଜ ଆମ୍ଭ ସହିତ ଯୁଦ୍ଧ କରିବେ, ସେ ସଂପ୍ରତି ଗଦା ଗ୍ରହଣ କରନ୍ତୁ । ୭୧ ।

---

## ଅଧ୍ୟାୟ—୩୩

ସଞ୍ଜୟ କହିଲେ—ମହାରାଜ ! ଦୁର୍ଯ୍ୟୋଧନ ଏହିପରି ବାରମ୍ବାର ଗର୍ଜନ କରନ୍ତେ ମହାମତି କୃଷ୍ଣ କ୍ରୋଧାକ୍ରାନ୍ତ ହୋଇ ଯୁଧିଷ୍ଠିରଙ୍କୁ କହିଲେ, ହେ ଧର୍ମରାଜ ! ଦୁର୍ଯ୍ୟୋଧନ ଯଦି ଯୁଦ୍ଧରେ ଆପଣଙ୍କୁ ଅଥବା ଅର୍ଜ୍ଜୁନ କି ନକୁଳ ସହଦେବଙ୍କୁ ଗଦାଯୁଦ୍ଧ ନିମିତ୍ତ ପ୍ରାର୍ଥନା କରିବେ, ତେବେ ମହା ଅନର୍ଥ ଉପସ୍ଥିତ ହେବ । ଆପଣଙ୍କର ଏ କି ସାହସ ? 'ତୁମ୍ଭେ ଆମ୍ଭ-ମାନଙ୍କ ମଧ୍ୟରୁ ଏକ ବ୍ୟକ୍ତିକୁ ସୁଦ୍ଧା ନିହତ କରି କୁରୁକୁଳରେ ରାଜା ହୁଅ' ଏପରି ବାକ୍ୟ ଆପଣ କହିଲେ ! ଦୁର୍ଯ୍ୟୋଧନ ଭୀମଙ୍କ ବଧ ନିମିତ୍ତ ତ୍ରୟୋଦଶ ବର୍ଷ କାଳ କେବଳ ଏକ ଲୌହମୟ ପୁରୁଷରେ ଗଦା ଯୁଦ୍ଧକୁ ଅଭ୍ୟାସ କରିଥିଲେ । ଅତଏବ ଆମ୍ଭମାନଙ୍କ ଦ୍ୱାରା କାର୍ଯ୍ୟସିଦ୍ଧ ହେବ ବୋଲି କଦାପି ସମ୍ଭବ ହେଉନାହିଁ । ହେ ନୃପବର ! ଆପଣ କେବଳ ଅନୁଗ୍ରହବଶରେ ଏ ପ୍ରକାର ସାହସ ପ୍ରକାଶ କରିଅଛନ୍ତି । ପୃଥାପୁତ୍ର ବୃକୋଦରଙ୍କ ବ୍ୟତିରେକେ ଅନ୍ୟ କେହି ଦୁର୍ଯ୍ୟୋଧନଙ୍କ ସହିତ ପ୍ରତିଯୁଦ୍ଧ କରିବାକୁ ଉପଯୁକ୍ତ ନୁହନ୍ତି । ସେ ମଧ୍ୟ ବିଶେଷ ରୂପେ ଗଦାଯୁଦ୍ଧ ଅଭ୍ୟାସ

କର ନାହାନ୍ତି । ପୂର୍ବେ ଶକୁନି ଓ ଆପଣଙ୍କର ଯେଉଁପରି ବିଷମ ଦ୍ୟୂତ ହୋଇଥିଲା, ଏତେବେଳେ ସେହିପରି ପୁନଶ୍ଚ ବିଷମ କ୍ରୀଡ଼ା ଆରମ୍ଭ ହେଲା ।

ମହାରାଜ ! ଭୀମ ବଳବାନ, ଦୁର୍ଯ୍ୟୋଧନ ଯୁଦ୍ଧପଣ୍ଡିତ ଓ ସମର୍ଥଶାଳୀ; କିନ୍ତୁ ବଳବାନ ଓ ଯୁଦ୍ଧପଣ୍ଡିତଙ୍କ ମଧ୍ୟରେ ଯୁଦ୍ଧବିଶାରଦ ବ୍ୟକ୍ତି ଅଧିକ କ୍ଷମତାଶାଳୀ । ଆପଣ ଏତେବେଳେ ଆମ୍ଭମାନଙ୍କର ସେହି ଶତ୍ରୁକୁ ମଙ୍ଗଳ ପଥରେ ରଖି ଆପଣଙ୍କୁ ବିଷମ ସଙ୍କଟରେ ପକାଇଲେ । ଅତଏବ ଆମ୍ଭେମାନେ ସଙ୍କଟରେ ପଡ଼ିଲୁ । ଶତ୍ରୁଜୟ ଦ୍ୱାରା ଯେଉଁ ରାଜ୍ୟ ପ୍ରାପ୍ତ ହୋଇଥାଏ, ତାହା କି ସେହି ଶତ୍ରୁ ହସ୍ତରେ ପୁନଶ୍ଚ ଅର୍ପିତ ହୁଏ ? ଯେଉଁ ବ୍ୟକ୍ତି ସମରାଙ୍ଗଣରେ ଦୁର୍ଯ୍ୟୋଧନଙ୍କୁ ଜୟ କରିପାରିବ, ଆମ୍ଭେ ତାଦୃଶ ଲୋକଙ୍କୁ ଜନସମାଜ ମଧ୍ୟରେ ଦେଖିନାହୁଁ । ଅନ୍ୟ ବ୍ୟକ୍ତିର କଥା କି କହିବା, ଦୁର୍ଯ୍ୟୋଧନ ଗଦାହସ୍ତ ହେଲେ, ଦେବତାବୃନ୍ଦ ମଧ୍ୟ ତାହାଙ୍କୁ ଜୟ କରିବାକୁ ସମର୍ଥ ହେବେ ନାହିଁ । ୧୨ । ଆପଣ, କି ଭୀମ, କି ନକୁଳ, ସହଦେବ ଅଥବା ଅର୍ଜ୍ଜୁନ କେହି ସୁଦ୍ଧା ନ୍ୟାଯ୍ୟ ଯୁଦ୍ଧରେ, ଯୁଦ୍ଧବିଶାରଦ ସେହି ଦୁର୍ଯ୍ୟୋଧନଙ୍କୁ ଜୟ କରିବାକୁ ସମର୍ଥ ହେବେ ନାହିଁ । ୧୩ । ଅତଏବ ହେ ମହାରାଜ, ଆପଣ ସେହି ଶତ୍ରୁକୁ ଗଦାଯୁଦ୍ଧ କରିବା ନିମିତ୍ତ କାହିଁକି ଆହ୍ୱାନ କଲେ ଓ 'ଆମ୍ଭମାନଙ୍କ ମଧ୍ୟରୁ ଏକ ବ୍ୟକ୍ତିକୁ ସଂହାର କରି ରାଜା ହୁଅ' ଏହିପରି ବାକ୍ୟ ଅବା କି ନିମିତ୍ତ କହିଲେ ? ୧୪ । ନ୍ୟାଯ୍ୟ ଯୁଦ୍ଧରେ ଯୁଦ୍ଧପଣ୍ଡିତ ଦୁର୍ଯ୍ୟୋଧନଙ୍କ ସହିତ ଭୀମସେନ ଯେ ଯୁଦ୍ଧ କରିବାକୁ ସମର୍ଥ ହେବେ, ସେ ବିଷୟରେ ସନ୍ଦେହ ଅଛି । ୧୫ । ଆମ୍ଭ-ମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତିକୁ ତୁମ୍ଭେ ସଂହାର କରି ରାଜା ହୁଅ, ଆପଣ ଏହି ବାକ୍ୟ କହିବାରୁ ଜଣାଗଲା ଯେ, ପାଣ୍ଡୁ ଓ କୁନ୍ତୀଦେବୀଙ୍କ ସନ୍ତାନ-ମାନେ କଦାପି ରାଜ୍ୟ ଭୋଗ କରି ପାରିବେ ନାହିଁ । ବିଧାତା ସେମାନଙ୍କୁ କେବଳ ଚିରକାଳ ବନବାସ ଓ ଭିକ୍ଷାବ୍ରତ ଅବଲମ୍ବନ କରିବା ନିମିତ୍ତ ନିର୍ମାଣ କରିଅଛନ୍ତି ।

ଭୀମସେନ କହିଲେ, ହେ ଯଦୁନନ୍ଦନ ମାଧବ ! ତୁମ୍ଭେ ବିଷଣ୍ଣ ହୁଅନା । ଆମ୍ଭେ ଅଦ୍ୟ ଅତିଶୟ ଦୁର୍ଦ୍ଦମ ଶତ୍ରୁତାକୁ ପାର ହେବୁ । ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କୁ ସଂହାର କରିବୁ ସଂଶୟ ନାହିଁ । ହେ କୃଷ୍ଣ ! ଧର୍ମରାଜଙ୍କର ନିଶ୍ଚୟ ଜୟ ହେବ ବୋଲି ଜଣା ଯାଉଅଛି । ହେ ମାଧବ ! ଆମ୍ଭର ଏହି ଗଦା ଦୁର୍ଯ୍ୟୋଧନଙ୍କ ଗଦା ଅପେକ୍ଷା ଅର୍ଦ୍ଧାଧିକ ଗୁଣରେ

ଗୁରୁତର । ତାହାଙ୍କ ଗଦା କଦାପି ଏପରି ନୁହେଁ । ଅତଏବ ତୁମ୍ଭେ ବ୍ୟଥାଯୁକ୍ତ ହୁଅନା, ଆମ୍ଭେ ଏହି ଗଦାଦ୍ୱାରା ତାହାଙ୍କ ସହିତ ସମର କରିବାକୁ ଉତ୍ସାହିତ ହେଉଅଛୁ । ଆପଣମାନେ ସମସ୍ତେ ଆମ୍ଭର ଯୁଦ୍ଧକୁ ଦେଖନ୍ତୁ । ହେ କୃଷ୍ଣ ! ଦୁର୍ଯ୍ୟୋଧନ ଅଧିକ ନୁହେଁ, ନାନାବିଧ ଶସ୍ତ୍ରଧର ଦେବଗଣ ଓ ତ୍ରିଭୁବନସ୍ଥ ଲୋକମାନଙ୍କ ସଙ୍ଗେ ଆମ୍ଭେ ଯୁଦ୍ଧ କରିବାକୁ ସମର୍ଥ ଅଟୁ ।

ସଞ୍ଜୟ କହିଲେ, ମହାରାଜ ! ବୃକୋଦର ଏହିପରି କହିବାରୁ କୃଷ୍ଣ ତାହାଙ୍କ ବଚନ ଶୁଣି ଆନନ୍ଦିତ ହୋଇ ପ୍ରଶଂସା କରି କହିଲେ, "ହେ ମହାବାହୋ, ଧର୍ମରାଜ ଯୁଧିଷ୍ଠିର ତୁମ୍ଭଙ୍କୁ ଆଶ୍ରୟ କରି ଶତ୍ରୁହୀନ ହୋଇ ନିଜର ପ୍ରଦୀପ୍ତ ରାଜଲକ୍ଷ୍ମୀ ପ୍ରାପ୍ତ ହେବେ ସଂଶୟ ନାହିଁ । ତୁମ୍ଭେ ଏହି ମହାଯୁଦ୍ଧରେ ଧୃତରାଷ୍ଟ୍ରଙ୍କର ସମସ୍ତ ସନ୍ତାନମାନଙ୍କୁ ସଂହାର କରିଅଛ । ଅନେକ ଅନେକ ରାଜା, ରାଜପୁତ୍ର ଓ ଗଜାରୋହୀମାନଙ୍କୁ ନିପାତିତ କରିଅଛ । ହେ ପାଣ୍ଡବ ! କଳିଙ୍ଗ, ମାଗଧ, ପ୍ରାଚ୍ୟ, ଗାନ୍ଧାର ଓ କୌରବଗଣ ତୁମ୍ଭର ମହାଯୁଦ୍ଧରେ ନିହତ ହୋଇଅଛନ୍ତି । ସେହିପରି ସଂପ୍ରତି ଦୁର୍ଯ୍ୟୋଧନଙ୍କୁ ନିହତ କରି ଧର୍ମରାଜଙ୍କୁ ସସାଗରା ପୃଥିବୀ ଦାନ କର । ପୂର୍ବକାଳରେ ବିଷ୍ଣୁ ଯେଉଁପରି ଦାନବଦଳ ଦଳନ କରି ଇନ୍ଦ୍ରଙ୍କୁ ସ୍ୱର୍ଗପୁର ପ୍ରଦାନ କରିଥିଲେ, ପାପାତ୍ମା ଦୁର୍ଯ୍ୟୋଧନ ତୁମ୍ଭ ସଙ୍ଗରେ ଯୁଦ୍ଧ କରି ସେହିପରି ବିନଷ୍ଟ ହେବ । ୨୭ । ତୁମ୍ଭେ ତାହାର ଊରୁଦ୍ୱୟ ଭଗ୍ନି ନିଜର ପ୍ରତିଜ୍ଞା ପାଳନ କରିବ । ହେ ଭୀମ ! ଦୁର୍ଯ୍ୟୋଧନ ଅତି ବଳବାନ୍, ଯୁଦ୍ଧପଣ୍ଡିତ ଓ ସର୍ବଦା ସମରପ୍ରିୟ, ଅତଏବ ଅତି ଯତ୍ନରେ ତାହାଙ୍କ ସହିତ ସମର କରିବ ।

ହେ ମହାରାଜ ! ତତ୍ପରେ ଧର୍ମରାଜ ପ୍ରଭୃତି ପାଣ୍ଡବଗଣ, ସାତ୍ୟକି ଓ ପାଞ୍ଚାଳଗଣ ସମସ୍ତେ ଭୀମସେନଙ୍କ ପୂର୍ବୋକ୍ତ ବାକ୍ୟକୁ ପ୍ରଶଂସା କଲେ । ୩୦ । ଭୟଙ୍କର ବଳଶାଳୀ ଭୀମସେନ ତେତେବେଳେ ସୂର୍ଯ୍ୟଦେବଙ୍କ ସଦୃଶ ପ୍ରତାପଶାଳୀ ଓ ସୃଞ୍ଜୟ ସୈନ୍ୟମାନଙ୍କ ଦ୍ୱାରା ପରି-ବେଷ୍ଟିତ ଯୁଧିଷ୍ଠିରଙ୍କୁ କହିଲେ, ହେ ମହାରାଜ ! ଆମ୍ଭେ ଆଜ ଅନିଷ୍ଟ-କାରକ ଦୁର୍ଯ୍ୟୋଧନଙ୍କ ସହିତ ସମରସ୍ଥଳରେ ସଙ୍ଗତ ହୋଇ ସଂଗ୍ରାମ କରିବାକୁ ଉତ୍ସାହିତ ହେଉଅଛୁ । ସେହି ନରାଧମ ଆମ୍ଭଙ୍କୁ ଯୁଦ୍ଧରେ କଦାପି ପରାଭବ ଦେଇ ପାରିବ ନାହିଁ । ୩୨ । ଧନଞ୍ଜୟ ଖାଣ୍ଡବବନରେ

ଅଗ୍ନିଦେବଙ୍କୁ ବିସର୍ଜନ କଲାପରି ଆମ୍ଭେ ଆଜ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନଙ୍କ ଉପରେ ଆମ୍ଭ ହୃଦୟର ଚିରସଞ୍ଚିତ କ୍ରୋଧକୁ ପରିତ୍ୟାଗ କରିବୁ । ୩୩ । ହେ ରାଜନ୍ ! ଆପଣଙ୍କ ହୃଦୟ ମଧ୍ୟରେ ବହୁକାଳରୁ ଯେଉଁ ଶଲ୍ୟ ପ୍ରଗାଢ଼ ରୂପେ ବିଦ୍ଧ ହୋଇ ରହିଅଛି, ଆମ୍ଭେ ଆଜ ଗଦା-ଘାତଦ୍ୱାରା ଦୁରାତ୍ମା ଦୁର୍ଯ୍ୟୋଧନଙ୍କୁ ସଂହାର କରି ତାହାକୁ ଉଦ୍‌ଗତ କରିବୁ, ଆପଣ ସୁଖୀ ହେଉନ୍ତୁ । ୩୪ । ହେ ନିଷ୍କପଟ ! ଆମ୍ଭେ ଅଦ୍ୟ ଆପଣଙ୍କୁ କୀର୍ତ୍ତିମୟୀ ମାଳା ପରିଧାନ କରାଇବୁ । ଅଦ୍ୟ ଦୁର୍ଯ୍ୟୋଧନ ସାମ୍ରାଜ୍ୟ, ଲକ୍ଷ୍ମୀ ଓ ପ୍ରାଣ ପରିତ୍ୟାଗ କରିବେ । ୩୫ । ରାଜା ଧୃତରାଷ୍ଟ୍ର ଆମ୍ଭଦ୍ୱାରା ତାଙ୍କ ପୁତ୍ର ନିହତ ହେବାର ଶୁଣି ଶକୁନିଙ୍କ ବୁଦ୍ଧିରେ କରୁଥିବା ଅଶୁଭ କାର୍ଯ୍ୟମାନଙ୍କୁ ସ୍ମରଣ କରିବେ । ୩୬ ।

ବୀର୍ଯ୍ୟଶାଳୀ ଭୀମ ଏହି ବାକ୍ୟ କହି ଗଦା ଉତ୍ତୋଳନ କରି, ଇନ୍ଦ୍ରଦେବ ଯେଉଁପରି ବୃତ୍ରାସୁରକୁ ଆହ୍ୱାନ କରିଥିଲେ, ସେହିପରି ଦୁର୍ଯ୍ୟୋଧନଙ୍କୁ ଆହ୍ୱାନ ପୂର୍ବକ ଯୁଦ୍ଧ କରିବା ନିମିତ୍ତ ଉତ୍ଥିତ ହେଲେ । ୩୭ । ହେ ମହାରାଜ ! ଆପଣଙ୍କର ଅତି ବୀର୍ଯ୍ୟଶାଳୀ ପୁତ୍ର ତାହାଙ୍କ ଆହ୍ୱାନକୁ ସହି ନ ପାରି ଯେଉଁପରି ଏକ ମତ୍ତଗଜ ଅନ୍ୟ ମତ୍ତଗଜ ନିକଟକୁ ଧାବିତ ହୁଏ, ତଦ୍‌ବତ୍ ଭୀମସେନଙ୍କ ନିକଟରେ ଉପସ୍ଥିତ ହେଲେ । ୩୮ । ଆପଣଙ୍କ ପୁତ୍ର ଗଦାହସ୍ତ ହୋଇ ସଂଗ୍ରାମ ନିମିତ୍ତ ଉତ୍ଥିତ ହେବାରୁ ପାଣ୍ଡବମାନେ ତାହାଙ୍କୁ ଶୃଙ୍ଗଯୁକ୍ତ କୈଳାସଗିରି ସଦୃଶ ଦେଖିଲେ । ୩୯ । ପାଣ୍ଡବମାନେ ମହାବଳ ପରାକ୍ରାନ୍ତ ଏକାକୀ ଦୁର୍ଯ୍ୟୋଧନଙ୍କୁ ଯୂଥହୀନ ମାତଙ୍ଗ ସଦୃଶ ଅବଲୋକନ କରି ପରମ ଆନନ୍ଦ-ପ୍ରାପ୍ତ ହେଲେ । ୪୦ । ସେତେବେଳେ ଦୁର୍ଯ୍ୟୋଧନଙ୍କ ହୃଦୟରେ ସମ୍ଭ୍ରମ, ଭୟ କି ଗ୍ଲାନି ଅଥବା ବ୍ୟଥା କିଛି ମାତ୍ର ଜାତ ହେଲା ନାହିଁ । ୪୧ ।

ସେତେବେଳେ ଭୀମ ଶୃଙ୍ଗଯୁକ୍ତ କୈଳାସଗିରି ସଦୃଶ ଦଣ୍ଡାୟମାନ ଗଦାଉତ୍ତୋଳନକାରୀ ଦୁର୍ଯ୍ୟୋଧନଙ୍କୁ ଅବଲୋକନ କରି କହିଲେ, ହେ ଦୁର୍ଯ୍ୟୋଧନ ! ରାଜା ଧୃତରାଷ୍ଟ୍ର ଏବଂ ତୁମ୍ଭେ ଆମ୍ଭମାନଙ୍କଠାରେ ଯେଉଁ ଆଚରଣ କରିଥିଲ ଏବଂ ବାରଣାବନ୍ତ ନଗରୀରେ ଯାହା ଘଟିଥିଲା, ସମ୍ପ୍ରତି ସେହି ଦୁଷ୍କୃତ କର୍ମକୁ ସ୍ମରଣ କର । ୪୩ । ହେ ଦୁରାତ୍ମନ୍ ! ସଭା ମଧ୍ୟରେ ରଜସ୍ୱଳା ଦ୍ରୌପଦୀଙ୍କୁ ଯେଉଁ ଅତିଶୟ କ୍ଳେଶ ପ୍ରଦାନ କରିଥିଲ, ଶକୁନିଙ୍କ ପରାମର୍ଶ ଅନୁସାରେ ଅକ୍ଷକ୍ରୀଡ଼ାରେ ଧର୍ମରାଜଙ୍କୁ

ଯାହା ପ୍ରଗସ୍ତ କରିଥିଲ ଓ ବିନାଅପରାଧରେ ପାଣ୍ଡବମାନଙ୍କଠାରେ ଯେଉଁ ଅନ୍ୟାନ୍ୟ ପାପାଚରଣ କରିଥିଲ, ଏତେବେଳେ ସେହି ସମସ୍ତ ପାପର ମହାଫଳକୁ ଦେଖ । ୪୫ । ଆମ୍ଭମାନଙ୍କର ପିତାମହ, ମହାଯଶସ୍ୱୀ ଭରତ କୁଳଶ୍ରେଷ୍ଠ ଭୀଷ୍ମଦେବ ତୁମ୍ଭ ହେତୁରୁ ନିହତ ହୋଇ ଶରଶଯ୍ୟାରେ ଶୟନ କରିଅଛନ୍ତି । ଦ୍ରୋଣାଚାର୍ଯ୍ୟ, କର୍ଣ୍ଣ, ପ୍ରତାପଶାଳୀ ଶଲ୍ୟ ତୁମ୍ଭ ହେତୁରୁ ନିହତ ହୋଇଅଛନ୍ତି ଓ ଏହି ସମସ୍ତ ଶତ୍ରୁତାର ଆଦିକର୍ତ୍ତା ଶକୁନି ତୁମ୍ଭ ହେତୁରୁ ଯୁଦ୍ଧରେ ନିହତ ହୋଇ ଅଛନ୍ତି । ତୁମ୍ଭର ମହାବୀର ସହୋଦର ଓ ପୁତ୍ର, ବନ୍ଧୁ, ସୈନିକମାନଙ୍କ ସହିତ ଯମାଳୟକୁ ଯାଇଅଛନ୍ତି । ଯୁଦ୍ଧରେ ଅପରାଙ୍ମୁଖ ସମସ୍ତ ନରପାଳଗଣ ଓ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ କ୍ଷତ୍ରିୟ-ମାନେ କୃତାନ୍ତ ସଦନରେ ଅତିଥି ହୋଇଅଛନ୍ତି । ଦ୍ରୌପଦୀଙ୍କ କ୍ଲେଶକାରୀ ପାପାତ୍ମା ପ୍ରାତିକାମୀ ମଧ୍ୟ ନିହତ ହୋଇଅଛନ୍ତି । କୁଳଧ୍ୱଂସକାରୀ ନରାଧମ ତୁମ୍ଭେ କେବଳ ଅବଶିଷ୍ଟ ଅଛ । ଆମ୍ଭେ ଅଦ୍ୟ ଏହି ଯୁଦ୍ଧରେ ଗଦାଘାତଦ୍ୱାରା ତୁମ୍ଭଙ୍କୁ ନିପାତିତ କରିବୁ, ସନ୍ଦେହ ନାହିଁ । ୫୦ । ହେ ରାଜନ୍ ! ଆମ୍ଭେ ଅଦ୍ୟ ଯୁଦ୍ଧରେ ତୁମ୍ଭର ସମସ୍ତ ଗର୍ବ, ଉତ୍କୃଷ୍ଟ ରାଜ୍ୟଲାଭର ଆଶା ଓ ପାଣ୍ଡବମାନଙ୍କଠାରେ ଯେଉଁ ସବୁ ଦୁଷ୍କୃତ କରିଥିଲ, ତାହା ଦୂର କରିବୁ । ୫୧ ।

ଦୁର୍ଯ୍ୟୋଧନ କହିଲେ, ହେ ଭୀମ ! ବହୁତ ଆତ୍ମଶ୍ଳାଘା କରିବାରେ ପ୍ରୟୋଜନ କଣ ? ଅଦ୍ୟ ଆମ୍ଭ ସହିତ ସଂଗ୍ରାମ କର । ଏତେବେଳେ ଆମ୍ଭେ ତୁମ୍ଭର ଯୁଦ୍ଧଶ୍ରଦ୍ଧାକୁ ଦୂର କରିବୁ । ୫୨ । ହେ ପାପ ! ଆମ୍ଭେ ହିମାଳୟଗିରିର ଶୃଙ୍ଗ ସଦୃଶ ଉତ୍କୃଷ୍ଟ ଗଦାକୁ ଧାରଣ କରି ଗଦାଯୁଦ୍ଧରେ ଅବସ୍ଥିତ ହୋଇଅଛୁ । ତାହା ତୁମ୍ଭେ କି ଦେଖୁ ନାହିଁ ? ଆମ୍ଭେ ଗଦାଧାରଣ ପୂର୍ବକ ଦଣ୍ଡାୟମାନ ହେଲେ କେଉଁ ଶତ୍ରୁ ଆମ୍ଭଙ୍କୁ ଜୟ କରିବାକୁ ଉତ୍ସାହୀ ହେବ ? ନ୍ୟାୟାନୁସାରେ ଯୁଦ୍ଧ କଲେ ଦେବରାଜ ପୁରନ୍ଦର ମଧ୍ୟ ଆମ୍ଭ ସହିତ ସମର କରିବାକୁ ଅଗ୍ରସର ହୁଅନ୍ତି ନାହିଁ । ୫୪ । ହେ କୁନ୍ତୀପୁତ୍ର ! ତୁମ୍ଭେ ଆଉ ଶରତ୍କାଳୀନ ନିର୍ଜ୍ଜଳ ଜଳଧର ସଦୃଶ ବୃଥା ଗର୍ଜ୍ଜନ କରନା । ତୁମ୍ଭ ଦେହରେ ଯେତେ ବଳ ଅଛି, ତାହା ସବୁ ଆଜି ଯୁଦ୍ଧରେ ପ୍ରକାଶ କର । ୫୫ ।

ହେ ମହାରାଜ ! ବିଜୟାଭିଳାଷୀ ପାଣ୍ଡବ ଓ ସୃଞ୍ଜୟଗଣ ତାହାଙ୍କର ସେହି ବାକ୍ୟ ଶୁଣି ପ୍ରଶଂସା କଲେ । ୫୬ । ମାନବମାନେ ତଳଶବ୍ଦଦ୍ୱାରା

ମତ୍ତଗଜ ସଦୃଶ ଦୁର୍ଯ୍ୟୋଧନଙ୍କୁ ପୁନଶ୍ଚ ଆନନ୍ଦିତ କରାଇଲେ । ୫୭ । ସେତେବେଳେ ସେଠାରେ ଗଜଯୂଥ ବୃଂହିତ ଧ୍ୱନି କଲେ । ଅଶ୍ୱସମୂହ ବାରମ୍ବାର ହ୍ରେଷାରବ କଲେ ଓ ବିଜୟାଭିଳାଷୀ ପାଣ୍ଡବମାନଙ୍କର ଶସ୍ତ୍ରସମୂହ ଅତିଶୟ ପ୍ରଦୀପ୍ତ ହେଲା । ୫୮ ।

---

## ଅଧ୍ୟାୟ—୩୪

ସଞ୍ଜୟ କହିଲେ—ମହାରାଜ ! ସେହି ଅତି ଦାରୁଣ ସଂଗ୍ରାମ ଉପସ୍ଥିତ ହେଲା ଓ ମହାତ୍ମା ପାଣ୍ଡବଗଣ ଉପବିଷ୍ଟ ହେବାରୁ ତାଳଧ୍ୱଜ ହଳାୟୁଧ ବଳରାମ ନିଜ ଶିଷ୍ୟ ଦୁହିଁଙ୍କର ସଂଗ୍ରାମ ହେବା ସମ୍ବାଦ ଶ୍ରବଣ କରି ସେଠାକୁ ଆଗମନ କଲେ । ୨ । କୃଷ୍ଣ ଓ ପାଣ୍ଡବଗଣ ତାହାଙ୍କୁ ଦର୍ଶନ କରି ପରମ ପ୍ରୀତ ହୋଇ ତଦୀୟ ସମୀପକୁ ଗମନ କଲେ ଓ ପାଦ ବନ୍ଦନପୂର୍ବକ ଯଥା ବିଧାନରେ ଅର୍ଚ୍ଚନା କଲେ । ତତ୍ପରେ ସମ୍ବୋଧନ ପୂର୍ବକ କହିଲେ, ହେ ରାମ ! ଏତେବେଳେ ନିଜ ଶିଷ୍ୟ ଦୁହିଁଙ୍କର ସମର-କୌଶଳକୁ ଅବଲୋକନ କରିବା ହେଉନ୍ତୁ । ୪ ।

ହେ ମହାରାଜ ! ତତ୍ପରେ ବଳଦେବ, ପାଣ୍ଡବଗଣ, କୃଷ୍ଣ ଓ ଗଦାହସ୍ତ କୁରୁରାଜ ଦୁର୍ଯ୍ୟୋଧନଙ୍କୁ ଅବସ୍ଥିତ ହୋଇଥିବାର ଅବଲୋକନ କରି କହିଲେ, ଦ୍ୱିଅଧିକ ଚତ୍ୱାରିଂଶତ୍ ଦିବସ ହେଲା ଆମ୍ଭେ ପୁଷ୍ୟା ନକ୍ଷତ୍ରରେ ଯାତ୍ରାରମ୍ଭ କରି ଗୃହରୁ ବାହାରିଥିଲୁ । ଅଦ୍ୟ ଶ୍ରବଣା ନକ୍ଷତ୍ରରେ ଏଠାକୁ ପୁନଶ୍ଚ ପ୍ରତ୍ୟାଗମନ କଲୁ । ହେ ମାଧବ ! ଏତେବେଳେ ଉଭୟ ଶିଷ୍ୟଙ୍କ ଗଦାଯୁଦ୍ଧ ଦେଖିବାକୁ ଅଭିଳାଷ କରୁଅଛୁ ।

ହେ ମହାରାଜ ! ବଳଦେବ ଏହା କହିବାରୁ ଭୀମ ଓ ଦୁର୍ଯ୍ୟୋଧନ ଉଭୟେ ଗଦାହସ୍ତ ହୋଇ ରଣଭୂମିକୁ ଆସି ବିରାଜମାନ ହେଲେ । ତଦନନ୍ତର ରାଜା ଯୁଧିଷ୍ଠିର ବଳଦେବଙ୍କୁ ଆଲିଙ୍ଗନ କରି ଯଥୋଚିତ ସ୍ୱାଗତ ଓ କୁଶଳ ବିଷୟ ପଚାରିଲେ । ପରେ ଯଶସ୍ୱୀ କୃଷ୍ଣ ଓ ଧନଞ୍ଜୟ ବଳଦେବଙ୍କୁ ଅଭିବାଦନ ପୂର୍ବକ ଅତ୍ୟନ୍ତ ପ୍ରୀତିପୂର୍ଣ୍ଣ ଚିତ୍ତରେ ଆଲିଙ୍ଗନ କଲେ । ଏହିପରି ନକୁଳ, ସହଦେବ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ମହାବଳ ବଳଦେବଙ୍କୁ ନମସ୍କାର କରି ଦଣ୍ଡାୟମାନ ହେଲେ । ହେ ନରନାଥ !

ତତ୍ପରେ ଭୀମ ଓ ଦୁର୍ଯ୍ୟୋଧନ ଗଦା ଉତ୍ତୋଳନ ପୂର୍ବକ ବଳରାମଙ୍କୁ ସେହିପରି ପୂଜା କଲେ । ଏହିପରି ସମସ୍ତ ନରପାଳଗଣ ତାହାଙ୍କୁ ସ୍ୱାଗତ ପ୍ରଶ୍ନ ଦ୍ୱାରା ସମ୍ମାନିତ କରି କହିଲେ, ହେ ମହାବାହୋ ! ଆପଣ ସପ୍ରତି ଏହି ଯୁଦ୍ଧକୁ ଅବଲୋକନ କରିବା ହେଉନ୍ତୁ । ଅପରିମିତ ତେଜସ୍ୱୀ ନରପାଳଗଣ ମହାନୁଭବ ରୋହିଣୀପୁତ୍ରଙ୍କୁ ଏହିପରି କହିବାରୁ ସେମାନଙ୍କୁ ଏବଂ ପାଣ୍ଡବ ଓ ସୃଞ୍ଜୟମାନଙ୍କୁ ଆଲିଙ୍ଗନ କରି କୁଶଳ ସମ୍ବାଦ ପଚାରିଲେ । ୧୫ । ସେମାନେ ସମସ୍ତେ ନିକଟକୁ ଆସି ତାହାଙ୍କୁ ଅନାମୟ ପ୍ରଶ୍ନ କଲେ । ହଳାୟୁଧ, ମହାନୁଭବ କ୍ଷତ୍ରିୟମାନଙ୍କୁ ପ୍ରୀତି ପୂଜା କରି ବୟଃକ୍ରମ ଅନୁସାରେ ସମସ୍ତଙ୍କୁ କୁଶଳଯୁକ୍ତ ସମ୍ବର୍ଦ୍ଧନା କଲେ । ଜନାର୍ଦ୍ଦନ ଓ ସାତ୍ୟକଙ୍କୁ ଆଲିଙ୍ଗନ ଓ ଉଭୟଙ୍କର ମସ୍ତକ ଆଘ୍ରାଣ ପୂର୍ବକ କୁଶଳ ବାର୍ତ୍ତା ପଚାରିଲେ । ହେ ମହାରାଜ ! ପୂର୍ବେ ଇନ୍ଦ୍ର ଓ ଉପେନ୍ଦ୍ର ଯେଉଁପରି ଦେବେଶ୍ୱର ବ୍ରହ୍ମାଙ୍କୁ ପୂଜା କରୁଥିଲେ, ତଦ୍‌ବତ୍ ସେହି ଦୁହେଁ ହର୍ଷଯୁକ୍ତ ହୋଇ ସେହି ଗୁରୁଙ୍କୁ ଯଥାବିଧିରେ ପୂଜା କଲେ । ୫ ।

ହେ ମହାରାଜ ! ତତ୍ପରେ ଧର୍ମନନ୍ଦନ ଶତ୍ରୁଦଳନ ରୋହିଣୀପୁତ୍ରଙ୍କୁ ସମ୍ବୋଧନ କରି କହିଲେ, ହେ ରାମ ! ଆମ୍ଭ ଭ୍ରାତୃଗଣ ଦୁହିଁଙ୍କର ଏହି ମହାଯୁଦ୍ଧକୁ ନିରୀକ୍ଷଣ କରିବା ହେଉନ୍ତୁ । ତଦନନ୍ତର ମହାବାହୁ ଶ୍ରୀମାନ ଶ୍ରୀକୃଷ୍ଣଙ୍କ ଅଗ୍ରଜ ବଳଦେବ, ମହାରଥମାନଙ୍କ ଦ୍ୱାରା ପୂଜ୍ୟମାନ ହୋଇ ଅତି ଆହ୍ଲାଦିତ ଚିତ୍ତରେ ଉପବିଷ୍ଟ ହେଲେ । ସେହି ଧବଳକାନ୍ତି ନୀଳାମ୍ବର ନରପାଳବୃନ୍ଦ ମଧ୍ୟରେ ଅବସ୍ଥିତ ହୋଇ ଆକାଶମଣ୍ଡଳରେ ନକ୍ଷତ୍ର ସମୂହ ଦ୍ୱାରା ବେଷ୍ଟିତ ନିଶାକର ପରି ଶୋଭା ପାଇଲେ । ହେ ମହାରାଜ, ତତ୍ପରେ ଭବଦୀୟ ପୁତ୍ର ଦୁହିଁଙ୍କର ଶତ୍ରୁକ୍ଷୟକାରକ ଲୋମହର୍ଷଣ ତୁମୁଳ ଗଦାଯୁଦ୍ଧ ହେଲା ।

---

## ଅଧ୍ୟାୟ—୩୫

ଜନମେଜୟ କହିଲେ—ହେ ବ୍ରହ୍ମନ୍ ! ପ୍ରଥମରେ ଯୁଦ୍ଧ ଉପସ୍ଥିତ ହେଲା ସମୟରେ ବୃଷ୍ଣିମାନଙ୍କ ସହିତ ପ୍ରଭୁଗମନକାରୀ ବଳଦେବ କୃଷ୍ଣଙ୍କୁ ସମ୍ବୋଧନ କରି କହିଥିଲେ, ହେ କେଶବ ! ଆମ୍ଭେ ଦୁର୍ଯ୍ୟୋଧନ ଅଥବା ପାଣ୍ଡବମାନଙ୍କ ମଧ୍ୟରେ କୌଣସି ପକ୍ଷକୁ ସାହାଯ୍ୟ ଦେବୁ ନାହିଁ ! ଇଚ୍ଛା-

ନୁସାରେ ଗମନ କରିବୁ । ବଳରାମ ଏହିପରି କହି ଯଦି ଗମନ କରିଥିଲେ, ତେବେ ସେ ପୁନଶ୍ଚ ଆସିଲେ, ଏହାର କାରଣ କଣ ? ତାହା ପ୍ରକାଶ କରିବାର ଉଚିତ । ହେ ବ୍ରହ୍ମନ୍! ବଳଦେବ ସେଠାରେ କି ନିମିତ୍ତ ଉପସ୍ଥିତ ହେଲେ ଓ କେଉଁ କାରଣରେ ବା ଯୁଦ୍ଧକୁ ନିରୀକ୍ଷଣ କଲେ, ତାହାର ବିବରଣ ବିସ୍ତାରିତ ରୂପେ କହିବା ହେଉନ୍ତୁ । ଅମ୍ଭେ ଜାଣୁ, ଏହି ପ୍ରଶ୍ନର ଉତ୍ତର ଦେବାକୁ ଆପଣ ଉପଯୁକ୍ତ ଅଟନ୍ତି । ୪ । ବୈଶମ୍ପାୟନ କହିଲେ, ହେ ମହାବାହୁ ! ମହାନୁଭବ ପାଣ୍ଡବଗଣ ବିରାଟ ନଗରରେ ଉପବିଷ୍ଟ ହୋଇ-ଥିବା ସମୟରେ ମଧୁସୂଦନ ସନ୍ଧି ସ୍ଥାପନ ଓ ସମସ୍ତ ପ୍ରାଣୀବୃନ୍ଦର ହିତ କାରଣରେ ଧୃତରାଷ୍ଟ୍ରଙ୍କ ସମୀପକୁ ପ୍ରେରିତ ହୋଇଥିଲେ । ସେ ହସ୍ତିନାପୁରକୁ ଯାଇ ଧୃତରାଷ୍ଟ୍ରଙ୍କ ନିକଟରେ ଉପସ୍ଥିତ ହୋଇ ଯେଉଁ ହିତକାରକ ତଥ୍ୟ ବଚନ କହିଥିଲେ, ତାହା ରାଜା ପ୍ରତିପାଳନ କଲେ ନାହିଁ ।

ହେ ମହାରାଜ ! ପୁରୁଶ୍ରେଷ୍ଠ ମହାବାହୁ କୃଷ୍ଣ ସେଠାରେ ଶାନ୍ତି ଲାଭ କରିବାକୁ ଅସମର୍ଥ ହୋଇ ପୁନଶ୍ଚ ବିରାଟ ନଗରକୁ ଆଗମନ କଲେ । ତତ୍ପରେ ସେ ଦୁର୍ଯ୍ୟୋଧନଙ୍କ ନିକଟରୁ ଅକୃତକାର୍ଯ୍ୟ ହୋଇ ପ୍ରତ୍ୟାଗମନ ପୂର୍ବକ ପାଣ୍ଡବମାନଙ୍କୁ କହିଲେ, "କାଳପ୍ରେରିତ କୌରବମାନେ ଆମ୍ଭ ବାକ୍ୟକୁ ପ୍ରତିପାଳନ କଲେ ନାହିଁ । ଅତଏବ ହେ ପାଣ୍ଡବବୃନ୍ଦ ! ତୁମ୍ଭେ-ମାନେ ଆମ୍ଭ ସହିତ ଏହି ପୁଷ୍ୟାନକ୍ଷତ୍ରରେ ଯୁଦ୍ଧ ନିମିତ୍ତ ଯାତ୍ରା କର ।" ସୈନ୍ୟଗଣ କୃଷ୍ଣଙ୍କର ଏହିପରି ବାକ୍ୟରେ ବିଭକ୍ତ ହେବାରୁ ପ୍ରଶାନ୍ତଚେତା ବଳଶ୍ରେଷ୍ଠ ରୋହିଣୀପୁତ୍ର ଭ୍ରାତା କୃଷ୍ଣଙ୍କୁ କହିଲେ, "ହେ ମଧୁସୂଦନ ! ତୁମ୍ଭେ କୌରବମାନଙ୍କର ମଧ୍ୟ ସାଧ୍ୟାନୁସାରେ କାର୍ଯ୍ୟ କର, କିନ୍ତୁ କୃଷ୍ଣ ତାହାଙ୍କର ବଚନକୁ ପ୍ରତିପାଳନ କଲେ ନାହିଁ । ୧୨ । ସେହି ହେତୁରୁ ଯଦୁନନ୍ଦନ ବଳଦେବ ଅତି ରୁଷ୍ଟ ହୋଇ ସରସ୍ୱତୀ ଯାତ୍ରା କଲେ । ୧୩ । ତତ୍ପରେ ଭୋଜବଂଶୀୟ କୃତବର୍ମା ଯାଦବମାନଙ୍କ ସହିତ ଅନୁରାଧା ନକ୍ଷତ୍ରରେ ଶତ୍ରୁଦଳନ ଦୁର୍ଯ୍ୟୋଧନଙ୍କୁ ଆଶ୍ରୟ ଦେଲେ । ୧୪ । ବାସୁଦେବ ଓ ଯୁଯୁଧାନ ପାଣ୍ଡବମାନଙ୍କ ସମୀପକୁ ଆଗତ ହେଲେ । ଶୂରବର ବଳଦେବ ପୁଷ୍ୟାନକ୍ଷତ୍ରରେ ଯାତ୍ରା କରନ୍ତେ ମଧୁସୂଦନ ପାଣ୍ଡବମାନଙ୍କୁ ଅଗ୍ରସର କରାଇ କୌରବମାନଙ୍କ ସମ୍ମୁଖକୁ ଯାତ୍ରା କଲେ ।

ତଦନନ୍ତର ବଳରାମ ମାର୍ଗରେ ଯାଉଁ ଯାଉଁ ଦୂତମାନଙ୍କୁ କହିଲେ, ହେ ଦୂତବୃନ୍ଦ ! ତୀର୍ଥଯାତ୍ରାର ସମ୍ଭାର ଓ ସମସ୍ତ ଉପକରଣ ଦ୍ରବ୍ୟ ଏବଂ

ଦ୍ୱାରକାରେ ଯେଉଁ ସବୁ ଅଗ୍ନିହୋତ୍ରୀ ଯାଜକ ବ୍ରାହ୍ମଣ ଅଛନ୍ତି, ସେମାନଙ୍କୁ ଆଣ ଓ ସୁବର୍ଣ୍ଣ, ରଜତ, ଧେନୁ, ଅଶ୍ୱ, ବସନ, ରଥ, ଗଜ, ଖରବାହନ, ଉଷ୍ଟ୍ରଶକଟ ଓ ତୀର୍ଥ ନିମିତ୍ତ ଯେଉଁ ପରିଚ୍ଛଦ ଉପଯୁକ୍ତ ହେବ, ତାହା ସବୁ ଅବଲମ୍ବରେ ସରସ୍ୱତୀ ତୀର୍ଥକୁ ଆଣିବା ନିମିତ୍ତ ଶୀଘ୍ର ଯାଅ ଓ ଏହିମାନଙ୍କ ସଙ୍ଗେ ଶତ ଶତ ଋତ୍ୱିକ ବ୍ରାହ୍ମଣମାନଙ୍କୁ ଆଣ । ମହାବଳ ବଳଦେବ ଅନୁଚରମାନଙ୍କୁ ଏହିପରି ଆଦେଶ ଦେଇ କୌରବମାନଙ୍କ ସଂଗ୍ରାମ ସମୟରେ ତୀର୍ଥଯାତ୍ରା ନିମିତ୍ତ ଗମନ କଲେ । ସେ ସୁହୃଦଗଣ, ଋତ୍ୱିକ ବ୍ରାହ୍ମଣ ଓ ଅନ୍ୟାନ୍ୟ ଦ୍ୱିଜଶ୍ରେଷ୍ଠମାନଙ୍କ ସହିତ କ୍ରମେ କ୍ରମେ ସରସ୍ୱତୀ ତୀର୍ଥର ପ୍ରତିସ୍ରୋତକୁ ଗମନ କଲେ ଓ ଗୋ, ଅଶ୍ୱ, ଗଜ, ରଥ, ଓ ଖର ଉଷ୍ଟ୍ରଯୋଜିତ ଯାନରେ ଅନେକାନେକ ଅନୁଚରଣଗଣ ତାହାଙ୍କୁ ଚତୁର୍ଦ୍ଦିଗରେ ପରିବେଷ୍ଟନ ପୂର୍ବକ ଗମନ କଲେ । ହେ ମହାରାଜ ! ସେ ପ୍ରତି ଦେଶରେ ଶ୍ରାନ୍ତ, କ୍ଲାନ୍ତ, ଶିଶୁ ଓ ଅତିବୃଦ୍ଧ ଯାଜକମାନଙ୍କ ପୂଜା ନିମିତ୍ତ ବିବିଧ ଦେୟ ଦ୍ରବ୍ୟ ଆହରଣ କଲେ । ୨୮ । ହେ ରାଜନ୍ ! ଯେଉଁ ସ୍ଥାନରେ ଯେଉଁ ବ୍ରାହ୍ମଣ ଯେଉଁ ଦ୍ରବ୍ୟ ଭୋଜନ କରିବାକୁ ଇଚ୍ଛା-କରନ୍ତି, ତାହାଙ୍କ ଅନୁଚରମାନେ ସେହି ସ୍ଥାନରେ ତାହାଙ୍କ ନିମିତ୍ତ ସେହି ଭୋଜ୍ୟବସ୍ତୁ ଆହରଣ କରିଦିଅନ୍ତି ।

ହେ ନୃପବର ! ତତ୍ରସ୍ଥ ବ୍ୟକ୍ତିଗଣ ବଳଦେବଙ୍କ ଶାସନବଶରେ ସେହି ସମୟରେ ସେଠାକୁ ଚତୁର୍ଦ୍ଦିଗରୁ ରାଶି ରାଶି ଭକ୍ଷ୍ୟ ଓ ସୁଖାଭିଳାଷୀ ଦ୍ୱିଜବର୍ଗଙ୍କ ସମ୍ମାନ ନିମିତ୍ତ ମହାମୂଲ୍ୟ ବସ୍ତ୍ର, ଶଯ୍ୟା ଓ ପର୍ଯ୍ୟଙ୍କସମୂହ ସୁସଜ୍ଜିତ କରି ଦେଉଥିଲେ । ହେ ଭାରତ ! ଯେଉଁ ବିପ୍ର ଅଥବା ଯେଉଁ କ୍ଷତ୍ରିୟ ଯେଉଁ ସ୍ଥାନରେ ଯାହା କାମନା କରନ୍ତି, ସେହି ସ୍ଥାନରେ ତାହା ସବୁ ସୁସଜ୍ଜିତ ଓ ପ୍ରସ୍ତୁତ ହୋଇଥିବାର ଦେଖନ୍ତି । ୨୯ । ଫଳତଃ ସମସ୍ତେ ଯଥାସୁଖରେ ଗମନ ଓ ଅବସ୍ଥିତି କରୁଥିଲେ । ତେତେବେଳେ ବଳଦେବଙ୍କ ଅନୁଚରଗଣ ଗମନେଚ୍ଛୁ ବ୍ୟକ୍ତିମାନଙ୍କ ନିମିତ୍ତ ଯାନ, ତୃଷାର୍ତ୍ତମାନଙ୍କ ନିମିତ୍ତ ସୁସ୍ୱାଦୁ ସୁଖାଦ୍ୟସମୂହ ଓ ବସ୍ତ୍ରାଭରଣମାନ ଆହରଣ ପୂର୍ବକ ପ୍ରଦାନ କରୁଥିଲେ । ୩୧ । ହେ ମହାରାଜ ! ଯେଉଁ ସମସ୍ତ ଲୋକେ ଗମନ କରୁଥିଲେ, ସେମାନଙ୍କ ପକ୍ଷରେ ସେହି ପଥ ସ୍ୱର୍ଗ ସମାନ ସୁଖାବହ ହୋଇଥିଲା । ସେହି ପଥ ନାନାବିଧ ଲୋକରେ ପରିପୂର୍ଣ୍ଣ ବିପଣି ଓ ଆପଣିସ୍ଥିତ ପଣ୍ୟଦ୍ରବ୍ୟ ଦ୍ୱାରା ପରିବୃତ ଓ ସୁସ୍ୱାଦୁ ଭକ୍ଷ୍ୟଦ୍ରବ୍ୟ ସମୂହରେ ସଂଯୁକ୍ତ, ବିବିଧତରୁ ନିକରରେ ବିରାଜିତ ଏବଂ ନାନାରତ୍ନରେ ବିଭୂଷିତ

ହୋଇଥିବାରୁ ସମସ୍ତେ ଆନନ୍ଦିତ ହୋଇ ତହିଁରେ ଗମନ କରିବାକୁ ଅଭିଳାଷୀ ହେଉଥିଲେ । ୩୩ ।

ହେ ମହାରାଜ ! ତଦନନ୍ତର କ୍ରମରେ ସ୍ଥିରବୁଦ୍ଧି ଯଦୁପ୍ରବୀର ମହାତ୍ମା ବଳଦେବ ବିବିଧ ପୁଣ୍ୟତୀର୍ଥ ସମୂହରେ ବ୍ରାହ୍ମଣମାନଙ୍କୁ ଯଜ୍ଞ ଦକ୍ଷିଣା ସ୍ୱରୂପ ଧନ ଓ ସୁବର୍ଣ୍ଣ, ବିଧଶୃଙ୍ଗୀ ଦୁଗ୍ଧବତୀ ସବତ୍ସା ଧେନୁ, ନାନାବିଧ ଦେଶ ଓ ଜାତିର ଅଶ୍ୱବୃନ୍ଦ, ଉତ୍ତମ ଯାନସମୂହ ଓ ଦାସଜନକର ପ୍ରଦାନ କଲେ; ପୁନଶ୍ଚ ଏହିପରି ମଣିମୁକ୍ତା, ପ୍ରବାଳ, ରତ୍ନ, ବିଶୁଦ୍ଧ ସୁବର୍ଣ୍ଣ, ବିଶୁଦ୍ଧ ରଜତ ଏବଂ ଲୌହମୟ ଓ ତାମ୍ରମୟ ଭାଣ୍ଡସମୂହ ପ୍ରଧାନ ପ୍ରଧାନ ବ୍ରାହ୍ମଣମାନଙ୍କୁ ଦାନ କଲେ । ୩୬ । ହେ ମହାରାଜ ! ଅପ୍ରତିମ ପ୍ରଭାବଶାଳୀ ଉଦାରବୃତ୍ତି ସେହି ମହାତ୍ମା ବଳଦେବ ଏହିପରି ସରସ୍ୱତୀ ତୀର୍ଥମାନଙ୍କରେ ଭୂରି ଭୂରି ଧନ ଦାନ କଲେ ଓ କ୍ରମେ କ୍ରମେ କୁରୁକ୍ଷେତ୍ରକୁ ଗଲେ । ୩୭ ।

ଜନ୍ମେଜୟ କହିଲେ, ହେ ବିପ୍ରବର ! ସରସ୍ୱତୀ ତୀର୍ଥ ସମୂହର କିପରି ଗୁଣ ଓ ଉତ୍ପତ୍ତି, ତାହାଦ୍ୱାରା କେଉଁ ଫଳ ଲବ୍ଧ ହୁଏ ଓ ତୀର୍ଥ-ଯାତ୍ରାର ବିଧି କିପରି ଅଟେ, ତାହା ସବୁ ଆମ୍ଭଙ୍କୁ କହିବା ହେଉନ୍ତୁ । ୩୮ । ହେ ବ୍ରହ୍ମଜ୍ଞାନୀ ଶ୍ରେଷ୍ଠ ! ଭଗବାନ ବ୍ରହ୍ମନ୍ ! ସମସ୍ତ ତୀର୍ଥର ଆନୁପୂର୍ବିକ ବୃତ୍ତାନ୍ତ ଯଥାକ୍ରମରେ ବର୍ଣ୍ଣନା କରିବା ହେଉନ୍ତୁ । ତାହା ଶ୍ରବଣ କରିବାକୁ ଆମ୍ଭର ଅତିଶୟ କୌତୁହଳ ଜନ୍ମିଅଛି ।

ବୈଶମ୍ପାୟନ କହିଲେ, ହେ ରାଜେନ୍ଦ୍ର ! ସକଳ ତୀର୍ଥର ବିବରଣ ଓ ସର୍ବପ୍ରକାର ପୁଣ୍ୟ ଉତ୍ପତ୍ତି ବିଷୟ ସବୁ ଯଥାକ୍ରମେ ବିସ୍ତୀର୍ଣ୍ଣ ରୂପେ କୀର୍ତ୍ତନ କରୁଅଛୁ । ଆପଣ ସେହି ପବିତ୍ର କଥାମାନଙ୍କୁ ଶୁଣିବା ହେଉନ୍ତୁ । ୪୦ । ହେ ମହାରାଜ ! ଯଦୁପ୍ରବୀର ବଳଦେବ ପ୍ରଥମରେ ଋତ୍ୱିକ ବ୍ରାହ୍ମଣ ଓ ସୁହୃଜ୍ଜନମାନଙ୍କ ସମଭିବ୍ୟାହାରରେ ପବିତ୍ର ପ୍ରଭାସ ତୀର୍ଥକୁ ଗମନ କରିଥିଲେ । ନକ୍ଷତ୍ରପତି ଚନ୍ଦ୍ର ଯକ୍ଷ୍ମା ରୋଗରେ କ୍ଳିଷ୍ଟ ହୋଇ ସେହି ସ୍ଥାନରେ ତପସ୍ୟା କରିଥିବାରୁ ଶାପରୁ ମୁକ୍ତ ହୋଇଥିଲେ । ପୁନଶ୍ଚ ସ୍ୱକୀୟ ନିର୍ମଳ ତେଜୋରାଶି ପ୍ରାପ୍ତ ହୋଇ ସମୁଦାୟ ଭୁବନମଣ୍ଡଳକୁ ପ୍ରଭାବିତ କରିଥିଲେ । ଚନ୍ଦ୍ରମା ସେହି ସ୍ଥାନରେ ପ୍ରଭାଯୁକ୍ତ ହୋଇଥିବାରୁ ସେହି ଦିନଠାରୁ ସେହି ତୀର୍ଥର ନାମ ପ୍ରଭାସ ବୋଲି ପୃଥିବୀରେ ଖ୍ୟାତ ହୋଇ-ଅଛି । ୪୨ ।

ଜନ୍ମେଜୟ କହିଲେ, ହେ ମହର୍ଷେ ! ଭଗବାନ ଚନ୍ଦ୍ର କେଉଁ କାରଣରୁ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲେ, କେଉଁ ପ୍ରକାରରେ ତୀର୍ଥ-ଶ୍ରେଷ୍ଠରେ ନିମଗ୍ନ ହେଲେ ଏବଂ କପରି ଅବା ତହିଁରେ ସ୍ନାନ କରି ପୁନଶ୍ଚ ଆପ୍ୟାୟିତ ହେଲେ, ସେହି ସମସ୍ତ ବୃତ୍ତାନ୍ତ ବିସ୍ତାର ରୂପେ କହିବା ହେଉନ୍ତୁ । ୪୪ ।

ବୈଶମ୍ପାୟନ କହିଲେ, ହେ ମହାରାଜ ! ଦକ୍ଷପ୍ରଜାପତିମାନଙ୍କର ଯେଉଁ ସପ୍ତବିଂଶତି କନ୍ୟା ଜନ୍ମିଥିଲେ, ସେମାନଙ୍କୁ ଭଗବାନ ଚନ୍ଦ୍ରଙ୍କୁ ପ୍ରଦାନ କରିଥିଲେ । ୪୫ । ଚନ୍ଦ୍ରଙ୍କର ସେହି ପତ୍ନୀମାନେ ଶୁଭ କର୍ମ-ମାନଙ୍କୁ ପ୍ରକାଶ କରିବା ହେତୁରୁ ନକ୍ଷତ୍ର ଉପାଧିପ୍ରାପ୍ତ ହୋଇ-ଥିଲେ । ୪୬ । ସେହି ବିଶାଳନୟନା ସମସ୍ତ କନ୍ୟାମାନେ ରୂପଲାବଣ୍ୟରେ ପୃଥିବୀ ମଧ୍ୟରେ ଅନୁପମା ଥିଲେ ସତ, ତଥାପି ସେହିମାନଙ୍କ ମଧ୍ୟରେ ରୋହିଣୀ ନାମ୍ନୀ କନ୍ୟା ସ୍ୱକୀୟ ରୂପ ସୌଭାଗ୍ୟରେ ସମସ୍ତଙ୍କ ରୂପ-ଲାବଣ୍ୟକୁ ତିରସ୍କାର କରୁଥିଲେ । ସେହି କାରଣରୁ ଭଗବାନ ଚନ୍ଦ୍ର ତାହାଙ୍କଠାରେ ଅଧିକ ପ୍ରୀତି ପ୍ରକାଶ କରୁଥିଲେ । ସେ ଅଧିକ ମନୋ-ହାରିଣୀ ହେବାରୁ ଚନ୍ଦ୍ରମା ତାହାଙ୍କଠାରେ କ୍ରୀଡ଼ାସକ୍ତ ହୋଇ ସର୍ବଦା ତହିଁର ନିକଟରେ ବସତି କରୁଥିଲେ । ଅତଏବ ଅନ୍ୟ ପତ୍ନୀମାନେ କୁପିତା ହୋଇ ଦକ୍ଷ ପ୍ରଜାପତିଙ୍କ ନିକଟକୁ ଯାଇ କହିଲେ, ହେ ତାତ ! ପ୍ରଜେଶ୍ୱର ! ଶଶଧର ଆମ୍ଭମାନଙ୍କଠାରେ ଅନୁକୂଳ ନ ହୋଇ ସର୍ବଦା ରୋହିଣୀଙ୍କଠାରେ ପ୍ରୀତିପ୍ରକାଶ କରନ୍ତି । ଅତଏବ ଆମ୍ଭେମାନେ ସମସ୍ତେ ଏକତ୍ରିତ ହୋଇ ଆପଣଙ୍କ ନିକଟରେ ନିରାହାରରେ ରହି ତପସ୍ୟା କରିବୁ । ୫୧ । ଦକ୍ଷ ପ୍ରଜାପତି କନ୍ୟାମାନଙ୍କର ଏହି ବାକ୍ୟ ଶ୍ରବଣ କରି ଚନ୍ଦ୍ରଙ୍କୁ ଆହ୍ୱାନ ପୂର୍ବକ କହିଲେ, ହେ ବତ୍ସ ! ତୁମ୍ଭେ ସମସ୍ତ ପତ୍ନୀମାନଙ୍କୁ ସମାନ ଭାବରେ ସ୍ନେହ କର; ଯେଉଁପରି ମହାନ୍ ଅଧର୍ମ ତୁମ୍ଭ ଶରୀରକୁ ସ୍ପର୍ଶ ନ କରିବ, ସେହିପରି ଆଚରଣ କର । ୫୨ ।

ପ୍ରଜାପତି ନିଶାପତିଙ୍କୁ ଏହିପରି ଆଦେଶ କରି କନ୍ୟାମାନଙ୍କୁ କହିଲେ, ହେ କୁମାରୀଗଣ ! ତୁମ୍ଭେମାନେ ସମସ୍ତେ ଚନ୍ଦ୍ରଙ୍କ ନିକଟକୁ ଗମନ କର ! ସେ ଆମ୍ଭ ଶାସନରେ ତୁମ୍ଭ ସମସ୍ତଙ୍କଠାରେ ସମଭାବରେ ପ୍ରୀତି ପ୍ରକାଶ କରିବେ । ୫୩ । ହେ ମହାରାଜ ! ଦକ୍ଷକନ୍ୟାମାନେ ପିତାଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଚନ୍ଦ୍ରଙ୍କ ଗୃହକୁ ଗମନ କଲେ । ତଥାପି

ଭଗବାନ ଚନ୍ଦ୍ର ସେହି ରୋହିଣୀଙ୍କଠାରେ ପୂର୍ବବତ୍ ପ୍ରୀତିଯୁକ୍ତ ହୋଇ ତାହାଙ୍କ ନିକଟରେ ପ୍ରତିକ୍ଷଣରେ ବସତି କଲେ । ତତ୍ପରେ ସମସ୍ତ ଦକ୍ଷକନ୍ୟାଗଣ ପୁନଶ୍ଚ ଏକତ୍ରିତ ହୋଇ ପିତାଙ୍କ ନିକଟକୁ ଯାଇ କହିଲେ, ହେ ତାତ ! ଚନ୍ଦ୍ର ଆପଣଙ୍କ ବାକ୍ୟ ରକ୍ଷାକଲେ ନାହିଁ ଓ ଆମ୍ଭମାନଙ୍କଠାରେ ପ୍ରୀତି ପ୍ରକାଶ କଲେ ନାହିଁ । ସୁତରାଂ ଆମ୍ଭେମାନେ ଅଦ୍ୟାବଧି ଆପଣଙ୍କ ସେବାରେ ନିଯୁକ୍ତ ହୋଇ ଭବଦୀୟ ସନ୍ନିଧିରେ ବାସ କରିବୁ । ୫୬ । ତତ୍ପରେ ଦକ୍ଷ ସେମାନଙ୍କ ବାକ୍ୟ ଶ୍ରବଣ କରି ପୁନଶ୍ଚ ଶଶଧରଙ୍କୁ କହିଲେ, ହେ ଚନ୍ଦ୍ର ! ନିଜ ଭାର୍ଯ୍ୟାମାନଙ୍କଠାରେ ତୁମ୍ଭେ ସମାନ ଭାବରେ ପ୍ରୀତିପ୍ରକାଶ କର; ନଚେତ୍ ଆମ୍ଭେ ତୁମ୍ଭଙ୍କୁ ଅଭିଶାପ ପ୍ରଦାନ କରିବୁ । ଅତଏବ ତୁମ୍ଭେ ଯେପରି ଆମ୍ଭର ଶାପଗ୍ରସ୍ତ ନ ହେବ, ସେହି ଅନୁସାରେ ଯତ୍ନଶୀଳ ହୁଅ । ୫୭ ।

ଭଗବାନ୍ ନିଶାପତି ପ୍ରଜାପତିଙ୍କର ସେହି ବାକ୍ୟକୁ ଅନାଦର କରି ପୂର୍ବବତ୍ ପୁନଶ୍ଚ ରୋହିଣୀଙ୍କ ନିକଟରେ ସର୍ବଦା ବସତି କଲେ । ସେହି କାରଣରୁ ପ୍ରଜାପତିଙ୍କ ଅନ୍ୟ କନ୍ୟାମାନେ କୋପପ୍ରକାଶ ପୂର୍ବକ ପୁନଶ୍ଚ ପିତାଙ୍କ ନିକଟକୁ ଗମନ କରି ନତମସ୍ତକରେ ପ୍ରଣିପାତ କରି କହିଲେ, ହେ ତାତ ! ସୁଧାକର ଆମ୍ଭମାନଙ୍କଠାରେ କଦାପି ପ୍ରସନ୍ନ ହେଲେ ନାହିଁ । ଅତଏବ ଆମ୍ଭେମାନେ ଆପଣଙ୍କ ଶରଣାଗତ ହେଲୁଁ । ଆପଣ ଏତେବେଳେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଭଗବାନ୍ ଚନ୍ଦ୍ର ସର୍ବଦା ରୋହିଣୀଙ୍କଠାରେ ପ୍ରୀତି ପ୍ରକାଶ କରନ୍ତି । ଥରେ ସୁଦ୍ଧା ଆପଣଙ୍କ ବାକ୍ୟକୁ ରକ୍ଷା କଲେ ନାହିଁ ଏବଂ ଆମ୍ଭମାନଙ୍କଠାରେ କିଞ୍ଚିନ୍ମାତ୍ର ସ୍ନେହ ପ୍ରକାଶ କଲେ ନାହିଁ । ଅତଏବ ଚନ୍ଦ୍ର ଯେଉଁ ଉପାୟରେ ଆମ୍ଭମାନଙ୍କଠାରେ ଅନୁକୂଳ ହେବେ, ଆପଣ ତାହା ସ୍ଥିରକରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ହେ ମହାରାଜ ! ଭଗବାନ ପ୍ରଜାପତି କନ୍ୟାମାନଙ୍କର ଏତାଦୃଶ ବିଷାଦଯୁକ୍ତ କାତର ବଚନ ଶୁଣି କ୍ରୋଧାକ୍ରାନ୍ତ ହେଲେ ଓ ରୋଷବଶରେ ଚନ୍ଦ୍ରଙ୍କୁ ଯକ୍ଷ୍ମାରୋଗଗ୍ରସ୍ତ ହେବାକୁ ଅଭିଶାପ ଦେଲେ । ଯକ୍ଷ୍ମାରୋଗ ଦକ୍ଷ-ପ୍ରଜାପତିଙ୍କଦ୍ୱାରା ସୃଷ୍ଟ ହେଲା ମାତ୍ରେ କଳାନିଧିଙ୍କ କଳେବରରେ ପ୍ରବିଷ୍ଟ ହେଲେ । ଚନ୍ଦ୍ରମା ସେହି ଯକ୍ଷ୍ମାରୋଗରେ ଆକ୍ରାନ୍ତ ଓ ପରାସ୍ତ ହୋଇ ଦିନକୁ ଦିନ କ୍ଷୀଣ ହେଲେ ଓ ସେ ଦାରୁଣ ରୋଗରୁ ମୁକ୍ତ ହେବା ନିମିତ୍ତ ବିବିଧ ଯତ୍ନ କଲେ । ହେ ମହାରାଜ ! ନିଶାକର ନାନାବିଧ ଯଜ୍ଞର ଅନୁଷ୍ଠାନ କରି

କଦାପି ସେହି ରୋଗରୁ ମୁକ୍ତ ହୋଇ ପାରିଲେ ନାହିଁ । ଚନ୍ଦ୍ର କ୍ଷୀଣ ହେବାରୁ ସର୍ବସ ଔଷଧି ସମୂହ ଜନ୍ମିଲେ ନାହିଁ । ଯେଉଁ ଔଷଧିମାନ ଥିଲେ, ସେମାନଙ୍କର ରସ ସ୍ୱାଦଶୂନ୍ୟ ହେଲା ଓ ନିର୍ବୀର୍ଯ୍ୟ ହେଲା । ସର୍ବପ୍ରକାର ଔଷଧି କ୍ଷୟ ହେବାରୁ ଜୀବକୁଳର ମଧ୍ୟ କ୍ଷୟ ହେଲା । ନିଶାକର କ୍ଷୟପ୍ରାପ୍ତ ହେବାରୁ ପ୍ରଜାଗଣ ମଧ୍ୟ ନିତାନ୍ତ କୃଶ ହେଲେ ।

ହେ ମହାରାଜ ! ତଦନନ୍ତର ଅମରଗଣ ଏକତ୍ରିତ ହୋଇ ଶଶଧରଙ୍କ ନିକଟକୁ ଯାଇ ତାହାଙ୍କୁ ସମ୍ବୋଧନ କରି କହିଲେ, ହେ ଓଷଧୀଷ ! ତୁମ୍ଭର ଏପରି ରୂପ ହେବାର କାରଣ କି ? କେଉଁ ହେତୁରୁ ଏହି ମହାଭୟ ଉପସ୍ଥିତ ହେଲା, ତାହା ସବୁ ଆମ୍ଭମାନଙ୍କୁ କହ । ତୁମ୍ଭର ମୁଖରୁ ସମସ୍ତ ବିବରଣ ଶୁଣି ଭୟ ନିବାରଣ ନିମିତ୍ତ ପ୍ରତିବିଧାନ କରିବୁ । ୭୭ । ଶଶଧର ସେମାନଙ୍କର ଏତାଦୃଶ ବାକ୍ୟ ଶୁଣି ଶାପର କାରଣ ଓ ଯକ୍ଷ୍ମା ରୋଗର ବିବରଣ ସବୁ କହିଲେ । ସୁରଗଣ ଚନ୍ଦ୍ରଙ୍କର ତାଦୃଶ ବିବରଣ ଶ୍ରବଣ କରି ଦକ୍ଷ ପ୍ରଜାପତିଙ୍କ ନିକଟକୁ ଯାଇ କହିଲେ, ଭଗବାନ ! ଆପଣ ଚନ୍ଦ୍ରଙ୍କଠାରେ ପ୍ରସନ୍ନ ହୋଇ ତାହାଙ୍କୁ ଶାପରୁ ମୁକ୍ତ କରିବା ହେଉନ୍ତୁ । ଚନ୍ଦ୍ର ଅତ୍ୟନ୍ତ କ୍ଷୀଣ ହେବାରୁ ତାହାଙ୍କ ଦେହରେ ଅଳ୍ପ ମାତ୍ର ଅବଶେଷ ଭାଗ ଲକ୍ଷିତ ହେଉଅଛି । ସେ କ୍ଷୟପ୍ରାପ୍ତ ହେବାରୁ ପ୍ରଜାବୃନ୍ଦ ମଧ୍ୟ କ୍ଷୀଣ ହେଉଅଛନ୍ତି । ବିବିଧ ଔଷଧିଲତା ଓ ବୀଜସମୂହ କ୍ଷୟପ୍ରାପ୍ତ ହେଉଅଛନ୍ତି । ସେମାନଙ୍କର କ୍ଷୟ ହେବାରୁ ଆମ୍ଭମାନଙ୍କର କ୍ଷୟ ଦଶା ଉପସ୍ଥିତ ହୋଇଅଛି । ଆମ୍ଭମାନଙ୍କର ଯଦି କ୍ଷୟ ହେବ, ତେବେ ସଂସାରରେ କେଉଁ ପ୍ରୟୋଜନ ଅଛି ? ଅତଏବ ହେ ଲୋକଗୁରୋ ! ଆପଣ ଏହି ସମସ୍ତ ବିଷୟ ଉତ୍ତମ ରୂପେ ବିବେଚନା କରି ପ୍ରସନ୍ନ ହେଉନ୍ତୁ । ୭୨ ।

ଦକ୍ଷ ପ୍ରଜାପତି ସୁରଗଣଙ୍କର ଏତାଦୃଶ ବାକ୍ୟ ଶୁଣି ସେମାନଙ୍କୁ ସମ୍ବୋଧନ କରି କହିଲେ, ହେ ମହାଭାଗଗଣ ! ଆମ୍ଭେ ପୂର୍ବେ ଯାହା କହିଅଛୁ, ଏତେବେଳେ ତାହା ଅନ୍ୟଥା କରିବାକୁ ଆମ୍ଭର ଶକ୍ତି ନାହିଁ । ଶଶଧର ସର୍ବଦା ସମସ୍ତ ପତ୍ନୀମାନଙ୍କ ଠାରେ ସମାନ ଭାବରେ ପ୍ରୀତି ପ୍ରକାଶ କରନ୍ତୁ, ତା ହେଲେ ସେ କୌଣସି କାରଣ ଦ୍ୱାରା ଶାପମୁକ୍ତ ହୋଇ ପାରିବେ । ୭୪ । ହେ ଦେବଗଣ ! ଶଶଧର ସରସ୍ୱତୀର ପବିତ୍ର ତୀର୍ଥରେ ଅବଗାହନ କରନ୍ତୁ । ତା ହେଲେ ସେ ପୁନଶ୍ଚ ବର୍ଦ୍ଧନଶୀଳ ହେବେ, କିନ୍ତୁ

ତତ୍ପରେ ଚନ୍ଦ୍ର ଅର୍ଦ୍ଧମାସ ପର୍ଯ୍ୟନ୍ତ ପ୍ରତିଦିନ ବର୍ଦ୍ଧିତ ହେଉଥିବେ, ଏହା ଆମ୍ଭର ସତ୍ୟ ବାକ୍ୟ ଅଟେ । ୭୬ । ସେ ସରସ୍ୱତୀଙ୍କର ସାଗର ସଙ୍ଗମସ୍ଥଳ ପଶ୍ଚିମ ସମୁଦ୍ରକୁ ଯାଇ ପରମଦେବ ଶିବଙ୍କୁ ଆରାଧନା କରନ୍ତୁ, ତା ହେଲେ ପୂର୍ବପରି କାନ୍ତି ଲାଭ କରିବେ । ୭୭ ।

ମହାରାଜ ! ଚନ୍ଦ୍ର ପ୍ରଜାପତିଙ୍କ ଶାସନବଶରୁ ସରସ୍ୱତୀ ତୀର୍ଥକୁ ଗମନ କଲେ । ସେ ପ୍ରଥମେ ସରସ୍ୱତୀଙ୍କର ପ୍ରଭାସ ନାମକ ପ୍ରଥମ ତୀର୍ଥରେ ଉପସ୍ଥିତ ହେଲେ ଏବଂ ଅମାବାସ୍ୟା ତିଥିରେ ସେଠାରେ ସ୍ନାନ କରି ଲୋକ ସମୂହକୁ ପ୍ରକୃଷ୍ଟ ଭାସଯୁକ୍ତ କଲେ ଏବଂ ନିଜେ ସିତାଂଶୁ ଭାବକୁ ପ୍ରାପ୍ତ ହେଲେ । ୭୯ । ହେ ରାଜେନ୍ଦ୍ର ! ଦେବତାମାନେ ମଧ୍ୟ ଉତ୍କୃଷ୍ଟ ପ୍ରଭାସ ତୀର୍ଥକୁ ଗମନ କରି ଚନ୍ଦ୍ରଙ୍କ ସହିତ ପୁନଶ୍ଚ ଦକ୍ଷପ୍ରଜାପତିଙ୍କ ସନ୍ନିଧିରେ ଉପସ୍ଥିତ ହେଲେ । ୮୦ । ତତ୍ପରେ ଭଗବାନ ଦକ୍ଷ ପ୍ରୀତିଯୁକ୍ତ ହୋଇ ଦେବଗଣଙ୍କୁ ବିଦାୟ ଦେଲେ ଓ ସୁଧାକରଙ୍କୁ ସମ୍ବୋଧନ କରି ପୁନଶ୍ଚ କହିଲେ, ହେ ପୁତ୍ର ! ସ୍ତ୍ରୀମାନଙ୍କୁ ଓ ବିପ୍ରସମୂହକୁ କଦାପି ଅବମାନନା କରିବ ନାହିଁ । ଯାଅ, ସର୍ବଦା ସେମାନଙ୍କ ସହିତ ମିଳିତ ହୋଇ ଆମ୍ଭର ଶାସନ ପ୍ରତିପାଳନ କର । ୮୨ । ହେ ମହାରାଜ ! ଚନ୍ଦ୍ର ଏହିପରି ପ୍ରଜାପତିଙ୍କ ନିକଟରୁ ବିଦାୟ ଲାଭ କରି ନିଜ ମନ୍ଦିରକୁ ଗଲେ ଏବଂ ପ୍ରଜାମାନେ ମଧ୍ୟ ଆହ୍ଲାଦିତ ହୋଇ ପୂର୍ବବତ୍ ଅବସ୍ଥିତ କଲେ । ୮୩ । ହେ ମହାରାଜ ! ଚନ୍ଦ୍ର ଯେଉଁପରି ଶାପଗ୍ରସ୍ତ ହୋଇଥିଲେ ଓ ପ୍ରଭାସ ତୀର୍ଥ ଯେଉଁପରି ସକଳ ତୀର୍ଥ ଅପେକ୍ଷା ଉତ୍କୃଷ୍ଟ ହୋଇଥିଲା ତାହା ସବୁ ଆପଣଙ୍କୁ କହିଲି । ୮୪ । ଶ୍ରୀମାନ ଚନ୍ଦ୍ର ତୀର୍ଥଶ୍ରେଷ୍ଠ ପ୍ରଭାସରେ ପ୍ରତି ଅମାବାସ୍ୟା ଦିବସରେ ସ୍ନାନ କରି ବୃଦ୍ଧିପ୍ରାପ୍ତ ହେଲେ ଓ ସେଠାରେ ଅବଗାହନ କରିବା ହେତୁରୁ ଉତ୍କୃଷ୍ଟ ଶୋଭା ପାଇଲେ । ଏହି କାରଣରୁ ସେହି ତୀର୍ଥର ନାମ ପ୍ରଭାସ ବୋଲି ବିଖ୍ୟାତ ହେଲା । ୮୬ ।

ତତ୍ପରେ ଲୋକମାନେ ଯେଉଁ ତୀର୍ଥକୁ ଚମସୋଦ୍ଭେଦ ବୋଲି କହନ୍ତି, ବଳବାନ୍ ବଳଭଦ୍ର ସେହି ତୀର୍ଥକୁ ଗମନ କଲେ । ୮୭ । କେଶବାଗ୍ରଜ ହଳଧର ସେଠାରେ ବିଧିଅନୁସାରେ ସ୍ନାନ କରି ବିବିଧ ଉତ୍କୃଷ୍ଟ ଦ୍ରବ୍ୟ ସବୁ ଦାନ କରି ଏକରାତ୍ର ସେହିଠାରେ ରହିଲେ । ୮୮ । ପରଦିନ ଭକ୍ତିଯୁକ୍ତ ହୋଇ ଉଦପାନ ନାମକ ତୀର୍ଥକୁ ଯାତ୍ରା କଲେ । ହେ ନୃପବର ଜନ୍ମେଜୟ ! ସେଠାରେ ସ୍ନାନଶୀଳ ବ୍ୟକ୍ତିମାନଙ୍କର ମଙ୍ଗଳ ଲାଭ

ହେଉଥିବାରୁ ଓ ତତ୍ରତ୍ୟ ଔଷଧିମାନଙ୍କର ସ୍ନିଗ୍ଧତା, ଭୂମିର ଉର୍ବରତା, ଅବଲୋକନ କରି ସରସ୍ୱତୀ ସେଠାରେ ନଷ୍ଟ ହୋଇଥିଲେ ସୁଦ୍ଧା, ସେହି ଜଳରେ ଅଛନ୍ତି ବୋଲି ସିଦ୍ଧମାନେ ଜାଣନ୍ତି । ୯୦ ।

---

## ଅଧ୍ୟାୟ—୩୬

ବୈଶମ୍ପାୟନ କହିଲେ—ମହାରାଜ ! ବଳଦେବ ସେଠାରୁ ଯଶସ୍ୱୀ ତ୍ରିତନାମକ ମୁନିବରଙ୍କ ନିବାସସ୍ଥିତ ଉଦପାନ ତୀର୍ଥକୁ ଗମନ କଲେ । ୧ । ମୂଷଳାୟୁଧ ବଳଦେବ ସେଠାରେ ସ୍ନାନ କଲା ଉତ୍ତାରେ ବ୍ରାହ୍ମଣମାନଙ୍କୁ ପୂଜା ପୂର୍ବକ ବିବିଧ ଦ୍ରବ୍ୟ ଦାନ କରି ସନ୍ତୁଷ୍ଟ ହେଲେ । ୨ । ସେହି ସ୍ଥାନରେ ଧର୍ମପରାୟଣ ମହାତପା ତ୍ରିତ ମୁନି ବାସ କରୁଥିଲେ । ସେହି ମହାତ୍ମା କୂପ ମଧ୍ୟରେ ବାସ କରି ସୋମଲତାର ରସ ପାନ କରୁଥିଲେ । ୩ । ତାହାଙ୍କର ଦୁଇ ଭ୍ରାତା ତାହାଙ୍କୁ କୂପ ମଧ୍ୟରେ ପରିତ୍ୟାଗ କରି ଗୃହକୁ ଗମନ କଲେ । ଦ୍ୱିଜପ୍ରବର ତ୍ରିତ ସେହି ହେତୁରୁ ସେହି ଭ୍ରାତୃଦ୍ୱୟଙ୍କୁ ଅଭିଶାପ ଦେଇଥିଲେ । ୪ ।

ଜନ୍ମେଜୟ କହିଲେ, ହେ ବ୍ରହ୍ମନ୍ ! ଉଦପାନ ତୀର୍ଥ କିପରି ଅଟେ, ମହାତପା ତ୍ରିତ ମୁନି ସହୋଦର ଦୁହିଁଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ କେଉଁ କାରଣରୁ କୂପ ମଧ୍ୟରେ ପତିତ ହୋଇଥିଲେ ? ତାହାଙ୍କ ଭ୍ରାତୃଦ୍ୱୟ ତାହାଙ୍କୁ କି ନିମିତ୍ତ କୂପରେ ପରିତ୍ୟାଗ କରି ଗୃହକୁ ଗଲେ, ସେ କୂପ ମଧ୍ୟରେ କିପରି କାଳ ଯାପନ କରୁଥିଲେ, କିପରି ଅବା ସୋମ ପାନ କରୁଥିଲେ, ଏହି ସମସ୍ତ ବୃତ୍ତାନ୍ତ ଯଦି ଆମ୍ଭର ଶୁଣିବାର ଯୋଗ୍ୟ ହୁଏ, ତେବେ ତାହା ଆମ୍ଭଙ୍କୁ କହନ୍ତୁ ।

ବୈଶମ୍ପାୟନ କହିଲେ, ହେ ନୃପବର ! ପୂର୍ବ ଯୁଗରେ ସୂର୍ଯ୍ୟଙ୍କ ସମାନ ତେଜସ୍ୱୀ ଏକତ, ଦ୍ୱିତ ଓ ତ୍ରିତ ନାମକ ତିନିଜଣ ମୁନି ସହୋଦର ଥିଲେ । ସେମାନେ ସମସ୍ତେ ପ୍ରଜାପତିଙ୍କର ପ୍ରଜାବାନ୍ ଥିଲେ । ସର୍ବଦା ସେମାନଙ୍କର ଧର୍ମପ୍ରିୟ ପିତା ଗୌତମ ଦମ, ନିୟମ ଓ ତପସ୍ୟା ଦ୍ୱାରା ସେମାନଙ୍କଠାରେ ପ୍ରୀତ ହୋଇଥିଲେ । ଭଗବାନ ଗୌତମ ଋଷି ଦୀର୍ଘ କାଳ ପର୍ଯ୍ୟନ୍ତ ସେମାନଙ୍କଠାରେ ପ୍ରୀତ ହୋଇ ପରିଶେଷରେ

ଆପଣାର ଅନୁରୂପ ସ୍ଥାନକୁ ଗମନ କଲେ । ହେ ମହାରାଜ ! ଯେଉଁ ଭୂପାଳମାନେ ଉକ୍ତ ମହାତ୍ମାଙ୍କର ଯଜମାନ ଥିଲେ, ମୁନି ସ୍ୱର୍ଗଗାମୀ ହେବାରୁ ସେମାନେ ତଦୀୟ ପୁତ୍ରଙ୍କୁ ସେହିପରି ସମ୍ମାନ କଲେ । ସତ୍କର୍ମର ଅନୁଷ୍ଠାନ ଓ ବିଦ୍ୟା ଅଧ୍ୟୟନ ଦ୍ୱାରା ସେମାନଙ୍କ ମଧ୍ୟରେ ତ୍ରିତ ମୁନି ପିତାଙ୍କ ସଦୃଶ ସର୍ବାପେକ୍ଷା ଶ୍ରେଷ୍ଠ ହେଲେ । ପୁଣ୍ୟାତ୍ମା ମହାଭାଗ ମୁନିଗଣ ପୂର୍ବେ ଗୌତମଙ୍କୁ ଯେପରି ସମ୍ମାନ କରୁଥିଲେ, ତେତେବେଳେ ତାହାଙ୍କୁ ମଧ୍ୟ ସେହିପରି ସମାଦର କଲେ । ହେ ମହାରାଜ ! ତଦନନ୍ତର କୌଣସି ସମୟରେ ଏକତ ଓ ଦ୍ୱିତ ନାମକ ଦୁଇ ସହୋଦର ଯଜ୍ଞ ଓ ଧନ ନିମିତ୍ତ ଅତିଶୟ ଚିନ୍ତାକୁଳ ହେଲେ । ସେହି ଦୁହେଁ ତ୍ରିତଙ୍କୁ ନେଇ ଏହିପରି ପରାମର୍ଶ କଲେ—ଯଜମାନଙ୍କୁ ଅବଲମ୍ବନ କରି ମହାଫଳ ପ୍ରଦାୟକ ଯଜ୍ଞର ସମାଧାନ ଶେଷରେ ବହୁସଂଖ୍ୟକ ପଶୁ ପ୍ରତିଗ୍ରହ ପୂର୍ବକ ପ୍ରସନ୍ନ ମନରେ ସୋମ ପାନ କରିବା ।

ହେ ମହାରାଜ ! ସେହି ଭ୍ରାତୃତ୍ରୟ ଏହିପରି ମନ୍ତ୍ରଣା କରି ତଦ୍‌ବତ୍ କର୍ମ କଲେ । ସେହି ମହର୍ଷିମାନେ ତଦନନ୍ତର ଯଜମାନ ସମୂହଙ୍କ ନିକଟକୁ ଯାଇ ଯଥାବିଧାନରେ ଯାଜନ କ୍ରିୟା ଶେଷରେ ବହୁତର ପଶୁ ଲାଭ କରି ପୂର୍ବଦିଗକୁ ଗମନ କଲେ । ତ୍ରିତ ସେମାନଙ୍କ ଅଗ୍ରରେ ଅତି ହୃଷ୍ଟଚିତ୍ତରେ ଯାଉଥିଲେ । ଏକତ ଓ ଦ୍ୱିତ ପଶୁମାନଙ୍କୁ ଚାଳନ କରି ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ଗମନ କରୁଥିଲେ । ସେହି ଦୁଇ ସହୋଦର ଅତି ଉତ୍କୃଷ୍ଟ ପଶୁ-ଦଳକୁ ଦେଖି ମନେ ମନେ ଚିନ୍ତା କଲେ, ତ୍ରିତକୁ ବଞ୍ଚିତ କରାଇ ଏହି ଗୋବୃନ୍ଦ ଆମ୍ଭେ ଦୁହେଁ କିପରି ପ୍ରାପ୍ତ ହେବା । ହେ ଜନେଶ୍ୱର ! ପାପାତ୍ମା ଏକତ ଓ ଦ୍ୱିତ ପରସ୍ପର ଯେଉଁ କଥୋପକଥନ କରିଥିଲେ, ତାହା ଶୁଣିବା ହେଉନ୍ତୁ । ସେହି ଦୁହେଁ କହିଲେ, ତ୍ରିତ ଯଜ୍ଞ ପ୍ରଭୃତି କର୍ମରେ କୁଶଳ ଓ ବେଦନିଷ୍ଠ ଏବଂ ସେ ନାନାସ୍ଥାନରୁ ବହୁତର ଗୋଧନ ଲାଭ କରିପାରିବେ । ଅତଏବ ଆମ୍ଭେ ଦୁହେଁ ଏକତ୍ରିତ ହୋଇ ଗୋରୁମାନଙ୍କୁ ଅଡ଼ାଇ ନେଉଥିବା । ତ୍ରିତ ଆମ୍ଭମାନଙ୍କ ସଙ୍ଗ ଛାଡ଼ି ଏକାକୀ ସ୍ୱେଚ୍ଛାନୁସାରେ ଯାଆନ୍ତୁ । ସେମାନେ ରାତିରେ ଯେଉଁ ପଥରେ ଆଗମନ କରୁଥିଲେ, ସେଠାରେ ବୃକନାମକ ଗୋଟାଏ ହିଂସ୍ରଜନ୍ତୁ ଥିଲା ଓ ସରସ୍ୱତୀ ନଦୀ-ତଟରେ ଅତି ଗଭୀର ଗୋଟାଏ କୂପ ଥିଲା । ତ୍ରିତ ଅଗ୍ରଭାଗରେ ସେହି ଭୟଙ୍କର ପଶୁକୁ ଦେଖି ତାହା ଭୟରେ ପଶ୍ଚାତ୍ ଭାଗକୁ ପ୍ରତ୍ୟାଗତ ହେଲା-ମାତ୍ରେ ସର୍ବ ପ୍ରାଣୀର ଭୟଙ୍କର ମହାଘୋର ଅତି ଗଭୀର କୂପରେ ପଡ଼ିଲେ ।

ହେ ମହାରାଜ ! ମୁନିଶ୍ରେଷ୍ଠ ତ୍ରିତ କୂପରେ ପଡ଼ି ଆର୍ତ୍ତନାଦ କଲେ । ତାହାଙ୍କର ସହୋଦର ମୁନିଦ୍ୱୟ ତାହା ଶ୍ରବଣ କଲେ ଓ ଭ୍ରାତା କୂପରେ ପତିତ ହେବା ଜାଣି ସୁଦ୍ଧା ବୃକଭୟରେ ଓ ଧନଲୋଭରେ ତାହାଙ୍କୁ ପରିତ୍ୟାଗ ପୂର୍ବକ ଗମନ କଲେ । ୨୮ । ମହାତପା ତ୍ରିତ ମୁନି ପଶୁଲୁବ୍ଧ ସହୋଦର ଦୁହିଙ୍କଦ୍ୱାରା ପରିତ୍ୟକ୍ତ ହୋଇ ନରକରେ ନିପତିତ ଦୁଷ୍କୃତି ଲୋକପରି ସେହି ଉଦପାନ ତୀର୍ଥରେ ଧୂଳିପୂର୍ଣ୍ଣ ତୃଣଲତାଦ୍ୱାରା ଆଚ୍ଛନ୍ନ ନିର୍ଜଳ କୂପରେ ପଡ଼ିଥିବା ଜାଣି ମନରେ ବିଚାର କଲେ—ସୋମପାନ ବ୍ୟତିରେକେ ମୃତ୍ୟୁଦେବତାଙ୍କ ନିକଟରୁ ଭୟଗ୍ରସ୍ତ ହେବାକୁ ହୁଏ । ଆମ୍ଭେ ଏହିଠାରେ ଥାଇ କିପରି ସୋମପାନ କରିବା । ୩୦ । ସେହି ମହାତପା ପ୍ରାଜ୍ଞ ମୁନି ଏହିପରି ବିଚାର କରିବା ସମୟରେ କୂପମଧ୍ୟରେ ଦୈବବଶରେ ଲମ୍ବମାନ ହୋଇଥିବା ଏକଗୋଟି ଲତା ଦେଖିଲେ । ତତ୍ପରେ ମୁନି ଧୂଳିପରିପୂର୍ଣ୍ଣ କୂପରେ ଜଳଚିନ୍ତା କରି ଅଗ୍ନି ହୋତ୍ର କରିବା ବିଷୟରେ ଆପଣାକୁ ଅଗ୍ନି ସଂକଳ୍ପ କଲେ । ୩୩ । ମହାତପା ମୁନି ଉକ୍ତ ଲତାକୁ ସୋମଲତା ସ୍ୱରୂପ କଳ୍ପନା କରି ମନେ ମନେ ଋକ୍, ଯଜୁଃ ଓ ସାମବେଦର ମନ୍ତ୍ରସମୂହକୁ ଚିନ୍ତାକଲେ । ୩୪ । ତତ୍ପରେ ପ୍ରସ୍ତରମାନଙ୍କୁ ଶର୍କରା ସ୍ୱରୂପ କଳ୍ପନା କରି ସୋମଯଜ୍ଞ ଆରମ୍ଭ କଲେ ଓ ଅମରଗଣଙ୍କ ଘୃତଭାଗ ନିମିତ୍ତ ସଳିଳକୁ ଆଜ୍ୟରୂପେ କଳ୍ପନା କଲେ । ୩୫ । ପରିଶେଷରେ ସେ ସୋମପାନ ଯଜ୍ଞ ଉତ୍ତାରେ ତୁମୁଳ ବେଦ ଧ୍ୱନି କଲେ ।

ହେ ରାଜନ୍ ! ତ୍ରିତମୁନିଙ୍କର ସେହି ବେଦ ଧ୍ୱନି ସୁରଲୋକରେ ପ୍ରବିଷ୍ଟ ହେଲା । ୩୬ । ବ୍ରହ୍ମବାଦୀମାନେ ଯେଉଁପରି ନିୟମ ଅନୁସାରେ ଯାଗ ପ୍ରଭୃତି କାର୍ଯ୍ୟ ସବୁ କରିଥାଆନ୍ତି, ସେ ତାଦୃଶ ନିୟମାନୁସାରେ ସେହି ଯଜ୍ଞ କର୍ମ ନିଷ୍ପନ୍ନ କଲେ । ମହାନୁଭବ ତ୍ରିତମୁନିଙ୍କ ସେହି ଯଜ୍ଞ ତାଦୃଶ ଭାବରେ ନିଷ୍ପନ୍ନ ହେବାରୁ ସୁରଲୋକବାସୀ ସୁରଗଣ ଅତ୍ୟନ୍ତ ଉଦ୍‌ବିଗ୍ନ ହେଲେ, କିନ୍ତୁ କେହି ସୁଦ୍ଧା ସେହି ଉଦ୍‌ବେଗର କାରଣକୁ ଜାଣି ପାରିଲେ ନାହିଁ । ତତ୍ପରେ ଅମର ପୁରୋହିତ ବୃହସ୍ପତି ସେହି ତୁମୁଳ ଶବ୍ଦକୁ ଶ୍ରବଣ କଲେ । ତାହାପରେ ସର୍ବ ଦେବତାମାନଙ୍କୁ କହିଲେ, 'ହେ ଦେବଗଣ ! ମନୁଷ୍ୟଲୋକରେ ତ୍ରିତମୁନି ଯଜ୍ଞ କରୁଅଛନ୍ତି । ଅତଏବ ଆମ୍ଭେମାନେ ସେଠାକୁ ଯିବା, କାରଣ ସେହି ମହାତପା ମୁନି କ୍ରୋଧଯୁକ୍ତ ହେଲେ ଅନ୍ୟ ଦେବତାମାନଙ୍କୁ ସର୍ଜନ କରି ପାରିବେ ।' ଅମରକୁଳ

ଆର୍ଯ୍ୟଙ୍କର ସେହି ବାକ୍ୟ ଶୁଣିଲାମାତେ ତ୍ରିତମୁନିଙ୍କର ଯେଉଁଠାରେ ଯଜ୍ଞ ହେଉଥିଲା, ତତ୍‌କ୍ଷଣାତ୍ ସେହି ସ୍ଥାନକୁ ଗଲେ ।

ତ୍ରିତ ଯେଉଁ କୂପରେ ବସନ୍ତ କରିଥିଲେ, ସୁରଗଣ ସେଠାରେ ଉପସ୍ଥିତ ହୋଇ ଯଜ୍ଞକର୍ମରେ ଦୀକ୍ଷିତ ସେହି ମହାତ୍ମାଙ୍କୁ ଦେଖିଲେ । ଦେବତାମାନେ ପରମ ଶୋଭାରେ ସୁଶୋଭିତ ସେହି ମହାଭାଗ ମହାତ୍ମାଙ୍କୁ ଦେଖି କହିଲେ, ହେ ମହର୍ଷେ ! ଆମ୍ଭେମାନେ ଭାଗ୍ୟପ୍ରାପ୍ତି ଇଚ୍ଛାରେ ଆସିଅଛୁ । ତତ୍ପରେ ତ୍ରିତ କହିଲେ, ହେ ଦେବଗଣ ! ଦେଖିବା ହେଉନ୍ତୁ । ଆମ୍ଭେ ଏହି ଭୀଷଣ କୂପମଧ୍ୟରେ ନଷ୍ଟଚେତା ଲୋକପରି ନିମଗ୍ନ ହୋଇଅଛୁ । ହେ ମହାରାଜ ! ତତ୍ପରେ ତ୍ରିତମୁନି ଦେବତାମାନଙ୍କୁ ଯଥାବିଧାନରେ ମନ୍ତ୍ରପାଠ ପୂର୍ବକ ଯଜ୍ଞଭାଗ୍ୟ ସବୁ ପ୍ରଦାନ କଲେ । ତେତେବେଳେ ସେମାନେ ତାହା ଲାଭକରି ପରମ ପ୍ରୀତ ହେଲେ । ତଦନନ୍ତର ଦେବତା-ମାନେ ଯଥାବିଧାନରେ ଭାଗ୍ୟସବୁ ପ୍ରାପ୍ତ ହୋଇ ପ୍ରସନ୍ନ ଚିତ୍ତରେ ତାହାଙ୍କୁ ଅଭୀଷ୍ଟ ବର ପ୍ରାର୍ଥନା କରିବାକୁ କହିଲେ । ସେହି ସମୟରେ ସେ ବର ପ୍ରାର୍ଥନା କରି କହିଲେ, ହେ ଦେବଗଣ ! ସଂପ୍ରତି ଆମ୍ଭଙ୍କୁ ଏହି ସ୍ଥାନରୁ ପରିତ୍ରାଣ କରିବା ହେଉନ୍ତୁ । ଆଉ ଯେଉଁ ବ୍ୟକ୍ତି ଏହି ଜଳ ସ୍ପର୍ଶ କରିବେ, ସେ ସୋମପାୟୀ ବ୍ୟକ୍ତିର ଗତି ପ୍ରାପ୍ତ ହେବେ । ହେ ମହାରାଜ ! ମୁନି ଏହି ବର ପ୍ରାର୍ଥନା କଲାମାତେ ସରସ୍ୱତୀ ତରଙ୍ଗମାଳାକୁ ଧାରଣ କରି ଉଠିଲେ । ତ୍ରିତମୁନି ସେତେବେଳେ ତାହାଙ୍କଦ୍ୱାରା ଉପରକୁ ଉତ୍‌ଥାପିତ ହୋଇ ଅମରଗଣଙ୍କୁ ପୂଜା କଲେ ।

ଦେବତାମାନେ ତଥାସ୍ତୁ ବୋଲି କହି ନିଜ ନିଜ ସ୍ଥାନକୁ ଗଲେ । ତ୍ରିତ ମୁନି ମଧ୍ୟ ପରମ ପ୍ରୀତ ହୋଇ ନିଜ ଗୃହଗାମୀ ହେଲେ । ସେତେ-ବେଳେ ତତ୍ପରେ ଦୁଇ ଭ୍ରାତାଙ୍କୁ କ୍ରୋଧଯୁକ୍ତ ହୋଇ ନିଷ୍ଠୁର ବାକ୍ୟରେ ତିରସ୍କାର କରି ଶାପ ପ୍ରଦାନ ପୂର୍ବକ କହିଲେ, "ହେ ସହୋଦର ଯୁଗଳ ! ତୁମ୍ଭେ ଦୁହେଁ ଯେଉଁ କାରଣରୁ ପଶୁଲୋଭରେ ଆମ୍ଭଙ୍କୁ ପରିତ୍ୟାଗ ପୂର୍ବକ ପଳାୟନ କରି ଆସିଥିଲ, ସେହି ପାପକର୍ମ ହେତୁରୁ ଆମ୍ଭଠାରୁ ଅଭିଶାପ ଗ୍ରହଣ କରି ବୃକାକାର ଅତି ଭୟଙ୍କର ଦନ୍ତଯୁକ୍ତ ଜନ୍ତୁ ହୋଇ ସର୍ବତ୍ର ବିଚରଣ କର । ବ୍ୟାଘ୍ର, ଭଲ୍ଲୁକ, ବାନର ପ୍ରଭୃତି ପଶୁସମୂହ ତୁମ୍ଭ ଦୁହିଁଙ୍କର ସନ୍ତାନ ହେବେ ।" ହେ ରାଜନ୍ ! ତ୍ରିତ ମୁନି ଏହିପରି କହିବାର

କ୍ଷଣକ ମଧ୍ୟରେ ସେହି ସନ୍ଧ୍ୟାବାଦୀଙ୍କ ବଚନ ଅନୁସାରେ ସେ ଦୁହେଁ ସେହି-ପରି ଦୃଷ୍ଟ ହେଲେ ।

ମହାରାଜ ! ଅତି ବିକ୍ରମଶାଳୀ ବଳବାନ ବଳଦେବ ସେହି ତୀର୍ଥର ଜଳ ସ୍ପର୍ଶ କରି ସେଠାରୁ ବ୍ରାହ୍ମଣମାନଙ୍କୁ ପୂଜା ପୂର୍ବକ ବିବିଧ ଦେୟ ସବୁ ଦାନ କରି ନମିଗତ ଉଦପାନ ତୀର୍ଥକୁ ଦର୍ଶନ କରି ଓ ବାରମ୍ବାର ପ୍ରଶଂସା କରି ଆହ୍ଲାଦରେ ବିନଶନ ତୀର୍ଥରେ ଉପସ୍ଥିତ ହେଲେ । ୫୪ ।

---

## ଅଧ୍ୟାୟ—୩୭

ବୈଶମ୍ପାୟନ କହିଲେ—ରାଜନ୍ ! ତତ୍ପରେ ବଳଦେବ ବିନଶନ ତୀର୍ଥକୁ ଗମନ କଲେ । ପୂର୍ବେ ସେଠାରେ ସରସ୍ୱତୀ ଦ୍ୱେଷ ହେତୁରୁ ବିନଷ୍ଟ ହୋଇଥିବାରୁ ଋଷିମାନେ ସେହି ତୀର୍ଥର ନାମ ବିନଶନ ଦେଇଅଛନ୍ତି । ମହାବଳ ବଳଦେବ ସେଠାରେ ସରସ୍ୱତୀର ପବିତ୍ର ଜଳ ସ୍ପର୍ଶ କରି ତଦୀୟ କୂଳର ନିକଟସ୍ଥିତ ସୁଭୂମିକ ତୀର୍ଥକୁ ଗମନ କଲେ । ହେ ନରେଶ୍ୱର ! ବ୍ରାହ୍ମଣସେବିତ ସେହି ପବିତ୍ର ତୀର୍ଥରେ ବିମଳମୁଖୀ ଅପ୍‌ସରାଗଣ ସର୍ବଦା ନିର୍ମଳ କ୍ରୀଡ଼ା କରନ୍ତି ଏବଂ ଦେବଗଣ ଓ ଗନ୍ଧର୍ବଗଣ ପ୍ରତି ମାସରେ ସେଠାକୁ ଗମନ କରନ୍ତି । ସେହି ସ୍ଥାନରେ ଦେବଗଣ ଓ ଅପ୍‌ସରାଗଣ ସର୍ବଦା ଯଥାସୁଖରେ ଆମୋଦ ପ୍ରମୋଦ କରନ୍ତି ଓ ସେହି ସ୍ଥାନ ଦେବଗଣ ଓ ପିତୃଗଣଙ୍କ ମନୋହର ପବିତ୍ର ପୁଷ୍ପରାଶିଦ୍ୱାରା ନିରନ୍ତର ଆଚ୍ଛନ୍ନ ଥାଏ । ହେ ମହାରାଜ ! ସେହି ସରସ୍ୱତୀର ପବିତ୍ର ତୀରରେ ଅପ୍‌ସରାଗଣର କ୍ରୀଡା-ଭୂମି ଅଛି ବୋଲି ତାହାର ନାମ ସୁଭୂମିକ ହୋଇଅଛି । ରୋହଣୀସୁତ ବଳଦେବ ସେଠାରେ ସ୍ନାନ କରି ବ୍ରାହ୍ମଣମାନଙ୍କୁ ଧନ ଦାନ କଲେ ଓ ବିବିଧ ବାଦ୍ୟ ଗୀତର ମନୋହର ନିନାଦ ଶ୍ରବଣ କଲେ ଏବଂ ଦେବ, ଗନ୍ଧର୍ବ ଓ ନିଶାଚରମାନଙ୍କ ବିପୁଳ ପ୍ରତିମୂର୍ତ୍ତି ସମୂହ ସନ୍ଦର୍ଶନ କରି ଗନ୍ଧର୍ବ-ତୀର୍ଥକୁ ଗମନ କଲେ ।

ସେଠାରେ ବିଶ୍ୱାବସୁ ପ୍ରଭୃତି ତପସ୍ୟାପରାୟଣ ଗନ୍ଧର୍ବଗଣ ମନୋହର ନୃତ୍ୟ ଗୀତ ବାଦ୍ୟଧ୍ୱନି କରୁଥାଆନ୍ତି । ସେହି ମହାବାହୁ

ହଳଧର ସେଠାରେ ବ୍ରାହ୍ମଣମାନଙ୍କୁ ମେଷ, ଗୋ, ଗର୍ଦ୍ଦଭ, ଉଷ୍ଟ୍ର, ସୁବର୍ଣ୍ଣ ଓ ରଜତ ପ୍ରଭୃତି ବିବିଧ ଧନ ଦାନ କରି ଏବଂ ସେମାନଙ୍କୁ ଅଭିଳାଷାନୁସାରେ ଭୋଜନ ଓ ମହାଧନ ଦ୍ଵାରା ପରିତୃପ୍ତ କରାଇ ସ୍ତୁତିବାଦ ଲାଭ କରି ବିପ୍ରମାନଙ୍କ ସହିତ ସେଠାରୁ ଗର୍ଗସ୍ରୋତ ନାମକ ମହାତୀର୍ଥକୁ ଆଗମନ କଲେ । ହେ ଜନ୍ମେଜୟ ! ବୃଦ୍ଧବର ଆତ୍ମଜ୍ଞାନୀ ଗର୍ଗମୁନି ତପୋବଳରେ ସେହି ସରସ୍ଵତୀର ପବିତ୍ର ତୀର୍ଥରେ କାଳଜ୍ଞାନର ଉପାୟ, ସୂର୍ଯ୍ୟ ପ୍ରଭୃତିଙ୍କ ବିଲୋମ, ଗମନ ଓ ଶୁଭାଶୁଭ, ଉତ୍ପାତ ସମୂହ ବିଦିତ ହୋଇଥିଲେ । ଏହି ନିମିତ୍ତ ସେହି ତୀର୍ଥ ଗର୍ଗସ୍ରୋତ ନାମରେ ବିଖ୍ୟାତ । ୧୬ । ହେ ରାଜନ୍ ! ସେହି ସ୍ଥାନରେ ସୁବ୍ରତ ଋଷିଗଣ କାଳ ଜ୍ଞାନ ନିମିତ୍ତ ମହାଭାଗ ଗର୍ଗମୁନିଙ୍କୁ ନିରନ୍ତର ଉପାସନା କରନ୍ତି । ୧୭ ।

ମହାରାଜ ! ଧବଳ ଚନ୍ଦନଚର୍ଚ୍ଚିତ ମହାଯଶା ବଳରାମ ସେଠାରେ ଉପସ୍ଥିତ ହୋଇ ଯଥାବିଧିରେ ଆତ୍ମଜ୍ଞ ମୁନିମାନଙ୍କୁ ବହୁ ବିତରଣ ପୂର୍ବକ ବିପ୍ରମାନଙ୍କୁ ନାନା ପ୍ରକାର ଭକ୍ଷ୍ୟଦ୍ରବ୍ୟ ପ୍ରଦାନ କରି ଶଙ୍ଖତୀର୍ଥକୁ ଗଲେ । ୧୯ । ତାଳଧ୍ଵଜ ବଳଦେବ ସେହି ସରସ୍ଵତୀ ତଟରେ ସମୁତ୍ପନ୍ନ ଧବଳଗିରି ସନ୍ନିଭ ମହାମେରୁ ସଦୃଶ ଅତି ଉନ୍ନତ ଏବଂ ଋଷିଗଣଙ୍କ ଦ୍ଵାରା ସେବିତ ଗୋଟାଏ ମହାଶଙ୍ଖ ବୃକ୍ଷ ଅବଲୋକନ କଲେ । ଅପରିମିତ ତେଜସ୍ଵୀ ଯକ୍ଷ୍ମ ରାକ୍ଷସ ବିଦ୍ୟାଧର, ଅମିତବଳ ପିଶାଚ ଓ ସହସ୍ର ସହସ୍ର ସିଦ୍ଧଗଣ ସମସ୍ତେ ଅନଶନ ଅବଲମ୍ବନ ପୂର୍ବକ ବ୍ରତ ଓ ନିୟମ ଦ୍ଵାରା କୌଣସି କୌଣସି ସମୟରେ ସେହି ବନସ୍ପତିର ଫଳ ଭୋଜନ କରୁଥାଆନ୍ତି । ହେ ପୁରୁଷଶ୍ରେଷ୍ଠ ! ସେମାନେ ମନୁଷ୍ୟର ଅଦୃଶ୍ୟ ହୋଇ ବ୍ରତ ଓ ନିୟମ ଦ୍ଵାରା ପ୍ରାପ୍ତ ଫଳକୁ ଭୋଗ କରି ସେଠାରେ ପୃଥକ୍ ପୃଥକ୍ ବିଚରଣ କରନ୍ତି । ହେ ରାଜନ୍ ! ସେହି ବନସ୍ପତି ଇହଲୋକରେ ଏହିପରି ବିଖ୍ୟାତ ଅଟେ । ୨୪ ।

ମହାରାଜ ! ତଦନନ୍ତର ଯଦୁମଣି ହଳାୟୁଧ, ସରସ୍ଵତୀର ଲୋକବିଖ୍ୟାତ ଓ ପାବନ ତୀର୍ଥକୁ ଗମନ କଲେ । ସେଠାରେ ଦୁଗ୍‌ଧବତୀ ଧେନୁ ଏବଂ ତାମ୍ର ଓ ଲୌହନିର୍ମିତ ଭାଣ୍ଡସମୂହ, ତାଦୃଶ ବସ୍ତ୍ରସମୂହ ବିତରଣ ପୂର୍ବକ ତପୋଧନ ବ୍ରାହ୍ମଣମାନଙ୍କୁ ପୂଜା କରି ଓ ସ୍ଵୟଂ ସେମାନଙ୍କ ଦ୍ଵାରା ପୂଜିତ ହୋଇ ପବିତ୍ର ଦ୍ଵୈତ ବନକୁ ଆଗମନ କଲେ । ବଳଦେବ

ସେଠାରେ ଉପସ୍ଥିତ ହୋଇ ବିବିଧ ବେଶଧାରୀ ମୁନିବୃନ୍ଦଙ୍କୁ ଦର୍ଶନ କରି ଜଳରେ ଅବଗାହନ ପୂର୍ବକ ଦ୍ୱିଜଗଣଙ୍କୁ ଅର୍ଚ୍ଚନା କରି ସେମାନଙ୍କ ଅଭିଳାଷାନୁସାରେ ପ୍ରଚୁର ଭୋଗ୍ୟବସ୍ତୁ ପ୍ରଦାନ କଲେ ।

ହେ ନୃପବର ! ତଦନନ୍ତର ବଳଦେବ ସରସ୍ୱତୀର ଦକ୍ଷିଣ ଦିଗକୁ ଗମନ କଲେ । ହେ ମହାରାଜ ! ସେହି ମହାଯଶସ୍ୱୀ ମହାବାହୁ ଧର୍ମାତ୍ମା ରାଜା ବଳରାମ ଅନତିଦୂରକୁ ଯାଇ ବହୁ ସର୍ପବେଷ୍ଟିତ ମହାଦ୍ୟୁତି ଭୁଜଙ୍ଗରାଜ ବାସୁକିଙ୍କ ଆବାସସ୍ଥାନ, ନାଗଧନ୍ୱା ନାମକ ତୀର୍ଥରେ ଉପସ୍ଥିତ ହେଲେ । ସେଠାରେ ଚତୁର୍ଦ୍ଦଶ ସହସ୍ର ଋଷି ସର୍ବଦା ବାସ କରି ରହିଥାଆନ୍ତି । ଅମରଗଣ ସେହି ସ୍ଥାନକୁ ଆସି ସର୍ବଶ୍ରେଷ୍ଠ ସର୍ପ ନାଗରାଜ ବାସୁକିଙ୍କୁ ଯଥା-ବିଧାନରେ ଅଭିଷିକ୍ତ କରିଥିଲେ । ୩୨ । ହେ କୌରବ ! ସେଠାରେ ସର୍ପମାନଙ୍କଠାରୁ କିଛିମାତ୍ର ଭୟ ହୁଏ ନାହିଁ । ବଳଦେବ ସେହି ସ୍ଥାନରେ ମଧ୍ୟ ବିପ୍ରମାନଙ୍କୁ ଯଥାବିଧି ରତ୍ନସମୂହ ବିତରଣ କରି ପୂର୍ବ ଦିଗକୁ ଗମନ କଲେ ଓ ସେହି ସ୍ଥାନରେ ଶତ ସହସ୍ର ସଂଖ୍ୟକ ଅନେକ ଅନେକ ସୁପ୍ରସିଦ୍ଧ ତୀର୍ଥରେ ପର୍ଯ୍ୟଟନ କଲେ । ୩୪ । ହଳଧର ସେହି ପବିତ୍ର ତୀର୍ଥରେ ସ୍ନାନ କରି ଋଷିବୃନ୍ଦଙ୍କ ଆଦେଶାନୁସାରେ ଉପବାସ ନିୟମରେ ଭୂରି ଭୂରି ଦାନ କରି ସେହି ସମସ୍ତ ତୀର୍ଥନିବାସୀ ମୁନିବୃନ୍ଦଙ୍କୁ ଅଭିବାଦନ ପୂର୍ବକ ଗନ୍ତବ୍ୟ ମାର୍ଗର ଉଦ୍ଦେଶ୍ୟରେ ଯେଉଁ ଦିଗକୁ ସରସ୍ୱତୀଙ୍କ ଗତି ହେଉଥିଲା, ପୁନଶ୍ଚ ସେହି ଦିଗକୁ ଗମନ କଲେ । ୩୬ ।

ହେ ମହାରାଜ ! ଶ୍ୱେତ ଚନ୍ଦନଚର୍ଚ୍ଚିତ ହଳଧାରୀ ବଳଦେବ ବାତାହତ ବୃଷ୍ଟି ସଦୃଶ ନିବୃତ୍ତ ହେଲେ ଓ ନୈମିଷାରଣ୍ୟବାସୀ ମହାତ୍ମା ଋଷିବୃନ୍ଦଙ୍କ ଦର୍ଶନ ନିମିତ୍ତ ପୂର୍ବାଭିମୁଖେ ଗମନ କଲେ । ସେଠାରେ ନଦୀ-ଶ୍ରେଷ୍ଠା ସରସ୍ୱତୀଙ୍କୁ ପର୍ବାଭିମୁଖିନୀ ହୋଇଥିବାର ନିରୀକ୍ଷଣ କରି ବିସ୍ମିତ ହେଲେ । ୩୮ । ଜନ୍ମେଜୟ କହିଲେ, ହେ ଅଧ୍ୱର୍ଯ୍ୟୁଶ୍ରେଷ୍ଠ ! ଯଦୁନନ୍ଦନ କେଉଁ କାରଣରୁ ବିସ୍ମିତ ହେଲେ, ସରିଦ୍‌ବରା ସ୍ୱରସ୍ୱତୀ ବା କପରି କେଉଁ କାରଣରୁ ନିବୃତ୍ତ ହୋଇଥିଲେ, ଏହିସବୁ ବୃତ୍ତାନ୍ତ ଶ୍ରବଣ ନିମିତ୍ତ ଇଚ୍ଛା କରୁଅଛୁ । ୪୦ ।

ବୈଶମ୍ପାୟନ କହିଲେ, ମହାରାଜ ! ପୂର୍ବେ ସତ୍ୟଯୁଗରେ ଅତି ଉତ୍କୃଷ୍ଟ ଦ୍ୱାଦଶ ବାର୍ଷିକ ଯଜ୍ଞ ହେଉଥିବା ସମୟରେ ନୈମିଷାରଣ୍ୟବାସୀ

ଅସଂଖ୍ୟ ତପସ୍ୱୀ ଋଷିଗଣ ସେହି ଯଜ୍ଞସ୍ଥଳରେ ଯଥାବିଧାନରେ ବାସ କରି ନୈମିଷ ବନରେ ଦ୍ୱାଦଶ ବାର୍ଷିକ ଯଜ୍ଞ ସମାପ୍ତି ପରେ ତୀର୍ଥଯାତ୍ରା ନିମିତ୍ତ ସରସ୍ୱତୀଙ୍କ ନିକଟକୁ ଯାଇଥିଲେ । ୪୩ । ହେ ନରପାଳ ! ସେତେବେଳେ ଋଷିଗଣଙ୍କର ବାହୁଲ୍ୟ ହେତୁରୁ ସରସ୍ୱତୀ ନଦୀର ଦକ୍ଷିଣ ତୀରସ୍ଥିତ ତୀର୍ଥ-ସମୂହ ନଗର ସଦୃଶ ହୋଇଥିଲେ । ୪୪ । ଦ୍ୱିଜସତ୍ତମ ଋଷିଗଣ ତୀର୍ଥବାସ ଲୋଭରେ ସରସ୍ୱତୀର ଦକ୍ଷିଣ ତୀରସ୍ଥିତ ସମନ୍ତପଞ୍ଚକ ନାମକ ସ୍ଥାନ ପର୍ଯ୍ୟନ୍ତ ନଦୀତୀରକୁ ଆଶ୍ରୟ କଲେ । ୪୫ । ସେତେବେଳେ ସେହି ସ୍ଥାନର ହୋମକାରୀ ଆତ୍ମଜ୍ଞାନୀ ମହର୍ଷିଗଣଙ୍କର ଅତି ମହାନ ବେଦପାଠ ନିନାଦ ଦ୍ୱାରା ଦିଙ୍‌ମଣ୍ଡଳ ପରିପୂର୍ଣ୍ଣ ହେଲା । ୪୬ । ସେହି ମହାତ୍ମାମାନଙ୍କ କର୍ତ୍ତୃକ ହୂୟମାନ ଓ ଜାଜ୍ୱଲ୍ୟମାନ ଅଗ୍ନିହୋତ୍ରମାନଙ୍କଦ୍ୱାରା ନଦୀଶ୍ରେଷ୍ଠା ସରସ୍ୱତୀ ସମ୍ପୂର୍ଣ୍ଣରୂପେ ଶୋଭିତ ହେଲେ । ୪୭ । ହେ ମହାରାଜ ! ବାଲଖିଲ୍ୟ, ଅଶ୍ମକୁଟ୍ଟ, ଦନ୍ତୋଲୂଖଲ, ପ୍ରସଂଖ୍ୟାନ ଓ ଏତଦ୍‌ଭିନ୍ନ ଅନ୍ୟାନ୍ୟ ତପସ୍ୱୀଗଣ ଏବଂ ବାୟୁଭକ୍ଷ୍ୟ, ଜଳାହାରୀ, ପର୍ଣ୍ଣଭକ୍ଷ୍ୟ, ନା[illegible] ନିୟମଶାଳୀ ସ୍ଥଣ୍ଡିଳଶାୟୀ ମୁନିଗଣ ତତ୍‌ସମୟରେ ସରସ୍ୱତୀ ସମୀପରେ ଅବସ୍ଥାନ କରି ସ୍ୱର୍ଗବାସୀ ସୁରଗଣ ଯେଉଁପରି ଭଗବତୀ ଗଙ୍ଗାଙ୍କ ଶୋଭା ବର୍ଦ୍ଧନ କରିଥାନ୍ତି, ସେହିପରି ସୁଶୋଭିତ କଲେ ।

ତତ୍ପରେ ଶତ ଶତ ଯଜ୍ଞଯାଜୀ ମୁନିଗଣ ସେତେବେଳେ ସରସ୍ୱତୀ କୂଳରେ ଉପସ୍ଥିତ ହେଲେ । ସେହି ମହାବ୍ରତ ମହର୍ଷିଗଣ ସେଠାରେ ସରସ୍ୱତୀଙ୍କର କିଛିମାତ୍ର ଅବକାଶ ଦେଖିଲେ ନାହିଁ । ୫୧ । ତଦନନ୍ତର ସେମାନେ ଯଜ୍ଞସୂତ୍ର ପରିମିତ ତୀର୍ଥଭୂମି ନିର୍ମାଣପୂର୍ବକ ଅଗ୍ନିହୋତ୍ର ଓ ଅନ୍ୟାନ୍ୟ ବିବିଧ କ୍ରିୟାର ଅନୁଷ୍ଠାନ କଲେ । ୫୨ । ହେ ରାଜେନ୍ଦ୍ର ଜନମେଜୟ ! ତତ୍ପରେ ନଦୀଶ୍ରେଷ୍ଠା ସରସ୍ୱତୀ ସେହି ଋଷିମାନଙ୍କୁ ତଦାୟ ଜଳପ୍ରାପ୍ତି ବିଷୟରେ ନିରାଶ ଓ ଚିନ୍ତାଯୁକ୍ତ ହୋଇଥିବାର ଜାଣି ସେମାନଙ୍କୁ ଦର୍ଶନ ଦେଲେ । ପରିଶେଷରେ ସେ ପବିତ୍ର ତପସ୍ୟାଶୀଳ ଋଷିମାନଙ୍କଠାରେ କାରୁଣ୍ୟ ପ୍ରକାଶ କରି ବହୁଳ କୁଞ୍ଜ ଅର୍ଥାତ୍ ସ୍ୱକୀୟ ସ୍ଥାନ ସ୍ୱରୂପ ତୀର୍ଥ-ମାନଙ୍କୁ ନିର୍ମାଣ କରି ନିବୃତ୍ତ ହେଲେ । ୫୪ । ହେ ରାଜେନ୍ଦ୍ର ! ନଦୀଶ୍ରେଷ୍ଠା ସରସ୍ୱତୀ ଋଷିମାନଙ୍କ ନିମିତ୍ତ ସେଠାରୁ ନିବୃତ୍ତ ହୋଇ ପୁନଶ୍ଚ ପଶ୍ଚିମାଭି-ମୁଖରେ ସ୍ରୋତରୂପରେ ଗମନ କଲେ । ୫୫ । ହେ ମହାରାଜ ! ଆମ୍ଭେ ଋଷିମାନଙ୍କ ଆଗମନକୁ ବ୍ୟର୍ଥ କରି ପୁନଶ୍ଚ ଗମନ କରିବା, ମହାନଦୀ ସରସ୍ୱତୀ ଏହିପରି ପ୍ରତିଜ୍ଞାଦ୍ୱାରା ଅଦ୍ଭୁତ କାର୍ଯ୍ୟ କଲେ । ୫୬ ।

ହେ ନୃପବର ! ଏହାପରେ ସେହି ତୀର୍ଥସବୁ ନୈମିଷତୀର୍ଥ ବୋଲି ବିଖ୍ୟାତ ହେଲା । ହେ କୁରୁଶ୍ରେଷ୍ଠ ! ତୁମ୍ଭେ ସେହି କୁରୁକ୍ଷେତ୍ରରେ ଉତ୍କୃଷ୍ଟ କାର୍ଯ୍ୟର ଅନୁଷ୍ଠାନ କର । ୫୭ । ମହାତ୍ମା ବଳଦେବ ସେହି ସ୍ଥାନରେ ଅନେକ ଅନେକ କୁଞ୍ଜ କାନନ ଦର୍ଶନ କରି ଏବଂ ସରସ୍ୱତୀ ନଦୀକୁ ନିବୃତ୍ତ ହୋଇଥିବାର ନିରୀକ୍ଷଣ କରି ବିସ୍ମୟାପନ୍ନ ହେଲେ । ୫୮ । ହେ ରାଜନ୍ ! ଯଦୁନନ୍ଦନ ବଳଦେବ ସେଠାରେ ଯଥାବିଧାନରେ ସରସ୍ୱତୀର ଜଳ-ସ୍ପର୍ଶପୂର୍ବକ ବ୍ରାହ୍ମଣମାନଙ୍କୁ ବିବିଧ ସୁବର୍ଣ୍ଣଭାଣ୍ଡ, ନାନାବିଧ ଭକ୍ଷ୍ୟ, ଭୋଜ୍ୟ, ପେୟ ଦ୍ରବ୍ୟସମୂହ ଦାନକରି ଦ୍ୱିଜାତିମାନଙ୍କ ଦ୍ୱାରା ପ୍ରଶଂସିତ ହୋଇ ସେଠାରୁ ପ୍ରସ୍ଥାନ କଲେ । ୬୦ ।

ତତ୍ପରେ ଯେଉଁ ସ୍ଥାନରେ ପୂର୍ବକାଳରେ ମହାମୁନି ମଙ୍କଣକ ସିଦ୍ଧ ହୋଇ ତପସ୍ୟାଚରଣ କରୁଥିଲେ, ହଳାୟୁଧ ସେହି ସପ୍ତସାରସ୍ୱତ ତୀର୍ଥକୁ ଆଗମନ କଲେ । ସରସ୍ୱତୀଙ୍କର ସେହି ତୀର୍ଥପ୍ରବର ଅନେକ ଅନେକ ଦ୍ୱିଜମଣ୍ଡଳଦ୍ୱାରା ପରିପୂର୍ଣ୍ଣ ; ବଦର, ଇଙ୍ଗୁଦ, କାଶ୍ମୀର, ଅଶ୍ୱତ୍ଥ, ପ୍ଲକ୍ଷ, ବିଭୀତକ, କଙ୍କୋଳ, ପଳାଶ, କରୀର, ପୀଲୁ, କରୂଷ, କରୁଣ, ବିଲ୍ୱ, ଆମ୍ରାତକ, ଅତିମୁକ୍ତ ଓ ପାରିଜାତକ ପ୍ରଭୃତି ସରସ୍ୱତୀର ତୀରଜାତ ନାନା ଜାତୀୟ ତରୁଗଣଦ୍ୱାରା ଅତି ଶୋଭିତ ; ନୟନହାରୀ ବହୁଳ କଦଳୀବନରେ ପରିବେଷ୍ଟିତ ; ବାୟୁଭକ୍ଷକ, ଜଳାହାରୀ, ଫଳାହାରୀ, ପତ୍ରଭକ୍ଷକ, ଦନ୍ତୋଲୂଖଳିକ, ଅଶ୍ମକୁଟ୍ଟ ଏବଂ ବାନେୟ ପ୍ରଭୃତି ଅନେକାନେକ ମୁନିଗଣ-ଦ୍ୱାରା ପରିବୃତ, ବେଦପାଠ ଦ୍ୱାରା ଧ୍ୱନିଯୁକ୍ତ, ଶତ ଶତ ମୃଗଯୂଥଦ୍ୱାରା ଆକୁ-ଳିତ, ଓ ଧର୍ମପରାୟଣ ଅହିଂସ୍ର ନରବୃନ୍ଦଦ୍ୱାରା ସୁଶୋଭିତ ହେଲା । ୬୬ ।

---

## ଅଧ୍ୟାୟ—୩୮

ଜନ୍ମେଜୟ କହିଲେ—ହେ ଦ୍ୱିଜବର ! ସପ୍ତସାରସ୍ୱତ ତୀର୍ଥ କି ନିମିତ୍ତ ଉତ୍ପନ୍ନ ହେଲା ? ମଙ୍କଣକ ମୁନି କିଏ ? ଭଗବାନ ସେହି ମଙ୍କଣକ ମୁନି କିପରି ସିଦ୍ଧ ହେଲେ ; ତାହାଙ୍କର କିପରି ନିୟମ ଥିଲା, ସେ କାହା ବଂଶରେ ଜନ୍ମଗ୍ରହଣ କରିଥିଲେ ଏବଂ କେଉଁ ବିଷୟ ଅଧ୍ୟୟନ କରିଥିଲେ, ଏହି ସମୁଦାୟ ବିଷୟ ଯଥାବିଧାନରେ ଶୁଣିବାକୁ ଇଚ୍ଛା କରୁଅଛି । ୨ ।

ବୈଶମ୍ପାୟନ କହିଲେ, ମହାରାଜ ! ଯେଉଁମାନେ ଏହି ସମୁଦାୟ ଜଗତକୁ ବ୍ୟାପି କରି ରହିଅଛନ୍ତି, ସେହିମାନଙ୍କୁ ସପ୍ତ ସରସ୍ୱତୀ କହନ୍ତି । ସେହିମାନଙ୍କ ନାମ ସୁପ୍ରଭା, କାଞ୍ଚନାକ୍ଷୀ, ବିଶାଳା, ମନୋରମା, ଓଘବତୀ, ସୁରେଣୁ ଓ ବିମଳୋଦକା । ଏହି ସପ୍ତ ସରସ୍ୱତୀ ଯେଉଁ ଯେଉଁ ଦେଶରେ ଅବସ୍ଥିତ କରିଅଛନ୍ତି, ସେମାନଙ୍କୁ ସେହି ସେହି ପ୍ରଦେଶୀୟ ବଳବାନ ଜନସମୂହ ଆହ୍ୱାନ କରିଥିଲେ । ୪ । ପିତାମହ ପ୍ରଜାପତିଙ୍କ ମହାଯାଗ ହେଉଥିବା ସମୟରେ ସୁବିସ୍ତୃତ ଯଜ୍ଞ ସ୍ଥଳରେ ବ୍ରାହ୍ମଣବୃନ୍ଦ ଉତ୍ତମ ରୂପେ ସିଦ୍ଧ ହେଲେ । ବିମଳ ପୁଣ୍ୟାହବାଚନ ଓ ବେଦଧ୍ୱନିଦ୍ୱାରା ସେହି ଯଜ୍ଞ-ବିଧିରେ ନିଯୁକ୍ତ ବ୍ରାହ୍ମଣଗଣ ଓ ଦେବଗଣ ନାନାକାର୍ଯ୍ୟରେ ବ୍ୟଗ୍ର ହେଲେ । ପିତାମହ ସର୍ବକାମ ସମୃଦ୍ଧିସାଧନ ଯାଗ କରିବାକୁ ଦୀକ୍ଷିତ ହୋଇ ତାହା ଆରମ୍ଭ କରନ୍ତେ ଧର୍ମପରାୟଣ ଲୋକସମୂହ ଯାଗସ୍ଥଳରେ ଯେଉଁ ଯେଉଁ ପଦାର୍ଥ ପ୍ରଦାନ କରିବାକୁ ଇଚ୍ଛୁକ ହେଉଥିଲେ, ଯଜ୍ଞକାରୀଙ୍କ ସମୀପରେ ସେହି ସେହି ପଦାର୍ଥ ଉପସ୍ଥିତ ହେଉଥିଲା । ୮ । ହେ ନୃପବର ! ସେହି ଯଜ୍ଞରେ ଗନ୍ଧର୍ବଗଣ ଗୀତଗାନ କରୁଥିଲେ ଓ ଅପ୍ସରାଗଣ ନୃତ୍ୟ ଏବଂ ମନୋହର ବାଦ୍ୟଧ୍ୱନି କରୁଥିଲେ । ୯ । ସେହି ଯଜ୍ଞର ସମ୍ପତ୍ତିଦ୍ୱାରା ଦେବତାମାନେ ପରମ ସନ୍ତୁଷ୍ଟ ଓ ବିସ୍ମୟାପନ୍ନ ହେଲେ, ମନୁଷ୍ୟମାନଙ୍କ ବିସ୍ମୟ ଜନ୍ମିଥିବାର ବିଚିତ୍ର ନୁହେ । ୧୦ ।

ହେ ରାଜନ୍ ! ପିତାମହ ପୁଷ୍କର ତୀର୍ଥରେ ରହି ତାଦୃଶ ସମାରୋହରେ ଯଜ୍ଞ କରିବାରୁ ଋଷିମାନେ କହିଲେ, ଏହି ଯଜ୍ଞରେ କୌଣସି ଉତ୍କୃଷ୍ଟ ଗୁଣ ଦେଖାଯିବ ନାହିଁ, କାରଣ ଏଠାରେ ନଦୀଶ୍ରେଷ୍ଠା ସରସ୍ୱତୀ ଦୃଶ୍ୟ ହେଉନାହାନ୍ତି । ୧୧ । ଭଗବାନ୍ ପ୍ରଜାପତି ତାହା ଶୁଣି ପ୍ରୀତିଯୁକ୍ତ ହୋଇ ତତ୍‌କ୍ଷଣାତ୍ ସରସ୍ୱତୀଙ୍କୁ ସ୍ମରଣ କଲେ । ୧୨ । ହେ ମହାରାଜ ! ଯଜ୍ଞକାରୀ ପିତାମହ ପୁଷ୍କର ତୀର୍ଥରେ ସରସ୍ୱତୀଙ୍କୁ ଆହ୍ୱାନ କଲାରୁ ସୁପ୍ରଭା ନାମ୍ନୀ ସରସ୍ୱତୀ ସେଠାରେ ଉପସ୍ଥିତ ହେଲେ । ମୁନିମାନେ ଭକ୍ତିଯୁକ୍ତ ହୋଇ ଆଗତା ସେହି ସରସ୍ୱତୀଙ୍କୁ ଦେଖି ପିତାମହ ଓ ମାନମାୟ ସରସ୍ୱତୀଙ୍କୁ ବହୁମାନ୍ୟରେ ପୂଜିତ କଲେ । ୧୪ । ହେ ମହାରାଜ ! ପିତାମହଙ୍କ ଆହ୍ୱାନଦ୍ୱାରା ସରସ୍ୱତୀ ଏହିପରି ପିତାମହ ଓ ମହର୍ଷିମାନଙ୍କ ସନ୍ତୋଷ ନିମିତ୍ତ ପୁଷ୍କର ତୀର୍ଥରେ ଉତ୍ପନ୍ନ ହେଲେ । ୧୫ ।

ହେ ରାଜନ୍ ! ପୂର୍ବେ ନୈମିଷାରଣ୍ୟରେ ଋଷିଗଣ ଏକତ୍ର ସମାଗତ ହୋଇ ବାସ କରୁଥିଲେ । ସେଠାରେ ବିଚିତ୍ର ବିଦ୍ୟାପାଠ ହେଉଥିଲା ।

ସେ ସ୍ଥାନରେ ଯେଉଁ ବେଦଜ୍ଞ ମୁନିଗଣ ବାସ କରୁଥିଲେ, ସେହି ସମସ୍ତ ଋଷିବୃନ୍ଦ ସେଠାକୁ ଆଗତ ହୋଇ ସରସ୍ୱତୀଙ୍କୁ ସ୍ମରଣ କଲେ । ୧୭ । ହେ ମହାରାଜ ! ସେହି କାଞ୍ଚନାକ୍ଷୀ ନାମ୍ନୀ ମହାଭାଗା ସରସ୍ୱତୀ ଯଜ୍ଞଯାଜୀ ଋଷିଗଣଙ୍କ ଧ୍ୟାନରେ ବଶବର୍ତ୍ତିନୀ ହୋଇ ସମାଗତ ମହାତ୍ମାମାନଙ୍କ ସାହାଯ୍ୟ ନିମିତ୍ତ ନୈମିଷାରଣ୍ୟକୁ ଆଗମନ କଲେ । ସେ ସେଠାକୁ ସମାଗତ ହୋଇ ଋଷିଗଣଙ୍କଦ୍ୱାରା ପୂଜିତ ହୋଇଥିଲେ । ଗୟ ଦେଶରେ ଗୟ ନାମକ ଯଜମାନଙ୍କ ମହାଯଜ୍ଞରେ ଆହୂତା ନଦୀଶ୍ରେଷ୍ଠା ସରସ୍ୱତୀଙ୍କୁ ସଂଶିତବ୍ରତ ଋଷିଗଣ ବିଶାଳା ନାମ ପ୍ରଦାନ କରିଅଛନ୍ତି । ସେହି ଶୀଘ୍ରଗାମିନୀ ନଦୀ ହିମାଳୟ ପର୍ବତର ପାର୍ଶ୍ୱଦେଶରୁ ପ୍ରବାହିତ ହେଉଅଛନ୍ତି ।

ହେ ଭରତ ! ଯଜମାନ ଉଦ୍ଦାଳକ ଯଜ୍ଞସ୍ଥଳକୁ ଆସିଥିଲେ । ସେହି ମହାତ୍ମାଙ୍କ ପବିତ୍ର ଉତ୍ତର କୋଶଳ ଭାଗରେ ଯଜ୍ଞକାରୀ ଉଦ୍ଦାଳକ ମୁନି ପୂର୍ବେ ସରସ୍ୱତୀଙ୍କୁ ଧ୍ୟାନ କରିଥିଲେ । ସରିତ୍‌ଶ୍ରେଷ୍ଠା ସରସ୍ୱତୀ ଋଷିଙ୍କ ନିମିତ୍ତ ସେଠାକୁ ଆଗମନ କଲେ । ସେ ବଲ୍‌କଳ ଓ ଚର୍ମାମ୍ବରଧାରୀ ଋଷିଗଣ କର୍ତ୍ତୃକ ପୂଜ୍ୟମାନ ହୋଇ ମନୋରମା ନାମରେ ବିଖ୍ୟାତ ହେଲେ, ଆଉ ସୁରେଣୁ ନାମ୍ନୀ ନଦୀଶ୍ରେଷ୍ଠା ମହାଭାଗା ସରସ୍ୱତୀ ରାଜର୍ଷିସେବିତ ଋଷଭ ଦ୍ୱୀପରେ ମହାନୁଭବ ଯଜମାନ କୁରୁରାଜଙ୍କ କୁରୁକ୍ଷେତ୍ରକୁ ଆଗମନ କରିଥିଲେ । ହେ ରାଜେନ୍ଦ୍ର ! ଓଘବତୀ ନାମ୍ନୀ ଦିବ୍ୟ ସଲିଳସମ୍ପନ୍ନା ସରସ୍ୱତୀ ମହାତ୍ମା ବଶିଷ୍ଠଙ୍କଦ୍ୱାରା ଆହୂତ ହୋଇ କୁରୁକ୍ଷେତ୍ରକୁ ଆଗମନ କରିଥିଲେ । ଯେତେବେଳେ ଦକ୍ଷ ପ୍ରଜାପତି ଗଙ୍ଗାଦ୍ୱାରରେ ଯଜ୍ଞ କରିଥିଲେ, ତେତେବେଳେ ମଧ୍ୟ ସୁରେଣୁ ନାମରେ ବିଖ୍ୟାତା ଶୀଘ୍ରଗାମିନୀ ସରସ୍ୱତୀ ସ୍ରୋତଦ୍ୱାରା ଆଗମନ କଲେ । ଭଗବାନ୍ ବ୍ରହ୍ମାଙ୍କ ଯଜ୍ଞ କାଳରେ ସମାହୂତା ଭଗବତୀ ବିମଲୋଦକା ସରସ୍ୱତୀ ପବିତ୍ର ହିମାଳୟ ପର୍ବତକୁ ଆଗମନ କଲେ । ତଦନନ୍ତର ଭୂମଣ୍ଡଳରେ ସେହି ପୁଣ୍ୟତୀର୍ଥ ସବୁ ଏକତ୍ରିତ ହେବାରୁ ସପ୍ତସାରସ୍ୱତ ତୀର୍ଥ ବିଖ୍ୟାତ ହେଲା ।

ହେ ମହାରାଜ ! ଏହିପରି ସପ୍ତ ସରସ୍ୱତୀଙ୍କ ନାମ କୀର୍ତ୍ତନ କଲୁଁ । ପବିତ୍ର ସପ୍ତ ସରସ୍ୱତୀ ତୀର୍ଥମାନଙ୍କ ବିବରଣ ମଧ୍ୟ ବର୍ଣ୍ଣନ କଲୁଁ । ସଂପ୍ରତି କୌମାରୀ ବ୍ରହ୍ମଚାରୀ ମଙ୍କଣକଙ୍କ ବୃତ୍ତାନ୍ତ ଶୁଣିବା ହେଉନ୍ତୁ । ୩୨ ।

ଉକ୍ତ ମୁନି ନଦୀ ମଧ୍ୟରେ ଅବଗାହନ କରି ଯେଉଁପରି କ୍ରୀଡ଼ା-କୌତୁକ କରୁଥିଲେ, ତାହା ଅତି ଆଶ୍ଚର୍ଯ୍ୟ । କୌଣସି ସମୟରେ

ସେ ସରସ୍ୱତୀରେ ଅବଗାହନ ନିମିତ୍ତ ଗମନକରି ଦୈବବଶରେ ଗୋଟିଏ ଅନିନ୍ଦ୍ୟ ସର୍ବାଙ୍ଗ ସୁନ୍ଦରୀ ମନୋହର କଟାକ୍ଷଶୀଳା ନାରୀଙ୍କୁ ଉଲଗ୍ନ ହୋଇ ସ୍ନାନ କରୁଥିବାର ଦେଖିଲେ । ତେତେବେଳେ ସରସ୍ୱତୀଜଳ ମଧ୍ୟରେ ତାହାଙ୍କର ରେତଃ ସ୍ଖଳିତ ହେଲା । ୩୪ । ମହାତପା ମୁନି ତତ୍‌କ୍ଷଣାତ୍ ଗୋଟିଏ କଳଶ ମଧ୍ୟରେ ସେହି ଅମୋଘ ବୀର୍ଯ୍ୟକୁ ରଖିଲେ । କ୍ରମେ କ୍ରମେ ସେହି କଳଶସ୍ଥିତ ବୀର୍ଯ୍ୟ ସପ୍ତଭାଗରେ ବିଭକ୍ତ ହୋଇଗଲା । ୩୫ । ତହିଁରୁ ସପ୍ତ ମରୁତ୍‌ଗଣ ଉତ୍ପନ୍ନ ହେଲେ । ସେମାନଙ୍କ ନାମ ବାୟୁବେଗ, ବାୟୁବଳ, ବାୟୁହା, ବାୟୁମଣ୍ଡଳ, ବାୟୁଜ୍ୱାଳ, ବାୟୁରେତା ଓ ବାୟୁଚକ୍ର ଅଟେ । ସେମାନେ ସମସ୍ତେ ଅତି ବୀର୍ଯ୍ୟଶାଳୀ ହୋଇଥିଲେ । ଏହିପରି ମରୁତ୍‌ଗଣଙ୍କର ଉତ୍ପତ୍ତି ହେଲା । ୩୬ । ଏଥି ଉତ୍ତାରେ ପୁନଶ୍ଚ ଅତି ଅଦ୍ଭୁତ ବିବରଣ କହୁଅଛୁ ।

ବିଭୁବନ ମଧ୍ୟରେ ମହର୍ଷିଙ୍କ ଚରିତ ଯେଉଁପରି ବିଖ୍ୟାତ ହୋଇଅଛି, ତାହା ଶୁଣିବା ହେଉନ୍ତୁ । ୩୮ । ଶୁଣାଅଛି, ପୂର୍ବେ ମଙ୍କଣକ ନାମକ ସିଦ୍ଧ ମହର୍ଷିଙ୍କ ହସ୍ତ କୁଶାଗ୍ରଦ୍ୱାରା କ୍ଷତ ହେବାରୁ ତନ୍ମଧ୍ୟରୁ ଶାକର ରସ ନିଃସୃତ ହେଲା । ୩୯ । ସେ କ୍ଷତ ସ୍ଥାନରୁ ଶାକର ନିର୍ଗତ ହେବାର ଦେଖି ଅତି ଆନନ୍ଦରେ ନୃତ୍ୟ କଲେ । ଋଷି ନୃତ୍ୟ କରନ୍ତେ, ସ୍ଥାବର ଓ ଜଙ୍ଗମ ଜୀବଗଣ ତାହାଙ୍କ ତେଜୋରାଶିଦ୍ୱାରା ବିମୋହିତ ହୋଇ ସେହିପରି ନୃତ୍ୟ କଲେ । ହେ ରାଜନ୍ ! ବ୍ରହ୍ମାଦି ଦେବଗଣ ଓ ତପୋଧନ ଋଷିଗଣ ମହାଦେବଙ୍କ ନିକଟରେ ଋଷିଙ୍କ ବିଷୟରେ ବିଜ୍ଞାପନପୂର୍ବକ କହିଲେ, ହେ ଦେବଗଣ ! ମଙ୍କଣକ ମହର୍ଷି ଯେଉଁପରି ଆଉ ନୃତ୍ୟ ନ କରିବେ, ତାହା ଆପଣ କରିବା ହେଉନ୍ତୁ । ୪୨ । ମହାଦେବ ଦେବଗଣଙ୍କର ଏହି ବାକ୍ୟ ଶୁଣିଲା ପରେ ସେହି ମୁନିଙ୍କୁ ହର୍ଷାବିଷ୍ଟ ହୋଇଥିବାର ଅବଲୋକନ କରି ସୁରବୃନ୍ଦର ହିତ ଇଚ୍ଛାରେ କହିଲେ, ( ୪୩ ) ହେ ଧର୍ମଜ୍ଞ ବ୍ରାହ୍ମଣ ! ଆପଣ କାହିଁପାଇଁ ନୃତ୍ୟ କରୁଅଛନ୍ତି ? ହେ ଦ୍ୱିଜବର ! ଆପଣ ଚିରକାଳ ତପସ୍ୱୀ ରହି ସମୟ ହରଣ କରୁଥାଆନ୍ତି । ଅତଏବ ହଠାତ୍ କେଉଁ କାରଣରୁ ଆପଣଙ୍କର ଏତାଦୃଶ ହର୍ଷ ଜାତ ହେଲା ?

ଋଷି କହିଲେ, ହେ ବ୍ରହ୍ମନ୍ ! ହେ ବିଭୋ ! ଆମ୍ଭେ ଯାହା ଅବଲୋକନ ପୂର୍ବକ ମହାଆନନ୍ଦରେ ନୃତ୍ୟ କରୁଅଛୁ, ଆପଣ କି ଆମ୍ଭ ହସ୍ତରୁ ନିଃସୃତ ହେଉଥିବା ସେହି ଶାକର ରସକୁ ଦେଖି ପାରୁନାହାନ୍ତି ? ମହାଦେବ ହାସ୍ୟ କରି ସେହି ରାଗବିମୋହିତ ଋଷିଙ୍କୁ କହିଲେ ( ୪୭ )

ହେ ବିପ୍ରବର ! ଆମ୍ଭେ ଏହା ଦେଖି କିଛି ବିସ୍ମିତ ହେଉନାହୁଁ । ଆମ୍ଭଙ୍କୁ ଅବଲୋକନ କର । ବୁଦ୍ଧିମାନ ଶଙ୍କର ଏହି କଥା କହି ଅଙ୍ଗୁଳିର ଅଗ୍ରଭାଗ ଦ୍ୱାରା ନିଜ ଅଙ୍ଗୁଷ୍ଠକୁ ଆଘାତ କଲେ । ତଦନନ୍ତର କ୍ଷତ ସ୍ଥାନରୁ ତୁଷାର ସଦୃଶ ଭସ୍ମ ନିର୍ଗତ ହେଲା ।

ମୁନି ତାହା ଦେଖି ଅତିଶୟ ଲଜ୍ଜିତ ହୋଇ ମହାଦେବଙ୍କ ପାଦଦ୍ୱୟରେ ପଡ଼ିଲେ ଏବଂ ତାହାଙ୍କୁ ମହାଦେବ ବୋଲି ଜାଣି ବିସ୍ମୟଯୁକ୍ତ ହୋଇ କହିଲେ, ଆମ୍ଭେ ଜାଣିଲୁ ମହାଦେବଙ୍କ ଅପେକ୍ଷା ଅଧିକ ଶ୍ରେଷ୍ଠତର କୌଣସି ଦେବତା ନାହାନ୍ତି । ହେ ଶୂଳଧର ! ତୁମ୍ଭେ କେବଳ ସୁରାସୁର ସହିତ ସମସ୍ତ ଭୁବନର ପ୍ରଧାନ ଗତି । ୫୦ । ପଣ୍ଡିତମାନେ କହନ୍ତି, ତୁମ୍ଭେ ଏହି ସମସ୍ତ ଭୁବନକୁ ସର୍ଜନ କରିଅଛ । ପ୍ରଳୟ କାଳରେ ସମସ୍ତ ବିଶ୍ୱମଣ୍ଡଳ ତୁମ୍ଭ ଦେହରେ ପ୍ରବିଷ୍ଟ ହୁଏ । ୫୧ । ହେ ଦେବେଶ ! ଆପଣଙ୍କୁ ଦେବତାବୃନ୍ଦ ଜାଣିବାକୁ ସମର୍ଥ ହୋଇ ପାରନ୍ତି ନାହିଁ । ଅତଏବ ମୁଁ କିପରି ଆପଣଙ୍କୁ ଜାଣି ପାରିବି ? ଭୁବନରେ ଯେତେ ପଦାର୍ଥ ଅଛନ୍ତି, ସେ ସମସ୍ତ ଆପଣଙ୍କଠାରେ ଦେଖାଯାଏ । ୫୨ । ହେ ଅନଘ ! ଆପଣ ବରଦାତା; ଏହି କାରଣରୁ ବ୍ରହ୍ମାଦି ସମସ୍ତ ଦେବତାବୃନ୍ଦ ଆପଣଙ୍କୁ ଉପାସନା କରନ୍ତି । ଆପଣ ସମସ୍ତ ଦେବତାମାନଙ୍କ କର୍ତ୍ତା ଏବଂ ସମସ୍ତଙ୍କର କାରୟିତା । ଅମରଗଣ ଭବଦୀୟ ପ୍ରସାଦରେ ଇହଲୋକରେ କାହାଠାରୁ ଭୟପ୍ରାପ୍ତ ନ ହୋଇ ଆନନ୍ଦ ଅନୁଭବ କରୁଅଛନ୍ତି । ଋଷି ମହାଦେବଙ୍କୁ ଏହିପରି ସ୍ତବ କରି ପ୍ରଣତ ହେଲେ ଏବଂ କହିଲେ, ହେ ଦେବ ! ମୁଁ ନୃତ୍ୟହାସଦ୍ୱାରା ଚପଳତା ପ୍ରକାଶ କରିଅଛି । ଅତଏବ ଆପଣଙ୍କୁ ପ୍ରସନ୍ନ କରାଇ ପ୍ରାର୍ଥନା କରୁଅଛି ଯେ ବିସ୍ମୟଜନିତ ହର୍ଷ ପ୍ରକାଶ ହେତୁରୁ ମୋର ତପସ୍ୟାକ୍ଷୟ ନୋହୁ । ୫୫ ।

ତଦନନ୍ତର ମହେଶ୍ୱର ପ୍ରୀତମନା ହୋଇ ମୁନିଙ୍କୁ କହିଲେ, ହେ ବିପ୍ର ! ଏତେବେଳେ ଆମ୍ଭ ଅନୁଗ୍ରହରେ ତୁମ୍ଭର ତପସ୍ୟା ପୂର୍ବ ଅପେକ୍ଷା ସହସ୍ରଗୁଣରେ ପରିବର୍ଦ୍ଧିତ ହେଉ । ଆମ୍ଭେ ଏହି ଆଶ୍ରମରେ ତୁମ୍ଭ ସହିତ ସର୍ବଦା ବାସ କରିବୁ । ଏହି ସପ୍ତସାରସ୍ୱତ ତୀର୍ଥରେ ଯେଉଁ ନରମାନେ ଆମ୍ଭଙ୍କୁ ଅର୍ଚ୍ଚନା କରିବେ, ସେମାନେ ଇହଲୋକ ଅବା ପରଲୋକରେ କୌଣସି ପଦାର୍ଥକୁ ଦୁର୍ଲ୍ଲଭ ବୋଲି ଜ୍ଞାନ କରିବେ ନାହିଁ ଏବଂ ସେମାନେ ସାରସ୍ୱତ ଲୋକକୁ ଗମନ କରିବେ । ଏଥିରେ କିଛି ସଂଶୟ ନାହିଁ ।

ହେ ମହାରାଜ ! ମହାତେଜା ମଙ୍କଣକଙ୍କର ଏହିପରି ଚରିତ ସବୁ କହିଲୁ ! ପୂର୍ବ କାଳରେ ସେହି ପୁତ୍ର ମାତରିଶ୍ୱା ବାୟୁଙ୍କଦ୍ୱାରା ସୁକନ୍ୟାନାମ୍ନୀ ସ୍ତ୍ରୀଙ୍କ ଗର୍ଭରେ ଜନ୍ମଗ୍ରହଣ କରିଥିଲେ । ସେହି ପବନପୁତ୍ର ବାୟୁଙ୍କଠାରୁ ପ୍ରଭୃତି ବିପ୍ରମାନଙ୍କ ଉତ୍ପତ୍ତିର କାରଣ । ୫୯ ।

---

## ଅଧ୍ୟାୟ—୩୯

ବୈଶମ୍ପାୟନ କହିଲେ—ମହାରାଜ ! ମହାବଳ ବଳଦେବ ସେହି ସ୍ଥାନରେ ଆଶ୍ରମବାସୀ ଋଷିଗଣଙ୍କୁ ପୂଜା କରି ଏକରାତି ରହି ମଙ୍କଣକଙ୍କଠାରେ ପରମ ପ୍ରୀତି ପ୍ରକାଶ କଲେ, ଏବଂ ଦ୍ୱିଜଗଣଙ୍କୁ ବହୁଳ ଧନ ଦାନ କରି ସେହି ରାତିଯାପନ ପୂର୍ବକ ପ୍ରଭାତରେ ଶଯ୍ୟାରୁ ଉତ୍‌ଥିତ ହୋଇ ମୁନିଗଣଙ୍କଦ୍ୱାରା ପୂଜିତ ଓ ଅନୁଜ୍ଞାପ୍ରାପ୍ତ ହୋଇ ତୀର୍ଥ ଜଳ ସ୍ପର୍ଶ କଲେ ଓ ଅନ୍ୟ ତୀର୍ଥକୁ ଗମନ କରିବା ନିମିତ୍ତ ତ୍ୱରାଯୁକ୍ତ ହୋଇ ସେଠାରୁ ପ୍ରସ୍ଥାନ କଲେ । ୩ ।

ତଦନନ୍ତର ମହାବଳ ବଳଦେବ କପାଳମୋଚନ ନାମକ ଔଶନସ ତୀର୍ଥରେ ଉପସ୍ଥିତ ହେଲେ । ହେ ମହାରାଜ ! ପୂର୍ବକାଳରେ ଯେଉଁ ସ୍ଥାନରେ ରାମଙ୍କ ନିକ୍ଷିପ୍ତ ଏକ ରାକ୍ଷସର ପ୍ରକାଣ୍ଡ ମସ୍ତକଦ୍ୱାରା ଗ୍ରସ୍ତଜଙ୍ଘ ମହୋଦର ମୁନି ମୁକ୍ତ ହୋଇଥିଲେ, ମହାତ୍ମା ଯେଉଁ ସ୍ଥାନରେ ରହି ଦୈତ୍ୟ ଦାନବମାନଙ୍କ ସଂଗ୍ରାମ ବିଷୟକୁ ଚିନ୍ତା କରିଥିଲେ, ମହାବଳ ବଳଦେବ ସେହି ଉତ୍କୃଷ୍ଟ ତୀର୍ଥରେ ପ୍ରବିଷ୍ଟ ହୋଇ ମହାତ୍ମା ବ୍ରାହ୍ମଣମାନଙ୍କୁ ବିଧିପୂର୍ବକ ବିପୁଳ ବିତ୍ତ ବିତରଣ କଲେ ।

ଜନ୍ମେଜୟ କହିଲେ, ଯେଉଁ ସ୍ଥାନରେ ଶୁକ୍ରାଚାର୍ଯ୍ୟ ତପସ୍ୟା କରିଥିଲେ, ହେ ବ୍ରହ୍ମନ୍ ! ସେହି ତୀର୍ଥର ନାମ କେଉଁ କାରଣରୁ କପାଳମୋଚନ ହେଲା ? ଏବଂ ସେହି ସ୍ଥାନରେ ନିଶାଚରର ମସ୍ତକ କେଉଁ କାରଣରେ ମୁନିଙ୍କ ଜଂଘାରେ ସଂଲଗ୍ନ ହୋଇଥିଲା ଓ ମହାମୁନି କେଉଁପରି ମୁକ୍ତ ହେଲେ ?

ବୈଶମ୍ପାୟନ କହିଲେ, ମହାରାଜ ! ପୂର୍ବକାଳରେ ମହାତ୍ମା ରାମଚନ୍ଦ୍ର ଯେଉଁ ସମୟରେ ଦଣ୍ଡକାରଣ୍ୟରେ ବାସ କରି ରାକ୍ଷସକୁଳ

ନିର୍ମୂଳ କଲେ, ସେତେବେଳେ ସେ ପ୍ରଖର ଧାରଯୁକ୍ତ କ୍ଷୁର ଅସ୍ତ୍ରଦ୍ୱାରା କୌଣସି ଦୁରାତ୍ମା ରାକ୍ଷସର ମସ୍ତକ ଛେଦନ କଲେ । ସେହି ମସ୍ତକ ପତିତ ହେଲାବେଳେ, ଜନସ୍ଥାନର ମହାବନ ମଧ୍ୟରେ ଦୈବବଶରେ ବିଚରଣଶୀଳ ମହୋଦର ମୁନିଙ୍କ ଅସ୍ଥି ଭେଦ କରି ଜଂଘାରେ ସଂଲଗ୍ନ ହେଲା । ହେ ରାଜନ୍ ! ରାକ୍ଷସର ମସ୍ତକ ମୁନିଙ୍କ ଜଙ୍ଘାରେ ସଂଲଗ୍ନ ହେବାରୁ ମହାପ୍ରାଜ୍ଞ ମୁନି ତୀର୍ଥ ଓ ଦେବତାଳୟକୁ ଯିବା ନିମିତ୍ତ ଅସମର୍ଥ ହେଲେ । କ୍ରମେ କ୍ରମେ ସେହି ସ୍ଥାନରୁ ଦୁର୍ଗନ୍ଧ ନିର୍ଗତ ହେବାରୁ ମୁନିବର ଅତ୍ୟନ୍ତ ବ୍ୟଥାପ୍ରାପ୍ତ ହେଲେ । ୧୩ । ଶୁଣାଅଛି, କିଛି କାଳପରେ ସେ ପୃଥିବୀସ୍ଥିତ ସମସ୍ତ ତୀର୍ଥକୁ ଗମନ କରିଥିଲେ । ସେହି ମହାତପା ମହର୍ଷି ସମୁଦାୟ ନଦୀ ଓ ସାଗରସମସ୍ତ ପର୍ଯ୍ୟଟନ ପୂର୍ବକ ଜ୍ଞାନଶୀଳ ଋଷିମାନଙ୍କୁ ତାହାର ବିବରଣ ଜଣାଇଲେ ଓ ସମସ୍ତ ତୀର୍ଥରେ ସ୍ନାନ କଲେ, କିନ୍ତୁ କୌଣସି ସ୍ଥାନରେ ସେହି ଛିନ୍ନ ମସ୍ତକ ତାହାଙ୍କ ଜଙ୍ଘାରୁ ନିର୍ଗତ ହେଲା ନାହିଁ । ୧୫ ।

ପରିଶେଷରେ ସେହି ବିପ୍ରବର ମୁନିମାନଙ୍କ ମୁଖରୁ ଶୁଣିଲେ ଯେ ସରସ୍ୱତୀର ପ୍ରଧାନ ତୀର୍ଥ ଔଶନସ ନାମକ ଗୋଟିଏ ପ୍ରଧାନ ସ୍ଥାନ ଅଛି । ସେଠାରେ ସର୍ବପାପର ଶାନ୍ତି ହୁଏ ଓ ତାହା ଅତି ଉତ୍କୃଷ୍ଟ ସିଦ୍ଧ କ୍ଷେତ୍ର ଅଟେ । ମହୋଦର ମୁନି ଋଷିମାନଙ୍କର ଏହି ବାକ୍ୟ ଶୁଣିଲା ମାତ୍ରେ ଔଶନସ ତୀର୍ଥକୁ ଗମନ କରି ତୀର୍ଥଜଳ ସ୍ପର୍ଶ କଲାମାତ୍ରେ ସେହି ଛିନ୍ନ ମସ୍ତକ ତତ୍କ୍ଷଣାତ୍ ତାହାଙ୍କ ଚରଣ ପରିତ୍ୟାଗ କରି ଜଳ ମଧ୍ୟରେ ପତିତ ହେଲା । ୧୮ । ମୁନି ସେହି ମସ୍ତକରୁ ବିମୁକ୍ତ ହୋଇ ପରମ ସୁଖ ଲାଭ କଲେ । ଛିନ୍ନ ମସ୍ତକ ମଧ୍ୟ ସେତେବେଳେ ଜଳମଧ୍ୟରେ ପତିତ ହେଲାରୁ ଅଦୃଶ୍ୟ ହେଲା । ୧୯ । ହେ ମହାରାଜ ! ତଦନନ୍ତର ନିଷ୍ପାପ ପବିତ୍ରସ୍ୱଭାବ ମହୋଦର ମୁନି ସେହି ମସ୍ତକରୁ ମୁକ୍ତ ହେବାରୁ କୃତକୃତ୍ୟ ଓ ପ୍ରୀତିଯୁକ୍ତ ହେଲେ । ଉକ୍ତ ମୂର୍ଦ୍ଧା ମଧ୍ୟ ଜଳ ମଧ୍ୟରେ ଅନ୍ତର୍ହିତ ହେଲା, ଏବଂ ସେହି ମହାତପା ସ୍ୱକୀୟ ପବିତ୍ର ଆଶ୍ରମକୁ ଆଗମନ କରି ଆତ୍ମଜ୍ଞ ମୁନିମାନଙ୍କୁ ସେହି ସମସ୍ତ ବିବରଣ କହିଲେ । ୨୧ । ହେ ମାନଦ ! ସମାଗତ ମୁନିଗଣ ତଦୀୟ ବାକ୍ୟ ଶ୍ରବଣ କରି ତଦବଧି ସେହି ତୀର୍ଥର ନାମ କପାଳମୋଚନ ବୋଲି ପ୍ରକାଶ କଲେ । ୨୨ । ପରିଶେଷରେ ମହୋଦର ମୁନି ପୁନଶ୍ଚ ସେହି ତୀର୍ଥବରକୁ ଗମନ ପୂର୍ବକ ତଦୀୟ ସୁମହତ୍ ଜଳ ପାନ କରି ସିଦ୍ଧିଲାଭ କରିଥିଲେ । ୨୩ ।

ହେ ମହାରାଜ ! ବୃଷ୍ଣି ପ୍ରବର ବଳଦେବ ସେହି ତୀର୍ଥରେ ବିପ୍ରଗଣଙ୍କୁ ବିପୁଳ ବିତ୍ତ ବିତରଣ କରି ଏବଂ ସେମାନଙ୍କୁ ଯଥାବିଧାନରେ ପୂଜା କରି ଋଷଙ୍ଗୁ ମୁନିଙ୍କ ଆଶ୍ରମକୁ ଗମନ କଲେ । ୨୪ । ହେ ରାଜନ୍ ! ଭାରତ ! ଯେଉଁ ସ୍ଥାନରେ ଆର୍ଷ୍ଟିଷେଣ ମୁନି ଘୋରତର ତପସ୍ୟା କରିଥିଲେ ଏବଂ ମହର୍ଷି ବିଶ୍ୱାମିତ୍ର ବ୍ରାହ୍ମଣତ୍ୱ ଲାଭ କରିଥିଲେ, ସେହି ଅତି ଉତ୍କୃଷ୍ଟ ଆଶ୍ରମରେ ସମସ୍ତ କାମନା ସିଦ୍ଧ ହୁଏ ବୋଲି ଅନେକ ଅନେକ ବ୍ରାହ୍ମଣବୃନ୍ଦ ଓ ମୁନିଗଣ ସର୍ବଦା ବସତି କରିଥାଆନ୍ତି । ୨୬ ।

ତଦନନ୍ତର ଋଷଙ୍ଗୁ ମୁନି ଯେଉଁ ସ୍ଥାନରେ କଳେବର ପରିତ୍ୟାଗ କରିଥିଲେ, ଶ୍ରୀମାନ୍ ହଳଧର ବିପ୍ରଗଣରେ ପରିବୃତ ହୋଇ ସେହି ସ୍ଥାନକୁ ଗମନ କଲେ । ୨୭ । ହେ ଭାରତ ! ଋଷଙ୍ଗୁ ବୃଦ୍ଧ ବ୍ରାହ୍ମଣ; ସେ ନିରନ୍ତର ତପସ୍ୟାରେ ରତ ଥାଆନ୍ତି । ସେହି ମହାତପା ଦେହତ୍ୟାଗ ବିଷୟରେ କୃତସଂକଳ୍ପ ହୋଇ ନାନା ପ୍ରକାର ଚିନ୍ତାକଲା ଉତ୍ତାରେ ପୁତ୍ରମାନଙ୍କୁ ଏକତ୍ର କରି କହିଲେ, ହେ ପୁତ୍ରଗଣ ! ତୁମ୍ଭେମାନେ ଆମ୍ଭଙ୍କୁ ପୃଥୂଦକ ତୀର୍ଥକୁ ନିଅ । ୨୯ । ତପୋଧନ ଋଷିକୁମାରଗଣ ତପସ୍ୱୀ ଋଷିଙ୍କୁ ଗତବୟସ୍କ ବିବେଚନା କରି ସରସ୍ୱତୀଙ୍କର ସେହି ତୀର୍ଥରେ ପ୍ରବିଷ୍ଟ କରାଇଲେ । ୩୦ । ମହାତପା ବୁଦ୍ଧିମାନ ମୁନି, ପୁତ୍ରଗଣଙ୍କଦ୍ୱାରା ତତ୍‌କ୍ଷଣାତ୍ ଶତ ଶତ ପବିତ୍ର ତୀର୍ଥ ସଂଯୁକ୍ତ ଓ ବ୍ରାହ୍ମଣମାନଙ୍କଦ୍ୱାରା ନିଷେବିତ ସରସ୍ୱତୀରେ ଉପସ୍ଥିତ ହୋଇ ତୀର୍ଥର ଗୁଣ ସ୍ମରଣ ପୂର୍ବକ ଯଥାବିଧିରେ ତୀର୍ଥଜଳରେ ସ୍ନାନ-କଲେ ।

ହେ ମହାରାଜ ! ପରିଶେଷରେ ସେହି ଋଷିଶ୍ରେଷ୍ଠ ସେବାକାରକ ପୁତ୍ରମାନଙ୍କ ଠାରେ ଅତ୍ୟନ୍ତ ପ୍ରୀତ ହୋଇ କହିଲେ, ସରସ୍ୱତୀର ଉତ୍ତର ତୀରସ୍ଥିତ ପୃଥୂଦକରେ ଯେଉଁ ବ୍ୟକ୍ତି ଜପପରାୟଣ ହୋଇ ସ୍ୱୀୟ କଳେବର ପରିତ୍ୟାଗ କରିବେ, ସେ ଆଉ ପର ଜନ୍ମରେ ମୃତ୍ୟୁର ଯନ୍ତ୍ରଣା ଭୋଗ କରିବେ ନାହିଁ । ହେ ରାଜନ୍ ! ଧର୍ମାତ୍ମା ବିପ୍ରବତ୍ସଳ ବଳଦେବ ସେହି ସ୍ଥାନର ତୀର୍ଥ ଜଳରେ ସ୍ନାନ କରି ବିପ୍ରମାନଙ୍କୁ ବିପୁଳ ବିତ୍ତ ବିତରଣ କଲେ । ହେ କୌରବ୍ୟ ! ସର୍ବଲୋକ ପିତାମହ ଭଗବାନ ପ୍ରଜାପତି ଯେଉଁ ସ୍ଥାନରେ ଲୋକସୃଷ୍ଟି କରିଥିଲେ, ସଂଶିତବ୍ରତ ଋଷିଶ୍ରେଷ୍ଠ ଆର୍ଷ୍ଟିଷେଣ ନାମକ ମୁନି ମହାତପସ୍ୟା ବଳରେ ଯେଉଁଠାରେ ବ୍ରାହ୍ମଣତ୍ୱକୁ ପ୍ରାପ୍ତ

ହୋଇଥିଲେ ଏବଂ ରାଜର୍ଷି ସିନ୍ଧୁଦ୍ୱୀପ, ମହାତପା ଦେବାପି ଓ ମହାତପସ୍ୱୀ ଭଗବାନ୍ ବିଶ୍ୱାମିତ୍ର ମୁନି ବ୍ରାହ୍ମଣତ୍ୱ ଲାଭ କରିଥିଲେ, ପ୍ରତାପଶାଳୀ ଭଗବାନ ବଳଦେବ ସେହି ସ୍ଥାନକୁ ଗମନ କଲେ ।

---

## ଅଧ୍ୟାୟ—୪୦

ଜନ୍ମେଜୟ କହିଲେ—ହେ ବ୍ରହ୍ମନ୍ ! ଭଗବାନ ଆର୍ଷ୍ଟିଷେଣ ମୁନି କେଉଁ ପ୍ରକାରରେ ବିପୁଳ ତପସ୍ୟା କରିଥିଲେ, କେଉଁ ପ୍ରକାରରେ ଅବା ସିନ୍ଧୁଦ୍ୱୀପ, ଦେବାପି ଓ ମୁନିଶ୍ରେଷ୍ଠ ବିଶ୍ୱାମିତ୍ର ବ୍ରାହ୍ମଣତ୍ୱ ଲାଭ କରିଥିଲେ, ସେହି ସମସ୍ତ ବୃତ୍ତାନ୍ତ ଆମ୍ଭ ନିକଟରେ ବର୍ଣ୍ଣନା କରିବା ହେଉନ୍ତୁ । ଏହି ସମସ୍ତ ବିଷୟ ଶ୍ରବଣ କରିବାକୁ ଆମ୍ଭର ଅତିଶୟ କୌତୂହଳ ହେଉଅଛି । ୨ ।

ବୈଶମ୍ପାୟନ କହିଲେ, ମହାରାଜ ! ପୂର୍ବକାଳରେ ସତ୍ୟ ଯୁଗରେ ଆର୍ଷ୍ଟିଷେଣ ନାମକ ଜଣେ ଦ୍ୱିଜବର ଗୁରୁକୁଳରେ ଅବସ୍ଥାନ କରି ସର୍ବଦା ଅଧ୍ୟୟନରେ ରତ ଥିଲେ । ୩ । ହେ ରାଜନ୍ ! ସେ ସର୍ବଦା ଗୁରୁକୁଳରେ ବାସ କଲେ ସୁଦ୍ଧା ତାହାଙ୍କର ବିଦ୍ୟାର ସମାପ୍ତି ଅବା ବେଦପାଠର ନିଷ୍ପତ୍ତି ହେଲା ନାହିଁ; ସୁତରାଂ ସେହି ମହାତପା ଅତିଶୟ ଦୁଃଖିତ ହୋଇ ସେହି ସରସ୍ୱତୀ ତୀରରେ ତପସ୍ୟା କଲେ । ତଦନନ୍ତର ସେ ସେହି ତପସ୍ୟା ଦ୍ୱାରା ବେଦଶାସ୍ତ୍ରରେ ଅତି ଉତ୍କୃଷ୍ଟ ଜ୍ଞାନ ଲାଭ କଲେ ଓ ବିଦ୍ୱାନ୍ ହୋଇ ସର୍ବତ୍ର ଆଦର ପ୍ରାପ୍ତ ହେଲେ ଏବଂ କ୍ରମେ ଋଷିଶ୍ରେଷ୍ଠ ବୋଲାଇଲେ । ସେହି ମହାତପା ଉକ୍ତ ତୀର୍ଥରେ ତିନିଗୋଟି ବର ଦାନ କରିଥିଲେ । ପ୍ରଥମ ବର ଏହି ଯେ, ଆଜଠାରୁ ଏହି ମହାନଦୀ ତୀର୍ଥରେ ଯେଉଁ ନର ସ୍ନାନ କରିବେ, ସେ ଅଶ୍ୱମେଧ ଯାଗର ଫଳ ଭାଗୀ ହେବେ । ୭ । ଦ୍ୱିତୀୟ ବର ଏହି ଯେ ଆଜଠାରୁ ଏହି ତୀର୍ଥରେ ସର୍ପ ଭୟ ରହିବ ନାହିଁ । ତୃତୀୟ ବର ଏହି ଯେ ଏହି ସ୍ଥାନରେ ଅଳ୍ପ ଯତ୍ନ ଦ୍ୱାରା ଲୋକମାନେ ପ୍ରଚୁର ଫଳ ପ୍ରାପ୍ତ ହେବେ । । ୮ । ମହାତେଜା ମୁନି ଏହିପରି କହି ଦେବଲୋକକୁ ଗମନ କଲେ । ହେ ମହାରାଜ ! ମହାତେଜସ୍ୱୀ ଭଗବାନ୍ ଆର୍ଷ୍ଟିଷେଣ ଏହି ପ୍ରକାରରେ ସିଦ୍ଧ ହୋଇଥିଲେ ଓ ତେତେବେଳେ ସେହି ତୀର୍ଥରେ ପ୍ରତାପଶାଳୀ ସିନ୍ଧୁ-

ଦ୍ୱୀପ ଓ ଦେବାପି ଅତି ଉତ୍କୃଷ୍ଟ ବ୍ରାହ୍ମଣତ୍ୱ ଲାଭ କରିଥିଲେ ଓ ତପୋନିଷ୍ଠ ଜିତେନ୍ଦ୍ରିୟ କୁଶିକନନ୍ଦନ ବିଶ୍ୱାମିତ୍ର ଅତି ଉତ୍କୃଷ୍ଟ ତପସ୍ୟା ଦ୍ୱାରା ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇଥିଲେ । ୧୧ ।

ମହାରାଜ ! ପୂର୍ବକାଳରେ ଭୂମଣ୍ଡଳରେ ଗାଧି ନାମକ ଭୁବନ-ବିଖ୍ୟାତ ଜଣେ ପ୍ରଧାନ କ୍ଷତ୍ରିୟ ଥିଲେ । ତାହାଙ୍କର ବିଶ୍ୱାମିତ୍ର ନାମକ ଅତି ପ୍ରତାପଶାଳୀ ଗୋଟିଏ ପୁତ୍ର ଥିଲେ । ୧୨ । ଗାଧିରାଜା ପରିଣାମଦଶାରେ ମହାଯୋଗୀ ହୋଇଥିଲେ । ନରପାଳ ସ୍ୱୟଂ ପୁତ୍ର ବିଶ୍ୱାମିତ୍ରଙ୍କୁ ରାଜ୍ୟରେ ଅଭିଷିକ୍ତ କରି ଦେହତ୍ୟାଗ ବିଷୟରେ ମନଯୋଗୀ ହେବାରୁ ପ୍ରଜାଗଣ ତାହାଙ୍କ ନିକଟରେ ପ୍ରଣତ ହୋଇ କହିଲେ, ହେ ମହାପ୍ରାଜ୍ଞ ମହୀପାଳ ! ଆପଣ ଯାଆନ୍ତୁ ନାହିଁ । ଆମ୍ଭମାନଙ୍କୁ ମହାଭୟରୁ ପରିତ୍ରାଣ କରିବା ହେଉନ୍ତୁ । ୧୪ ।

ଗାଧିରାଜା ପ୍ରଜାମାନଙ୍କଠାରୁ ଏହି ବାକ୍ୟ ଶୁଣି ସେମାନଙ୍କୁ କହିଲେ, ହେ ପ୍ରଜାବୃନ୍ଦ ! ଆମ୍ଭର ଏହି ପୁତ୍ର ସମସ୍ତ ଭୁବନର ରକ୍ଷାକର୍ତ୍ତା ହେବେ । ୧୫ । ଗାଧିରାଜା ପ୍ରଜାମାନଙ୍କୁ ଏହିପରି କହି ବିଶ୍ୱାମିତ୍ରଙ୍କୁ ରାଜ୍ୟରେ ସ୍ଥାପନପୂର୍ବକ ସୁରଲୋକକୁ ଗମନ କଲେ । ତତ୍ପରେ ବିଶ୍ୱାମିତ୍ର ରାଜା ହେଲେ ; କିନ୍ତୁ ସେ ସାଧ୍ୟାନୁସାରେ ଯତ୍ନ କରି ସୁଦ୍ଧା ସୁଚାରୁରୂପେ ପୃଥିବୀକୁ ପାଳନ କରି ପାରିଲେ ନାହିଁ । କିୟତ୍‌କାଳ ଉତ୍ତାରେ ରାଜା ରାଜ୍ୟ ମଧ୍ୟରେ ରାକ୍ଷସଗଣଙ୍କଠାରୁ ମହାଭୟ ଉପସ୍ଥିତ ହୋଇଅଛି ବୋଲି ଶ୍ରବଣ କଲେ । ପରେ ଚତୁରଙ୍ଗ ସୈନ୍ୟରେ ପରିବୃତ ହୋଇ ନଗରରୁ ନିର୍ଗତ ହେଲେ । ସେ ବହୁଦୂର ଗମନପୂର୍ବକ ବଶିଷ୍ଠଙ୍କ ଆଶ୍ରମରେ ପ୍ରବିଷ୍ଟ ହେଲେ । ୧୮ । ସେଠାରେ ତାହାଙ୍କର ସେହି ସମସ୍ତ ସୈନିକ ବହୁତ ଅତ୍ୟାଚାର କଲେ । ତଦନନ୍ତର ବିପ୍ରବର ଭଗବାନ ବଶିଷ୍ଠ ଆଶ୍ରମକୁ ଆସି ସୈନ୍ୟମାନଙ୍କଦ୍ୱାରା ତାହାଙ୍କ ମହାବନ ଭଗ୍ନ ହୋଇଥିବାର ଦେଖିଲେ । ଅତଏବ ସେହି ମୁନିବର ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ ସ୍ୱକୀୟ କାମଧେନୁକୁ ଘୋରତର ଶବର ସୈନ୍ୟ ସୃଷ୍ଟି କରିବାକୁ ଆଜ୍ଞା ଦେଲେ । ଧେନୁ ମୁନିଙ୍କ ଆଜ୍ଞାପ୍ରାପ୍ତ ହୋଇ ମୁନିଙ୍କର ମୂର୍ତ୍ତି ଧାରପୂରୁଷମାନଙ୍କୁ ସର୍ଜନ କଲେ । ୨୧ ।

ନୃପସୈନ୍ୟମାନେ ଶବର ସୈନ୍ୟମାନଙ୍କୁ ଦେଖି ଭଗ୍ନ ହୋଇ ନାନା ଦିଗକୁ ପଳାୟନ କଲେ । ଗାଧିପୁତ୍ର ବିଶ୍ୱାମିତ୍ର ସୈନ୍ୟମାନଙ୍କ ପଳାୟନ ସମାଚାର ଶ୍ରବଣ କରି ତପସ୍ୟାର ପ୍ରଭାବକୁ ଶ୍ରେଷ୍ଠ ବୋଲି ଜାଣି ତପସ୍ୟା

ବିଷୟରେ ମନଯୋଗୀ ହେଲେ । ହେ ମହାରାଜ ! ସେ ସରସ୍ୱତୀର ଏହି ତୀର୍ଥରେ ସ୍ଥିରଚିତ୍ତ ହୋଇ ନିୟମ ଓ ଉପବାସ ପ୍ରଭୃତିଦ୍ୱାରା ସ୍ୱକୀୟ କଳେବରକୁ କ୍ଲେଶ ଦେଇ କେତେବେଳେ ଅବା ପତ୍ର ଆହାର କରି ସମୟ ଯାପନ କଲେ । କେତେବେଳେ ସ୍ଥଣ୍ଡିଳଶାୟୀ ହୁଅନ୍ତି, କେତେବେଳେ ତଦ୍‌ଭିନ୍ନ ଅନ୍ୟାନ୍ୟ ଯେଉଁ ନିୟମସବୁ ଅଛି ତାହା ପ୍ରତିପାଳନ କରନ୍ତି । କେତେବେଳେ ଦେବମାନେ ତାହାଙ୍କର ତପସ୍ୟାକୁ ବାରମ୍ବାର ବିଘ୍ନ କଲେ । କିନ୍ତୁ ସେହି ମହାତ୍ମାଙ୍କ ବୁଦ୍ଧି କଦାପି ନିୟମରୁ ନିବର୍ତ୍ତିଲା ନାହିଁ । ତଦନନ୍ତର ଗାଧିପୁତ୍ର ଅତିଶୟ ଯତ୍ନଦ୍ୱାରା ବହୁବିଧ ତପସ୍ୟା କରି ତେଜୋରାଶି ପ୍ରଭାବରେ ସୂର୍ଯ୍ୟଦେବଙ୍କ ସଦୃଶ ଆକାର ପ୍ରାପ୍ତ ହେଲେ । ବରଦାତା ପିତାମହ ବିଶ୍ୱାମିତ୍ରଙ୍କୁ ତାଦୃଶ କଠୋର ତପସ୍ୟାରେ ନିଯୁକ୍ତ ହୋଇଥିବାର ଦେଖି ତାହାଙ୍କୁ ବର ପ୍ରଦାନ କରିବାକୁ ଇଚ୍ଛୁକ ହେଲେ ।

ହେ ରାଜନ୍ ! ବିଶ୍ୱାମିତ୍ର ତାହାଙ୍କୁ ଏହି ବର ପ୍ରାର୍ଥନା କଲେ ଯେ, 'ହେ ପିତାମହ ! ମୁଁ ବ୍ରାହ୍ମଣ ହେବି, ମତେ ଏହି ବର ପ୍ରଦାନ କରିବା ହେଉନ୍ତୁ ।' ତଦନନ୍ତର ସର୍ବଲୋକ ପିତାମହ ବ୍ରହ୍ମା, 'ତଥାସ୍ତୁ' ବୋଲି କହିଲେ । ତତ୍ପରେ ମହାଯଶା ବିଶ୍ୱାମିତ୍ର ଉଗ୍ର ତପସ୍ୟାଦ୍ୱାରା ବ୍ରାହ୍ମଣତ୍ୱ ଲାଭ କରି ପୂର୍ଣ୍ଣମନୋରଥ ହୋଇ ଅଖଣ୍ଡ ଭୂମଣ୍ଡଳରେ ଦେବତା ସଦୃଶ ବିଚରଣ କଲେ । ମହାରାଜ ! ବଳଦେବ ସେହି ତୀର୍ଥରେ ବିବିଧ ବିତ୍ତ ବିତରଣ କରି ସାନନ୍ଦ ଚିତ୍ତରେ ବ୍ରାହ୍ମଣମାନଙ୍କୁ ପୂଜା ପୂର୍ବକ ଦୁଗ୍ଧବତୀ ଧେନୁ, ଯାନ, ଶଯ୍ୟା, ଅତି ରମଣୀୟ ବସ୍ତ୍ର, ଭୂଷଣ ଓ ପାନଭୋଜନ ସମ୍ପ୍ରଦାନ କଲେ । ହେ ମହାରାଜ ! ତତ୍ପରେ ସେ ନିକଟବର୍ତ୍ତୀ ବକ ମୁନିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସେହି ସ୍ଥାନରେ ବକ ନାମରେ ବିଖ୍ୟାତ ଦାଲ୍‌ଭ୍ୟମୁନି ଅତି ତୀବ୍ର ତପସ୍ୟା କରିଥିଲେ । ୩୩ ।

---

# ଅଧ୍ୟାୟ—୪୧

ବୈଶମ୍ପାୟନ କହିଲେ—ମହାରାଜ.! ତଦନନ୍ତର ଯଦୁନନ୍ଦନ ବଳଦେବ ଅବାକୀର୍ଣ୍ଣ ତୀର୍ଥକୁ ଗମନ କଲେ । ସେହିଠାରେ ପ୍ରତାପଶାଳୀ ମହାତପସ୍ୱୀ ମହାନୁଭବ ଦାଲ୍‌ଭ୍ୟମୁନି ବକ ଆଶ୍ରମରେ ଥାଇ ସୁଦ୍ଧା ମହା ଘୋରତର ତପସ୍ୟାଦ୍ୱାରା ସ୍ୱକୀୟ ଦେହକୁ କ୍ଳେଶ ଦେଇ ବିଚିତ୍ର-ବୀର୍ଯ୍ୟଙ୍କ ପୁତ୍ର ଧୃତରାଷ୍ଟ୍ର ନରପତିଙ୍କ ରାଜ୍ୟକ୍ଷୟ କାମନାରେ ହୋମ କରିଥିଲେ । ୧୨ ।

ପୂର୍ବକାଳରେ ନୈମିଷାରଣ୍ୟବାସୀ ଋଷିମାନଙ୍କ ଦ୍ୱାଦଶ ବାର୍ଷିକ ଯଜ୍ଞ ସମାପ୍ତ ହେବାରୁ ସେମାନେ ବିଶ୍ୱଜୟୀ ପାଞ୍ଚାଳମାନଙ୍କ ନିକଟକୁ ଗମନ କରିଥିଲେ । ମନୀଷୀ ଋଷିବୃନ୍ଦ ନରପାଳଙ୍କ ସନ୍ନିଧିରେ ଦକ୍ଷିଣା ନିମିତ୍ତ ସବଳ ଓ ବ୍ୟାଧିଶୂନ୍ୟ ଏକବିଂଶତି ବତ୍ସତର ପ୍ରାପ୍ତ ହୋଇଥିଲେ । ଦାଲ୍‌ଭ୍ୟ ବକମୁନି ସେହି ଋଷିମାନଙ୍କୁ ବତ୍ସତର ସବୁ ବିଭାଗ କରି-ନେବାକୁ କହିଲେ । ପୁନଶ୍ଚ କହିଲେ, ଆମ୍ଭେ ଏହି ସମସ୍ତ ପଶୁ ପରିତ୍ୟାଗ ପୂର୍ବକ ପ୍ରଧାନ ଭୂପତିଙ୍କ ନିକଟରେ ଆଉ କିଛି ଭିକ୍ଷା କରିବୁଁ ।

ହେ ମହାରାଜ ! ତତ୍ପରେ ପ୍ରତାପଶାଳୀ ଦ୍ୱିଜବର ଦାଲ୍‌ଭ୍ୟମୁନି ଋଷିମାନଙ୍କୁ ଏହିପରି କହି ଧୃତରାଷ୍ଟ୍ରଙ୍କ ନିକଟବର୍ତ୍ତୀ ହୋଇ ପଶୁ ପ୍ରାର୍ଥନା କରିବାରୁ ନୃପବର ଧୃତରାଷ୍ଟ୍ର ତେତେବେଳେ ଦୈବବଶରେ ମୃତ ହୋଇ-ଥିବା ନିଜର ପଶୁମାନଙ୍କୁ ଦେଖି ଦାଲ୍‌ଭ୍ୟ ମୁନିଙ୍କଠାରେ ରୋଷାବିଷ୍ଟ ହୋଇ କହିଲେ,. ହେ ବ୍ରହ୍ମବନ୍ଧୋ ! ଯଦି ଇଚ୍ଛା ହୁଏ, ତେବେ ଶୀଘ୍ର ଏହି ମୃତ ପଶୁମାନଙ୍କୁ ଗ୍ରହଣ କରିବା ହେଉନ୍ତୁ । ଧର୍ମଜ୍ଞ ଋଷି ରାଜାଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ମନେ ମନେ ଚିନ୍ତା କଲେ—ହା କି କଷ୍ଟ ହେଲା ! ରାଜା ସଭା ମଧ୍ୟରେ କି ନୃଶଂସ ବାକ୍ୟ କହିଲେ ! ଏହିପରି ଦ୍ୱିଜବର ମୁହୂର୍ତ୍ତକ ପର୍ଯ୍ୟନ୍ତ ଚିନ୍ତା କରି ରୋଷାବିଷ୍ଟ ହୋଇ ନରପତି ଧୃତରାଷ୍ଟ୍ରଙ୍କ ବିନାଶ ନିମିତ୍ତ ମନୋନିବେଶ କଲେ । ପରିଶେଷରେ ସେହି ମୁନିବର ସରସ୍ୱତୀର ଅବାକୀର୍ଣ୍ଣ ତୀର୍ଥରେ ଅଗ୍ନି ପ୍ରଜ୍ୱଳନ ପୂର୍ବକ ମୃତ ଗୋରୁମାନଙ୍କ ମାଂସ କର୍ତ୍ତନ କରି ଧୃତରାଷ୍ଟ୍ର ରାଜାଙ୍କ ରାଜ୍ୟକ୍ଷୟ ନିମିତ୍ତ ହୋମ କଲେ । ୧୨ ।

ହେ ମହାରାଜ ! ମହାତପା ଦାଲ୍‌ଭ୍ୟ ମୁନି ପରମ ନିୟମନିଷ୍ଠ ହୋଇ ସେହି ସମସ୍ତ ମୃତ ପଶୁମାନଙ୍କ ମାଂସ ଦ୍ୱାରା ଧୃତରାଷ୍ଟ୍ରଙ୍କ ରାଜ୍ୟକ୍ଷୟ ନିମିତ୍ତ ହୋମ କଲେ । ସେହି ସୁଦାରୁଣ ଯଜ୍ଞ ବିଧିଅନୁସାରେ ନିର୍ବାହିତ

ହେବାରୁ ଧୃତରାଷ୍ଟ୍ରଙ୍କ ରାଜ୍ୟ କ୍ଷୟ ହେଲା । ୧୧ । ହେ ବିପ୍ରେ ! ଧୃତରାଷ୍ଟ୍ରଙ୍କ ରାଜ୍ୟ ପରଶୁଦ୍ୱାରା ଛିଦ୍ୟମାନ ଓ ବିଦ୍ଧ୍ୟମାନ ମହାବନ ପରି କ୍ଷୟପ୍ରାପ୍ତ ହେଲା । ରାଜ୍ୟସ୍ଥିତ ଲୋକମାନେ ଆପଦ୍‌ଗ୍ରସ୍ତ, ବିକ୍ଷିପ୍ତ ଓ ଅଚେତନ ହେଲେ । ରାଜା ଧୃତରାଷ୍ଟ୍ର ସ୍ୱକୀୟ ରାଜ୍ୟର ତାଦୃଶ ଦଶା ଅବଲୋକନ କରି ଅତ୍ୟନ୍ତ ଦୁର୍ମନା ହୋଇ ଚିନ୍ତା କଲେ । ପରିଶେଷରେ ବ୍ରାହ୍ମଣମାନଙ୍କ ସହିତ ମନ୍ତ୍ରଣା ପୂର୍ବକ ଉପସ୍ଥିତ ଆପଦରୁ ଯେଉଁପରି ମୁକ୍ତ ହେବେ, ତଦ୍‌ ବିଷୟରେ ଯତ୍ନ କଲେ । ୧୨ । ରାଜା ବିଶେଷ ଯତ୍ନପରାୟଣ ହେଲେ ସୁଦ୍ଧା କୌଣସି ପ୍ରକାରରେ ମଙ୍ଗଳ ଲାଭ କରି ପାରିଲେ ନାହିଁ । ସମସ୍ତ ରାଜ୍ୟ କ୍ଷୟପ୍ରାପ୍ତ ହେଲା ।

ହେ ମହାରାଜ ଜନମେଜୟ ! ଯେତେବେଳେ ରାଜା ଓ ବ୍ରାହ୍ମଣମାନେ ଅତ୍ୟନ୍ତ ଖେଦପ୍ରାପ୍ତ ହେଲେ, ରାଜା ରାଜ୍ୟର ଉଦ୍ଧାର ନିମିତ୍ତ ଅସମର୍ଥ ହେଲେ, ତେତେବେଳେ ନରପାଳ ପ୍ରଶ୍ନର ଉତ୍ତରଦାତା ଗଣକମାନଙ୍କୁ ଉକ୍ତ ବିଷୟର କାରଣ ପଚାରିବାରୁ ସେମାନେ କହିଲେ, ମହାରାଜ !! ଆପଣ ଦାଲ୍‌ଭ୍ୟ ମୁନିଙ୍କୁ ପଶୁ ନିମିତ୍ତ ତିରସ୍କାର କରିଥିଲେ; ସେହି ହେତୁରୁ ଆପଣଙ୍କ ରାଜ୍ୟର ବିଶେଷ କ୍ଷୟ ଘଟୁଅଛି । ତାହାଙ୍କ ତପସ୍ୟା ପ୍ରଭାବରେ ଆପଣଙ୍କର ଏହି ମହା ଅନିଷ୍ଟ ହୋଇଅଛି । ହେ ମହାରାଜ ! ଏତେବେଳେ ସେ ସରସ୍ୱତୀ ତୀରସ୍ଥିତ କୁଞ୍ଜରେ ବସତି କରିଅଛନ୍ତି । ଆପଣ ସେଠାକୁ ଯାଇ ତାହାଙ୍କୁ ପ୍ରସନ୍ନ କରନ୍ତୁ । ହେ ଭରତଶ୍ରେଷ୍ଠ ! ତଦନନ୍ତର ରାଜା ସରସ୍ୱତୀର ନିକଟସ୍ଥିତ କୁଞ୍ଜକୁ ଗମନ ପୂର୍ବକ ବକମୁନିଙ୍କୁ ଭୂମିଷ୍ଠ ହୋଇ ପ୍ରଣାମ କରି କୃତାଞ୍ଜଳିପୁଟରେ କହିଲେ, ହେ ଭଗବାନ ! ଆମ୍ଭେ ଆପଣଙ୍କୁ ଅନୁଗ୍ରହ ପ୍ରାର୍ଥନା କରୁଅଛୁ । ମୂର୍ଖତା ଓ ଅଜ୍ଞାନତାବଶରୁ ଆମ୍ଭର ଯେଉଁ ଅପରାଧ ହୋଇଅଛି, ତାହା ଆପଣ କ୍ଷମା କରିବା ହେଉନ୍ତୁ । ଆପଣ ଆମ୍ଭର ଗତି ଓ ଅଧିପତି, ଅତଏବ ଅନୁଗ୍ରହ ପ୍ରକାଶ କରିବା ହେଉନ୍ତୁ । ୨୪ ।

ହେ ମହାରାଜ ! ଋଷି ରାଜାଙ୍କୁ ଏହିପରି ଶୋକାକୁଳ ଓ ବିଳାପ କରିବାର ଦେଖି ତାହାଙ୍କଠାରେ କୃପାଳୁ ହେଲେ ଓ ତଦୀୟ ରାଜ୍ୟ ମୋଚନ କଲେ । ୨୫ । ପରିଶେଷରେ ସେହି ଋଷିଶ୍ରେଷ୍ଠ କ୍ରୋଧ ପରିତ୍ୟାଗ ପୂର୍ବକ ନରପତିଙ୍କଠାରେ ପ୍ରସନ୍ନ ହୋଇ ତାହାଙ୍କ ରାଜ୍ୟର ମୁକ୍ତି ନିମିତ୍ତ ପୁନଶ୍ଚ ଆହୁତି ପ୍ରଦାନ କଲେ । ୨୬ । ତଦନନ୍ତର ସେ ଏହିପରି ରାଜା ଧୃତରାଷ୍ଟ୍ରଙ୍କର ରାଜ୍ୟବିଘ୍ନ ଶାନ୍ତ କରି ବହୁତ ପଶୁ ପ୍ରତିଗ୍ରହପୂର୍ବକ ହୃଷ୍ଟ ଚିତ୍ତରେ

ପୁନଶ୍ଚ ନୈମିଷାରଣ୍ୟକୁ ଗମନ କଲେ । ୨୭ । ଧର୍ମାତ୍ମା ମହାମନା ରାଜା ଧୃତରାଷ୍ଟ୍ର ସୁଷ୍ଠଚିତ୍ତ ହୋଇ ମହା ସମୃଦ୍ଧିପୂର୍ଣ୍ଣ ସ୍ୱକୀୟ ନଗରରେ ପ୍ରବିଷ୍ଟ ହେଲେ । ୨୮ ।

ହେ ମହାରାଜ ! ସେହି ତୀର୍ଥରେ ଉଦାରବୁଦ୍ଧି ସୁରଗୁରୁ ବୃହସ୍ପତି ଅସୁରକୁଳର ବିନାଶ ଓ ସୁରଗଣଙ୍କର ସମୃଦ୍ଧି ନିମିତ୍ତ, ମାଂସ ହୋମ କରିବାରୁ ଅସଂଖ୍ୟ ଅସୁର ସଂଗ୍ରାମରେ ପରାସ୍ତ ହୋଇଥିଲେ । ୩୦ । ହେ ମହାରାଜ ! ସେହି ତୀର୍ଥରେ ମହାବାହୁ ମହାଯଶା ଯଦୁନନ୍ଦନ ବଳଦେବ ବ୍ରାହ୍ମଣମାନଙ୍କୁ ଅଶ୍ୱ, ଗଜ, ଅଶ୍ୱତରିଯୁକ୍ତ ରଥ, ମହାମୂଲ୍ୟ ରତ୍ନ ସମୂହ ଓ ଅପରିମିତ ଧନଧାନ୍ୟ, ଯଥାବିଧାନରେ ଦାନ କରି ଯଯାତି ନାମକ ତୀର୍ଥକୁ ଗମନ କଲେ । ୩୨ । ଯେଉଁ ସ୍ଥାନରେ ନହୁଷନନ୍ଦନ ମହାତ୍ମା ଯଯାତିଙ୍କ ଯଜ୍ଞରେ ସରସ୍ୱତୀ ଦୁଗ୍‌ଧ ଓ ଘୃତ କ୍ଷରଣ କରିଥିଲେ (୩୩), ପୁରୁଷପ୍ରବର ଯଯାତି ରାଜା ସେହି ସ୍ଥାନରେ ଯଜ୍ଞ କରି ଆନନ୍ଦିତ ଚିତ୍ତରେ ଊର୍ଦ୍ଧ୍ୱଲୋକକୁ ଆକ୍ରମଣ କରି ପରମଧାମ ପ୍ରାପ୍ତ ହେଲେ । ୩୪ ।

କୌଣସି ସମୟରେ ନହୁଷପୁତ୍ର ଯଯାତି ସେହି ସ୍ଥାନରେ ଯାଗ କରିବାରୁ ନଦୀଶ୍ରେଷ୍ଠ ସରସ୍ୱତୀ ତାଙ୍କର ପରମ ଔଦାର୍ଯ୍ୟ ଏବଂ ଆପଣାଠାରେ ତାହାଙ୍କର ଶାଶ୍ୱତ ଭକ୍ତି ଜନ୍ମିଥିବାର ଦେଖି ବ୍ରାହ୍ମଣମାନଙ୍କୁ ଅଭୀଷ୍ଟ ଫଳ ଦାନ କଲେ ଓ ଯଜ୍ଞସ୍ଥଳକୁ ଯେଉଁ ଯେଉଁ ବ୍ୟକ୍ତି ଆହୂତ ହୋଇଥିଲେ, ସେମାନଙ୍କୁ ବାସ ନିମିତ୍ତ ଗୃହ, ଉତ୍ତମ ଶଯ୍ୟା, ଷଡ଼ରସଯୁକ୍ତ ଭୋଜନୀୟ ଦ୍ରବ୍ୟ ଏବଂ ନାନାବିଧ ଧନ ଦାନ କରିଥିଲେ । ୩୭ । ବ୍ରାହ୍ମଣ-ମାନେ ସେହି ଉତ୍କୃଷ୍ଟ ଦାନକୁ ରାଜ-ଦତ୍ତ ବୋଲି ଜାଣି ସନ୍ତୁଷ୍ଟ ହୋଇ ତାହାଙ୍କୁ ଶୁଭାଶୀର୍ବାଦ ପ୍ରଦାନ ପୂର୍ବକ ସ୍ତବ କରିଥିଲେ । ୩୮ । ଦେବଗଣ ଓ ଗନ୍ଧର୍ବଗଣ ସେହି ଯଜ୍ଞର ବିଭବ ଦେଖି ଅତିଶୟ ପ୍ରୀତିଯୁକ୍ତ ହୋଇ-ଥିଲେ ଏବଂ ମନୁଷ୍ୟମାନେ ତାହା ଦେଖି ବିସ୍ମୟାପନ୍ନ ହୋଇଥିଲେ । ୩୯ । ତଦନନ୍ତର ମହାଧର୍ମକେତୁ, ମହାଦାନରତ, କୃତବୁଦ୍ଧି, ଧୀରପ୍ରକୃତି, ଜିତେନ୍ଦ୍ରିୟ, ମହାତ୍ମା ତାଳଧ୍ୱଜ ବଳଦେବ ସେଠାରୁ ମହା ଭୟଙ୍କର ବେଗଶାଳୀ ବଶିଷ୍ଠାପବାହ ନାମକ ତୀର୍ଥକୁ ଗମନ କଲେ । ୪୦ ।

---

# ଅଧ୍ୟାୟ—୪୨

ଜନ୍ମେଜୟ କହିଲେ—ହେ ମହାପ୍ରାଜ୍ଞ ! ସେହି ବଶିଷ୍ଠାପବାହ ତୀର୍ଥ କେଉଁ କାରଣରେ ଭୟଙ୍କର ବେଗଶାଳୀ ହେଲା ? ସରସ୍ୱତୀ କେଉଁ କାରଣରେ ସେହି ଋଷିଙ୍କୁ ପ୍ରତିବାହିତ କରିଥିଲେ ? କି ପ୍ରକାରରେ ତାହାଙ୍କର ବୈରଭାବ ହେଲା ? ତାହାର କାରଣ କି ? ହେ ପ୍ରଭୋ ! ଆପଣ ପ୍ରଶ୍ନର ଉତ୍ତର ଦେବା ହେଉନ୍ତୁ । ଭବଦୀୟ କଥିତ ବାକ୍ୟରେ ଆମ୍ଭର ସନ୍ତୋଷ ଜନ୍ମୁନାହିଁ । ୨ ।

ବୈଶମ୍ପାୟନ କହିଲେ, ହେ ଭାରତ ! ପୂର୍ବକାଳରେ ମହର୍ଷି ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ମଧ୍ୟରେ ତପସ୍ୟା ବିଷୟରେ ସ୍ପର୍ଦ୍ଧାଜନିତ ଅତିଶୟ ବୈରଭାବ ଘଟିଥିଲା । ୩ । ସ୍ଥାଣୁ ତୀର୍ଥର ପୂର୍ବ ପାର୍ଶ୍ୱରେ ବଶିଷ୍ଠଙ୍କ ଆଶ୍ରମ ଏବଂ ପଶ୍ଚିମ ପାର୍ଶ୍ୱରେ ବୁଦ୍ଧିମାନ୍ ବିଶ୍ୱାମିତ୍ରଙ୍କ ଆଶ୍ରମ ଅବସ୍ଥିତ ଥିଲା । ୪ ।

ହେ ମହାରାଜ ! ଯେଉଁ ସ୍ଥାନରେ ଭଗବାନ ଶିବ ଅତି ଉତ୍କୃଷ୍ଟ ତପସ୍ୟା କରିଥିଲେ, ପଣ୍ଡିତମାନେ ଯେଉଁଠାରେ ତାହାଙ୍କ କୃତକର୍ମକୁ ଘୋରତର ବୋଲି କହନ୍ତି, ଭଗବାନ ଭବାନୀପତି ସ୍ଥାଣୁ ଯେଉଁ ସ୍ଥାନରେ ଯଜ୍ଞ କରି ସରସ୍ୱତୀଙ୍କ ପୂଜାପୂର୍ବକ ତୀର୍ଥ ସ୍ଥାପନ କରିଥିଲେ, ତାହାର ନାମ ସ୍ଥାଣୁ ତୀର୍ଥ । ୬ । ହେ ମହାରାଜ ! ସେହି ତୀର୍ଥରେ ଦେବଗଣ ଅସୁରକୁଳ ଦଳନକାରୀ କାର୍ତ୍ତିକେୟଙ୍କୁ ଉତ୍କୃଷ୍ଟ ସେନାପତି ପଦରେ ଅଭିଷିକ୍ତ କରିଥିଲେ । ସେହି ସାରସ୍ୱତ ତୀର୍ଥରେ ମହାମୁନି ବିଶ୍ୱାମିତ୍ର ଉଗ୍ର ତପସ୍ୟାଦ୍ୱାରା ଯେଉଁପରି ବଶିଷ୍ଠଙ୍କୁ ବିଚଳିତ କରିଥିଲେ ତାହା କହୁଅଛୁ, ଶୁଣିବା ହେଉନ୍ତୁ । ୮ ।

ହେ ନୃପବର ! ତପୋଧନ ବଶିଷ୍ଠ ଓ ବିଶ୍ୱାମିତ୍ର ଉଭୟେ ପ୍ରତିଦିନ ସ୍ୱକୀୟ ଉଗ୍ର ତପସ୍ୟାଜନିତ ଘୋରତର ସ୍ପର୍ଦ୍ଧା କରନ୍ତି । ସେହି କାରଣରୁ ମହାମୁନି ବିଶ୍ୱାମିତ୍ର ସମଧିକ ସନ୍ତପ୍ତ ହୋଇ ବଶିଷ୍ଠଙ୍କ ତେଜ ନିରୀକ୍ଷଣ କରି ଅତିଶୟ ଚିନ୍ତିତ ହେଲେ । ୧୦ । ସେହି ଧର୍ମରତ ମୁନି ମନରେ ଏହି କଥା ବିଚାର କଲେ ଯେ ସରସ୍ୱତୀ ସ୍ୱକୀୟ ସ୍ରୋତର ବେଗରେ ତପୋଧନ ବଶିଷ୍ଠଙ୍କୁ ଅବଲମ୍ବରେ ଆମ୍ଭ ନିକଟକୁ ଆନୟନ କଲେ, ଆମ୍ଭେ ସେହି ତପୋନିଷ୍ଠ ଦ୍ୱିଜବରଙ୍କୁ ଅନାୟାସରେ ବିନାଶ କରିବୁ,

ସଂଶୟ ନାହିଁ । ୧୨ । ମହାମୁନ ଭଗବାନ୍ ବଶ୍ୱାମିତ୍ର ରୋଷବଶରେ ଆରକ୍ତ-ଲୋଚନ ହୋଇ ଏହିପର ନଶ୍ଚୟ କର ନଦୀଶ୍ରେଷ୍ଠା ସରସ୍ୱତୀଙ୍କୁ ସ୍ମରଣ କଲେ । ଭଗବତୀ ସରସ୍ୱତୀ ମୁନଙ୍କ ଧ୍ୟାନରେ ବ୍ୟାକୁଳା ହେଲେ । ସେ ସେହି ମୁନବର ବଶ୍ୱାମିତ୍ରଙ୍କୁ ମହାବୀର୍ଯ୍ୟଶାଳୀ ଓ କୋପନସ୍ୱଭବ ବୋଲି ଜାଣନ୍ତି । ସୁତରାଂ ବବର୍ଣ୍ଣ ଓ କମ୍ପମାନ ହୋଇ କୃତାଞ୍ଜଳପୁଟରେ ତାହାଙ୍କ ନକଟରେ ଉପସ୍ଥିତ ହେଲେ । ୧୫ । ସେ ପୁତହୀନା ସ୍ତ୍ରୀ ସଦୃଶ ଅତିଶୟ ଦୁଃଖିତା ହେଲେ ଓ ମୁନବର ବଶ୍ୱାମିତ୍ରଙ୍କୁ କହିଲେ, ହେ ମୁନବର, ମୁଁ କଣ କରବ କହିବା ହେଉନ୍ତୁ । ୧୬ । ମୁନ ବଶ୍ୱାମିତ୍ର କ୍ରୋଧଯୁକ୍ତ ହୋଇ ତାହାଙ୍କୁ କହିଲେ, ହେ ସରସ୍ୱତି ! ତୁମ୍ଭେ ଶୀଘ୍ର ବଶିଷ୍ଠଙ୍କୁ ଆମ୍ଭ ନକଟକୁ ଆଣ ; ଆମ୍ଭେ ଅଦ୍ୟ ତାହାଙ୍କୁ ସଂହାର କରବୁ ।

ପୁଣ୍ଡରୀକନୟନା ସରସ୍ୱତୀ ଏହି ବାକ୍ୟ ଶ୍ରବଣ କର ଅତ୍ୟନ୍ତ ବ୍ୟଥା ପ୍ରାପ୍ତ ହେଲେ ଓ ଭୟଗ୍ରସ୍ତା ହୋଇ କୃତାଞ୍ଜଳପୁଟରେ ବାତାହତ ଲତାସଦୃଶ କମ୍ପିତା ହେଲେ । ୧୮ । ମୁନ ସେହି ମହାନଦୀଙ୍କର ତାଦୃଶ ଅବସ୍ଥା ଅବଲୋକନ କର କହିଲେ, ହେ ସରସ୍ୱତି ! ତୁମ୍ଭେ କଛି ବଚାର ନ କର ବଶିଷ୍ଠଙ୍କୁ ଶୀଘ୍ର ଆମ୍ଭ ନକଟକୁ ଆଣ । ୧୯ । ସରସ୍ୱତୀ ମୁନଙ୍କର ଏହି ବାକ୍ୟ ଶୁଣି ତାହାଙ୍କ କର୍ତ୍ତବ୍ୟ କର୍ମକୁ ପାପାତ୍ମକ ଏବଂ ଭୂମଣ୍ଡଳରେ ବଶିଷ୍ଠଙ୍କ ପ୍ରଭବ ଅନୁପମ ବୋଲି ଜାଣି ସୁଦ୍ଧା ଅଗତ୍ୟା ବଶିଷ୍ଠଙ୍କ ନକଟକୁ ଗଲେ ଓ ବୁଦ୍ଧିମାନ ବଶ୍ୱାମିତ୍ର ତାହାଙ୍କୁ ଯେଉଁସବୁ କଥା କହିଥିଲେ, ତାହାସବୁ ପ୍ରକାଶ କଲେ । ୨୧ । ତେତେବେଳେ ଦେବୀ ଉଭୟଙ୍କ ଶାପ ଭୟରେ ଭୟଗ୍ରସ୍ତା ଓ ବାରମ୍ବାର କମ୍ପମାନ ହୋଇ ମହାଶାପର ବଷୟ ଚନ୍ତାକର ଋଷିଙ୍କଠାରୁ ତ୍ରାସଯୁକ୍ତା ହେଲେ । ୨୨ । ହେ ମହାରାଜ ! ଧର୍ମାତ୍ମା ନରଶ୍ରେଷ୍ଠ ବଶିଷ୍ଠ ତାହାଙ୍କୁ କୃଶା, ବବର୍ଣ୍ଣା ଏବଂ ଚନ୍ତାରେ ଅତି ଆକୁଳା ହୋଇଥିବାର ଦେଖି କହିଲେ, ନଦୀଶ୍ରେଷ୍ଠେ ! ତୁମ୍ଭେ ଶୀଘ୍ର-ଗାମିନୀ ହୋଇ ଆମ୍ଭଙ୍କୁ ବହନ କର ଆତ୍ମରକ୍ଷା କର । ନଚେତ୍ ବଶ୍ୱାମିତ୍ର ତୁମ୍ଭଙ୍କୁ ଅଭିଶାପ ପ୍ରଦାନ କରିବେ । ଅତଏବ ଏହି ବଷୟରେ ତୁମ୍ଭେ କଛି ବଚାର କରନା । ୨୪ ।

ହେ କୁରୁନନ୍ଦନ ! ସରସ୍ୱତୀ ସେହି କୃପାଶୀଳ ଋଷିଙ୍କ ବାକ୍ୟ ଶ୍ରବଣ କର କେଉଁ କାର୍ଯ୍ୟ କଲେ ସୁକୃତ ହେବ, ଏହା ବଚାର କଲେ । ୨୫ । ସେ ଭବନା କଲେ, ବଶିଷ୍ଠ ଆମ୍ଭଠାରେ ଅତ୍ୟନ୍ତ ଅନୁକମ୍ପା

ପ୍ରକାଶ କଲେ, ଅତଏବ ସର୍ବଦା ତାହାଙ୍କର ହିତସାଧନ କରିବାର ଆମ୍ଭର ଅବଶ୍ୟ କର୍ତ୍ତବ୍ୟ କର୍ମ ଅଟେ । ୨୭ । ହେ ମହାରାଜ ! ତତ୍ପରେ ନଦୀଶ୍ରେଷ୍ଠା ସରସ୍ୱତୀ ନିକଟରେ ବସି ଜପ ଓ ହୋମ କରୁଥିବା ବିଶ୍ୱାମିତ୍ରଙ୍କୁ ଅବଲୋକନ କରି ଭାବିଲେ, ଏହି ସମୟରେ ବଶିଷ୍ଠଙ୍କୁ ନେବାର ଉପଯୁକ୍ତ ଅଟେ । ଏହା ବିବେଚନା କରି ବଶିଷ୍ଠ ଯେଉଁ ତଟରେ ଅବସ୍ଥିତ କରିଥିଲେ, ସ୍ୱୀୟ ଜଳଦ୍ୱାରା ସେହି ତୀରକୁ ହରଣ କଲେ । ୨୮ । ହେ ରାଜନ୍ ! ବଶିଷ୍ଠ ସେହି ଭଗ୍ନତଟରେ ଉପସ୍ଥିତ ହୋଇ ସରସ୍ୱତୀଙ୍କଦ୍ୱାରା ଗୃହୀତ ହେଉଥିଲେ, ସେହି କାରଣରୁ ତେତେବେଳେ ସେ ତାହାଙ୍କୁ ସ୍ତୁତି କଲେ । ୨୯ । ହେ ଦେବି ! ତୁମ୍ଭେ ପିତାମହଙ୍କ ମାନସ ସରୋବର-ନିଃସୃତା ହୋଇଅଛ ବୋଲି ତୁମ୍ଭ ନାମ ସରସ୍ୱତୀ ହୋଇଅଛି । ତୁମ୍ଭର ନିର୍ମଳ ଜଳରାଶି ସମସ୍ତ ଭୂମଣ୍ଡଳକୁ ବ୍ୟାପିକରି ରହିଅଛି । ୩୦ । ହେ ଦେବି ! ତୁମ୍ଭେ ଆକାଶଗାମିନୀ ହୋଇ ମେଘବୃନ୍ଦ ମଧ୍ୟରେ ଜଳରାଶି ବିତରଣ କରୁଅଛ । ତୁମ୍ଭେ ସମସ୍ତ ଭୁବନର ଜଳସ୍ୱରୂପା । ଅନାବୃଷ୍ଟି-ଜନିତ ଦୁଃଖ ନ ଜାଣି ଆମ୍ଭେମାନେ ତୁମ୍ଭ ହେତୁରୁ ଜୀବିତ ହୋଇ ବେଦାଧ୍ୟୟନ କରୁଅଛୁ । ୩୧ । ହେ ଦେବି ! ତୁମ୍ଭେ ପୁଷ୍ଟି, ତୁମ୍ଭେ ଦ୍ୟୁତି, ତୁମ୍ଭେ କୀର୍ତ୍ତି, ତୁମ୍ଭେ ସିଦ୍ଧି, ତୁମ୍ଭେ ବୁଦ୍ଧି, ତୁମ୍ଭେ ଦୁର୍ଗା, ତୁମ୍ଭେ ସରସ୍ୱତୀ, ଏବଂ ତୁମ୍ଭେ ସ୍ୱାହାସ୍ୱରୂପ ଅଟ । ଏହି ଭୂମଣ୍ଡଳର ସମସ୍ତ ପଦାର୍ଥ ତୁମ୍ଭର ଆୟତ୍ତ । ତୁମ୍ଭେ ଇହଲୋକରେ ସୂକ୍ଷ୍ମା, ମଧ୍ୟମା, ବୈଖରୀ ଓ ପଶ୍ୟନ୍ତୀ ଏହି ଚତୁର୍ବିଧ ରୂପରେ ସର୍ବଭୂତ ମଧ୍ୟରେ ବିରାଜମାନ ହୋଇଅଛ ।

ହେ ମହାରାଜ ! ସରସ୍ୱତୀ ବଶିଷ୍ଠଙ୍କଦ୍ୱାରା ଏହି ପ୍ରକାର ସ୍ତୁତିଯୁକ୍ତା ହୋଇ ତାହାଙ୍କୁ ଅତି ଶୀଘ୍ର ବିଶ୍ୱାମିତ୍ରଙ୍କ ଆଶ୍ରମକୁ ଘେନିଗଲେ, ଏବଂ ବିଶ୍ୱାମିତ୍ରଙ୍କୁ ସେହି ବିଷୟ ଅତି ସତ୍ୱର ନିବେଦନ କଲେ । ୩୪ । ବିଶ୍ୱାମିତ୍ର ସରସ୍ୱତୀଙ୍କଦ୍ୱାରା ବଶିଷ୍ଠ ଆନୀତ ହେବାର ଦେଖି କ୍ରୋଧାକ୍ରାନ୍ତ ହୋଇ ବଶିଷ୍ଠଙ୍କ ବିନାଶ ସାଧନ ଅସ୍ତ୍ର ଅନ୍ୱେଷଣ କଲେ । ୩୫ । ଦେବୀ ଗାଧିପୁତ୍ର ବିଶ୍ୱାମିତ୍ରଙ୍କୁ କ୍ରୋଧଯୁକ୍ତ ହୋଇଥିବାର ଦେଖି ବ୍ରାହ୍ମଣବଧ ଆଶଙ୍କାରେ ତାହାଙ୍କୁ ବଞ୍ଚନା କରି ଉଭୟ ଋଷିଙ୍କ ବାକ୍ୟ ରକ୍ଷା କରିବା ନିମିତ୍ତ ବଶିଷ୍ଠଙ୍କୁ ମହାବେଗରେ ପୂର୍ବଦିଗକୁ ଘେନି ଗମନ କଲେ । ତତ୍ପରେ ଅତିଶୟ କ୍ରୋଧଯୁକ୍ତ ବିଶ୍ୱାମିତ୍ର ଋଷିଶ୍ରେଷ୍ଠ ବଶିଷ୍ଠଙ୍କ ନିକଟରୁ ଅପବାହିତ ହେବାର ଅବଲୋକନ କରି ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ କହିଲେ, ହେ

ନଦୀ ନାମ୍ନରେ କଲ୍ୟାଣି ! ତୁମ୍ଭେ ଯେଉଁ କାରଣରୁ ଆମ୍ଭକୁ ବଞ୍ଚନା କରି ଚାଲିଗଲ, ସେହି ଅପରାଧରେ ତୁମ୍ଭେ ରାକ୍ଷସକୁଳର ଆଦରଣୀୟ ରକ୍ତ ବହନ କର ।

ହେ ମହାରାଜ ! ସରସ୍ୱତୀ ବିଶ୍ୱାମିତ୍ରଙ୍କ ଏହି ଅଭିଶାପ ହେତୁରୁ ଏକବର୍ଷ ପର୍ଯ୍ୟନ୍ତ ଶୋଣିତ ମିଶ୍ରିତ ଜଳରାଶି ଧାରଣ କରିଥିଲେ । ତତ୍ପରେ ଋଷିଗଣ, ଦେବତାବୃନ୍ଦ, ଗନ୍ଧର୍ବକୁଳ ଓ ଅପ୍ସରାଗଣ ସରସ୍ୱତୀଙ୍କର ତାଦୃଶ ଦଶା ଅବଲୋକନ କରି ଅତିଶୟ ଦୁଃଖିତ ହେଲେ । ହେ ରାଜନ୍ ! ନଦୀଶ୍ରେଷ୍ଠା ସରସ୍ୱତୀ ପୁନଶ୍ଚ ନିଜ ମାର୍ଗକୁ ଆଗମନ କଲେ । ଏହିପରି ବଶିଷ୍ଠାପବାହ ତୀର୍ଥ ଲୋକମଧ୍ୟରେ ବିଖ୍ୟାତ ହୋଇଅଛି ।

---

## ଅଧ୍ୟାୟ—୪୩

ବୈଶମ୍ପାୟନ କହିଲେ—ମହାରାଜ ! ସରସ୍ୱତୀ କ୍ରୋଧାନ୍ୱିତ ବିଶ୍ୱାମିତ୍ର ମୁନିଙ୍କ ଅଭିଶାପରେ ସେହି ପବିତ୍ର ତୀର୍ଥପ୍ରବରରେ ଶୋଣିତ ବହନ କଲେ । ୧ । ହେ ଭାରତ ! କିୟତ୍କାଳ ଉତ୍ତାରେ ସେଠାକୁ ରାକ୍ଷସଗଣ ଆସିଲେ । ସେମାନେ ଆଗତ ହୋଇ ରକ୍ତ ପାନ କରି ସେଠାରେ ପରମ ସୁଖରେ ବାସ କଲେ । ୨ । ସେମାନେ ସ୍ୱର୍ଗଜୟୀ ଜନଗଣଙ୍କ ପରି କେତେବେଳେ ହାସ୍ୟ, କେତେବେଳେ ଅବା ନୃତ୍ୟ କରି ସେହି ଶୋଣିତପାନଦ୍ୱାରା ଅତ୍ୟନ୍ତ ତୃପ୍ତ ଓ ବ୍ୟାଧିଶୂନ୍ୟ ହେଲେ । ୩ । ହେ ମହୀପାଳ ! କାଳକ୍ରମେ କତିପୟ ତପୋଧନ ଋଷି ତୀର୍ଥଯାତ୍ରା ନିମିତ୍ତ ସରସ୍ୱତୀକୁ ଆଗମନ କଲେ । ୪ । ସେମାନେ ସମୁଦାୟ ତୀର୍ଥରେ ସ୍ନାନ କରି ପରମ ପ୍ରୀତ ହୋଇ ଯେଉଁ ସ୍ଥାନରେ ଶୋଣିତ ପ୍ରବାହିତ ହେଉଥିଲା, ସେଠାରେ ଉପସ୍ଥିତ ହେଲେ ।

ମହାଭାଗ ମୁନିଗଣ ସେଠାରେ ପ୍ରବେଶ କରି ସରସ୍ୱତୀଙ୍କ ସମସ୍ତ ଜଳ ରକ୍ତମିଶ୍ରିତ ହୋଇଥିବାର ଓ ତାହା ରାକ୍ଷସମାନେ ହୃଷ୍ଟ ଚିତ୍ତରେ ପାନ କରୁଥିବାର ଦେଖିଲେ । ହେ ନୃପବର ! ସଂଶିତବ୍ରତ ମୁନିଗଣ ରାକ୍ଷସ-ମାନଙ୍କୁ ଦେଖି ସରସ୍ୱତୀଙ୍କ ପରିତ୍ରାଣ ନିମିତ୍ତ ଅତିଶୟ ଯତ୍ନ କଲେ । ୮ । ସେହି ସମସ୍ତ ମହାବ୍ରତ ମହାଭାଗ ମୁନିଗଣ ଏକତ୍ରିତ ହୋଇ ସରିତ୍ଶ୍ରେଷ୍ଠା

ସରସ୍ୱତୀଙ୍କୁ ଆହ୍ୱାନ ପୂର୍ବକ କହିଲେ, ହେ କଲ୍ୟାଣି ! ତୁମ୍ଭର ଏହି ହ୍ରଦ କି ନିମିତ୍ତ ଏପରି ଆକୁଳ ହେଉଅଛି, ତାହାର କାରଣ କହନ୍ତୁ । ଆମ୍ଭେମାନେ ତାହା ଶୁଣି ପ୍ରତିକାର ଚିନ୍ତା କରିବୁ । ତଦନନ୍ତର ସରସ୍ୱତୀ କମ୍ପମାନା ହୋଇ ସେମାନଙ୍କୁ ଅଭିଶାପର ବୃତ୍ତାନ୍ତ କହିଲେ । ତପୋଧନ ଋଷିଗଣ ତାହାଙ୍କୁ ଅତ୍ୟନ୍ତ ଦୁଃଖିତା ଦେଖି କହିଲେ (୧୧) ହେ ନିଷ୍ପାପେ ! ଆମ୍ଭେମାନେ ଏହି ବିଷୟର କାରଣ ଓ ଅଭିଶାପର ବିବରଣ ସବୁ ଶ୍ରବଣ କଲୁ । ଏତେବେଳେ ଆମ୍ଭେମାନେ ସମସ୍ତେ ତୁମ୍ଭର ଉଦ୍ଧାର ନିମିତ୍ତ ଯତ୍ନ କରିବୁ । ତପୋଧନଗଣ ସରସ୍ୱତୀଙ୍କୁ ଏହିପରି କହି ପରସ୍ପର ସମ୍ଭାଷଣ କଲେ—'ଆମ୍ଭେମାନେ ସମସ୍ତେ ସରସ୍ୱତୀଙ୍କୁ ଶାପରୁ ମୁକ୍ତ କରିବା' । ୧୨ ।

ହେ ମହାରାଜ ! ତପୋଧନ ବ୍ରାହ୍ମଣମାନେ ସରସ୍ୱତୀଙ୍କ ନିମିତ୍ତ ଏହିପରି ପରାମର୍ଶ କରି ତପସ୍ୟା, ଯମ, ନିୟମ, ଉପବାସ ଓ କଷ୍ଟକର ବ୍ରତଦ୍ୱାରା ଜଗତ୍ପତି ପଶୁପତି ଶିବଙ୍କୁ ଆରାଧନା କରି ସେହି ନଦୀଶ୍ରେଷ୍ଠା ସରସ୍ୱତୀ ଦେବୀଙ୍କୁ ଶାପରୁ ମୁକ୍ତ କଲେ । ୧୫ । ସେହି ଋଷିମାନଙ୍କ ପ୍ରଭାବରେ ସରସ୍ୱତୀ ଦେବୀ ପ୍ରକୃତିସ୍ଥା ହେଲେ ଓ ପୂର୍ବପରି ନିର୍ମଳ ଜଳ ଧାରଣ କଲେ । ୧୬ । ସେ ଅଭିଶାପରୁ ମୁକ୍ତ ହୋଇ ପୂର୍ବପରି ଶୋଭା ପାଇଲେ । ମୁନିଗଣଙ୍କ ଦ୍ୱାରା ସରସ୍ୱତୀ ଜଳ ସେହିପରି ହେବାରୁ କ୍ଷୁଧାଯୁକ୍ତ ରାକ୍ଷସମାନେ ତାହା ଦେଖି ସେମାନଙ୍କ ଶରଣାପନ୍ନ ହେଲେ । ହେ ମହାରାଜ ! ରାକ୍ଷସଗଣ କ୍ଷୁଧାରେ ଅତ୍ୟନ୍ତ କାତର ହୋଇ ସେହି କୃପାଳୁ ଋଷିମାନଙ୍କୁ କୃତାଞ୍ଜଳିପୁଟରେ ବାରମ୍ବାର କହିଲେ, ହେ ଋଷିଗଣ ! ଆମ୍ଭେମାନେ କ୍ଷୁଧାତୁର ଓ ଶାଶ୍ୱତ ଧର୍ମଚ୍ୟୁତ ଅଟୁ । ଆପଣମାନେ ଯେଉଁ କର୍ମ କଲେ, ତାହା ଆମ୍ଭମାନଙ୍କର ଅଭିଳଷିତ ନୁହେଁ । କାରଣ ଆମ୍ଭେ ପାପାଚାରୀ । ଆପଣମାନଙ୍କ ଅପ୍ରସନ୍ନତା ଓ ଅସୁଦାୟ ଦୁଷ୍କୃତ ଦ୍ୱାରା ଆମ୍ଭମାନଙ୍କ ପାପରାଶି ସର୍ବଦା ପରିବର୍ଦ୍ଧିତ ହେଉଅଛି । କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ସ୍ତ୍ରୀମାନଙ୍କ ମହାପାପରେ ଓ ଯୋନିଦୋଷରେ ଆମ୍ଭେମାନେ ବ୍ରହ୍ମରାକ୍ଷସ ହୋଇଅଛୁ । ଯେଉଁମାନେ ଇହଲୋକରେ ବ୍ରାହ୍ମଣମାନଙ୍କୁ ଦୋଷୀ କରନ୍ତି, ସେମାନେ ରାକ୍ଷସ ହୁଅନ୍ତି । ଯେଉଁ ଲୋକମାନେ ଆଚାର୍ଯ୍ୟ, ଋତ୍ୱିକ, ଗୁରୁ ଓ ବୃଦ୍ଧମାନଙ୍କୁ ଅବଜ୍ଞା କରନ୍ତି, ସେମାନେ ରାକ୍ଷସ ହୁଅନ୍ତି । ୨୩ । ହେ ଦ୍ୱିଜବରଗଣ ! ଆମ୍ଭେମାନେ ସମସ୍ତେ ଦୁଷ୍କୃତ ହେତୁରୁ ରାକ୍ଷସଯୋନି ପ୍ରାପ୍ତ ହୋଇଅଛୁ । ଆପଣମାନେ ସର୍ବପ୍ରାଣୀର ପରିତ୍ରାଣ ବିଷୟରେ ସମର୍ଥ

ଅଟନ୍ତି । ଅତଏବ ପ୍ରାର୍ଥନା କରୁଅଛୁ ଯେ ଆପଣମାନେ ସମ୍ପ୍ରତି ଆମ୍ଭମାନଙ୍କୁ ଉଦ୍ଧାର କରନ୍ତୁ । ୨୪ ।

ସେହି ରାକ୍ଷସମାନଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଏକାଗ୍ରଚିତ୍ତ ଋଷିଗଣ ସେମାନଙ୍କ ଉଦ୍ଧାର ନିମିତ୍ତ ମହାନଦୀ ସରସ୍ୱତୀଙ୍କୁ ସ୍ତବ କରି କହିଲେ, ଯେଉଁ ଅନ୍ନ ହିକ୍କା ଦ୍ୱାରା ଦୂଷିତ ଅଟେ, କୀଟଯୁକ୍ତ, ଉଚ୍ଛିଷ୍ଟଯୁକ୍ତ, କେଶଯୁକ୍ତ, ଅସ୍ପୃଶ୍ୟ ବ୍ୟକ୍ତି ଦ୍ୱାରା ସ୍ପୃଷ୍ଟ, ତିରସ୍କାରଦ୍ୱାରା ପ୍ରାପ୍ତ ଓ ଯାହା ରୋଦନଶୀଳ ବ୍ୟକ୍ତି ଦ୍ୱାରା ଦୂଷିତ ସେ ଅନ୍ନ ରାକ୍ଷସମାନଙ୍କ ଯୋଗ । ଅତଏବ ପଣ୍ଡିତ ବ୍ୟକ୍ତି ଏହା ଜାଣି ସର୍ବଦା ଯତ୍ନପୂର୍ବକ ଏହି ସମସ୍ତ ଅନ୍ନ ପରିତ୍ୟାଗ କରିବେ । ଯେଉଁ ବ୍ୟକ୍ତି ଏତାଦୃଶ ଅନ୍ନ ଭୋଜନ କରନ୍ତି, ସେ ରାକ୍ଷସ ଅନ୍ନକୁ ଭୋଜନ କରନ୍ତି । ତତ୍ପରେ ସେହି ତପୋଧନ ଋଷିଗଣ ତୀର୍ଥକୁ ପରିଶୋଧିତ କରି ସେମାନଙ୍କ ମୋକ୍ଷ ନିମିତ୍ତ ସେହି ନଦୀଙ୍କୁ ବାରମ୍ବାର ପ୍ରାର୍ଥନା କଲେ । ହେ ନରବର ! ନଦୀଶ୍ରେଷ୍ଠା ସରସ୍ୱତୀ ମହର୍ଷି ଅଭିମତ ଜାଣି ତତ୍କ୍ଷଣାତ୍ ନିଜ ଶରୀରକୁ ଅରୁଣ ବର୍ଣ୍ଣ କଲେ । ରାକ୍ଷସଗଣ ସେହି ଅରୁଣା ଜଳରେ ସ୍ନାନ କରି ତନୁ ତ୍ୟାଗ ପୂର୍ବକ ସ୍ୱର୍ଗଗାମୀ ହେଲେ । ହେ ମହାରାଜ ! ସେହି ଅରୁଣବର୍ଣ୍ଣ ସରସ୍ୱତୀ ବ୍ରହ୍ମବଧ ଜନିତ ପାପ ମୋଚନ କରନ୍ତି ବୋଲି ଜାଣି ଶତକ୍ରତୁ ଇନ୍ଦ୍ରଦେବ ତହିଁରେ ସ୍ନାନ କରି ପାପରୁ ମୁକ୍ତ ହୋଇଥିଲେ ।

ଜନ୍ମେଜୟ କହିଲେ, ହେ ଦ୍ୱିଜବର ! ଭଗବାନ ଇନ୍ଦ୍ର କେଉଁ ହେତୁରୁ ବ୍ରହ୍ମବଧ ପାପରେ ଲିପ୍ତ ହୋଇଥିଲେ, କେଉଁପରି ଅବା ସେହି ତୀର୍ଥରେ ଅବଗାହନ କରି ପାପରୁ ବିମୁକ୍ତ ହେଲେ ?

ବୈଶମ୍ପାୟନ କହିଲେ, ହେ ନରେଶ୍ୱର ! ଏହି ବୃତ୍ତାନ୍ତ ଯେଉଁପରି ଘଟିଥିଲା ଏବଂ ପୂର୍ବକାଳରେ ପୁରନ୍ଦର ଦେବ ଯେଉଁପରି ନମୁଚିଙ୍କ ନିକଟରେ କରିଥିବା ପ୍ରତିଜ୍ଞା ଭଙ୍ଗ କରିଥିଲେ, ତାହା ଶୁଣିବା ହେଉନ୍ତୁ । ଦାନବରାଜ ନମୁଚି ଦେବରାଜ ଇନ୍ଦ୍ରଙ୍କ ଠାରୁ ଭୟଗ୍ରସ୍ତ ହୋଇ ସୂର୍ଯ୍ୟକିରଣ ମଧ୍ୟରେ ପ୍ରବେଶ କରିଥିଲେ । ସେହି ହେତୁରୁ ଇନ୍ଦ୍ର କପଟରେ ତାହାଙ୍କ ସହିତ ମିତ୍ରତା କଲେ ଏବଂ ପ୍ରତିଜ୍ଞା ପୂର୍ବକ କହିଲେ, ହେ ଅସୁରବର ! ଆମ୍ଭେ ଶପଥପୂର୍ବକ ସତ୍ୟ କହୁଅଛୁ, ଆର୍ଦ୍ର ବା ଶୁଷ୍କ ପଦାର୍ଥ ଦ୍ୱାରା ଦିବସ କି ରାତିରେ ତୁମ୍ଭଙ୍କୁ କଦାପି ବିନାଶ କରିବୁ ନାହିଁ । ପୁରନ୍ଦର ଏହିପରି ପ୍ରତିଜ୍ଞାପୂର୍ବକ ଚତୁର୍ଦ୍ଦିଗ ହିମଦ୍ୱାରା ଅନ୍ଧକାରାଚ୍ଛନ୍ନ ଦର୍ଶନ କରି ଜଳଫେନ

ଦ୍ୱାରା ତାହାଙ୍କ ମସ୍ତକ ଛେଦନ କଲେ । ନମୁଚିଙ୍କ ଛିନ୍ନ ମସ୍ତକ ଇନ୍ଦ୍ରଙ୍କ ପଶ୍ଚାତ୍ ଗମନ କଲା ଏବଂ କହିଲା, ହେ ମିତ୍ରଘାତକ ପାପାତ୍ମା ଇନ୍ଦ୍ର ! ଆମ୍ଭଙ୍କୁ ଅନ୍ୟାୟରେ ବିନାଶ କଲ । ନମୁଚିଙ୍କ ଛିନ୍ନ ମସ୍ତକ ଇନ୍ଦ୍ରଙ୍କୁ ଏହିପରି ବାରମ୍ବାର କହିବାରୁ ସେ ଅତ୍ୟନ୍ତ ସନ୍ତାପଯୁକ୍ତ ହୋଇ ପିତାମହଙ୍କ ସମୀପକୁ ଗମନ ପୂର୍ବକ ସମସ୍ତ ବିବରଣ ନିବେଦନ କଲେ ।

ଲୋକଗୁରୁ ବ୍ରହ୍ମା ଦେବରାଜଙ୍କ ମୁଖରୁ ସମୁଦାୟ ବୃତ୍ତାନ୍ତ ଜାଣି ତାହାଙ୍କୁ ସମ୍ବୋଧନ ପୂର୍ବକ କହିଲେ, ହେ ଦେବେନ୍ଦ୍ର ! ତୁମ୍ଭେ ଅରୁଣା ସରସ୍ୱତୀଙ୍କ ପାପହା ତୀର୍ଥକୁ ଗମନ ପୂର୍ବକ ଯଥାବିଧାନରେ ଯଜ୍ଞ ପ୍ରଭୃତି କରି ସେଠାରେ ସ୍ନାନ କର । ମୁନିଗଣ ତାହାଙ୍କ ଜଳକୁ ଅତ୍ୟନ୍ତ ପବିତ୍ର କରିଅଛନ୍ତି । ପ୍ରଥମେ ତ ସେହି ତୀର୍ଥକୁ ସେ ଗୁପ୍ତ ରୂପରେ ଆସିଥିଲେ; ଅନନ୍ତର ସରସ୍ୱତୀ ସେଠାକୁ ଆସି ନିଜ ଜଳରେ ଅରୁଣାଦେବୀଙ୍କୁ ଆପ୍ଲାବିତ କରିଅଛନ୍ତି । ଅତଏବ ହେ ଇନ୍ଦ୍ର ! ତୁମ୍ଭେ ସେଠାରେ ଯାଗ କର ଏବଂ ଭୂରି ଭୂରି ଦାନ କର । ତହିଁରେ ସ୍ନାନ କଲା ଉତ୍ତାରେ ଘୋର ପାପରୁ ମୁକ୍ତ ହେବ । ହେ ଜନ୍ମେଜୟ ! ଦେବରାଜ ପିତାମହଙ୍କର ଏହି ଆଦେଶ ଶ୍ରବଣ କରି ତତ୍‌କ୍ଷଣାତ୍ ସରସ୍ୱତୀ କୁଞ୍ଜକୁ ଆସିଲେ ଏବଂ ସେଠାରେ ବିଧି ଅନୁସାରେ ଯଜ୍ଞ ଓ ଭୂରି ଭୂରି ଦାନ କରି ଅରୁଣାଙ୍କ ଜଳରେ ସ୍ନାନ କଲେ । ସେହି ହେତୁରୁ ବ୍ରହ୍ମବଧଜନିତ ପାପରୁ ମୁକ୍ତ ହେଲେ ।

ତଦନନ୍ତର ତ୍ରିଦଶେଶ୍ୱର ଇନ୍ଦ୍ର ପାପଶୂନ୍ୟ ହୋଇ ଆନନ୍ଦିତ ଚିତ୍ତରେ ସ୍ୱର୍ଗଧାମକୁ ଗମନ କଲେ । ହେ ନୃପବର ! ନମୁଚିର ଛିନ୍ନ ମସ୍ତକ ସେହି ପବିତ୍ର ଜଳରେ ପ୍ଲାବିତ ହୋଇ ଅକ୍ଷୟ ଲୋକକୁ ପ୍ରାପ୍ତ ହେଲା । ୪୫ । ବୈଶମ୍ପାୟନ କହିଲେ, ପରମାର୍ଥକର୍ମା ମହାତ୍ମା ବଳଦେବ ତୀର୍ଥରେ ସ୍ନାନ କରି ନାନାବିଧ ଦାନ କରି ଧର୍ମଫଳ ପ୍ରାପ୍ତ ହୋଇ ସୋମଙ୍କ ଅତି ଉତ୍କୃଷ୍ଟ ତୀର୍ଥକୁ ଗମନ କଲେ । ୪୬ । ହେ ନୃପବର ! ପୂର୍ବ କାଳରେ ଯେଉଁ ସ୍ଥାନରେ ଭଗବାନ ସୋମଦେବ ସ୍ୱୟଂ ଯଥାବିଧାନରେ ରାଜସୂୟ ଯଜ୍ଞ କରିଥିଲେ, ଯେଉଁ ଯଜ୍ଞରେ ବିପ୍ରବର ମହାତ୍ମା ବୁଦ୍ଧିମାନ ଅତ୍ରିମୁନି ହୋତା ହୋଇଥିଲେ, ଯାହାଙ୍କ ସମୀପରେ ଦେବତାମାନଙ୍କ ସହିତ ଦୈତ୍ୟ, ଦାନବ ଓ ରାକ୍ଷସମାନଙ୍କର ଘୋରତର ସଂଗ୍ରାମ ହୋଇଥିଲା, ଯେଉଁ ସ୍ଥଳରେ ଅତି ତୀବ୍ର ତାରକ ନାମକ ଦୈତ୍ୟ ଯୁଦ୍ଧରେ ପାର୍ବତୀ-ପୁତ୍ର କାର୍ତ୍ତିକେୟଙ୍କ ଦ୍ୱାରା ବିନଷ୍ଟ ହୋଇଥିଲେ, ଯେଉଁ ସ୍ଥାନରେ ଦୈତ୍ୟ-

ବିନାଶକାରୀ କାର୍ତ୍ତିକେୟ ଦେବତାମାନଙ୍କର ସେନାପତି ରୂପେ ଅଭିଷିକ୍ତ ହୋଇଥିଲେ, ସ୍ୱୟଂ କୁମାର କାର୍ତ୍ତିକେୟ ଯେଉଁ ସ୍ଥାନରେ ସର୍ବଦା ବିରାଜମାନ ହୋଇଅଛନ୍ତି ଏବଂ ଯେଉଁ ସ୍ଥାନରେ ସେହି ବଟବୃକ୍ଷ ବିରାଜିତ ହୋଇଅଛି, ତାହାର ନାମ ସୋମତୀର୍ଥ । ୪୯ ।

---

## ଅଧ୍ୟାୟ—୪୪

ଜନମେଜୟ କହିଲେ—ହେ ବ୍ରହ୍ମନ୍ ! ଆପଣ ସରସ୍ୱତୀଙ୍କ ମାହାତ୍ମ୍ୟ ବିଷୟ କହିଲେ; ଏତେବେଳେ କୁମାରଙ୍କ ଅଭିଷେକ ବୃତ୍ତାନ୍ତ କହିବା ହେଉନ୍ତୁ । ୧ । ହେ ବକ୍ତୃବର ! ଭଗବାନ କାର୍ତ୍ତିକେୟ ଯେଉଁ ଦେଶରେ ଯେଉଁ କାଳରେ ଯଥାବିଧିରେ ଯେଉଁମାନଙ୍କଦ୍ୱାରା ଅଭିଷିକ୍ତ ହୋଇଥିଲେ, ଏବଂ ଯେଉଁ ପ୍ରକାରରେ ଦୈତ୍ୟମାନଙ୍କୁ ଦଳନ କରିଥିଲେ, ସେହି ବୃତ୍ତାନ୍ତସବୁ ଆମ୍ଭଙ୍କୁ କହିବା ହେଉନ୍ତୁ । ଉକ୍ତ ବିଷୟ ଶ୍ରବଣ କରିବାକୁ ଆମ୍ଭର ଅତିଶୟ କୌତୁହଳ ଜନ୍ମିଅଛି । ୩ । ବୈଶମ୍ପାୟନ କହିଲେ, ହେ ଜନ୍ମେଜୟ ! କୁରୁବଂଶ ସଦୃଶ କୌତୁହଳଜନକ ମଦୀୟ ବାକ୍ୟ ଅବଶ୍ୟ ଆପଣଙ୍କର ହର୍ଷ ଉତ୍ପାଦନ କରିବ । ଏତେବେଳେ ଆପଣଙ୍କ ନିକଟରେ ମହାତ୍ମା କାର୍ତ୍ତିକେୟଙ୍କ ମହିମା ଓ ଅଭିଷେକର ବିବରଣ କହୁଅଛୁ, ଶ୍ରବଣ କରିବା ହେଉନ୍ତୁ । ୫ ।

ପୂର୍ବକାଳରେ ଶିବଙ୍କର ସ୍ଖଳିତ ଯେଉଁ ବୀର୍ଯ୍ୟ ଅଗ୍ନି ମଧ୍ୟରେ ପତିତ ହୋଇଥିଲା, ଭଗବାନ ଅନଳଦେବ ସେହି ଅକ୍ଷୟ ବୀର୍ଯ୍ୟକୁ ଦଗ୍ଧ କରିବାକୁ ସମର୍ଥ ହେଲେ ନାହିଁ । ୬ । ଅଗ୍ନିଦେବ ତାହାଦ୍ୱାରା ଅତିଶୟ ତେଜସ୍ୱୀ ଓ ଦୀପ୍ତିମାନ ହୋଇଥିଲେ କିନ୍ତୁ ସେହି ତେଜୋମୟ ରେତଃକୁ କଦାପି ଗର୍ଭରେ ଧାରଣ କରିବାକୁ ସମର୍ଥ ହେଲେ ନାହିଁ । ୭ । ପରିଶେଷରେ ସେ ବ୍ରହ୍ମାଙ୍କ ଆଦେଶାନୁସାରେ ଗଙ୍ଗାକୁ ଯାଇ ଭାସ୍କରସଦୃଶ ତେଜଃପୂର୍ଣ୍ଣ ସେହି ଗର୍ଭଗତ ବୀର୍ଯ୍ୟକୁ ତାହାଙ୍କଠାରେ ଅର୍ପଣ କଲେ । ୯ । ତଦନନ୍ତର ଗଙ୍ଗା ମଧ୍ୟ ତାହାକୁ ଗର୍ଭରେ ଧାରଣ କରି ନ ପାରି ସୁରମ୍ୟ ହିମାଳୟ ପର୍ବତ ଉପରିସ୍ଥ ଶରସ୍ତମ୍ବରେ ଛାଡ଼ିଦେଲେ । ତତ୍ପରେ ସେହି ଅନଳାତ୍ମଜ ସେଠାରେ ଲୋକସକଳଙ୍କୁ ଆବୃତ କରି ପରିବର୍ଦ୍ଧିତ ହେଉ-

ଥିଲେ । ଦୈବବଶରେ କୃତ୍ତିକା ଦେବୀ ଛଅଜଣ ସେଠାରେ ପ୍ରବେଶ କରି ଶରସ୍ତମ୍ବ ମଧ୍ୟରେ ଅନଳାକାର ମହାନୁଭବ ଅନଳଙ୍କ ଆତ୍ମଜଙ୍କୁ ଦେଖିଲେ । ସେମାନେ ସମସ୍ତେ ପୁତ୍ରାର୍ଥିନୀ ହୋଇ, 'ଏହି ପୁତ୍ର ଆମ୍ଭର' ବୋଲି କହି ତାହାଙ୍କ ଅଭିମୁଖକୁ ଗମନ କଲେ । ୧୧ । ଭଗବାନ୍ କାର୍ତ୍ତିକେୟ ସେମାନଙ୍କ ଅଭିପ୍ରାୟ ଅବଗତ ହୋଇ ତେତେବେଳେ ଷଡ଼୍‌ମୁଖଦ୍ୱାରା ସେହି ପ୍ରସ୍ନୁତସ୍ତନା ମାତୃଗଣଙ୍କର ଦୁଗ୍‌ଧପାନ କଲେ । ୧୨ । ଦିବ୍ୟରୂପଧାରିଣୀ କୃତ୍ତିକା ପ୍ରଭୃତି ଦେବସ୍ତ୍ରୀମାନେ ସେହି ବାଳକଙ୍କର ତାଦୃଶ ପ୍ରଭାବ ଅବଲୋକନ କରି ବିସ୍ମୟାପନ୍ନ ହେଲେ । ୧୩ ।

ହେ କୁରୁନନ୍ଦନ ! ଗଙ୍ଗାଦେବୀ ଯେଉଁ ଶୈଳଶିଖରରେ ସେହି ଭଗବାନ୍ କୁମାରଙ୍କୁ ପରିତ୍ୟାଗ କରିଥିଲେ, ସେହି ପର୍ବତର ସମୁଦାୟ ପ୍ରଦେଶ ସୁବର୍ଣ୍ଣମୟ ହୋଇ ଶୋଭା ପାଉଥିଲା । ୧୪ । ସେହି ବାଳକ ଯେଉଁ ପରିମାଣରେ ବର୍ଦ୍ଧନଶୀଳ ହେଉଥିଲେ, ଭୂମଣ୍ଡଳ ସେହି ପରିମାଣରେ ରଞ୍ଜିତ ହେଉଥିଲା । ତାହାଙ୍କ ହେତୁରୁ ଶୈଳସମୂହ କାଞ୍ଚନାକାର ଧାରଣ କରିଥିଲେ । ୧୫ । ମହାବୀର୍ଯ୍ୟଶାଳୀ ମହାଯୋଗ ବଳଯୁକ୍ତ ସେହି କୁମାର ପ୍ରଥମରେ ଗାଙ୍ଗେୟ, ପଶ୍ଚାତ୍ କାର୍ତ୍ତିକେୟ ନାମରେ ଖ୍ୟାତ ହେଲେ । ୧୬ । ହେ ରାଜେନ୍ଦ୍ର ! ସେହି ପ୍ରିୟଦର୍ଶନ କୁମାର ତପସ୍ୟା, ଶାନ୍ତି ଓ ବୀର୍ଯ୍ୟଯୁକ୍ତ ହୋଇ, ଚନ୍ଦ୍ରଙ୍କ ସଦୃଶ କ୍ରମେ କ୍ରମେ ବର୍ଦ୍ଧିତ ହେଲେ । ୧୭ ।

ସେହି ପରମ ସୌନ୍ଦର୍ଯ୍ୟଶାଳୀ କୁମାର ସୁବର୍ଣ୍ଣମୟ ଦିବ୍ୟ ଶର-ସ୍ତମ୍ବମାନଙ୍କ ମଧ୍ୟରେ ଶୟନ କରିଥିଲେ । ତାହାଙ୍କୁ ଗନ୍ଧର୍ବ ଓ ମୁନିବୃନ୍ଦ ସର୍ବଦା ସ୍ତବ କରୁଥିଲେ । ବାଦିତ୍ର ଓ ନୃତ୍ୟବିଶାରଦା ଦିବ୍ୟ ଚାରୁନେତ୍ରା ସହସ୍ର ସହସ୍ର ଦେବକନ୍ୟା ତାହାଙ୍କ ନିକଟରେ ନୃତ୍ୟ କରୁଥିଲେ । ୧୯ । ନଦୀଶ୍ରେଷ୍ଠା ଗଙ୍ଗାଦେବୀ ସେହି କୁମାର ଦେବଙ୍କର ସର୍ବଦା ଅନୁଗତା ହୋଇଥିଲେ । ଅତି ଉତ୍କୃଷ୍ଟ ରୂପଧାରିଣୀ ପୃଥିବୀ ଦେବୀ ତାହାଙ୍କୁ ସର୍ବଦା ଧରିଥିଲେ । ୨୦ । ବୃହସ୍ପତି ତାହାଙ୍କର ଜାତକ୍ରିୟା ପ୍ରଭୃତି ସମସ୍ତ କ୍ରିୟା ନିଷ୍ପନ୍ନ କଲେ । ଦେବତାଚତୁଷ୍ଟୟ କୃତାଞ୍ଜଳି ହୋଇ ସର୍ବଦା ତାହାଙ୍କ ଉପାସନାରେ ନିଯୁକ୍ତ ରହିଲେ । ଚତୁଷ୍ପଦ ଧନୁର୍ବେଦ ଓ ଅନ୍ୟାନ୍ୟ ସଂଗ୍ରହ ସହିତ ଶସ୍ତ୍ରବିଦ୍ୟା ସମୂହ ଓ ସାକ୍ଷାତ୍ ସରସ୍ୱତୀ ଦେବୀ ସ୍ୱୟଂ ସେଠାକୁ ଆଗମନ କରି ତାହାଙ୍କ ଉପାସନାରେ ନିଯୁକ୍ତ ରହିଲେ । ୨୨ ।

କାଳକ୍ରମରେ ମହାବୀର୍ଯ୍ୟଶାଳୀ ସେହି କୁମାର ଦେବଗିରିସୁତାଙ୍କ ସହିତ ସମାସୀନ ଓ ଭୂତସମୂହରେ ପରିବେଷ୍ଟିତ ଦେବଦେବ ଉମାପତିଙ୍କୁ ଯେଉଁ ସ୍ଥାନରେ ଦର୍ଶନ କଲେ, ସେଠାରେ ଅତି ଆଶ୍ଚର୍ଯ୍ୟମୂର୍ତ୍ତି ଭୂତମାନେ ଥିଲେ । ବିକୃତ କେଶ, ବିକୃତାଭରଣ, ବିକୃତାକାର ଓ ବିକୃତଚିହ୍ନ ଭୂତସମୂହ ବିଚରଣ କରୁଥିଲେ । କାହାର ମୁଖ ବ୍ୟାଘ୍ର ମୁଖ ପରି, କାହାର ମୁଖ ସିଂହ ସଦୃଶ, କେଉଁ କେଉଁମାନଙ୍କ ମୁଖ ବିଚିତ୍ର ବିଡ଼ାଳ ମୁଖ ସଦୃଶ, କାହାର ମୁଖ ମକର ସଦୃଶ, କାହାର ମୁଖ ମାର୍ଜାର ମୁଖ ସଦୃଶ, କାହାର ମୁଣ୍ଡ ଗଜମୁଣ୍ଡ ସଦୃଶ, କୌଣସି କୌଣସି ଭୂତର ମୁଖ ଉଷ୍ଟ୍ରମୁଖ ସଦୃଶ, କାହାର ମୁଖ ପେଚକ ମୁଖ ସଦୃଶ, କୌଣସି କୌଣସି ଭୂତ ଗୃଧ୍ରାକାର, କେହି କେହି ଭୂତ ଶୃଗାଳାକାର, କାହାର ମୁଖ ବକ ମୁଖ ସମାନ, କାହାର ମୁଖ ପାରାବତ ମୁଖ ସମାନ, କାହାର ମୁଖ ମୃଗ-ମୁଖ ସମାନ; ତଦ୍ଭିନ୍ନ ଶ୍ୱା, ଶଲ୍ଲକ, ଗୋଧା, ଛାଗ, ମେଷ, ହରିଣ ଓ ଗୋସଦୃଶ ଶରୀରଧାରୀ କେତେ କେତେ ଭୂତ ସେଠାରେ ବିଚରଣ କରୁ-ଥିଲେ । ୨୭ । ପର୍ବତ ଓ ମେଘ ସଦୃଶ କତିପୟ ଭୂତ ଚକ୍ର ଓ ଗଦା ଧାରଣ କରିଥିଲେ । କାହାର ଦେହଚ୍ଛବି ଅଞ୍ଜନରାଶି ସମାନ ଓ କାହାର ପ୍ରଭା ଧବଳଗିରି ସଦୃଶ ଶୋଭା ପାଉଥିଲା ।୨୮।

ହେ ମହାରାଜ ! ସେଠାକୁ କ୍ରମେ କ୍ରମେ ସପ୍ତମାତୃକାଗଣ ଆଗମନ କଲେ । ସାଧ୍ୟଗଣ, ବିଶ୍ୱଗଣ, ମରୁଦ୍‌ଗଣ, ବସୁଗଣ, ପିତୃଗଣ, ରୁଦ୍ରଗଣ, ଆଦିତ୍ୟଗଣ, ସିଦ୍ଧଗଣ, ଭୁଜଙ୍ଗଗଣ, ଦୈତ୍ୟଗଣ ଓ ଗ୍ରହଗଣ ଆଗତ ହୋଇଥିଲେ । ସେହିପରି ବିଷ୍ଣୁଙ୍କ ସହିତ ପୁତ୍ରଯୁକ୍ତ ସ୍ୱୟମ୍ଭୂ ବ୍ରହ୍ମା ଓ ଦେବରାଜ ଇନ୍ଦ୍ର ସେହି ଅକ୍ଷୟକୁମାରଙ୍କୁ ଦର୍ଶନ କରିବା ନିମିତ୍ତ ସେଠାକୁ ଆସିଥିଲେ । ନାରଦ ପ୍ରଭୃତି ଦେବର୍ଷିଗଣ, ବୃହସ୍ପତି ପ୍ରଭୃତି ସିଦ୍ଧବୃନ୍ଦ ଏବଂ ଅନ୍ୟାନ୍ୟ ଦେବଗନ୍ଧର୍ବ, ସମୁଦାୟ ଭୁବନର ଶ୍ରେଷ୍ଠ ଦେବଗଣଙ୍କର ଦେବତା ସ୍ୱରୂପ ପିତୃଗଣ, ଯାମ, ଧାମ ନାମକ ଦେବଗଣ ସମସ୍ତେ ସେଠାକୁ ଆଗମନ କଲେ । ସେ ବାଳକ ହୋଇ ସୁଦ୍ଧା ବଳବାନ୍ ଓ ମହାନ୍ ଯୋଗ ବଳରେ ଯୁକ୍ତ ହୋଇ ଶୂଳଧାରୀ ପିନାକପାଣି ଦେବେଶ୍ୱରଙ୍କ ସମ୍ମୁଖକୁ ଗମନ କଲେ ।

ସେହି ବାଳକ ଆଗମନ କରୁଥିବାର ଦେଖି ଶିବ, ପାର୍ବତୀ, ଗଙ୍ଗା ଓ ଅଗ୍ନି ଏହି ଚାରି ଜଣଙ୍କ ମନରେ ଏକ ସମୟରେ ଏହି ବିତର୍କ ଜାତ ହେଲା ଯେ, ଏହି ବାଳକ ଗୌରବବଶରେ ପ୍ରଥମେ କାହା ନିକଟକୁ

ଆସିବେ । ସେହି ସମସ୍ତଙ୍କ ମନରେ ଏହି ବିଚାର ଜନ୍ମିଥିଲା ଯେ ଏହି ବାଳକ ପ୍ରଥମେ ଆମ୍ଭ ନିକଟକୁ ଆଗମନ କରିବେ । କୁମାର ଦେବ ସେହି ଚାରି ଜଣଙ୍କର ଏହି ପ୍ରକାର ଅଭିପ୍ରାୟ ଜାଣି ଏକ ସମୟରେ ଯୋଗ ଅବଲମ୍ବନ ଦ୍ୱାରା କ୍ଷଣକ ମଧ୍ୟରେ ଚତୁର୍ବିଧ ମୂର୍ତ୍ତି ଧାରଣ କଲେ । ଭଗବାନ କୁମାର ଦେବ ଆପଣାକୁ ଏହିପରି ଚତୁର୍ବିଧ ଭାଗରେ ବିଭକ୍ତ କରି, ଶାଖ, ବିଶାଖ ଓ ନୈଗମେୟ ଏହି ତିନି ମୂର୍ତ୍ତିକି ପଶ୍ଚାତ୍ ରଖି ସ୍ୱୟଂ ଅଦ୍ଭୁତ ରୂପ ସ୍କନ୍ଦ ରୂପରେ ରୁଦ୍ରଙ୍କ ନିକଟରେ ଉପସ୍ଥିତ ହେଲେ, ଏବଂ ବିଶାଖ ରୂପରେ ଗିରିଜା ଦେବୀଙ୍କ ନିକଟରେ, ଶାଖ ରୂପରେ ଭଗବାନ୍ ଅଗ୍ନିଦେବଙ୍କ ସନ୍ନିଧିରେ, ନୈଗମେୟ ରୂପରେ ଗଙ୍ଗାଙ୍କ ନିକଟରେ ଉପସ୍ଥିତ ହେଲେ । ୪୦ । ସମାନ ରୂପଶୀଳ ସୂର୍ଯ୍ୟଦେବଙ୍କ ସଦୃଶ ପ୍ରଭାଯୁକ୍ତ ସେହି ଚତୁର୍ବିଧ ମୂର୍ତ୍ତି ସେହି ଚାରିଜଣଙ୍କ ନିକଟକୁ ଅତି ବେଗରେ ଆଗମନ କରନ୍ତେ ତାହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ଘଟନା ପରି ଜଣାଗଲା । ୪୧ । ଲୋମହର୍ଷଣକାରୀ ଅଦ୍ଭୁତ ଅତି ଉତ୍କୃଷ୍ଟ ଆଶ୍ଚର୍ଯ୍ୟ ଘଟନାକୁ ଦେଖି ଦେବଦାନବମାନେ ହାହାକାର କଲେ । ୪୨ । ଦେବୀ ଭଗବତୀ ପାର୍ବତୀ, ଭଗବାନ୍ ରୁଦ୍ର, ଅଗ୍ନିଦେବ ଓ ଗଙ୍ଗାଦେବୀ, ଏହି ଚାରିଜଣ ଏକତ୍ର ସଙ୍ଗତ ହୋଇ ଜଗତ ପିତାମହଙ୍କ ନିକଟକୁ ଯାଇ ତାହାଙ୍କୁ ପ୍ରଣାମ କଲେ । ୪୩ ।

ହେ ମହାରାଜ ! ସେମାନେ ପିତାମହଙ୍କୁ ଯଥାବିଧାନରେ ପ୍ରଣିପାତ କରି କାର୍ତ୍ତିକେୟଙ୍କ ପ୍ରିୟ କାମନାରେ ଏହି ବାକ୍ୟ କହିଲେ, ହେ ଭଗବନ୍ ! ଆମ୍ଭମାନଙ୍କ ପ୍ରିୟ କର୍ମସାଧନ ନିମିତ୍ତ ଏହି ବାଳକଙ୍କୁ ଦେବଶ୍ରେଷ୍ଠଙ୍କ ଉପଯୁକ୍ତ ଅଭୀଷ୍ଟାନୁସାରେ ଆଧିପତ୍ୟ ପ୍ରଦାନ କରିବା ହେଉନ୍ତୁ । ୪୫ । ବୁଦ୍ଧିମାନ ସର୍ବଲୋକପିତାମହ ଭଗବାନ ସେହିମାନଙ୍କର ଏହି ବାକ୍ୟ ଶୁଣି ମନେ ମନେ ବିଚାର କଲେ, ଏହାଙ୍କୁ କେଉଁ କର୍ମ ପ୍ରଦାନ କରିବା । ୪୬ । ଭଗବାନ ବ୍ରହ୍ମା ଭାବିଲେ, ଆମ୍ଭେ ପୂର୍ବେ ଏହାଙ୍କୁ ମହାନୁଭବ ଦେବ, ଗନ୍ଧର୍ବ, ଭୂତ, ଯକ୍ଷ, ରାକ୍ଷସ, ବିହଙ୍ଗ ଓ ଭୁଜଙ୍ଗଗଣର ସମସ୍ତ ଐଶ୍ୱର୍ଯ୍ୟ ଦେବା ନିମିତ୍ତ ଆଦେଶ କରିଅଛୁ । ମହାପତି ବ୍ରହ୍ମା ତାହାଙ୍କୁ ସେହି ସମସ୍ତ ଐଶ୍ୱର୍ଯ୍ୟର ଉପଯୁକ୍ତ ଜାଣି ଦେବତାମାନଙ୍କ ମଙ୍ଗଳ ନିମିତ୍ତ ମୁହୂର୍ତ୍ତେ ମାତ୍ର ଧ୍ୟାନ କଲା ପରେ ତାହାଙ୍କୁ ସର୍ବଭୂତର ସେନାପତିତ୍ୱ ପ୍ରଦାନ କଲେ । ୪୯ ।

ହେ ମହାରାଜ ! ସମସ୍ତ ଦେବଗଣ ମଧ୍ୟରେ ଯେଉଁମାନେ ରାଜା ବୋଲି ଖ୍ୟାତ ହୋଇଥିଲେ, ସର୍ବଭୂତର ପିତାମହ ବ୍ରହ୍ମା ସେମାନଙ୍କୁ କୁମାର ଦେବଙ୍କ ସୈନାପତ୍ୟ ନିମିତ୍ତ ଆଦେଶ କଲେ । ୫୦ । ତଦନନ୍ତର ବ୍ରହ୍ମା ପ୍ରଭୃତି ଦେବଗଣ ଏକତ୍ରିତ ହୋଇ କୁମାରଙ୍କୁ ନେଇ ତାହାଙ୍କ ଅଭିଷେକ ନିମିତ୍ତ ହିମାଳୟ ଗିରି ଉପରିସ୍ଥ ନଦୀଶ୍ରେଷ୍ଠା ପବିତ୍ରକାରିଣୀ ସରସ୍ୱତୀଙ୍କ ନିକଟକୁ ଆଗମନ କଲେ । ତ୍ରିଲୋକବିଖ୍ୟାତା ଯେଉଁ ପ୍ରଧାନ ନଦୀ ସରସ୍ୱତୀ ହିମାଳୟରୁ ନିର୍ଗତ ହୋଇ ସମନ୍ତପଞ୍ଚକ ତୀର୍ଥକୁ ଆଗମନ କରିଥିଲେ, ଦେବଗଣ ଓ ଗନ୍ଧର୍ବବୃନ୍ଦ ପୂର୍ଣ୍ଣମନୋରଥ ହୋଇ ସେହି ସରସ୍ୱତୀର ସର୍ବଗୁଣାକର ପବିତ୍ର ତୀର୍ଥରେ ଉପବିଷ୍ଟ ହେଲେ । ୫୩ ।

---

## ଅଧ୍ୟାୟ—୪୫

ବୈଶମ୍ପାୟନ କହିଲେ—ତଦନନ୍ତର ଦେବଗୁରୁ ବୃହସ୍ପତି ଅଭିଷେକର ଆବଶ୍ୟକୀୟ ଦ୍ରବ୍ୟସମୂହ ସଂଗ୍ରହ ପୂର୍ବକ ପ୍ରଦୀପ୍ତ ହୁତାଶନରେ ଶାସ୍ତ୍ରାନୁସାରେ ଯଥାବିଧାନରେ ଆହୁତି ପ୍ରଦାନ କଲେ । ୧ । ତଦନନ୍ତର କୁମାର ହିମାଳୟଙ୍କ ପ୍ରଦତ୍ତ ମଣି ରତ୍ନ ପ୍ରଭୃତିରେ ବିଭୂଷିତ ଦିବ୍ୟ ଆସନରେ ଉପବିଷ୍ଟ ହେଲେ । ଦେବତାଗଣ ସମସ୍ତଙ୍କ ମଙ୍ଗଳ ସମ୍ଭାର ସହିତ ବିହିତ ମନ୍ତ୍ର ଉଚ୍ଚାରଣ କରି ଅଭିଷେକର ଉପଯୁକ୍ତ ଦ୍ରବ୍ୟସବୁ ଗ୍ରହଣ ପୂର୍ବକ ସେଠାରେ ଉପସ୍ଥିତ ହେଲେ । ୩ ।

ମହାବୀର୍ଯ୍ୟଶାଳୀ ଇନ୍ଦ୍ର, ଭଗବାନ୍ ବିଷ୍ଣୁ, ଚନ୍ଦ୍ର, ସୂର୍ଯ୍ୟ, ଧାତା, ବିଧାତା, ଅନଳ, ଅନିଳ, ଅଂଶ, ପୂଷା, ଭଗ, ଅର୍ଯ୍ୟମା, ମିତ୍ର ଓ ବରୁଣଙ୍କ ସହିତ ଭଗବାନ ରୁଦ୍ରଦେବ, ତଦ୍ଭିନ୍ନ ରୁଦ୍ରଗଣ, ବସୁଗଣ, ଆଦିତ୍ୟଗଣ, ଅଶ୍ୱିନୀକୁମାରଦ୍ୱୟ, ବିଶ୍ୱେଦେବଗଣ, ମରୁଦ୍‌ଗଣ, ସାଧ୍ୟଗଣ, ପିତୃଗଣ, ଗନ୍ଧର୍ବଗଣ, ଅପ୍‌ସରାଗଣ, ଯକ୍ଷ, ରାକ୍ଷସ, ପନ୍ନଗଗଣ, ଅସଂଖ୍ୟ ଦେବର୍ଷି ଓ ମହର୍ଷି, ବୈଖାନସ, ବାଲଖିଲ୍ୟ, ବାତାହାରୀ, ମରୀଚପାୟୀ, ମହାନୁଭବ ଭୃଗୁ, ଅଙ୍ଗିରା ପ୍ରଭୃତି ଯତି ଋଷିଗଣ, ସେହିପରି ମଧ୍ୟ ବିଷଧର ବିଦ୍ୟାଧର, ପବିତ୍ର ଯୋଗ ସିଦ୍ଧଗଣଙ୍କ ସହିତ ପିତାମହ, ମହାତପା ପୁଲସ୍ତ୍ୟ, ପୁଲହ, ଅଙ୍ଗିରା, କଶ୍ୟପ, ଅତ୍ରି, ମରୀଚ, ଭୃଗୁ, କ୍ରତୁ, ହର, ପ୍ରଚେତା, ମନୁ, ଦକ୍ଷ,

ଋତୁଗଣ, ଗ୍ରହଗଣ, ନକ୍ଷତ୍ରଗଣ, ମୂର୍ତ୍ତିମନ୍ତ ନଦୀବୃନ୍ଦ, ସନାତନ ଦେବଗଣ, ହ୍ରଦନିକର, ସାଗରସମୂହ, ବିବିଧ ତୀର୍ଥନିକର, ପୃଥିବୀ, ସ୍ୱର୍ଗ, ଦିଗ-ସମୂହ, ବୃକ୍ଷବୃନ୍ଦ, ଦେବମାତା ଅଦିତି, ହ୍ରୀ, ଶ୍ରୀ, ସ୍ୱାହା, ସରସ୍ୱତୀ, ଉମା, ଶଚୀ, ସିନୀବାଲୀ, ଅନୁମତି, କୁହୂ, ରାକା, ଧିଷଣା ଓ ତଦ୍ଭିନ୍ନ ଅନ୍ୟାନ୍ୟ ଦେବସ୍ତ୍ରୀଗଣ, ହିମବାହ, ବିନ୍ଧ୍ୟ, କଳା, କାଷ୍ଠ, ମାସ, ଅର୍ଦ୍ଧମାସ, ଋତୁ, ରାତ୍ରି, ଦିବସ, ତଦ୍‌ବତ୍ ଅଶ୍ୱଶ୍ରେଷ୍ଠ ଉଚ୍ଚୈଃଶ୍ରବା, ନାଗରାଜ ବାସୁକି, ବରୁଣ, ଗରୁଡ଼, ଔଷଧି ସହିତ ବୃକ୍ଷସମୂହ, ଭଗବାନ୍ ଧର୍ମ, କାଳ, ଯମ, ମୃତ୍ୟୁ ଓ ତାହାଙ୍କ ଅନୁଚରଗଣ ଓ ଯାହାଙ୍କ ନାମ ଉଲ୍ଲେଖ ହୋଇନାହିଁ, ସେମାନେ ମଧ୍ୟ ଏକତ୍ରିତ ହୋଇ ସମସ୍ତେ କୁମାରଙ୍କ ଅଭିଷେକ ନିମିତ୍ତ ନିଜ ନିଜ ସ୍ଥାନରୁ ଆଗମନ ପୂର୍ବକ ସେଠାରେ ଉପସ୍ଥିତ ହେଲେ ।

ହେ ନରେନ୍ଦ୍ର ! ତେତେବେଳେ ସେଠାରେ ସମସ୍ତ ଅମରଗଣ ଉପସ୍ଥିତ ହୋଇ ଅଭିଷେକ ସମ୍ବନ୍ଧୀୟ ଭାଣ୍ଡ ଓ ମାଙ୍ଗଳିକ ଦ୍ରବ୍ୟସମୂହ ଗ୍ରହଣ କଲେ । ୧୯ । ପୂର୍ବ କାଳରେ ସର୍ବଲୋକ ପିତାମହ ବ୍ରହ୍ମା ଯେଉଁପରି ଜଳାଧିପତି ବରୁଣଙ୍କୁ ଅଭିଷେକ କରିଥିଲେ, ତଦ୍‌ବତ୍ ସୁରଗଣ ଦିବ୍ୟ ସମ୍ଭାରସଂଯୁକ୍ତ ସୁବର୍ଣ୍ଣ କଳଶଦ୍ୱାରା ସରସ୍ୱତୀଙ୍କ ପବିତ୍ର ଜଳ ଆଣି ସାନନ୍ଦ ମନରେ ଅସୁରମାନଙ୍କର ଭୟଙ୍କର କୁମାରଙ୍କୁ ସେନାପତିପଦରେ ଅଭିଷିକ୍ତ କଲେ । ୨୨ । ମହାତେଜସ୍ୱୀ କଶ୍ୟପ, ତଦ୍ଭିନ୍ନ ଲୋକବିଖ୍ୟାତ ମୁନିମାନେ ମଧ୍ୟ ଅଭିଷେକ କଲେ । ବ୍ରହ୍ମା ପ୍ରସନ୍ନ ହୋଇ ସେହି କାର୍ତ୍ତିକେୟଙ୍କୁ ବାୟୁବେଗ, ବଳସ୍ଥ, କାମରୂପୀ ଓ ସିଦ୍ଧ ହୋଇଥିବା ନନ୍ଦସେନ, ଲୋହିତାକ୍ଷ, ଘଣ୍ଟାକର୍ଣ୍ଣ ଏବଂ ବିଖ୍ୟାତ କୁମୁଦମାଳୀ ନାମକ ଚାରିଜଣ ମହାନ୍ ଅନୁଚର ପ୍ରଦାନ କଲେ । ତତ୍ପରେ ମହାତେଜା ମହେଶ୍ୱର କୁମାରଙ୍କୁ ଯେଉଁ ଏକଗୋଟି ମହାପାରିଷଦ ପ୍ରଦାନ କଲେ, ସେହି ପାରିଷଦ ଶତ ଶତ ମାୟା ଧାରଣ କରିପାରନ୍ତି ଓ କାମବୀର୍ଯ୍ୟ ଏବଂ ବଳବାନ୍ ଅଟନ୍ତି । ୨୬ । ହେ ରାଜେନ୍ଦ୍ର ! ସେହି ପାରିଷଦ ସୁରାସୁର-ଯୁଦ୍ଧରେ ବାହୁବଳଦ୍ୱାରା ଭୀମକର୍ମା ଦୈତ୍ୟମାନଙ୍କର ଚତୁର୍ଦ୍ଦଶ ନିୟୁତ ସେନାଙ୍କୁ ବିନାଶ କରିଥିଲେ । ୨୭ ।

ତଦନନ୍ତର ଦେବଗଣ ମହାତ୍ମା କାର୍ତ୍ତିକେୟଙ୍କୁ ଯେଉଁ ଅଜେୟ ସେନା ପ୍ରଦାନ କଲେ, ସେ ବିଷ୍ଣୁସ୍ୱରୂପିଣୀ, ରାକ୍ଷସକୁଳବେଷ୍ଟିତା ଓ ଅସୁରକୁଳ କ୍ଷୟକାରିଣୀ ଅଟନ୍ତି । ୨୮ । ତତ୍ସମୟରେ ଇନ୍ଦ୍ରାଦି ଦେବ-

ଗଣ ଯକ୍ଷ, ରାକ୍ଷସ, ଗନ୍ଧର୍ବ, ମୁନି ଓ ପିତୃଗଣ ଜୟଧ୍ୱନି କଲେ । ୨୯ । ତତ୍ପରେ ଯମଦେବ, ଉନ୍ମାଥ ଓ ପ୍ରମାଥ ନାମକ କାଳସଦୃଶ ମହାବୀର୍ଯ୍ୟ ଦୁଇଗୋଟି ଅନୁଚର ପ୍ରଦାନ କଲେ । ୩୦ । ପ୍ରତାପଶାଳୀ ସୂର୍ଯ୍ୟଙ୍କର ସୁଭ୍ରାଜ ଓ ଭାସ୍ୱର ନାମକ ଯେଉଁ ଦୁଇଗୋଟି ଅନୁଚର ଥିଲେ, ସେ ପ୍ରୀତ ହୋଇ କାର୍ତ୍ତିକେୟଙ୍କୁ ସେହି ଦୁହିଁଙ୍କୁ ପ୍ରଦାନ କଲେ । ୩୧ । ନିଶାନାଥ ଚନ୍ଦ୍ରମଣି ଓ ସୁମଣି ନାମକ କୈଳାଶ ଶୃଙ୍ଗ ସଦୃଶ ଶ୍ୱେତ ମାଲ୍ୟାନୁଲେପନ ଅନୁଚରଦ୍ୱୟଙ୍କୁ କାର୍ତ୍ତିକେୟଙ୍କ ନିକଟରେ ପ୍ରଦାନ କଲେ । ୩୨ । ଅଗ୍ନିଦେବ କୁମାର ଆତ୍ମଜଙ୍କୁ ଜ୍ୱାଳାଜିହ୍ୱ ଓ ଜ୍ୟୋତିନାମକ ଶତ୍ରୁ ସୈନ୍ୟସଂହାରକାରୀ ଦୁଇଗୋଟି ବୀର ଅନୁଚର ପ୍ରଦାନ କଲେ । ୩୩ । ଅଂଶଦେବତା ଅର୍ଥାତ୍ ବାୟୁ ପରିଘ, ବଟ, ଭୀମ, ଦହତି ଓ ଦହନ ନାମକ ପ୍ରଚଣ୍ଡ ବଳଶାଳୀ ପାଞ୍ଚଗୋଟି ଅନୁଚରଙ୍କୁ କୁମାରଙ୍କୁ ପ୍ରଦାନ କଲେ ।

ପରବୀରହନ୍ତା ଇନ୍ଦ୍ର ବଜ୍ରଦଣ୍ଡଧାରୀ ଉତ୍କ୍ରୋଶ ଓ ପଞ୍ଚକ ନାମକ ଦୁଇଗୋଟି ଅନୁଚରଙ୍କୁ ଅଗ୍ନିପୁତ୍ରଙ୍କ ସାହାଯ୍ୟ ନିମିତ୍ତ ପ୍ରଦାନ କଲେ । ହେ ମହାରାଜ ! ସେହି ଦୁହେଁ ଯୁଦ୍ଧ ସମୟରେ ଦେବରାଜଙ୍କର ଅନେକ ଅନେକ ଶତ୍ରୁ ବିନାଶ କରିଥିଲେ । ୩୬ । ମହାଯଶା ବିଷ୍ଣୁ କୁମାରଙ୍କୁ ମହାବଳ ଚକ୍ର, ବିକ୍ରମ ଓ ସଂକ୍ରମ ନାମକ ତିନିଗୋଟି ଅନୁଚର ପ୍ରଦାନ କରିଥିଲେ । ୩୭ । ହେ ଭରତଶ୍ରେଷ୍ଠ ! ଭିଷଗ୍‌ବର ଓ ସର୍ବବିଦ୍ୟାବିଶାରଦ ଅଶ୍ୱିନୀକୁମାରଦ୍ୱୟ ପ୍ରୀତିପୂର୍ଣ୍ଣ ଚିତ୍ତରେ କୁମାରଙ୍କୁ ବର୍ଦ୍ଧନ ଓ ନନ୍ଦନ ନାମକ ଦୁଇ ଅନୁଚର ପ୍ରଦାନ କଲେ । ମହାଯଶା ଧାତା ସେହି ମହାତ୍ମାଙ୍କୁ କୁନ୍ଦ, କୁସୁମ, କୁମୁଦ, ଡମ୍ବର ଓ ଆଡ଼ମ୍ବର ନାମକ ପାଞ୍ଚଗୋଟି ଅନୁଚର ପ୍ରଦାନ କଲେ । ୩୯ । ତ୍ୱଷ୍ଟା ବଳଷ୍ଟ, ମେଘଚକ୍ର ସଦୃଶ ବଳୋତ୍କଟ ଚକ୍ର ଓ ଅନୁଚକ୍ର ନାମକ ମାୟାଧାରୀ ଦୁଇଗୋଟି ଅନୁଚରଙ୍କୁ କୁମାରଙ୍କ ନିକଟରେ ସମର୍ପଣ କଲେ । ୪୦ । ମିତ୍ରଦେବ ସୁବ୍ରତ ଓ ସତ୍ୟସନ୍ଧ ନାମକ ତପୋବିଦ୍ୟାଧର ମହାନୁଭବ ଦୁଇଗୋଟି ଅନୁଚର କୁମାରଙ୍କୁ ପ୍ରଦାନ କଲେ । ୪୧ । ବିଧାତା ତ୍ରିଲୋକବିଖ୍ୟାତ ସୁନ୍ଦର ବରଦ ସୁବ୍ରତ ଓ ସୁକର୍ମା ନାମକ ଦୁଇଗୋଟି ମହାନୁଭବ ଅନୁଚରଙ୍କୁ କୁମାରଙ୍କ ନିମିତ୍ତ ସଂପ୍ରଦାନ କଲେ ।

ହେ ଭରତ ! ତତ୍ପରେ ପୂଷା କାର୍ତ୍ତିକେୟଙ୍କୁ ପାଣୀତକ ଓ କାଳକ ନାମକ ମହା ମାୟାବୀ ଦୁଇଗୋଟି ଅନୁଚର ପ୍ରଦାନ କଲେ । ହେ ଭରତ-

ଶ୍ରେଷ୍ଠ ! ବାୟୁ ଦେବତା କୁମାରଙ୍କୁ ମହାବଳଶାଳୀ ଏବଂ ମହାବକ୍ର ବଳ ଓ ଅତିବଳ ନାମକ ଦୁଇ ସେବକ ପ୍ରଦାନ କଲେ । ସତ୍ୟପ୍ରତିଜ୍ଞ ବରୁଣ କୁମାରଙ୍କୁ ଯମ ଏବଂ ଅତିଯମ ନାମକ ତିମିମୁଖ ଦୁଇଗୋଟି ମହାବଳ ଅନୁଚର ପ୍ରଦାନ କଲେ । ହିମାଳୟ କୁମାରଙ୍କୁ ସୁବର୍ଚ୍ଚସ ଓ ଅତିବର୍ଚ୍ଚସ ନାମକ ଦୁଇ ଅନୁଚର ପ୍ରଦାନ କଲେ । ସୁମେରୁ ଗିରି କାଞ୍ଚନ ଓ ମେଘ-ମାଳୀ ଏବଂ ମହାମନା ମେରୁ ମହାବଳ ପରାକ୍ରାନ୍ତ ସ୍ଥିର ଓ ଅସ୍ଥିର ନାମକ ଅନୁଚରମାନଙ୍କୁ ମହାନୁଭବ କାର୍ତ୍ତିକେୟଙ୍କ ସମୀପରେ ସମର୍ପଣ କଲେ । ବିନ୍ଧ୍ୟଗିରି ଅଗ୍ନିପୁତ୍ରଙ୍କୁ ଉଚ୍ଛୃଙ୍ଗ ଓ ଅତିଶୃଙ୍ଗ ନାମକ ମହାପାଷାଣଯୋଧୀ ଦୁଇ ପାରିଷଦ ସପ୍ରଦାନ କଲେ । ସମୁଦ୍ର କାର୍ତ୍ତିକେୟଙ୍କୁ ସଂଗ୍ରହ ଓ ବିଗ୍ରହ ନାମକ ଗଦାଧାରୀ ଦୁଇଗୋଟି ମହା ପାରିଷଦ ପ୍ରଦାନ କଲେ । ଶୁଭଦର୍ଶନା ପାର୍ବତୀ ଅଗ୍ନିପୁତ୍ରଙ୍କୁ ଉନ୍ମାଦ, ପୁଷ୍ପଦନ୍ତ ଓ ଶଙ୍କୁକର୍ଣ୍ଣ ନାମକ ତିନିଜଣ ଅନୁଚର ପ୍ରଦାନ କଲେ । ହେ ପୁରୁଷଶ୍ରେଷ୍ଠ ! ନାଗେଶ୍ୱର ବାସୁକି ଅଗ୍ନି-ପୁତ୍ରଙ୍କୁ ଜୟ ଓ ମହାଜୟ ନାମକ ଦୁଇଗୋଟି ନାଗ ଅନୁଚର ପ୍ରଦାନ କଲେ ।

ହେ ମହାରାଜ ! ଏହିପରି ସାଧ୍ୟଗଣ, ରୁଦ୍ରଗଣ, ବସୁଗଣ, ପିତୃଗଣ, ସାଗରସମୂହ, ନଦୀବୃନ୍ଦ ଓ ମହାବଳ ଅଚଳସମୂହ, ଶୂଳ, ପଟ୍ଟିଶ ପ୍ରଭୃତି ବିବିଧ ଅସ୍ତ୍ରଧାରୀ, ନାନାବେଶବିଭୂଷିତ ସେନାଧ୍ୟକ୍ଷସମୂହ ପ୍ରଦାନ କଲେ । ଏତଦ୍‌ଭିନ୍ନ କାର୍ତ୍ତିକେୟଙ୍କର ଯେଉଁସବୁ ଅନ୍ୟାନ୍ୟ ବିବିଧ ଆୟୁଧଶୀଳ ବିଚିତ୍ର କବଚଧାରୀ ସୈନିକ ଥିଲେ, ସେମାନଙ୍କ ନାମ କୀର୍ତ୍ତନ କରୁଅଛୁ, ଶ୍ରବଣ କରିବା ହେଉନ୍ତୁ ।

ସେମାନଙ୍କ ନାମ ଶଙ୍କୁକର୍ଣ୍ଣ, ନିକୁମ୍ଭ, ପଦ୍ମ, କୁମୁଦ, ଅନନ୍ତ, ଦ୍ୱାଦଶଭୁଜ, କୃଷ୍ଣ, ଉପକୃଷ୍ଣ, ଘ୍ରାଣଶ୍ରବା, କପିସ୍କନ୍ଧ, କାଞ୍ଚନାକ୍ଷ, ଜଳନ୍ଧମ, ଅକ୍ଷ, ସନ୍ତର୍ଜନ, କୁନଦୀକ, ତମୋଽନ୍ତକୃତ୍, ଏକାକ୍ଷ, ଦ୍ୱାଦଶାକ୍ଷ, ଏକଜଟ, ପ୍ରଭୁ, ସହସ୍ରବାହୁ, ବିକଟ, ବ୍ୟାଘ୍ରାକ୍ଷ, କ୍ଷିତିକମ୍ପନ, ପୁଣ୍ୟନାମା, ସୁନାମା, ସୁଚକ୍ର, ପ୍ରିୟଦର୍ଶନ, ପରିଶ୍ରୁତ, ପ୍ରିୟମାଲ୍ୟାନୁଲେପନ, କୋକନଦ, ଅଜୋଦର, ଗଜଶିରା, ସ୍କନ୍ଧାକ୍ଷ, ଶତଲୋଚନ, ଜ୍ୱାଳାଜିହ୍ୱ, କରାଳାକ୍ଷ, ଶିତିକେଶ, ଜଟୀ, ହରି, ପରିଶ୍ରୁତ, କୋକନଦ, କୃଷ୍ଣକେଶ, ଜଟାଧର, ଚତୁର୍ଦଂଷ୍ଟ୍ର, ଅଷ୍ଟଜିହ୍ୱ, ମେଘନାଦ, ପୃଥୁଶ୍ରବା, ବିଦ୍ୟୁତାକ୍ଷ, ଧନୁର୍ବକ୍ତ୍ର, ଜାଠର, ମାରୁତାଶନ, ଉଦରାକ୍ଷ, ରଥାକ୍ଷ, ବଜ୍ରନାଭ, ବସୁପ୍ରଭ, ସମୁଦ୍ରବେଗ,

ଶୈଳକମ୍ପୀ, ବୃଷ, ମେଷ, ପ୍ରବାହ, ନନ୍ଦ, ଉପନନ୍ଦ, ଧୂମ୍ର, ଶ୍ୱେତ, କଳଙ୍ଗ, ସିଦ୍ଧାର୍ଥ, ବରଦ, ପ୍ରିୟକ, ନନ୍ଦ, ପ୍ରତାପଶାଳୀ, ଗୋନନ୍ଦ, ଆନନ୍ଦ, ପ୍ରମୋଦ, ସ୍ୱସ୍ତିକ, ଧ୍ରୁବକ, କ୍ଷେମବାହ, ସୁବାହ, ସିଦ୍ଧପାତ୍ର, ଗୋବ୍ରଜ, କନକାପୀଡ଼, ମହାପାରିଷଦେଶ୍ୱର, ଗାୟନ, ହସନ, ବାଣ, ବୀର୍ଯ୍ୟଶାଳୀ ଖଡ଼୍ଗ, ବୈତାଳୀ, ଗତିତାଳୀ, କଥକ, ବାତିକ, ହଂସଜ, ପଙ୍କଦିଗ୍ଧାଙ୍ଗ, ସମୁଦ୍ରୋନ୍ମାଦନ, ରଣୋତ୍କଟ, ପ୍ରହାସ, ଶ୍ୱେତସିଦ୍ଧ, ନନ୍ଦନ, କାଳକଣ୍ଠ, ପ୍ରଭାସ, କୁମ୍ଭାଣ୍ଡକୋଦର, କାଳକକ୍ଷ, ସିତ, ଭୂତ-ମଥନ, ଯଜ୍ଞବାହ, ସୁବାହ, ଦେବଯାଜୀ, ସୋମପ; ମହାତେଜା, ମଜ୍ଜାନ, କ୍ରଥ, କ୍ରାଥ, ତୁହର, ତୁହାର, ବୀର୍ଯ୍ୟଶାଳୀ ଚିତ୍ରଦେବ, ମଧୁର, ସୁପ୍ରସାଦ, ମହାବଳ କିରୀଟୀ, ବତ୍ସଳ, ମଧୁବର୍ଣ୍ଣ, କଲଶୋଦର, ଧର୍ମଦ, ମନ୍ମଥକର, ବୀର୍ଯ୍ୟବାନ୍ ସୂଚୀବକ୍ତ୍ର, ଶ୍ୱେତବକ୍ତ୍ର, ସୁବକ୍ତ୍ର, ଚାରୁବକ୍ତ୍ର, ପାଣ୍ଡୁର, ଦଣ୍ଡବାହୁ, ସୁବାହୁ, ରଜ, କୋକିଳକ, ଅଚଳ, ବାଳସ୍ୱାମୀ, କନକାକ୍ଷ, ସଞ୍ଚାରକ, କୋକନଦ, ଗୃଧ୍ରପତ୍ର, ଜମ୍ବୁକ, ଲୋହବକ୍ତ୍ର, ଜବନ, କୁମ୍ଭବକ୍ତ୍ର, କୁମ୍ଭକ, ସ୍ୱର୍ଣ୍ଣଗ୍ରୀବ, କୃଷ୍ଣୌଜା, ହଂସବକ୍ତ୍ର, ଶିକ୍ଷକ, ବୃଷବକ୍ତ୍ର, ଜମ୍ବୁକ, ଶାକବକ୍ତ୍ର ଓ କୁଞ୍ଜଳ । ଏହି ସମସ୍ତ ମହାତ୍ମା ଯୋଗଯୁକ୍ତ ପାରିଷଦଗଣ ଓ ପିତାମହଙ୍କର ମହାତ୍ମା ମହାପାରିଷଦଗଣ ସର୍ବଦା ବ୍ରାହ୍ମଣମାନଙ୍କ ପ୍ରିୟ କାର୍ଯ୍ୟରେ ରତ ଥାଆନ୍ତି । ୭୭ ।

ହେ ଜନ୍ମେଜୟ ! ସେମାନଙ୍କ ମଧ୍ୟରେ ସହସ୍ର ସହସ୍ର ଯୁବା, ବୃଦ୍ଧ ଓ ବାଳକ ପାରିଷଦଗଣ କୁମାରଙ୍କ ନିକଟରେ ଅବସ୍ଥାନ କରିଥିଲେ । ୭୮ । ହେ ମହାରାଜ ! ସେହି ସମସ୍ତ ପାରିଷଦଗଣଙ୍କ ମୁଖ ନାନାପ୍ରକାର ଅଟେ । ଯେଉଁମାନଙ୍କ ମୁଖ ଯାଦୃଶ ଅଟେ, ତାହା କହୁଅଛୁ, ଶ୍ରବଣ କରିବା ହେଉନ୍ତୁ । ସେମାନଙ୍କ ମଧ୍ୟରେ କୌଣସି କୌଣସି ବ୍ୟକ୍ତିଙ୍କ ମୁଖ କମଠ ମୁଖ ସ୍ୱରୂପ ଅଟେ । କାହାର ମୁଖ କୁକ୍କୁଟ ମୁଖ ସଦୃଶ, କେହି ଗୃଧ୍ରବକ୍ତ୍ର, କାହାର ମୁଖ କୁକୁରମୁଖ ସଦୃଶ, କାହାର ମୁଖ ଶୃଗାଳମୁଖ ସଦୃଶ, କାହାର ମୁଖ ଶଶକମୁଖ ସଦୃଶ, କାହାର ମୁଖ ପେଚକମୁଖ ସଦୃଶ, କାହାର ମୁଖ ଗର୍ଦ୍ଦଭମୁଖ ସଦୃଶ, କାହାର ମୁଖ ଉଷ୍ଟ୍ରମୁଖ ସଦୃଶ, କାହାର ମୁଖ ବରାହମୁଖ ସଦୃଶ, କାହାର ମୁଖ ମନୁଷ୍ୟମୁଖ ସଦୃଶ, କେହି ଛାଗମୁଖ, କେହି ଶୃଗାଳମୁଖ, କେଉଁମାନଙ୍କ ମୁଖ ଭୟଙ୍କର ମକରମୁଖ ସଦୃଶ, କେହି ଶିଶୁମାରମୁଖ, କେହି ମାର୍ଜାରମୁଖ, କେହି ଦଂଶବଦନ, କେହି କେହି ଗୃଧ୍ରବକ୍ତ୍ର,

କେହି ନକୁଳ ମୁଖ, କେହି ପେଚକ ମୁଖ, କେହି ପିଙ୍ଗଳ ନକୁଳବଦନ, କେହି ମୟୂର ବର୍ଦ୍ଧନ, କାହାର ମୁଖ ମତ୍ସ୍ୟ ସଦୃଶ, କାହାର ମୁଖ ମେଷ-ମୁଖ ସଦୃଶ, କେହି ଛାଗଳମୁଖ, କେହି ମହିଷ ମୁଖ, କେହି ଭଲ୍ଲୁକ ମୁଖ, କେହି ଗଣ୍ଡାର ମୁଖ, କେହି ଶାର୍ଦ୍ଦୂଳ ମୁଖ, କେହି ସିଂହମୁଖ, କେହି ଭୟଙ୍କର ଗଜାନନ, କେହି କେହି ଗରୁଡ଼ାନନ, କେହି କୁମ୍ଭୀରମୁଖ, କେହି କେହି ବକାନନ, କେହି ଅବା ବୃକାନନ, କେହି ଗୋମୁଖ, କେହି ଗର୍ଦ୍ଦଭ ମୁଖ, କେହି ଉଷ୍ଟ୍ରମୁଖ, କେହି ବିଡ଼ାଲ ମୁଖ ଥିଲେ ।

କାହାର ବୃହତ୍ ଜଠର, କେହି ଦୀର୍ଘପାଦ, କେହି ଦୀର୍ଘାଙ୍ଗ, କେତେକ ବ୍ୟକ୍ତି ତାରକାକ୍ଷ, କେହି ପାରାବତବଦନ, କେହି ବୃଷବଦନ, କେହି କୋକିଳମୁଖ, କେହି ଶ୍ୟେନମୁଖ, କେହି ତିତିର ବଦନ, କେହି କୃକଳାଶମୁଖ, କେହି କେହି ସ୍ୱଚ୍ଛ ବସ୍ତ୍ରଧାରୀ, କେହି ସର୍ପମୁଖ, କେହି ଶୂଳମୁଖ, କେହି ଅବା ଚଣ୍ଡମୁଖ, କେହି କେହି ଅବା ସୁନ୍ଦରବଦନ, କେହି କେହି ସର୍ପସଦୃଶ ଆକୃତିଶାଳୀ, କେହି କୌପୀନଧାରୀ, କାହାର ମୁଖ ଗୋନାସିକା ସଦୃଶ, କୌଣସି କୌଣସି ସୈନ୍ୟ ସ୍ଥୂଳୋଦର, କୃଶାଙ୍ଗ, କୌଣସି କୌଣସି ସୈନ୍ୟ କୃଶୋଦର, ସ୍ଥୂଳାଙ୍ଗ, କାହାର ଗ୍ରୀବା ହ୍ରସ୍ୱ, କାହାର କର୍ଣ୍ଣ ବୃହତ୍, କୌଣସି କୌଣସି ବ୍ୟକ୍ତି ନାନାବିଧ ବିଷଧର ବିଭୂଷିତ, କେହି କେହି ଗଜେନ୍ଦ୍ର ଚର୍ମଧାରୀ, କେହି ଅବା କୃଷ୍ଣାଜିନପରିଧାୟୀ ଥିଲେ ।

ହେ ମହାରାଜ ! କୌଣସି ବ୍ୟକ୍ତି ସ୍କନ୍ଧରେ, କୌଣସି ବ୍ୟକ୍ତି ଉଦରରେ, କାହାର କାହାର ପୃଷ୍ଠରେ, କାହାର କପାଳର ନିମ୍ନଭାଗରେ, କାହାର ଜଙ୍ଘ ପ୍ରଦେଶରେ, କାହାର ପାର୍ଶ୍ୱ ଦେଶରେ, କାହାର ଅବା ନାନାସ୍ଥାନରେ ମୁଖସମୂହ ସଂଲଗ୍ନ ହୋଇ ରହିଥିଲା । ଏହିପରି ଗଣେଶ୍ୱରମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତିଙ୍କ ମୁଖ କୀଟ, ପତଙ୍ଗ ଓ ସର୍ପମୁଖ ସଦୃଶ ଥିଲା । ୯୧ । ସେମାନଙ୍କ ମଧ୍ୟରେ କାହାର ବହୁତ ବାହୁ, କାହାର ବହୁତ ମସ୍ତକ, କାହାର ଅବା ବହୁ ଉଦର, ସେମାନେ ନାନାପ୍ରକାର ବୃକ୍ଷରେ ବାସ କରନ୍ତି । ସେମାନଙ୍କ ମଧ୍ୟରେ କାହାର କଟି-ଦେଶରେ ମସ୍ତକ ଥିଲା, କାହା କାହାର ବଦନ ସର୍ପଫଣା ସଦୃଶ, ସେମାନେ ନାନା ଗୁଳ୍ମରେ ବାସ କରନ୍ତି, ସେମାନଙ୍କ ଦେହ କୌପୀନରେ ଓ କେତେକ ବ୍ୟକ୍ତିଙ୍କ ଦେହ ବିଚିତ୍ର ସୁବର୍ଣ୍ଣମଣ୍ଡିତ ବସ୍ତ୍ରରେ ସର୍ବଦା

ଆଚ୍ଛାଦିତ ଥାଏ । ସେମାନେ ନାନାପ୍ରକାର ବେଶ ଧାରଣ କରିପାରନ୍ତି, ବିବିଧ ମାଲ୍ୟ ଓ ଚନ୍ଦନ ପ୍ରଭୃତିରେ ମଣ୍ଡିତ ହୁଅନ୍ତି । ୯୩ । ସେମାନେ ବିବିଧ ବସ୍ତ୍ର ଓ ଚର୍ମ ବସ୍ତ୍ର ମଧ୍ୟ ପରିଧାନ କରନ୍ତି ।

କେହି ଉଷ୍ଣୀଷ, କେହି କେହି ଅବା ମୁକୁଟ ଧାରଣ କରି-ଥିଲେ । ସେମାନଙ୍କ ମଧ୍ୟରେ କାହାର ପଞ୍ଚଶିଖା, କାହାର ଦ୍ୱିଶିଖା, କାହାର ତ୍ରିଶିଖା, କାହାର କାହାର ଅବା ସପ୍ତଶିଖା ଥିଲା । କୌଣସି କୌଣସି ସୈନ୍ୟଙ୍କ ମସ୍ତକ ମୁଣ୍ଡିତ, କାହାର ମସ୍ତକ ଜଟାଭାରରେ ପରିପୂର୍ଣ୍ଣ । ସେମାନେ ଶୋଭନ କାନ୍ତିଯୁକ୍ତ, କମ୍ବୁଗ୍ରୀବ ଓ ଯୁଦ୍ଧପ୍ରିୟ । ସେମାନଙ୍କୁ ଦେବତାମାନେ ମଧ୍ୟ ଯୁଦ୍ଧରେ ଜୟ କରିପାରନ୍ତି ନାହିଁ । ସେମାନଙ୍କ ବର୍ଣ୍ଣ କୃଷ୍ଣବର୍ଣ୍ଣ, ମୁଖ ମାଂସଶୂନ୍ୟ, ପୃଷ୍ଠ ସ୍ଥୂଳ, ଉଦରଭାଗ ଅଳ୍ପ, ତଦ୍‌ଭିନ୍ନ କେତେକ କେତେକ ସୈନ୍ୟ ସ୍ଥୂଳ, ହ୍ରସ୍ୱପୃଷ୍ଠ, ଲମ୍ବୋଦର, ଲମ୍ବମେହନ, ମହାଭୁଜ, ହ୍ରସ୍ୱଭୁଜ, ହ୍ରସ୍ୱଦେହ, ବାମନ, କୁବ୍‌ଜ, ହ୍ରସ୍ୱଜଙ୍ଘ, ହସ୍ତିକର୍ଣ୍ଣ, ହସ୍ତିଗ୍ରୀବ, ହସ୍ତିନାସ, କୂର୍ମନାସ, ବୃକନାସ, ଦୀର୍ଘୋଚ୍ଛ୍ୱାସ, ଦୀର୍ଘଜଙ୍ଘ, ଅତି କରାଳ, ଅଧୋମୁଖ, ମହାଦଂଷ୍ଟ୍ରା, ହ୍ରସ୍ୱଦଂଷ୍ଟ୍ର ଓ କେହି କେହି ଚତୁର୍ଦଂଷ୍ଟ୍ର ଥିଲେ ।

ହେ ମହାରାଜ ! ସହସ୍ର ସହସ୍ର ସୈନ୍ୟ ଗଜେନ୍ଦ୍ର ସଦୃଶ ଅତି ଭୟଙ୍କର, ସେମାନଙ୍କର କଳେବରସବୁ ଅତ୍ୟନ୍ତ ବିଭକ୍ତ, ଦୀପ୍ତିମନ୍ତ ଓ ଅଳଂ-କୃତ, କାହାର ନୟନ ପିଙ୍ଗଳବର୍ଣ୍ଣ, କାହାର ନାସିକା ରକ୍ତବର୍ଣ୍ଣ, କେହି କେହି ଶଙ୍କୁକର୍ଣ୍ଣ, କେହି ପୃଥୁଳଦଂଷ୍ଟ୍ର, କାହାର ଓଷ୍ଠ ସ୍ଥୂଳ, କାହାର କେଶ ହରିଦ୍‌-ବର୍ଣ୍ଣ, କାହାର ନାନା ପ୍ରକାର ପାଦ, କାହାର ନାନା ପ୍ରକାର ଓଷ୍ଠ, କାହାର ନାନା ପ୍ରକାର ଦନ୍ତ, କାହାର ନାନା ପ୍ରକାର ହସ୍ତ ଏବଂ କାହାର ନାନା ପ୍ରକାର ଗ୍ରୀବା ଥିଲା । ୧୦୨ । ସେମାନେ ନାନା ପ୍ରକାର ଚର୍ମଦ୍ୱାରା ଆଚ୍ଛନ୍ନ ଥିଲେ, ସେମାନଙ୍କ ଭାଷା ମଧ୍ୟ ନାନା ପ୍ରକାର, କିନ୍ତୁ ସେମାନେ ଦେଶ ଭାଷା କହିବା ବିଷୟରେ ଅତି ନିପୁଣ ଥିଲେ । ସେହି କାରଣରୁ ଦେଶ ଭାଷାରେ ପରସ୍ପର କଥୋପକଥନ କରୁଥିଲେ । ଏହି ସମସ୍ତ ପାରିଷଦ ହୃଷ୍ଟଚିତ୍ତ ହୋଇ ସେଠାରେ ଉପସ୍ଥିତ ଥିଲେ ।

ହେ ମହାରାଜ ! ସେମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତିଙ୍କର ଗ୍ରୀବା ଦୀର୍ଘ, ନଖ ଦୀର୍ଘ, ପାଦ ଦୀର୍ଘ, ମସ୍ତକ ଦୀର୍ଘ ଓ ଭୁଜ ଦୀର୍ଘ ଥିଲା । ଅନେକ ବ୍ୟକ୍ତି ପିଙ୍ଗଳନୟନ, ନୀଳକଣ୍ଠ, ଲମ୍ବକର୍ଣ୍ଣ, ବୃକୋଦର ସଦୃଶ, ଅଞ୍ଜନବର୍ଣ୍ଣ,

ଶ୍ୱେତାକ୍ଷ, ରକ୍ତଗ୍ରୀବ ଓ ବଚିତ୍ରବର୍ଣ୍ଣ ଥିଲେ । ୧୦୬ । ସେମାନଙ୍କର ଲୋହିତବର୍ଣ୍ଣ ବଶିଷ୍ଟ ଗୃମରବୃନ୍ଦ ଅପୀଡ଼କ ସ୍ୱରୂପ ଥିଲା । ସେମାନେ ମୟୂର ସଦୃଶ ବଚିତ୍ରବର୍ଣ୍ଣ ଧାରଣ କରିଥିଲେ । ୧୦୭ ।

ହେ ମହାରାଜ ! ସେହି ସମସ୍ତ ପାରିଷଦଗଣ ଯେଉଁ ଅସ୍ତ୍ରଶସ୍ତ୍ର ସମୂହ ଧାରଣ କରିଥିଲେ, ସଂପ୍ରତି ତାହା କହୁଅଛୁ, ଶୁଣିବା ହେଉନ୍ତୁ । ୧୦୮ । କୌଣସି କୌଣସି ଉଷ୍ଟ୍ରମୁଖ ସୈନ୍ୟ ମୁଖ ବିସ୍ତାର ପୂର୍ବକ ଦୁଇ ହସ୍ତରେ ପାଶ ଅସ୍ତ୍ର ଧାରଣ କରିଥିଲେ । କୌଣସି କୌଣସି ନୀଳକଣ୍ଠ, ଧୃଷ୍ଟଲୋଚନ ସୈନ୍ୟ ବାହୁଦ୍ୱୟରେ ପରିଘ ଅସ୍ତ୍ର ଧାରଣ କରିଥିଲେ । କାହାର ହସ୍ତରେ ଶତଘ୍ନୀ ଶକ୍ତି, କାହାର ହସ୍ତରେ ଚକ୍ର, କାହାର ହସ୍ତରେ ମୂଷଳ, କାହାର ହସ୍ତରେ ମୁଦ୍‌ଗର, କାହାର ହସ୍ତରେ ଖଡ୍‌ଗ, କାହା ହସ୍ତରେ ଦଣ୍ଡ, କାହା ହସ୍ତରେ ଗଦା, କାହା ହସ୍ତରେ ଭୂଶୁଣ୍ଡି ଏବଂ କାହା ହସ୍ତରେ ତୋମର ଥିଲା । ସେହି ସମସ୍ତ ମହାବେଗଶାଳୀ ମହାବଳ ଯୁଦ୍ଧପ୍ରିୟ ମହାକାୟ ମହାପାରିଷଦଗଣ ଏହି ସମସ୍ତ ବିବିଧ ଅସ୍ତ୍ରଶସ୍ତ୍ର ଧାରଣପୂର୍ବକ କୁମାରଙ୍କ ଅଭିଷେକ ଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସେହି ମହାତେଜସ୍ୱୀଗଣ ଦେହରେ ଘଣ୍ଟାସମୂହ ବନ୍ଧନ କରି ନୃତ୍ୟ କଲେ ।

ହେ ମହାରାଜ ! ଏତଦ୍‌ଭିନ୍ନ ଅନେକ ଅନେକ ମହା-ପାରିଷଦବୃନ୍ଦ ମହାନୁଭବ ଯଶସ୍ୱୀ କାର୍ତ୍ତିକେୟଙ୍କ ସନ୍ନିଧିରେ ଉପସ୍ଥିତ ଥିଲେ । ସେମାନେ ପବନ ସଦୃଶ ଭୂମଣ୍ଡଳ, ଆକାଶମଣ୍ଡଳ ଓ ସ୍ୱର୍ଗଲୋକ ପର୍ଯ୍ୟନ୍ତ ବିଚରଣ କରିପାରନ୍ତି । ସେହି ବୀର ପୁରୁଷଗଣ ଦେବତାମାନଙ୍କ ଆଦେଶରେ କାର୍ତ୍ତିକେୟଙ୍କ ଅନୁଚର ହୋଇଥିଲେ । ସେମାନଙ୍କ ପରି ସହସ୍ର ଅୟୁତ ଓ ଅର୍ବୁଦ ସଂଖ୍ୟକ ସୈନ୍ୟ ଅଭିଷେକ ସମୟରେ ମହାତ୍ମା କୁମାରଙ୍କୁ ପରିବେଷ୍ଟନପୂର୍ବକ ସେହି ସ୍ଥାନରେ ଉପସ୍ଥିତ ଥିଲେ । ୧୧୫ ।

---

# ଅଧ୍ୟାୟ—୪୬

ବୈଶମ୍ପାୟନ କହିଲେ—ମହାରାଜ ! ଯେଉଁ ସମସ୍ତ ମାତୃକାମାନେ କୁମାରଙ୍କ ଅନୁଚରୀ ଥିଲେ, ଯେଉଁମାନଙ୍କ ନାମ କୀର୍ତ୍ତନ କଲେ ଶତ୍ରୁକୁଳ ନିର୍ମୂଳ ହୁଅନ୍ତି, ଯେଉଁ ଯଶସ୍ୱିନୀ ମଙ୍ଗଳଦାୟିନୀ ଦେବୀମାନେ ଚରାଚରମେ ତ୍ରିଭୁବନ ବ୍ୟାପ୍ତ ହୋଇ ରହିଅଛନ୍ତି, ଆମ୍ଭେ କ୍ରମେ କ୍ରମେ ସେହିମାନଙ୍କ ନାମ କୀର୍ତ୍ତନ କରୁଅଛୁ, ଶୁଣିବା ହେଉନ୍ତୁ । ୨ । ପ୍ରଭାବତୀ, ବିଶାଳାକ୍ଷୀ, ପାଳିତା, ଗୋସ୍ତନୀ, ଶ୍ରୀମତୀ, ବହୁଳା, ବହୁପୁତ୍ରିକା, ଅପ୍ସୁଜାତା, ଗୋପାଳୀ, ବୃହଦମ୍ବାଳିକା, ଜୟାବତୀ, ମାଳତିକା, ଧ୍ରୁବରତ୍ନା, ଭୟଙ୍କରୀ, ବସୁଦାମା, ଦାମା, ବିଶୋକା, ନନ୍ଦିନୀ, ଏକଚୂଡ଼ା, ମହାଚୂଡ଼ା, ଚକ୍ରନେମି, ଉତ୍ତେଜନୀ, ଜୟତ୍ସେନା, କମଳାକ୍ଷୀ, ଶୋଭନା, ଶତ୍ରୁଜୟା, କ୍ରୋଧନା, ଶଲଭୀ, ଖରୀ, ମାଧବୀ, ଶୁଭବକ୍ତ୍ରା, ତୀର୍ଥନେମି, ଗୀତପ୍ରିୟା, କଲ୍ୟାଣୀ, ରୁଦ୍ରରୋମା, ଅମିତାଶନା (୭), ମେଘସ୍ୱନା, ଭୋଗବତୀ, ସୁଭ୍ରୂ, କନକାବତୀ, ଅଲତାକ୍ଷୀ, ବୀର୍ଯ୍ୟବତୀ, ବିଦ୍ୟୁତ୍‌ଜିହ୍ୱା, ପଦ୍ମାବତୀ, ସୁନକ୍ଷତ୍ରା, କନ୍ଦରା, ବହୁଯୋଜନା, ସନ୍ତାନିକା, କମଳା, ମହାବଳା, ସୁଦାମା, ବହୁଦାମା, ସୁପ୍ରଭା, ଯଶସ୍ୱିନୀ, ନୃତ୍ୟପ୍ରିୟା, ଶତୋଲୂଖଳ-ମେଖଳା (୧୦), ଶତଘଣ୍ଟା, ଶତନନ୍ଦା, ଭଗନନ୍ଦା, ଭାବିନୀ, ବପୁଷ୍ମତୀ, ଚନ୍ଦ୍ରସୀତା, ଭଦ୍ରକାଳୀ (୧୧), ଋକ୍ଷାଂବିକା, ନିଷ୍କୁଟିକା, ବାମା, ଚତ୍ୱରବାସିନୀ, ସୁମଙ୍ଗଳା, ସ୍ୱସ୍ତିମତୀ, ବୁଦ୍ଧିକାମା, ଜୟପ୍ରିୟା (୧୨), ଧନଦା, ସୁପ୍ରସାଦା, ଭବଦା, ଜଳେଶ୍ୱରୀ, ଏଡ଼ୀ, ଭେଡ଼ୀ, ସମେଡ଼ୀ ବେତାଳଜନନୀ (୧୩), କଣ୍ଡୂତିକାଳିକା, ଦେବମିତ୍ରା, ବସୁଶ୍ରୀ, କୋଟରା, ଚିତ୍ରସେନା, ଅଚଳା (୧୪), କୁକ୍‌କୁଟିକା, ଶଙ୍ଖଳିକା, ଶକୁନିକା, କୁଣ୍ଡାରିକା, କୌକୁଳିକା, କୁମ୍ଭିକା, ଶତୋଦରୀ (୧୫), ଉତ୍‌କ୍ରାଥିନୀ, ଜଳେଳା, ମହାବେଗା, କଙ୍କଣା, ମନୋଜବା, କଣ୍ଟକିନୀ, ପ୍ରଘସା, ପୂତନା (୧୬), କେଶଯନ୍ତ୍ରୀ, ତ୍ରୁଟି, ବାମା, କ୍ରୋଶନା, ତଡ଼ିତ୍‌ପ୍ରଭା, ମନ୍ଦୋଦରୀ, ମୁଣ୍ଡୀ, କୋଟରା, ମେଘବାହିନୀ (୧୭), ସୁଭଗା, ଲମ୍ବିନୀ, ଲମ୍ବା, ତାମ୍ରଚୂଡ଼ା, ବିକାଶିନୀ, ଊର୍ଦ୍ଧ୍ୱବେଣୀଧରା, ପିଙ୍ଗାକ୍ଷୀ, ଲୌହମେଖଳା (୧୮), ପୃଥୁବସ୍ତ୍ରା, ମଧୁଳିକା, ମଧୁକୁମ୍ଭା, ପକ୍ଷାଳିକା, ମତ୍‌କୁଳିକା, ଜରାୟୁ, ଜର୍ଜରାନନା (୧୯), ଖ୍ୟାତା, ଦହଦହା, ଧମଧମା, ଖଣ୍ଡଖଣ୍ଡା, ପୂଷଣା, ମଣିକୁଟ୍ଟିକା (୨୦), ଅମୋଘା, ଲମ୍ବପୟୋଧରା, ବେଣୁବୀଣାଧରା, ପିଙ୍ଗାକ୍ଷୀ, ଲୌହମେଖଳା,

ଶଶୋଲୂକମୁଖୀ, କୃଷ୍ଣା, ଖରଜଙ୍ଘା, ମହାଜବା, ଶିଶୁମାରମୁଖୀ, ଶ୍ୱେତା, ଲୋହିତାକ୍ଷୀ, ବିଭୀଷଣା (୨୨), ଜଟାଳିକା, କାମଚରୀ, ଦୀର୍ଘଜିହ୍ୱା, ବଳୋତ୍କଟା, କାଳେହିକା, ବାମନିକା, ମୁକୁଟା (୨୩), ଲୋହିତାକ୍ଷୀ, ମହାକାୟା, ହରିପିଣ୍ଡା, ଏକତ୍ୱଚ୍, ସୁକୁସୁମା, କୃଷ୍ଣକର୍ଣ୍ଣୀ (୨୪), କ୍ଷୁରକର୍ଣ୍ଣୀ, ଚତୁଷ୍କର୍ଣ୍ଣୀ, କର୍ଣ୍ଣପ୍ରାବରଣା, ଚତୁଷ୍ପଥନିକେତା, ଗୋକର୍ଣ୍ଣୀ, ମହିଷାନନା (୨୫), ଖରକର୍ଣ୍ଣୀ, ମହାକର୍ଣ୍ଣୀ, ଭେରିସ୍ୱନା, ମହାସ୍ୱନା, ଶଙ୍ଖଶ୍ରବା, କୁମ୍ଭଶ୍ରବା, ଭଗଦା, ମହାବଳା (୨୬), ଗଣା, ସୁଗଣା, ଅଭୀତି, କାମଦା, ଚତୁଷ୍ପଥରତା, ଭୂତିତୀର୍ଥା, ଅନ୍ୟଗୋଚରୀ (୨୭), ପଶୁଦା, ବିତ୍ତଦା, ସୁଖଦା, ମହାଯଶା, ପୟୋଦା, ମହିଷଦା, ସୁବିଶାଳା (୨୮), ପ୍ରତିଷ୍ଠା, ସୁପ୍ରତିଷ୍ଠା, ରୋଚମାନା, ସୁରୋଚନା, ନୌକର୍ଣ୍ଣୀ, ମୁଖକର୍ଣ୍ଣୀ, ବଶିରା ମନ୍ଥିନୀ (୨୯), ଏକଚନ୍ଦ୍ରା, ମେଘକର୍ଣ୍ଣା, ମେଘମାଳା ଓ ବିରୋଚନା । ହେ ମହାରାଜ ! ଏହିମାନେ ଓ ଏତଦ୍‌ଭିନ୍ନ ଅନ୍ୟାନ୍ୟ ସହସ୍ର ସହସ୍ର ମାତୃକାମାନେ ନାନାବିଧ ରୂପ ଧାରଣ କରି କାର୍ତ୍ତିକେୟଙ୍କ ଅନୁଗାମିନୀ ହେଲେ । ସେମାନଙ୍କ ମଧ୍ୟରେ କେହି କେହି ଦୀର୍ଘନଖୀ, କେହି ଦୀର୍ଘଦନ୍ତୀ, କେହି ଦୀର୍ଘତୁଣ୍ଡା, କେହି ସରଳା, କେହି ମଧୁରା, କେହି ଯୌବନା, କେହି ଅବା ଅଳଂକୃତା; ସେମାନେ ନିଜ ନିଜ ମାହାତ୍ମ୍ୟ ଦ୍ୱାରା ନାନାବିଧ ରୂପ ଧାରଣ କରି ପାରନ୍ତି । ହେ ମହାଭାଗ ! ସେମାନଙ୍କ ମଧ୍ୟରେ କାହାର ଦେହ ମାଂସଶୂନ୍ୟ, କେହି ଶ୍ୱେତବର୍ଣ୍ଣ, କେହି ସୁବର୍ଣ୍ଣ ସଦୃଶ, କାହାର ବର୍ଣ୍ଣ କୃଷ୍ଣ ମେଘ ସଦୃଶ, କାହାର ବର୍ଣ୍ଣ ଧୂମ୍ର ସ୍ୱରୂପ ଅଟେ । ୩୩ । କେହି ଅରୁଣ ବର୍ଣ୍ଣ, କେହି ଦୀର୍ଘକେଶୀ, କେହି କେହି ସିତବସ୍ତ୍ରଧାରିଣୀ, କେହି କେହି ମହାଭାଗା ଊର୍ଦ୍ଧ୍ୱ ବେଶଧାରିଣୀ, କେହି କେହି ପିଙ୍ଗାକ୍ଷୀ, କୌଣସି କୌଣସି ମାତୃକା ଲମ୍ବ ମେଖଳା ଧାରଣ କରିଅଛନ୍ତି । ୩୪ ।

କେହି କେହି ଲମ୍ବୋଦରୀ, କେହି ଲମ୍ବକର୍ଣ୍ଣା, କୌଣସି କୌଣସି ମାନେ ଲମ୍ବସ୍ତନା, କେହି କେହି ତାମ୍ରାକ୍ଷୀ, କେହି କେହି ତାମ୍ରବର୍ଣ୍ଣା, କେହି କେହି ପିଙ୍ଗଳନୟନା (୩୫) । ତଦ୍‌ଭିନ୍ନ ବରଦା, କାମଚାରିଣୀ, ନିତ୍ୟ ପ୍ରମୁଦିତା, ଯାମ୍ୟା, ରୌଦ୍ରା, ସୌମ୍ୟା, କାବେରୀ, ମହାବଳା, ମାହେନ୍ଦ୍ରୀ, ବାରୁଣୀ, ଆଗ୍ନେୟୀ, ବାୟବୀ, କୌମାରୀ, ବ୍ରାହ୍ମୀ (୩୭); ବୈଷ୍ଣବୀ, ସୌରୀ ଓ ବାରାହୀ ପ୍ରଭୃତି ମାତୃକାଗଣ ଏବଂ କୌଣସି କୌଣସି-ମାନେ ମନୋରମା ରୂପରେ ଅପ୍‌ସରାମାନଙ୍କ ସଦୃଶ ମନୋହାରିଣୀ ଅଟନ୍ତି । ୩୮ । କେହି କେହି ବାକ୍ୟରେ କୋକିଳସଦୃଶ କଳନାଦିନୀ,

କୌଣସି କୌଣସି ମାନେ ସମୃଦ୍ଧିରେ କୁବେର ସଦୃଶ, କେହି କେହି ଯୁଦ୍ଧ ବିଷୟରେ ଇନ୍ଦ୍ର ସଦୃଶ, କୌଣସି କୌଣସିମାନେ ଦୀପ୍ତିରେ ଅଗ୍ନି ସମାନ ଅଟନ୍ତି । ୩୯ ।

ସେମାନେ ସମସ୍ତେ ସଂଗ୍ରାମ ସମୟରେ ଶତ୍ରୁଗଣର ମନରେ ଭୟ ପ୍ରଦାନ କରନ୍ତି । ବେଗ ବିଷୟରେ ପବନ ସଦୃଶ ହୋଇ ନିଜର ଇଚ୍ଛା ଅନୁସାରେ ନାନାବିଧ ରୂପ ଧାରଣ କରି ପାରନ୍ତି । ୪୦ । ସେମାନଙ୍କ ବଳବୀର୍ଯ୍ୟ ଓ ପରାକ୍ରମ ଅଚିନ୍ତନୀୟ ଓ ଅନିର୍ବଚନୀୟ; ସେମାନେ ବୃକ୍ଷ, ଚତ୍ୱର, ଚତୁଷ୍ପଥ, ଗୁହା, ଶ୍ମଶାନ ଓ ପର୍ବତର ପ୍ରସ୍ରବଣରେ ପ୍ରାୟ ସର୍ବଦା ବାସ କରନ୍ତି । ସେମାନେ ନାନା ପ୍ରକାର ମାଲ୍ୟ, ଆଭରଣ, ବସ୍ତ୍ର ଓ ବିଚିତ୍ର ବେଶ ଧାରଣ କରିଥାଆନ୍ତି । ସେମାନଙ୍କ ଭାଷା ସବୁ ଭିନ୍ନ ଭିନ୍ନ । ହେ ମହାରାଜ ! ଏହିମାନଙ୍କ ବ୍ୟତିରେକେ ଅନ୍ୟାନ୍ୟ ଶତ୍ରୁକ୍ଷୟକାରିଣୀ ଅନେକ ଅନେକ ମାତୃକା ତ୍ରିଦଶପତିଙ୍କ ସମ୍ମତି ଅନୁସାରେ ମହାନୁଭବ କୁମାରଙ୍କ ଅନୁଗାମିନୀ ହେଲେ ।

ହେ ମହାରାଜ ! ତଦନନ୍ତର ଭଗବାନ ଇନ୍ଦ୍ର ଅସୁରଗଣଙ୍କ ବିନାଶ ନିମିତ୍ତ କୁମାରଙ୍କୁ ଶକ୍ତି, ଅସ୍ତ୍ର, ମହାଶବ୍ଦଶାଳିନୀ ଶ୍ୱେତପ୍ରଭା ଦୀପ୍ତିମତୀ ଘଣ୍ଟା, ତରୁଣ ସୂର୍ଯ୍ୟଦେବଙ୍କ ବର୍ଣ୍ଣ ସଦୃଶ ପତାକା ପ୍ରଦାନ କଲେ । ପଶୁପତି ତାହାଙ୍କୁ ଧନଞ୍ଜୟା ନାମରେ ଯେଉଁ ଅଜେୟ ସୈନ୍ୟ ପ୍ରଦାନ କଲେ, ସେ ନାନାବିଧ ଅସ୍ତ୍ର, ଶସ୍ତ୍ର, ବଳବୀର୍ଯ୍ୟ ଓ ତପସ୍ୟା ପ୍ରଭୃତି ଦ୍ୱାରା ଉଗ୍ର ମହାଚମୂ ବୋଲି ବିଖ୍ୟାତ ଅଟେ । ୪୭ । ସେହି ସେନା ରୁଦ୍ରଙ୍କ ସଦୃଶ ବଳଶାଳୀ ତିନି ଅୟୁତ ଯୋଦ୍ଧାମାନଙ୍କ ଦ୍ୱାରା ରକ୍ଷିତ ହୋଇଥିବାରୁ ସେମାନେ କଦାପି ରଣସ୍ଥଳରୁ ନିବୃତ୍ତ ହେବାକୁ ଜାଣନ୍ତି ନାହିଁ । ୪୮ ।

ହେ ଭରତ ! ତତ୍ପରେ ବିଷ୍ଣୁ କୁମାରଙ୍କୁ ବୈଜୟନ୍ତୀ ନାମ୍ନୀ ବଳବିବର୍ଦ୍ଧିନୀ ମାଳା ପ୍ରଦାନ କଲେ । ଭଗବତୀ ଉମାଦେବୀ ପୁତ୍ରଙ୍କୁ ସୂର୍ଯ୍ୟ କିରଣ ସଦୃଶ ଅତିଶୟ ଉଜ୍ଜ୍ୱଳ ବସ୍ତ୍ରଯୁଗଳ ପ୍ରଦାନ କଲେ । ୪୯ । ଗଙ୍ଗାଦେବୀ ପ୍ରୀତିରେ କୁମାରଙ୍କୁ ଦିବ୍ୟ ଅମୃତସ୍ରାବୀ ଏକଗୋଟି ଉତ୍ତମ କମଣ୍ଡଳୁ ଓ ବୃହସ୍ପତି ଏକଗୋଟି ଦଣ୍ଡ ପ୍ରଦାନ କଲେ । ୫୦ । ତଦନନ୍ତର ଗରୁଡ଼ କୁମାରଙ୍କୁ ବିଚିତ୍ର ପକ୍ଷବିଶିଷ୍ଟ ନିଜର ପ୍ରିୟ ପୁତ୍ର ମୟୂର ପ୍ରଦାନ କଲେ ଓ ଅରୁଣଦେବ ତାମ୍ରଚୂଡ଼ କୁକ୍‌କୁଟ ପ୍ରଦାନ କଲେ । ୫୧ । ବରୁଣ-

ଗଜ ବଳବୀର୍ଯ୍ୟଯୁକ୍ତ ଗୋଟିଏ ନାଗ ଏବଂ ଲୋକଭାବନ ବ୍ରହ୍ମା ବ୍ରାହ୍ମଣ୍ୟ କାର୍ତ୍ତିକେୟଙ୍କୁ କୃଷ୍ଣାଜିନ ଓ ଯୁଦ୍ଧରେ ବିଜୟୀ ହେବା ନିମିତ୍ତ ବର ପ୍ରଦାନ କଲେ ।

କାର୍ତ୍ତିକେୟ ସୁରଗଣଙ୍କର ସେନାପତିତ୍ୱ ପ୍ରାପ୍ତ ହୋଇ ନିଜ ତେଜରେ ପ୍ରଜ୍ୱଳିତ ଦ୍ୱିତୀୟ ଅଗ୍ନି ସଦୃଶ ଅତ୍ୟନ୍ତ ଶୋଭିତ ହେଲେ । ତଦନନ୍ତର ସେ ମାତୃକାଗଣ ଓ ପାରିଷଦଗଣଙ୍କ ସହିତ ସୁରଗଣଙ୍କୁ ଆନନ୍ଦିତ କରି ଦୈତ୍ୟଦଳଙ୍କୁ ଦଳନ କରିବା ନିମିତ୍ତ ଯାତ୍ରା କଲେ । ରାକ୍ଷସ ସଦୃଶୀ ଭୟଙ୍କରୀ ସେହି ସେନା ଘଣ୍ଟା ଧ୍ୱନି ସହିତ କେତନ ଉଡ୍‌ଡୀନ କଲେ ଏବଂ ସେହି ସମୟରେ ଶଙ୍ଖ, ଭେରୀ, ମୁରଜ ପ୍ରଭୃତି ବାଦ୍ୟ ଧ୍ୱନି ହେଲା । ସେହି ପତାକିନୀ ସେନା ନାନାବିଧ ଅସ୍ତ୍ରର ଅତି ଉଜ୍ଜ୍ୱଳ ପ୍ରଭାସମୂହ ପ୍ରକାଶ କରିବାରୁ ତାରକାସମୂହରେ ସୁଶୋଭିତ ଶରତ୍‌-କାଳୀନ ଆକାଶମଣ୍ଡଳ ପରି ଅତ୍ୟନ୍ତ ଶୋଭିତ ହେଲେ । ୫୭ । ଦେବ-ଦେହଧାରୀ ନାନାବିଧ ଭୂତଗଣ ଅତି ଶୀଘ୍ର ଭେରୀ, ଶଙ୍ଖ, ପଟହ, ଝର୍ଝର, କ୍ରକଚ, ଶୃଙ୍ଗ, ଆଡ଼ମ୍ବର, ଗୋମୁଖ, ମହାସ୍ୱନ ଡିଣ୍ଡିମ ପ୍ରଭୃତି ନାନାବିଧ ବାଦ୍ୟଧ୍ୱନି କଲେ । ୫୮ । ଇନ୍ଦ୍ରାଦି ଅମରଗଣ ସୁମଧୁର ସଙ୍ଗୀତ ଗାନ କଲେ ଓ ଅପ୍‌ସରାମାନେ ମନୋହର ନୃତ୍ୟ କଲେ । ୫୯ ।

ତତ୍ପରେ କାର୍ତ୍ତିକେୟ ଅମରଗଣଙ୍କଠାରେ ପ୍ରୀତ ହୋଇ ଏହି ବର ପ୍ରଦାନ କଲେ ଯେ ହେ ଦେବଗଣ, ଯେଉଁ ଶତ୍ରୁବୃନ୍ଦ ଆପଣମାନଙ୍କ ବଧ ଇଚ୍ଛା କରନ୍ତି, ଆମ୍ଭେ ସଂଗ୍ରାମରେ ସେମାନଙ୍କୁ ସଂହାର କରିବୁ । ୬୦ । ହେ ମହାରାଜ ! ମହାତ୍ମା ଅମରଗଣ ସେହି ଅମରଶ୍ରେଷ୍ଠ କୁମାରଙ୍କଠାରୁ ଏହି ବର ପ୍ରତିଗ୍ରହ କରି ପ୍ରସନ୍ନ ଚିତ୍ତରେ ଶତ୍ରୁମାନେ ହତ ହେଲେ ବୋଲି ଜାଣିଲେ । ୬୧ । ସେହି ମହାତ୍ମାଙ୍କଦ୍ୱାରା ବର ପ୍ରଦତ୍ତ ହେବାରୁ ସମସ୍ତ ଭୂତସମୂହର କଣ୍ଠ ସମୁତ୍ଥିତ ହର୍ଷନାଦରେ ତ୍ରିଭୁବନ ପରିପୂର୍ଣ୍ଣ ହେଲା । ୬୨ । ପରିଶେଷରେ ସେ କାର୍ତ୍ତିକେୟ ଦେବତାମାନଙ୍କ ରକ୍ଷଣ ଓ ଦୈତ୍ୟବୃନ୍ଦର ଦଳନ ନିମିତ୍ତ ସେହି ଉତ୍କୃଷ୍ଟ ସେନାରେ ବେଷ୍ଟିତ ହୋଇ ଯୁଦ୍ଧକୁ ଗମନ କଲେ । ୬୩ । ହେ ନରନାଥ ! ସେତେବେଳେ ଜୟ, ଧର୍ମ, ସିଦ୍ଧି, ଲକ୍ଷ୍ମୀ, ଧୃତି ଓ ସ୍ମୃତି ପ୍ରଭୃତି ଉଦ୍ୟମସମୂହ କୁମାରଙ୍କ ସୈନ୍ୟ-ଗଣର ଅଗ୍ରଭାଗରେ ଗମନ କଲେ । ୬୪ । କୁମାରଦେବ ଶୂଳ-ମୁଦ୍‌ଗରହସ୍ତା, ପ୍ରଜ୍ୱଳିତ ଅଲାତଚକ୍ରଧାରିଣୀ, ବିଚିତ୍ର କବଚମଣ୍ଡିତା,

ଗଦାମୂଷଳ ନାରାଚ-ଶକ୍ତି ତୋମର ଧାରଣୀ, ଗର୍ବିତ ସିଂହ ସଦୃଶ ନିନାଦକାରଣୀ , ସେହି ଭୟଙ୍କର ସେନା ସହିତ ଉଚ୍ଚୈଃସ୍ୱରରେ ନାଦ କରି ଯୁଦ୍ଧ ନିମିତ୍ତ ଯାତ୍ରା କଲେ । ୬୬ ।

ଦୈତ୍ୟଦାନବ ରାକ୍ଷସଗଣ ତାହାଙ୍କୁ ଦେଖି ଭୟରେ ଉଦ୍‌ବିଗ୍ନ ହୋଇ ନାନା ଦିଗକୁ ଧାବିତ ହେଲେ । ୬୭ । ସୁରଗଣ କେତେବେଳେ ନାନାବିଧ ଅସ୍ତ୍ରଶସ୍ତ୍ର ଧାରଣ ପୂର୍ବକ ସେମାନଙ୍କ ସମ୍ମୁଖକୁ ଧାବମାନ ହେଲେ । ତଦନନ୍ତର ତେଜୋବଳଯୁକ୍ତ ଭଗବାନ କାର୍ତ୍ତିକେୟ ତାହା ଦେଖି କ୍ରୋଧଯୁକ୍ତ ହୋଇ ବାରମ୍ବାର ଶକ୍ତି ଅସ୍ତ୍ର ନିକ୍ଷେପ କଲେ ଏବଂ ସେ ସ୍ୱୟଂ ଘୃତାହୁତି ପ୍ରଦାନ ଦ୍ୱାରା ପ୍ରଜ୍ୱଳିତ ଅଗ୍ନି ସଦୃଶ ତେଜ ଧାରଣ କଲେ । ୬୯ । ହେ ମହାରାଜ ! ଅପରିସୀମ ତେଜଶାଳୀ ଭଗବାନ କୁମାର ଏହିପରି ବାରମ୍ବାର ଶକ୍ତି ଅସ୍ତ୍ର ନିକ୍ଷେପ କରନ୍ତେ ଧରାତଳରେ ଉଲ୍‌କା-ଜ୍ୱାଳାସମୂହ ପତିତ ହେଲା ଏବଂ ପ୍ରଳୟକାଳ ସଦୃଶ ଘୋରତର ନିର୍ଘାତମାନ ଭୟଙ୍କର ନାଦ କରି ଭୂତଳରେ ପତିତ ହେଲା । ୭୧ । ହେ ଭରତଶ୍ରେଷ୍ଠ ! ଅଗ୍ନିକୁମାର ଗୋଟିଏ ମାତ୍ର ଶକ୍ତି ଅସ୍ତ୍ର ନିକ୍ଷେପ କରିବାରୁ ପୃଥିବୀରେ କୋଟି କୋଟି ଶକ୍ତି ନିପତିତ ହେଲା ।୭୨।

ହେ ମହାରାଜ ! ତତ୍ପରେ ଭଗବାନ କାର୍ତ୍ତିକେୟ ପ୍ରୀତିଯୁକ୍ତ ହୋଇ ଦଶ ଅଯୁତ ବଳବାନ ଦୈତ୍ୟବୀରମାନଙ୍କ ଦ୍ୱାରା ପରିବୃତ ମହାପରାକ୍ରାନ୍ତ ତାରକାସୁର ନାମକ ଦୈତ୍ୟ ବୀରକୁ ସଂହାର କଲେ । ପରେ ସେ ଅଷ୍ଟପଦ୍ମ-ସଂଖ୍ୟକ ଦୈତ୍ୟବୃନ୍ଦରେ ପରିବୃତ ମହିଷ ନାମକ ଦାନବକୁ ସଂହାର କଲେ । ୭୪ । କ୍ରମେ କ୍ରମେ ସେ ଦଶ ଅଯୁତ ଶତ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ତ୍ରିପାଦ ଦୈତ୍ୟକୁ ଏବଂ ଦଶ ନିଖର୍ବ ଦାନବ ପରିବୃତ ହ୍ରଦୋଦର ନାମକ ଦୈତ୍ୟକୁ ବିବିଧ ଆୟୁଧଧାରୀ ଅନୁଚରମାନଙ୍କ ସହିତ ସଂହାର କଲେ । ସେତେବେଳେ ଶତ୍ରୁବଧ ହେବାରୁ କୁମାରଙ୍କ ଅନୁଚର-ଗଣ ଯେଉଁ ଘୋରତର ନାଦ କଲେ, ତାହାଦ୍ୱାରା ଦଶଦିଗ ପୂର୍ଣ୍ଣ ହେଲା । ସେମାନେ ଅତିଶୟ ଆନନ୍ଦିତ ହୋଇ କେତେବେଳେ ନୃତ୍ୟ, କେତେ-ବେଳେ ହାସ୍ୟ, କେତେବେଳେ ଇତସ୍ତତଃ ଧାବନ କଲେ । ୭୭ ।

ହେ ରାଜେନ୍ଦ୍ର ! ତତ୍ପରେ କୁମାରଙ୍କ ଶକ୍ତି ଅସ୍ତ୍ରର ଦୀପ୍ୟମାନ କିରଣଧାରା ଦ୍ୱାରା ସହସ୍ର ସହସ୍ର ଦୈତ୍ୟ ଦଗ୍‌ଧ ହେଲେ; ମହାଅସ୍ତ୍ରର ଅତି ପ୍ରଖର ତେଜୋରାଶି ଦ୍ୱାରା ତ୍ରିଭୁବନ ତାପିତ ହେଲା । କେତେକ ଅସୁର

କୁମାରଙ୍କ ସିଂହନାଦ ଶୁଣି ହତ ହେଲେ । କେତେ ଦାନବ ତାଙ୍କ ପତାକାର ପ୍ରବଳ ପବନ ବେଗରେ କମ୍ପିତ ହୋଇ ପ୍ରାଣତ୍ୟାଗ କରି ଭୂତଳରେ ପତିତ ହେଲେ । ୭୯ । କତିପୟ ଦୈତ୍ୟ ଘଣ୍ଟାରବ ଶ୍ରବଣ କରି ଅତି ତ୍ରାସରେ ଭୂତଳରେ ନିପତିତ ହେଲେ । କେତେ କେତେ ବୀର ଅସ୍ତ୍ରାଘାତ ଦ୍ୱାରା ଛିନ୍ନକଳେବର ହୋଇ ପ୍ରାଣତ୍ୟାଗ ପୂର୍ବକ ଧରାତଳଶାୟୀ ହେଲେ । ୮୦ । ମହାବଳ ପରାକ୍ରାନ୍ତ କାର୍ତ୍ତିକେୟ ଏହିପରି ଅନେକ ଆତ-ତାୟୀ ଅସୁରକୁଳ ସଂହାର କଲେ । ୮୧ ।

ତତ୍ପରେ ବଳିଙ୍କ ପୁତ୍ର ବାଣ ନାମକ ମହାବଳ ଦୈତ୍ୟ କ୍ରୌଞ୍ଚ ପର୍ବତକୁ ଆଶ୍ରୟ କରି ଦେବତାମାନଙ୍କୁ ବାଧା ଦେଲେ । ୮୨ । ଉଦାର-ବୁଦ୍ଧି କୁମାର ସେହି ଦୈତ୍ୟର ସମ୍ମୁଖକୁ ଗଲେ । ଦୈତ୍ୟରାଜ ରାଜକୁମାରଙ୍କ ଭୟରେ କ୍ରୌଞ୍ଚ ପର୍ବତଙ୍କର ଶରଣାଗତ ହେଲେ । ୮୩ । ଭଗବାନ କାର୍ତ୍ତିକେୟ ସେହି କାରଣରୁ ଅତିଶୟ ରାଗପରତନ୍ତ୍ର ହୋଇ ଅଗ୍ନିଙ୍କ ପ୍ରଦତ୍ତ ଶକ୍ତିଦ୍ୱାରା କ୍ରୌଞ୍ଚ ନାଦନିନାଦିତ ସେହି ଗିରିବରକୁ ବିଭିନ୍ନ କଲେ । ୮୪ । ଶାଳସ୍କନ୍ଧ ସମାନ କର୍ବୁରବର୍ଣ୍ଣ ପର୍ବତ ବିଭିନ୍ନ ହେବାରୁ ତତ୍ରତ୍ୟ ବାନର ଓ ଗଜଯୂଥ ତ୍ରସ୍ତ ହେଲେ । ପକ୍ଷୀଗଣ ଉଡ୍ଡୀୟମାନ ହୋଇ ଊର୍ଦ୍ଧ୍ୱପଥରେ ଭ୍ରମଣ କଲେ, ସର୍ପମାନେ ନିଷ୍ପତିତ ହେଲେ । ବ୍ୟାଘ୍ର ଓ ଭଲ୍ଲୁକଗଣ ଧାବମାନ ହୁଅନ୍ତେ ସେମାନଙ୍କ ଚାଦ ଶବ୍ଦରେ ସେହି ଗିରି ଅନୁନାଦିତ ହେଲା । ଶତ ଶତ କୁରଙ୍ଗକୁଳର ନିର୍ଘୋଷ ଦ୍ୱାରା ବନାନ୍ତର ନିନାଦିତ ହେଲା । ୮୭ । ଶରଭ ଓ ସିଂହଗଣ ବିନିଷ୍କ୍ରାନ୍ତ ହୋଇ ପଳାୟନ କରିବାରୁ ସେହି ଗିରିବର ଶୋଚନୀୟ ଦଶାକୁ ପାଇଲେ ସୁଦ୍ଧା ଶୋଭିତ ହେଲା । ତାଙ୍କ ଶିଖରନିବାସୀ ବିଦ୍ୟାଧର ଓ କିନ୍ନରଗଣ ଶକ୍ତିପତନ ଶବ୍ଦରେ ଉଦ୍ଧିତ ଓ ଉଦ୍‌ବେଗଯୁକ୍ତ ହୋଇ ସେଠାରେ ସମୁତ୍ପତିତ ହେଲେ । ୮୮ ।

କ୍ରମେ କ୍ରମେ ସେହି ପ୍ରଦୀପ୍ତ ପର୍ବତଶ୍ରେଷ୍ଠରୁ ବିଚିତ୍ର ଆଭରଣ ଓ ଓ ମାଲ୍ୟଧାରୀ ଶତ ସହସ୍ର ଦୈତ୍ୟ ନିର୍ଗତ ହେଲେ । ୮୯ । କୁମାରଙ୍କ ଅନୁଚରମାନେ ସେମାନଙ୍କୁ ଆକ୍ରମଣପୂର୍ବକ ଯୁଦ୍ଧରେ ବିନାଶ କଲେ । ଦେବରାଜ ଯେଉଁପରି ଯୁଦ୍ଧରେ ବୃତ୍ରାସୁରକୁ ବିନାଶ କରିଥିଲେ, ଭଗବାନ କୁମାର ଦେବ ସେହିପରି କ୍ରୋଧାକ୍ରାନ୍ତ ହୋଇ ତତ୍‌କ୍ଷଣାତ୍ ସେହି ଦୈତ୍ୟ-ରାଜାଙ୍କର ଅନୁଜ ଓ ପୁତ୍ରଙ୍କୁ ସଂହାର କଲେ । ପରବୀରହନ୍ତା ଅଗ୍ନିକୁମାର ଶକ୍ତିଦ୍ୱାରା କ୍ରୌଞ୍ଚ ପର୍ବତକୁ ବିଭିନ୍ନ କଲେ । ୯୧ । ମହାବଳ କୁମାର

କେତେବେଳେ ବହୁ ମୂର୍ତ୍ତି ଓ କେତେବେଳେ ଏକ ମୂର୍ତ୍ତି ଧାରଣ କରି ଯୁଦ୍ଧରେ ଯେତେବାର ଶକ୍ତି ନିକ୍ଷେପ କରୁଥିଲେ, ସେହି ନିକ୍ଷିପ୍ତ ଶକ୍ତି ପ୍ରତିବାରରେ ତାହାଙ୍କ ହସ୍ତକୁ ପ୍ରତ୍ୟାଗତ ହେଉଥିଲା । ୯୨ । ପ୍ରଭାବଶାଳୀ ଭଗବାନ କାର୍ତ୍ତିକେୟ ଶୌର୍ଯ୍ୟ ସମ୍ପତ୍ତି, ତେଜୋରାଶି, ଯଶ ଓ ଶ୍ରୀପ୍ରଭାବରେ ଏହିପରି କ୍ରୌଞ୍ଚ ପର୍ବତକୁ ବିଭିନ୍ନ କରି ଶତ ଶତ ଦୈତ୍ୟଗଣଙ୍କୁ ସଂହାର କଲେ ।

ତଦନନ୍ତର ସେହି ଭଗବାନ କୁମାର ଅନେକ ଅନେକ ଅସୁର-ମାନଙ୍କୁ ନିହତ କରି ଦେବଗଣଙ୍କ ଦ୍ୱାରା ପୂଜିତ ହୋଇ ପରମହର୍ଷ ଲାଭ କଲେ । ହେ ଭାରତ ! ଚତୁର୍ଦ୍ଦିଗରେ ଶଙ୍ଖ ଓ ଦୁନ୍ଦୁଭି ଧ୍ୱନି ହେଲା । ୯୫ । ଶତ ସହସ୍ର ଦେବସ୍ତ୍ରୀ ସେହି ଯୋଗୀଶ୍ୱର ସୁରବରଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ । ନିର୍ମଳ ପବନ ଦିବ୍ୟ ଗନ୍ଧ ଗ୍ରହଣ କରି ପ୍ରବାହିତ ହେଲା । ଗନ୍ଧର୍ବ ଓ ଯାଜ୍ଞିକ ମହର୍ଷିମାନେ ତାହାଙ୍କୁ ସ୍ତୁତି କଲେ । ୯୭ । ତେତେବେଳେ ସେହି ମହାବଳ ଯୋଗୀଶ୍ୱର ଦେବବର ନାନା ପ୍ରକାର ରୂପ ଧାରଣ କଲାରୁ କେହି କେହି ତାହାଙ୍କୁ ପିତାମହଙ୍କ ପୁତ୍ର ସନତ୍କୁମାର ବୋଲି ଜ୍ଞାନ କଲେ, କେହି କେହି ମହାଦେବଙ୍କ ପୁତ୍ର, କେହି ଅଗ୍ନିଙ୍କ ପୁତ୍ର, କେହି ପାର୍ବତୀଙ୍କ ନନ୍ଦନ, କେହି କୃତ୍ତିକାପୁତ୍ର, କେହି ଅବା ଗଙ୍ଗାଙ୍କ ପୁତ୍ର ବୋଲି କହିଲେ । ୧୦୦ ।

ହେ ମହାରାଜ ! କୁମାରଙ୍କ ଅଭିଷେକ ବିଷୟ ସବୁ ଆପଣଙ୍କୁ କହିଲୁ । ଏତେବେଳେ ସରସ୍ୱତୀ ତୀର୍ଥର ପବିତ୍ରତା ବିଷୟ କୀର୍ତ୍ତନ କରୁଅଛୁ, ଶୁଣିବା ହେଉନ୍ତୁ । କୁମାର ଅସୁରମାନଙ୍କୁ ସଂହାର କଲାରୁ ସେହି ତୀର୍ଥ ଅନ୍ୟ ଗୋଟିଏ ସ୍ୱର୍ଗପୁରି ପରି ସୁଖଦାୟକ ହୋଇଥିଲା । ୧୦୨ । ଭଗବାନ କୁମାର ସେହି ସ୍ଥାନରେ ଅବସ୍ଥାନ କରି ନୈର୍ଋତ ପ୍ରଭୃତି ଦିଗପାଳ-ମାନଙ୍କୁ ତ୍ରୈଲୋକ୍ୟ ରାଜ୍ୟ ଓ ପୃଥକ୍ ପୃଥକ୍ ଐଶ୍ୱର୍ଯ୍ୟ ଦାନ କଲେ । ୧୦୩ । ଦୈତ୍ୟକୁଳର ଅନ୍ତକାରୀ ଦେବସେନାପତି ଭଗବାନ କାର୍ତ୍ତିକେୟ ସେହି ଯେଉଁ ତୀର୍ଥରେ ଏହିପରି ଦେବଗଣଙ୍କ ଦ୍ୱାରା ଅଭିଷିକ୍ତ ହୋଇଥିଲେ, ତାହାର ନାମ ତୈଜସ ତୀର୍ଥ ବୋଲି ଖ୍ୟାତ ହୋଇଅଛି । ସେହି ତୀର୍ଥରେ ଜଳାଧିପତି ବରୁଣ ମଧ୍ୟ ଅଭିଷିକ୍ତ ହୋଇଥିଲେ । ୧୦୪ ।

ବଳଦେବ ସେହି ତୀର୍ଥଶ୍ରେଷ୍ଠରେ ସ୍ନାନପୂର୍ବକ କୁମାରଙ୍କ ଅଭ୍ୟର୍ଚ୍ଚନା କାର୍ଯ୍ୟ ସମାପନ କରି ବ୍ରାହ୍ମଣମାନଙ୍କୁ ବସନ, ଆଭରଣ ଓ

ସୁବର୍ଣ୍ଣ ପ୍ରଦାନ କଲେ । ୧୦୭ । ସେହି ପରଶୀରହନ୍ତା ବଳଦେବ ସେଠାରେ ଗୋଟିଏ ରାତି ରହି ସେହି ପୂଜ୍ୟ ତୀର୍ଥବରଙ୍କ ଜଳ ସ୍ପର୍ଶ କରି ଅତିଶୟ ହୃଷ୍ଟ ଓ ପ୍ରୀତମନା ହେଲେ । ହେ ମହାରାଜ ! ଆଗତ ଅମରଗଣ ଭଗବାନ କୁମାରଙ୍କୁ ଯେଉଁପରି ଅଭିଷିକ୍ତ କରିଥିଲେ, ତାହା ଆମ୍ଭେ ଆପଣଙ୍କ ପ୍ରଶ୍ନ ଅନୁସାରେ କହିଲୁ । ୧୦୮ ।

---

## ଅଧ୍ୟାୟ—୪୭

ଜନ୍ମେଜୟ କହିଲେ—ହେ ତପୋଧନ ! କୁମାରଙ୍କ ଅତି ଅଦ୍ଭୁତ ଅଭିଷେକ ବିଷୟ ବିସ୍ତାରକ୍ରମରେ ଯଥାବିଧାନରେ ଶ୍ରବଣ କଲୁଁ । ଏହା ଶୁଣି ନିଜର ଆତ୍ମାକୁ ପବିତ୍ର ବୋଲି ଜ୍ଞାନ କଲୁ ଏବଂ ଆମ୍ଭର ରୋମସମୂହ ପ୍ରହୃଷ୍ଟ ଓ ମନ ପବିତ୍ର ହେଲା । ୨ । ହେ ମହାପ୍ରାଜ୍ଞ ! କୁମାରଙ୍କ ଅଭିଷେକ ଓ ଦୈତ୍ୟଗଣର ବଧ ବୃତ୍ତାନ୍ତ ଶୁଣିବାଦ୍ୱାରା ଆମ୍ଭ ହୃଦୟରେ ପରମପ୍ରୀତି ଜନ୍ମିଅଛି । ସମ୍ପ୍ରତି ଏହି କୌତୁହଳ ଜନ୍ମିଅଛି ଯେ ପୂର୍ବକାଳରେ ଜଳାଧିପତି ବରୁଣ ଦେବ ସେଠାରେ କେଉଁପରି ଅମରଗଣଙ୍କ ଦ୍ୱାରା ଅଭିଷିକ୍ତ ହୋଇଥିଲେ, ସେହି ସମୁଦାୟ ବିଷୟ କହିବା ହେଉନ୍ତୁ । ହେ ସାଧୁଶ୍ରେଷ୍ଠ ! ଆପଣ ସମସ୍ତ ବିଷୟ ଉତ୍ତମରୂପେ ଜାଣନ୍ତି । ୪ ।

ବୈଶମ୍ପାୟନ କହିଲେ—ମହାରାଜ ! ଏ ବିଚିତ୍ର ବିଷୟ ଉତ୍ତମ ରୂପେ ବିସ୍ତୃତ କରି କହୁଅଛୁ, ଶୁଣିବା ହେଉନ୍ତୁ । ପୂର୍ବ କଳ୍ପରେ ସତ୍ୟ-ଯୁଗର ଆରମ୍ଭରେ ଦେବଗଣ ବରୁଣଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କୁ କହିଲେ, ହେ ବରୁଣ ! ଦେବରାଜ ଇନ୍ଦ୍ର ଯେଉଁପରି ଆମ୍ଭମାନଙ୍କୁ ନାନାପ୍ରକାର ଭୟରୁ ପରିତ୍ରାଣ କରୁଅଛନ୍ତି, ସେହିପରି ତୁମ୍ଭେ ସମସ୍ତ ନଦୀକୂଳର ରାଜା ହୋଇ ସେମାନଙ୍କୁ ରକ୍ଷା କର । ହେ ଦେବ ! ମକର-ମାନଙ୍କ ସ୍ଥାନ ସାଗର ଗର୍ଭରେ ସର୍ବଦା ତୁମ୍ଭେ ବସତି କରିବ । ଏଥି ଉତ୍ତାରେ ନଦୀପତି ସମୁଦ୍ର ତୁମ୍ଭର ଅଧୀନ ହେବେ ଏବଂ ଚନ୍ଦ୍ରଙ୍କ ସହିତ ସମାନ ଭାବରେ ପ୍ରତିଦିନ ତୁମ୍ଭର ହ୍ରାସ ବୃଦ୍ଧି ହେବ । ୮ । ହେ ମହାରାଜ ! ବରୁଣ ଦେବ ଦେବତାମାନଙ୍କ ଈଦୃଶ ବାକ୍ୟ ଶ୍ରବଣ କରି 'ତଥାସ୍ତୁ' ବୋଲି

କହି ସ୍ୱୀକୃତ ହେଲେ । ତତ୍ପରେ ସମସ୍ତ ଅମରଗଣ ଏକତ୍ରିତ ହୋଇ ବିଧି-ବିହିତ କର୍ମଦ୍ୱାରା ବରୁଣଙ୍କୁ ଜଳାଧିପତି କଲେ ଓ ତାହାଙ୍କୁ ଅଭିଷିକ୍ତ କରି ସମ୍ମାନ ପ୍ରଦାନ ପୂର୍ବକ ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ ।

ମହାଯଶା ବରୁଣ ଦେବଗଣଙ୍କ ଦ୍ୱାରା ଅଭିଷିକ୍ତ ହୋଇ ଦେବରାଜ ଯେଉଁପରି ଦେବଗଣଙ୍କୁ ପାଳନ କରୁଥିଲେ, ସେହିପରି ନଦୀ, ନଦ, ସାଗର ଓ ସରୋବର ପ୍ରଭୃତି ସମସ୍ତ ଜଳାଶୟମାନଙ୍କୁ ଯଥାବିଧିରେ ରକ୍ଷଣାବେକ୍ଷଣ କଲେ । ୧୨ ।

ହେ ମହାରାଜ ! ପ୍ରଳମ୍ବାସୁର ପରି ମହାପ୍ରାଜ୍ଞ ବଳଦେବ ସେହି ତୀର୍ଥର ଜଳସ୍ପର୍ଶ ପୂର୍ବକ ସେଠାରେ ବିବିଧ ଧନ ଦାନ କରି ଅଗ୍ନିତୀର୍ଥ-ଗାମୀ ହେଲେ । ୧୩ । ଯେଉଁ ସମୟରେ ହୁତାଶନ ଶମୀବୃକ୍ଷ ମଧ୍ୟରେ ପ୍ରବେଶ କରି ବିନଷ୍ଟ ହୋଇଥିଲେ, ଲୋକାଲୋକ ପର୍ବତର ବିନାଶ କାଳ ଉପସ୍ଥିତ ହୋଇଥିଲା ସେହି ସମୟରେ ଅମରଗଣ ବିସ୍ମିତ ହୋଇ ସର୍ବ-ଲୋକ ପିତାମହ ବ୍ରହ୍ମାଙ୍କ ନିକଟକୁ ଗମନପୂର୍ବକ କହିଲେ, ହେ ଭଗବାନ ! କେଉଁ କାରଣରୁ ଅଗ୍ନି ବିନଷ୍ଟ ହୋଇଅଛନ୍ତି, ତାହା ଆମ୍ଭେମାନେ ଜାଣି-ନାହୁଁ । ହେ ପ୍ରଭୋ ! ଏତେବେଳେ ଅଗ୍ନିବିରହରେ ସର୍ବ ପ୍ରାଣିର ଯେଉଁ-ପରି କ୍ଷୟ ହେବ ନାହିଁ, ଆପଣ ସେହିପରି ବିଚାର କରିବା ହେଉନ୍ତୁ ।

ଜନ୍ମେଜୟ କହିଲେ, ହେ ଦ୍ୱିଜବର ! ଭଗବାନ ଲୋକଭାବନ ହୁତାଶନ କେଉଁ କାରଣରୁ ବିନଷ୍ଟ ହୋଇଥିଲେ, ଦେବତାମାନେ ତାହା କେଉଁପରି ଜାଣିଲେ, ସେହି ବୃତ୍ତାନ୍ତ ସବୁ ଆମ୍ଭ ନିକଟରେ ଯଥାର୍ଥ ରୂପେ କହିବା ହେଉନ୍ତୁ ।

ବୈଶମ୍ପାୟନ କହିଲେ, ହେ ନରଶ୍ରେଷ୍ଠ ! ପୂର୍ବେ ଭୃଗୁମୁନିଙ୍କ ଅଭିଶାପରେ ଭଗବାନ ହୁତାଶନ ଅତିଶୟ ଭୟଗ୍ରସ୍ତ ହୋଇ ଶମୀବୃକ୍ଷର ଗର୍ଭରେ ପ୍ରବେଶ କରିବାରୁ ବିନଷ୍ଟ ହୋଇଥିଲେ । ଅଗ୍ନି ବିନଷ୍ଟ ହେବାରୁ ସମସ୍ତ ଅମରଗଣ ତାହାଙ୍କୁ ଅନ୍ୱେଷଣ କଲେ । ସେମାନେ ନାନା ସ୍ଥାନରେ ପର୍ଯ୍ୟଟନ କରି ପରିଶେଷରେ ଅଗ୍ନିତୀର୍ଥକୁ ଆସି ସେଠାରେ ଶମୀବୃକ୍ଷର ଗର୍ଭରେ ଅଗ୍ନିଦେବ ଯଥାବିଧାନରେ ଅବସ୍ଥାନ କରିଥିବାର ଦେଖିଲେ । ବୃହସ୍ପତି ଓ ଇନ୍ଦ୍ରାଦି ସମସ୍ତ ଅମରଗଣ ସେଠାରେ ଅଗ୍ନିଙ୍କୁ ଦେଖି ଅତିଶୟ ପ୍ରୀତ ହେଲେ । ହେ ମହାରାଜ ! ସେମାନେ ନିଜ ନିଜ ସ୍ଥାନକୁ ଗମନ

କଲେ । ସେହି ବନ୍ ଠାରୁ ଅଗ୍ନିଦେବ ମଧ୍ୟ ବ୍ରହ୍ମବାଦୀ ଭୃଗୁଙ୍କ ଶାପରୁ ମୁକ୍ତ ହୋଇ ସର୍ବଭକ୍ଷ ହେଲେ ଓ ସେହି ତୀର୍ଥରେ ସ୍ନାନ କରି ସେମାନଙ୍କ ନିମିତ୍ତ ବିବିଧ ତୀର୍ଥର ସୃଷ୍ଟି କରିଥିଲେ ।

ବଳଦେବ ସେହି ତୀର୍ଥରେ ଯଥାବିଧାନରେ ସ୍ନାନ ଏବଂ ବ୍ରାହ୍ମଣମାନଙ୍କୁ ଧନ ଦାନ କରି କୌବେର ତୀର୍ଥକୁ ପ୍ରସ୍ଥାନ କଲେ । କୁବେର ଦେବ ସେହି ତୀର୍ଥରେ ଅତି ଉତ୍କୃଷ୍ଟ ତପସ୍ୟା କରି ଧନାଧିପତ୍ୟ ପ୍ରାପ୍ତ ହୋଇଥିଲେ ଏବଂ ସେହି ସ୍ଥାନରେ ସେ ଅବସ୍ଥିତ ହେବାରୁ ସମସ୍ତ ନିଧି ଓ ଧନ ତାହାଙ୍କ ନିକଟରେ ଉପସ୍ଥିତ ହୋଇଥିଲା । ହଳଧର ସେହି ତୀର୍ଥରେ ଉପସ୍ଥିତ ହୋଇ ସ୍ନାନ କଲା ଉତ୍ତାରେ ବ୍ରାହ୍ମଣମାନଙ୍କୁ ଯଥାବିଧାନରେ ଧନ ଦାନ କଲେ । ତତ୍ପରେ ସେହି ସ୍ଥାନରେ କୁବେର ଦେବଙ୍କର ମନୋହର ବନ ଦର୍ଶନ କଲେ । ପୂର୍ବକାଳରେ ଯକ୍ଷରାଜ କୁବେର ଯେଉଁଠାରେ ଅବସ୍ଥାନ କରି ବିପୁଳ ତପସ୍ୟା ଦ୍ୱାରା ଅତି ଉତ୍କୃଷ୍ଟ ବର ପ୍ରାପ୍ତ ହୋଇଥିଲେ, ଧନାଧିପତ୍ୟ ଓ ମହାତେଜା ଭଗବାନ୍ ରୁଦ୍ରଦେବଙ୍କ ସହିତ ମିତ୍ରତା ପ୍ରାପ୍ତ ହୋଇଥିଲେ, ଯେଉଁ ସ୍ଥାନରେ ଦେବତ୍ୱ, ଲୋକପାଳତ୍ୱ ଓ ନଳକୂବର ନାମକ ପୁତ୍ର ପ୍ରାପ୍ତ ହୋଇଥିଲେ, ଧନାଧିପତି ଯେଉଁ ସ୍ଥାନରେ ସମାଗତ ସୁରଗଣଙ୍କ ଦ୍ୱାରା ଅଭିଷିକ୍ତ ହୋଇ ମନ ସଦୃଶ ବେଗଗାମୀ ହଂସଯୁକ୍ତ ପୁଷ୍ପକ ବିମାନ ଏବଂ ଅନୁପମ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥିଲେ (୩୧), ବଳରାମ ସେହି ତୀର୍ଥରେ ଅବଗାହନ ପୂର୍ବକ ବ୍ରାହ୍ମଣମାନଙ୍କୁ ବିପୁଳ ଧନ ଦାନ କରି ତ୍ୱରାଯୁକ୍ତ ହୋଇ ବଦରିପାଚନ ନାମକ ତୀର୍ଥକୁ ଗମନ କଲେ । ସେହି ତୀର୍ଥରେ ଅନେକ ଅନେକ ପ୍ରାଣୀଗଣ ବାସ କରନ୍ତି ଏବଂ ସର୍ବ ଋତୁରେ ନାନା ପ୍ରକାର ଫଳପୁଷ୍ପ ସର୍ବଦା ଉତ୍ପନ୍ନ ହୁଅନ୍ତି । ୩୩ ।

---

# ଅଧ୍ୟାୟ—୪୮

ବୈଶମ୍ପାୟନ କହିଲେ—ମହାରାଜ ! ପୂର୍ବକାଳରେ ଭରଦ୍ୱାଜ ଋଷିଙ୍କର ଅନୁପମ ରୂପ ଲାବଣ୍ୟବତୀ ଶ୍ରୁତାବତୀ ନାମରେ ଗୋଟିଏ ଦୁହିତା ଥିଲା । ସେ କୌମାର ଅବସ୍ଥାରେ ଘୋରତର ତପସ୍ୟା କଲେ— ଦେବରାଜ ଆମର ଭର୍ତ୍ତା ହେବେ । ଏହି କଥା ମନେ ମନେ ନିଶ୍ଚୟ କରି ବ୍ରହ୍ମଚାରିଣୀ ହୋଇ ସେହି ସ୍ୱରସ୍ୱତୀ ଯେଉଁ ତୀର୍ଥରେ ସିଦ୍ଧଗଣମାନଙ୍କ ପରି ଅତି କଠିନ ବ୍ରତାଚରଣ କରିଥିଲେ, ସେହି ବଦରପାଚନ ନାମକ ତୀର୍ଥକୁ ବଳଦେବ ପ୍ରସ୍ଥାନ କଲେ । ୩ । ଯେଉଁ ତୀବ୍ର ବ୍ରତକୁ ସ୍ତ୍ରୀମାନେ କଦାପି କରି ନ ପାରନ୍ତି, ସେ କୁମାରୀ ବହୁବର୍ଷ ପର୍ଯ୍ୟନ୍ତ ତାଦୃଶ କଠୋର ଦୁଃସାଧ ନିୟମ ଆଚରଣ କରନ୍ତେ ଦେବରାଜ ତାହାଙ୍କ ତପସ୍ୟା ଓ ଭକ୍ତିରେ ପ୍ରୀତ ହୋଇ ମହାତ୍ମା ବଶିଷ୍ଠ ମୁନିଙ୍କ ରୂପ ଧାରଣପୂର୍ବକ ତଦୀୟ ଆଶ୍ରମରେ ଉପସ୍ଥିତ ହେଲେ । ୬ ।

କଲ୍ୟାଣମୟୀ ପ୍ରିୟମ୍ବଦା ଶ୍ରୁତାବତୀ ସେହି ପରମ ତପସ୍ୱୀ ବଶିଷ୍ଠ ମୁନିଙ୍କୁ ଅବଲୋକନ କରି ମୁନିଗଣ ସମୁଚିତ ଆଚରଣଦ୍ୱାରା ତାହାଙ୍କୁ ପୂଜା କରି କହିଲେ, ହେ ଋଷିଶ୍ରେଷ୍ଠ ! ଆପଣ କେଉଁ ବିଷୟ ଆଜ୍ଞା କରୁଛନ୍ତି ? ଆମ୍ଭେ ଶକ୍ତି ଅନୁସାରେ ଆପଣଙ୍କୁ ସବୁ ଦେଇ ପାରିବୁ, କିନ୍ତୁ ହେ ତପୋଧନ ! ଆମ୍ଭେ ନିୟମ, ବ୍ରତ ଓ ତପସ୍ୟା ଦ୍ୱାରା ତ୍ରିଭୁବନପତି ଇନ୍ଦ୍ରଙ୍କୁ ପରିତୋଷ କରିବୁ ବୋଲି ତଦୀୟ ଭକ୍ତ ହେତୁରୁ କେବଳ ହସ୍ତ ପ୍ରଦାନ କରିପାରିବୁ ନାହିଁ । ୧୦ । ହେ ଭାରତ ! ତଦୀୟ ନିୟମଜ୍ଞ ଇନ୍ଦ୍ର ଏହି ବାକ୍ୟ ଗ୍ରହଣ କରି ଆନନ୍ଦରେ ସାନ୍ତ୍ୱନା ଦେଲେ ଓ ମନ୍ଦହାସ ପ୍ରକାଶ କଲାପରି ହୋଇ ତାହାଙ୍କୁ ନିରୀକ୍ଷଣ ପୂର୍ବକ କହିଲେ ହେ ସୁବ୍ରତେ ! ତୁମ୍ଭେ ଅତି କଠୋର ତପସ୍ୟା କରୁଅଛ ବୋଲି ଆମ୍ଭେ ଜାଣିଅଛୁ । ହେ କଲ୍ୟାଣି ! ଶୁଭାନନେ ! ତୁମ୍ଭେ ଯେଉଁ ନିମିତ୍ତ ଏହି ମନୋଗତ କାର୍ଯ୍ୟ ଆରମ୍ଭ କରିଅଛ, ତାହାସବୁ ସୁସିଦ୍ଧ ହେବ । ତପସ୍ୟାଦ୍ୱାରା ସମସ୍ତ ମିଳିପାରେ । ତପୋବଳରେ ସ୍ୱର୍ଗବାସିମାନଙ୍କର ସ୍ଥାନ ଅନାୟାସରେ ପ୍ରାପ୍ତ ହୁଏ । ତପସ୍ୟା କେବଳ ଉତ୍କୃଷ୍ଟ ସୁଖର ମୂଳ ଅଟେ । ୧୪ । କଲ୍ୟାଣି ! ମନୁଷ୍ୟଗଣ ଇହଲୋକରେ ଏତାଦୃଶ ଘୋରତର ତପସ୍ୟା କରି ମାନବ ଦେହ ତ୍ୟାଗପୂର୍ବକ ଦେବଶରୀର ଲାଭ କରନ୍ତି । ହେ ଶୁଭବ୍ରତେ !

ସୁଭଗେ ! ଏତେବେଳେ ଆମ୍ଭର ଗୋଟିଏ କଥା ଶୁଣ । ଆମ୍ଭେ ତୁମ୍ଭଙ୍କୁ ଏହି ପାଞ୍ଚଟି ବଦର ଫଳ ଦେଉଅଛୁ ; ତୁମ୍ଭେ ଏହା ପାକ କର ।

ଇନ୍ଦ୍ର ଶ୍ରୁତାବତୀଙ୍କୁ ଏହି ବାକ୍ୟ କହି ଆମନ୍ତ୍ରଣପୂର୍ବକ ତାଙ୍କର ତପସ୍ୟାର ଦୃଢ଼ତା ଜାଣିବା ନିମିତ୍ତ ଯେଉଁ ଉପାୟରେ ସେହି ଫଳ ପାକ ନ ହେବ, ତାଦୃଶ ବର୍ତ୍ତିର କରି ସେହି ଆଶ୍ରମର ନିକଟରେ ମନ୍ତ୍ର ଜପ କରିଥିଲେ । ସେହି କାରଣରୁ ସେହି ସ୍ଥାନ ଇନ୍ଦ୍ର ତୀର୍ଥ ବୋଲି ତ୍ରିଭୁବନରେ ଖ୍ୟାତ ହେଲା । ତତ୍ପରେ ଦେବାଧିରାଜ ଇନ୍ଦ୍ର ମନ୍ତ୍ର ପ୍ରଭାବରେ ବଦର ଫଳ ଯେଉଁପରି ସିଦ୍ଧ ନ ହେବ, ତାହା ସମ୍ପାଦନ କଲେ । ହେ ରାଜନ୍ ! ଶ୍ରୁତାବତୀ ତପଃପରାୟଣା, ବାଗ୍‌ଯତା ଏବଂ ଶୁଚି ହୋଇ ଅଗ୍ନି ମଧ୍ୟରେ ପାଞ୍ଚଗୋଟି ବଦର ଫଳ ନିକ୍ଷେପ ପୂର୍ବକ ପାକ କଲେ, କିନ୍ତୁ ଦିବା ଅବସାନ ହେଲା, ତଥାପି ପାକ ସମ୍ପନ୍ନ ହେଲା ନାହିଁ । ସଞ୍ଚିତ କାଷ୍ଠସବୁ ଭସ୍ମୀଭୂତ ହେଲା । ଅନଳରେ କାଷ୍ଠ ନ ଥିବାର ଦେଖି ପାପଶୂନ୍ୟା ଶ୍ରୁତାବତୀ ନିଜ ଶରୀର ଦାହଦ୍ୱାରା ପୁନଶ୍ଚ ବଦର ପାକରେ ପ୍ରବୃତ୍ତ ହୋଇ ସ୍ୱକୀୟ ପାଦଦ୍ୱୟକୁ ଅଗ୍ନିରେ ଅର୍ପଣପୂର୍ବକ ଦଗ୍ଧ କଲେ । ସେ ମହର୍ଷି ବଶିଷ୍ଠଙ୍କ ପ୍ରିୟ କାମନାରେ ବଦର ପାକ ନିମିତ୍ତ ଅତି ଦୁଃସାଧ କର୍ମରେ ପ୍ରବୃତ୍ତ ହୋଇ ସୁଦ୍ଧା କିଛି ମାତ୍ର ଉଦ୍‌ବିଗ୍ନ ହେଲେ ନାହିଁ । ୨୪ । ଅନଳରେ ଶରୀର ପ୍ରଜ୍ୱଳିତ ହେଲେ ସୁଦ୍ଧା ସେ ଜଳରେ ପ୍ରବେଶ କଲାପରି ଆନନ୍ଦ ପ୍ରକାଶ ପୂର୍ବକ ବିମନା ହେଲେ ନାହିଁ, କିମ୍ବା ମୁଖଭଙ୍ଗୀଦ୍ୱାରା କାତରତା ପ୍ରକାଶ କଲେ ନାହିଁ । କେଉଁ ଉପାୟରେ ବଦର ଫଳ ଶୀଘ୍ର ପାକ ହେବ, କେବଳ ଏହି ଚିନ୍ତାରେ ବ୍ରତର ନିୟମ ରକ୍ଷା କରି ପାରିଲେ ନାହିଁ । ଭଗବାନ ବହ୍ନି ସ୍ୱୟଂ ତାହାଙ୍କ ପାଦଦ୍ୱୟ ଦଗ୍ଧ କଲେ । ଅଙ୍ଗ ଦଗ୍ଧ ହେଲାରୁ ତାହାଙ୍କର କିଛିମାତ୍ର ଦୁଃଖ ଜାତ ହେଲା ନାହିଁ ।

ପରିଶେଷରେ ଇନ୍ଦ୍ର ଶ୍ରୁତାବତୀଙ୍କର ତାଦୃଶ ଅସାଧାରଣ କାର୍ଯ୍ୟ ଦର୍ଶନକରି ପରମ ପରିତୁଷ୍ଟ ହେଲେ ଓ ସ୍ୱକୀୟ ସ୍ୱାଭାବିକ ରୂପ ଦେଖାଇ କହିଲେ, ହେ ଦୃଢ଼ବ୍ରତେ ! ତୁମ୍ଭର ତପସ୍ୟା, ନିୟମ ଓ ଭକ୍ତିଦ୍ୱାରା ଆମ୍ଭେ ପରମ ତୋଷ ଲାଭ କରିଅଛୁ । ୩୦ । ହେ ଶୁଭେ ମହାଭାଗେ ! ସେହି ହେତୁରୁ ତୁମ୍ଭର ମନକାମନା ସିଦ୍ଧ ହେବ ଓ ତୁମ୍ଭେ ମାନବ ଦେହ ପରିତ୍ୟାଗ ପୂର୍ବକ ସ୍ୱର୍ଗଭୁବନରେ ଆମ୍ଭ ନିକଟରେ ବାସ କରିବ । ୩୧ । ହେ ସୁଭ୍ରୁ ! ଏହି ସର୍ବପାପହର ତୀର୍ଥ ତୁମ୍ଭର

ତପୋବଳ ପ୍ରଭାବରୁ ବଦରପାଚନ ନାମରେ ତ୍ରିଭୁବନ ମଧ୍ୟରେ ଖ୍ୟାତି ଲାଭକରି ଚିରସ୍ଥାୟୀ ହେବ ଏବଂ ବ୍ରହ୍ମର୍ଷିଗଣ ଏହାକୁ ସ୍ତୁତି କରିବେ । ସପ୍ତର୍ଷିଗଣ ଏହି ପବିତ୍ର ତୀର୍ଥରେ ଅରୁନ୍ଧତୀଙ୍କୁ ପରିତ୍ୟାଗ ପୂର୍ବକ ହିମାଳୟକୁ ଗମନ କରିଥିଲେ । ପ୍ରଶଂସିତ ମହାଭାଗମାନେ ସେଠାରେ ଉପସ୍ଥିତ ହୋଇ ଜୀବିକା ନିମନ୍ତେ ଫଳମୂଳ ଆଣିବାକୁ ଗଲେ । ସେମାନେ ହିମାଳୟର କୌଣସି ମନୋହର ବନରେ ଜୀବିକା ନିମିତ୍ତ ସେହିପରି ବାସ କରିଥିବା ସମୟରେ ସେଠାରେ ଦ୍ୱାଦଶବର୍ଷବ୍ୟାପିନୀ ଅନାବୃଷ୍ଟି ହେଲା । ତତ୍‌ସମୟରେ ତାପସଗଣ ସେଠାରେ ଆଶ୍ରମ ନିର୍ମାଣ ପୂର୍ବକ ବାସକଲେ ।

ସେହି ସମୟରେ କଲ୍ୟାଣୀ ଅରୁନ୍ଧତୀ ଦୃଢ଼ତର ତପସ୍ୟାଚରଣରେ ନିଯୁକ୍ତ ହେଲେ । କିଛିକାଳ ପରେ ଭଗବାନ ତ୍ରିନେତ୍ର ଅରୁନ୍ଧତୀଙ୍କୁ କଠୋର ନିୟମରେ ଅବସ୍ଥିତ ହୋଇଥିବାର ଦେଖି ଅତିଶୟ ପ୍ରୀତ ହୋଇ ବରପ୍ରଦାନ ନିମିତ୍ତ ଆଗମନ କଲେ । ମହାଯଶା ମହାଦେବ ବ୍ରାହ୍ମଣ ବେଶଧାରଣ ପୂର୍ବକ ଅରୁନ୍ଧତୀଙ୍କ ନିକଟରେ ଉପସ୍ଥିତ ହୋଇ ସମ୍ବୋଧନ ପୂର୍ବକ ତାହାଙ୍କୁ କହିଲେ, ହେ ଶୁଭଦର୍ଶନେ ! ଆମ୍ଭେ ବ୍ରାହ୍ମଣ ତୁମ୍ଭ ନିକଟରେ କିଛି ଭିକ୍ଷା ପ୍ରାର୍ଥନା କରୁଅଛୁ । ଗୃହିଣୀ ଅରୁନ୍ଧତୀ ବ୍ରାହ୍ମଣଙ୍କୁ ପ୍ରତ୍ୟୁତ୍ତର କଲେ, ହେ ଦ୍ୱିଜବର ! ଆମ୍ଭର ସଞ୍ଚିତ ଅନ୍ନସବୁ ନିଃଶେଷିତ ହୋଇଅଛି, ଅତଏବ ଏହି କେତେଗୋଟି ବଦର ଫଳ ପ୍ରଦାନ କରୁଅଛୁ, ଭକ୍ଷଣ କରିବା ହେଉନ୍ତୁ । ତତ୍ପରେ ମହାଦେବ ତାହାଙ୍କୁ ସମ୍ବୋଧନ ପୂର୍ବକ କହିଲେ, ହେ ସୁବ୍ରତେ ! ଅଗ୍ନିରେ ଏହି ଫଳ ସବୁ ପାକ କର । ଅରୁନ୍ଧତୀ ବ୍ରାହ୍ମଣଙ୍କର ବାକ୍ୟ ଶୁଣି ତାହାଙ୍କ ପ୍ରିୟ ଇଚ୍ଛାରେ ସେହି ଫଳରେ ପାକାରମ୍ଭ କଲେ । ସେହି ଯଶସ୍ୱିନୀ ତେତେବେଳେ ପ୍ରଜ୍ୱଳିତ ଅଗ୍ନି ମଧ୍ୟରେ ସେହି ବଦର ଫଳବୃନ୍ଦର ପାକାରମ୍ଭ କରି ମନୋହର ପବିତ୍ର କଥାମାନ ଶୁଣିଲେ । ସେ ନିରାହାରରେ ପାକ କରୁଁ କରୁଁ ସେହି ଦିବ୍ୟ କଥାମାନ ଶୁଣୁଥିବାରୁ ଦ୍ୱାଦଶବର୍ଷବ୍ୟାପିନୀ ଅନାବୃଷ୍ଟି ଅତୀତ ହେଲା ଏବଂ ସେହି ଅତି ଦାରୁଣ ସମୟ ତାହାଙ୍କୁ ଗୋଟିଏ ଦିବସ ପରି ଜଣାଗଲା । ୪୩ । କିୟତ୍‌କାଳ ପରେ ପୂର୍ବୋକ୍ତ ମୁନିଗଣ ହିମାଳୟ ପର୍ବତରୁ ଫଳ ଆଣି ସେହି ସ୍ଥାନକୁ ପ୍ରତ୍ୟାଗମନ କଲେ । ତତ୍ପରେ ଭଗବାନ ଶିବ ଅରୁନ୍ଧତୀଙ୍କୁ ପ୍ରସନ୍ନ ହୋଇ କହିଲେ, ହେ ଧର୍ମଜ୍ଞେ ! ଏତେବେଳେ ତୁମ୍ଭେ ପୂର୍ବପରି ଏହି ସମସ୍ତ ଋଷିଗଣଙ୍କ ନିକଟକୁ ଯାଅ;

ଆମ୍ଭେ ତୁମ୍ଭର ତପୋନିଷ୍ଠା ଓ ନିୟମରେ ଅତିଶୟ ପ୍ରୀତ ହୋଇ-
ଅଛୁ । ୪୫ ।

ଭଗବାନ ମହେଶ୍ୱର ଏହି କଥା କହି ନିଜର ରୂପ ପ୍ରକାଶ
ପୂର୍ବକ ଦର୍ଶନ ଦେଲେ ଏବଂ ପ୍ରସନ୍ନ ଚିତ୍ତରେ ଋଷିମାନଙ୍କୁ ଅରୁନ୍ଧତୀଙ୍କ
ଅତି ଉତ୍କୃଷ୍ଟ ଚରିତ କହିଲେ, "ହେ ଋଷିଗଣ ! ତୁମ୍ଭେମାନେ ହିମାଳୟ
ପର୍ବତରେ ରହି ଯେଉଁ ତପସ୍ୟା ଉପାର୍ଜନ କରିଅଛ, ଆମ୍ଭ ମତରେ
ତାହା ଏହାଙ୍କ ତପସ୍ୟାର ସମକକ୍ଷ ହେବ ନାହିଁ । ୪୭ । ଏହି ତପସ୍ୱିନୀ
ସୁଦୁଷ୍କର ତପସ୍ୟାଚରଣ କରି ନିରାହାରରେ ପାକ କରୁ କରୁ ଅନାୟା-
ସରେ ଦ୍ୱାଦଶବର୍ଷ ସମୟ ଅତୀତ କରିଅଛନ୍ତି ।"

ଭଗବାନ ମହାଦେବ ମୁନିଗଣଙ୍କୁ ଏହିପରି କହି ପୁନଶ୍ଚ ଅରୁନ୍ଧତୀଙ୍କୁ
ସମ୍ବୋଧନ କରି କହିଲେ, ହେ କଲ୍ୟାଣି ! ତୁମ୍ଭ ହୃଦୟରେ ଯାହା
ଅଭିଳଷିତ ଅଛି, ସେହି ବର ପ୍ରାର୍ଥନା କର । ୪୯ । ବିଶାଳ ତାମ୍ର-
ନୟନା ଅରୁନ୍ଧତୀ ସପ୍ତର୍ଷି ସଭା ମଧ୍ୟରେ ମହେଶ୍ୱରଙ୍କର ଏହି ବାକ୍ୟ
ଶ୍ରବଣ କରି କହିଲେ, ହେ ଭଗବାନ୍ ! ଆପଣ ଯଦି ଆମ୍ଭଠାରେ ପ୍ରସନ୍ନ
ହୋଇଅଛନ୍ତି, ତେବେ ଆପଣଙ୍କ ପ୍ରସାଦରେ ଏହି ସ୍ଥାନ ବଦରପାଚନ
ନାମରେ ସିଦ୍ଧ ଓ ଦେବର୍ଷିମାନଙ୍କର ପ୍ରିୟତର ଅଦ୍ଭୁତ ତୀର୍ଥ ବୋଲି
ବିଖ୍ୟାତ ହେଉ । ହେ ଦେବେଶ ! ଏହି ସ୍ଥାନରେ ଯେଉଁ ଶୁଚି ବ୍ୟକ୍ତି
ତିନିରାତ୍ରି ଉପବାସ କରି ରହିବେ, ସେ ସେହି ଉପବାସର ଫଳରେ
ଦ୍ୱାଦଶ ବାର୍ଷିକ ଯଜ୍ଞର ଫଳ ଲାଭ କରିବେ । ଦେବଦେବ ମହାଦେବ
ତପସ୍ୱିନୀଙ୍କର ତାଦୃଶ ବାକ୍ୟ ଶୁଣି 'ତଥାସ୍ତୁ' ବୋଲି ପ୍ରତ୍ୟୁତ୍ତର
ପ୍ରଦାନ କଲେ ଏବଂ ତେତେବେଳେ ସପ୍ତର୍ଷିଗଣଙ୍କର ସ୍ତବରେ ପରିତୁଷ୍ଟ
ହୋଇ ନିଜ ଲୋକକୁ ଗମନ କଲେ । ଋଷିଗଣ ଅରୁନ୍ଧତୀଙ୍କୁ ଅବଲୋକନ
କରି ଅତିଶୟ ବିସ୍ମୟାପନ୍ନ ହେଲେ, କାରଣ ତେତେବେଳେ ତାହାଙ୍କ
ଶରୀର ଶ୍ରାନ୍ତ ଅବା ବର୍ଣ୍ଣ ବିବର୍ଣ୍ଣ ହୋଇ ନ ଥିଲା ଓ ତାହାଙ୍କର
କ୍ଷୁଧାପିପାସାଜନିତ କଷ୍ଟନିବାର କାତରତାର ଚିହ୍ନ ପ୍ରକାଶ ପାଉ ନ ଥିଲା ।

ହେ ପବିତ୍ରବ୍ରତେ ! ମହାଭାଗେ ! ବିଶୁଦ୍ଧଚିତ୍ତା ଅରୁନ୍ଧତୀ
ଏହିପରି ଉତ୍କୃଷ୍ଟ ସିଦ୍ଧିଲାଭ କରିଥିଲେ; ତୁମ୍ଭେ ମଧ୍ୟ ଆମ୍ଭ ନିମିତ୍ତ ତାହା
ସଦୃଶ ବ୍ରତ ପାଳନ କଲ । ଆମ୍ଭେ ତୁମ୍ଭର ଅଦ୍ଭୁତ ନିୟମରେ ଅତିଶୟ
ସନ୍ତୁଷ୍ଟ ହୋଇଅଛୁ । ଅତଏବ ତୁମ୍ଭଙ୍କୁ କୌଣସି ଶେଷ ବର ଦେବାକୁ

ଅଭିଳାଷ କରୁଅଛୁ । ୫୬ । ମହାନୁଭବ ମହାଦେବ ଅରୁନ୍ଧତୀଙ୍କୁ ଯେଉଁପରି ବର ପ୍ରଦାନ କରିଥିଲେ, ଆମ୍ଭେ ମଧ୍ୟ ତଦ୍‌ବତ୍ ତାହାଙ୍କ ପ୍ରଭାବ ଓ ତେଜୋରାଶି ଦ୍ୱାରା ଯଥାବିଧାନରେ ବର ପ୍ରଦାନ କରିବୁ । ଏହି ତୀର୍ଥରେ ଯେଉଁ ବ୍ୟକ୍ତି ନିୟମ ସ୍ଥିର ଚିତ୍ତରେ ନିଷ୍ଠ ହୋଇ ଗୋଟିଏ ରାତି ବାସ କରିବେ, ସେ ପାପରୁ ମୁକ୍ତ ହୋଇ ଦେହାନ୍ତରରେ ଦୁର୍ଲଭ ଲୋକ ପ୍ରାପ୍ତ ହେବେ । ପ୍ରତାପଶାଳୀ ଭଗବାନ୍ ଇନ୍ଦ୍ର ଶ୍ରୁତାବତୀଙ୍କୁ ଏହା କହି ସ୍ୱର୍ଗ-ପୁରକୁ ଗଲେ ।

ହେ ମହାରାଜ ! ବଜ୍ରପାଣି ଗମନ କଲା ପରେ ସେହି ସ୍ଥାନରେ ପବିତ୍ର ଗନ୍ଧଯୁକ୍ତ ପୁଷ୍ପ ବୃଷ୍ଟି ହେଲା । ମନୋହର ସ୍ୱନ ବିଶିଷ୍ଟ ପବିତ୍ର ଦେବ ଦୁନ୍ଦୁଭି ସମୂହର ମନୋହର ଧ୍ୱନି ହେଲା । ପୁଣ୍ୟଗନ୍ଧ ପବିତ୍ର ପବନ ଚତୁ-ର୍ଦ୍ଦିଗରେ ପ୍ରବାହିତ ହେଲା । ତେତେବେଳେ ଶ୍ରୁତାବତୀ ପୂର୍ବ ଦେହ ପରି-ତ୍ୟାଗ କରି ଉଗ୍ରତର ତପସ୍ୟା ଫଳରେ ଇନ୍ଦ୍ରଙ୍କ ପତ୍ନୀ ହେଲେ ଓ ଚିରକାଳ ପର୍ଯ୍ୟନ୍ତ ପରମ ସୁଖରେ ତାହାଙ୍କ ସହିତ କାଳ ଯାପନ କଲେ । ଜନ୍ମେଜୟ କହିଲେ, ହେ ଭଗବାନ୍ ! ସେହି ଶ୍ରୁତାବତୀଙ୍କର ମାତା କିଏ ? ଏବଂ ସେହି ଶୋଭନା କେଉଁ ସ୍ଥାନରେ ପରିବର୍ଦ୍ଧିତା ହୋଇଥିଲେ, ଆମ୍ଭେ ତାହା ଶୁଣିବା ନିମିତ୍ତ ଇଚ୍ଛା କରୁଅଛୁ । ହେ ବିପ୍ରବର ! ଏ ବିଷୟରେ ଆମ୍ଭର ଅତିଶୟ କୌତୁହଳ ଜନ୍ମିଅଛି ।

ବୈଶମ୍ପାୟନ କହିଲେ—ମହାରାଜ ! ପୂର୍ବକାଳରେ ଆୟତନେତ୍ରା ଘୃତାଚୀ ନାମ୍ନୀ ଅପ୍‌ସରାକୁ ବିଲୋକନ କରି ଭଗବାନ ଭରଦ୍ୱାଜ ମୁନିଙ୍କର ବୀର୍ଯ୍ୟ ସ୍ଖଳିତ ହୋଇଥିଲା । ମୁନିବର ସେହି ସ୍ଖଳିତ ରେତଃକୁ କରଦ୍ୱାରା ଗ୍ରହଣ କରି ପତ୍ରପୁଟ ମଧ୍ୟରେ ରଖିଲେ । ସେହି ପତ୍ରପୁଟ ମଧ୍ୟରେ ସେହି କନ୍ୟା ଜନ୍ମଗ୍ରହଣ କରିଥିଲେ । ତପୋଧନ ଭରଦ୍ୱାଜ ମୁନି କନ୍ୟାଙ୍କର ଜାତକର୍ମ ପ୍ରଭୃତି ସମସ୍ତ କର୍ମ ସମ୍ପାଦନ କରି ଦେବର୍ଷିଗଣଙ୍କ ସମକ୍ଷରେ ତାହାଙ୍କୁ ଶ୍ରୁତାବତୀ ନାମ ଦେଲେ । ମୁନିବର କେତେଦିନ ଉତ୍ତାରେ ସେହି ଦୁହିତାକୁ ନିଜ ଆଶ୍ରମରେ ରଖି ହିମାଳୟ ଗିରିର ବନକୁ ଗମନ କରିଥିଲେ । ୭୭ । ସ୍ଥିରମନା ବୃଷ୍ଣିପ୍ରବର ମହାନୁଭବ ବଳଦେବ ସେହି ସ୍ଥାନରେ ସ୍ନାନଶୀଳ ହୋଇ ବ୍ରାହ୍ମଣମାନଙ୍କୁ ବିପୁଳ ଧନ ଦାନ କରି ଇନ୍ଦ୍ରଙ୍କ ତୀର୍ଥକୁ ଗମନ କଲେ । ୭୮ ।

---

# ଅଧ୍ୟାୟ—୪୯

ବୈଶମ୍ପାୟନ କହିଲେ—ମହାରାଜ ! ତଦନନ୍ତର ଯଦୁସିଂହ ବଳଦେବ ଇନ୍ଦ୍ରତୀର୍ଥକୁ ଗମନ କରି ସେଠାରେ ଯଥାବିଧାନରେ ସ୍ନାନ କ୍ରିୟା ସମାଧାନ ପୂର୍ବକ ବିପ୍ରମାନଙ୍କୁ ବହୁତ ଧନ ଓ ରତ୍ନ ପ୍ରଭୃତି ଦାନ କଲେ । ଦେବରାଜ ଇନ୍ଦ୍ର ସେହି ସ୍ଥାନରେ ଶତସଂଖ୍ୟକ ଯୋଗ ସମ୍ପାଦନ କରି ବୃହସ୍ପତିଙ୍କୁ ବିପୁଳ ଧନ ଦେଇଥିଲେ । ସେହି ଯଜ୍ଞରେ ଯାଚକ-ମାନଙ୍କର ଆଗମନ ପଥ ଅନିବାରିତ ଥିଲା । ସମସ୍ତ ଯଜ୍ଞର ବିବିଧ ଦକ୍ଷିଣା ପ୍ରଦତ୍ତ ହେଉଥିଲା । ବେଦପାରଗ ମହର୍ଷିମାନଙ୍କ ବିଧାନ ଅନୁସାରେ ଦେବରାଜ ଇନ୍ଦ୍ର ସେହି ଯଜ୍ଞସବୁ ସମ୍ପନ୍ନ କରିଥିଲେ । ହେ ଭରତଶ୍ରେଷ୍ଠ ! ମହାତେଜସ୍ୱୀ ଶକ୍ର ସେହି ସମସ୍ତ ଯଜ୍ଞସମୂହକୁ ଶତବାର ସମ୍ପାଦନପୂର୍ବକ ଯଥାବିଧାନରେ ପୂର୍ଣ୍ଣ କରିଥିଲେ ବୋଲି ସେହିଦିନଠାରୁ ତାହାଙ୍କ ନାମ ଶତକ୍ରତୁ ହୋଇଅଛି । ସେହି ସର୍ବ ପାତକମୋଚନ କଲ୍ୟାଣଦାୟକ ପବିତ୍ର ତୀର୍ଥ ମଧ ତାହାଙ୍କ ନାମାନୁସାରେ ଇନ୍ଦ୍ରତୀର୍ଥ ବୋଲି ପ୍ରସିଦ୍ଧ ହୋଇଅଛି । ୫ । ହଳଧର ସେହି ସ୍ଥାନରେ ମଧ ତୀର୍ଥ ଜଳ ସ୍ପର୍ଶପୂର୍ବକ ମନୋହର ବସ୍ତ୍ର ଓ ଭୋଜନ ପ୍ରଭୃତି ଦ୍ୱାରା ବ୍ରାହ୍ମଣମାନଙ୍କୁ ପୂଜା କରି ସେଠାରୁ ପବିତ୍ର ତୀର୍ଥବର ରାମତୀର୍ଥକୁ ପ୍ରସ୍ଥାନ କଲେ । ଯେଉଁ ସ୍ଥାନରେ ଭୃଗୁନନ୍ଦନ ମହାତପସ୍ୱୀ ପରଶୁରାମ ପୃଥିବୀକୁ ବାରମ୍ବାର କ୍ଷତ୍ରିୟଶୂନ୍ୟ କରି ପରାଭବ ଦେଇ ମୁନିଶ୍ରେଷ୍ଠ ଉପାଧ୍ୟାୟ କଶ୍ୟପଙ୍କୁ ଅଗ୍ରସର କରି ବାଜପେୟ ଓ ଶତ ଅଶ୍ୱମେଧ କରିଥିଲେ, ସେହି ଯଜ୍ଞରେ ଉକ୍ତ ମହାନୁଭବ ସସାଗରା ଧରଣୀକୁ ଦକ୍ଷିଣା ସ୍ୱରୂପ ପ୍ରଦାନ କରିଥିଲେ । ୯ । ହେ ଜନ୍ମେଜୟ ! ବଳଦେବ ଦେବର୍ଷି ଓ ବ୍ରହ୍ମର୍ଷିସେବିତ ସେହି ପବିତ୍ର ତୀର୍ଥରେ ସ୍ନାନପୂର୍ବକ ବ୍ରାହ୍ମଣମାନଙ୍କୁ ବିଧାନାନୁସାରେ ପୂଜା କରି ନାନା ରତ୍ନସଂଯୁକ୍ତ ବିବିଧ ଦାନ ଦ୍ରବ୍ୟ ଗୋ, ହସ୍ତୀ, ଦାସୀ ଓ ଅଜ ମେଷ ପ୍ରଭୃତି ଧନ ଦାନକରି ଯମୁନାକୁ ଗମନ କଲେ । ୧୧ ।

ହେ ମହାରାଜ ! ଅଦିତିନନ୍ଦନ ଶ୍ୱେତକାନ୍ତି, ମହାଭାଗ ବରୁଣ ଦେବ ରାଜସୂୟ ଯଜ୍ଞ ନିମିତ୍ତ ସେହି ସ୍ଥାନକୁ ଋଷିମାନଙ୍କୁ ଆଣିଥିଲେ । ୧୨ । ପରବୀରହନ୍ତା ବରୁଣ ଦେବ ଯୁଦ୍ଧରେ ନର, ଅମର, ଗନ୍ଧର୍ବ, ରାକ୍ଷସମାନଙ୍କୁ ଜୟ କରି ସେହି ସ୍ଥାନରେ ଉକ୍ତ ଉତ୍କୃଷ୍ଟ ଯଜ୍ଞ ଆରମ୍ଭ କରିଥିଲେ । ସେହି

ଯଜ୍ଞ ସମ୍ପନ୍ନ ହେବାରୁ ଦେବାସୁରମାନଙ୍କର ତ୍ରିଲୋକର ଭୟାବହ ସଂଗ୍ରାମ ହୋଇଥିଲା । ୧୪ । ହେ ଜନ୍ମେଜୟ ! ପ୍ରଧାନ ରାଜସୂୟ ଯଜ୍ଞ ନିବୃତ୍ତ ହେଲେ ସୁଦ୍ଧା କ୍ଷତ୍ରିୟମାନଙ୍କର ଗୋଟିଏ ଘୋରତର ସଂଗ୍ରାମ ହୋଇଥିଲା । ୧୫ । କମଳଲୋଚନ ବନମାଳାଧାରୀ କାମନାଦାତୃକ ହଳଧର ବଳଦେବ ସେଠାରୁ ଦେବର୍ଷିମାନଙ୍କୁ ଅର୍ଚ୍ଚନାପୂର୍ବକ ଅନ୍ୟାନ୍ୟ ଯାଚକମାନଙ୍କୁ ଇଚ୍ଛାନୁସାରେ ଦାନ ଦେଲେ ଓ ମହର୍ଷିମାନଙ୍କ ମୁଖରୁ ସ୍ତୁତି ବାକ୍ୟ ଶ୍ରବଣପୂର୍ବକ ଆଦିତ୍ୟ ତୀର୍ଥକୁ ଗମନ କଲେ । ୧୬ ।

ଯେଉଁ ସ୍ଥାନରେ ଭଗବାନ ଭାସ୍କର ଦେବ ଯଜ୍ଞ କରି ଗ୍ରହ ନକ୍ଷତ୍ର-ମାନଙ୍କ ଉପରେ ଆଧିପତ୍ୟ ଓ ବିପୁଳ ପ୍ରଭାବ ଲାଭ କରିଥିଲେ, ଯେଉଁ ପବିତ୍ର କ୍ଷେତ୍ର ତୀର୍ଥବର ସରସ୍ୱତୀ ନଦୀର ତଟରେ ଇନ୍ଦ୍ରାଦି ଦେବଗଣ, ବିଶ୍ୱଦେବ ସମୂହ, ମରୁତଗଣ, ଗନ୍ଧର୍ବବୃନ୍ଦ, ଦ୍ୱୈପାୟନ, ଅପ୍ସରାଗଣ, ଶୁକଦେବ, ଭଗବାନ କୃଷ୍ଣ, ଯକ୍ଷନିକର, ରାକ୍ଷସ ଏବଂ ପିଶାଚଗଣ ଓ ଅନ୍ୟାନ୍ୟ ଶତ ସହସ୍ର ଲୋକ ଯୋଗସିଦ୍ଧ ହୁଅନ୍ତି, ସେହି ତୀର୍ଥରେ ଭଗବାନ ବିଷ୍ଣୁ ମଧୁକୈଟଭଙ୍କ ବିନାଶପୂର୍ବକ ତୀର୍ଥ ଜଳରେ ସ୍ନାନ କରିଥିଲେ । ହେ ଭରତଶ୍ରେଷ୍ଠ ! ଧର୍ମାତ୍ମା ବେଦବ୍ୟାସ, ମହାତପା ଅସିତ ଦେବଳ ଋଷି, ଏମାନେ ମଧ୍ୟ ସେହି ତୀର୍ଥରେ ସ୍ନାନ କରି ପରମ ଯୋଗ ପ୍ରାପ୍ତ ହୋଇ ସିଦ୍ଧି ଲାଭ କରିଥିଲେ ।

---

## ଅଧ୍ୟାୟ—୫୦

ବୈଶମ୍ପାୟନ କହିଲେ—ମହାରାଜ ! ସେହି ତୀର୍ଥରେ ଧର୍ମାତ୍ମା ତପୋଧନ ଶୁଚି, ଦାନ୍ତ, କାୟମନୋବାକ୍ୟରେ ସର୍ବ ଜନ୍ତୁମାନଙ୍କଠାରେ ସମଦର୍ଶୀ, ଅକ୍ରୋଧନ, ସ୍ତୁତି ଓ ନିନ୍ଦାର ସମାନଜ୍ଞାନୀ, ପ୍ରିୟ କି ଅପ୍ରିୟ ବ୍ୟକ୍ତିଙ୍କଠାରେ ସମାନ ପ୍ରବୃତ୍ତି, ଯମଦେବ ସଦୃଶ ସମଦର୍ଶୀ, ସୁବର୍ଣ୍ଣ ଓ ଲୋଷ୍ଟ୍ରରେ ଭେଦଜ୍ଞାନଶୂନ୍ୟ, ସର୍ବଦା ଦେବତା ଓ ଅତିଥିପୂଜାରେ ରତ, ବ୍ରହ୍ମଚର୍ଯ୍ୟରତ ଓ ସର୍ବଦା ଧର୍ମପରାୟଣ ମହାତପା ଅସିତ ଦେବଳ ଗାର୍ହସ୍ଥ୍ୟ ବୃତ୍ତି ଅବଲମ୍ବନ ପୂର୍ବକ ବାସ କରିଥିଲେ । ତାଙ୍କର ଆଶ୍ରମ ସମୀପରେ ପରମଯୋଗୀ ବୁଦ୍ଧିମାନ ଜୈଗୀଷବ୍ୟ ମୁନି ଭିକ୍ଷୁକ ବେଶରେ ରହି କିଛି

ବନ ମଧ୍ୟରେ ସିଦ୍ଧିପ୍ରାପ୍ତ ହେଲେ । ତତ୍ପରେ ସେହି ଉଭୟ ମୁନି ଧର୍ମାଧୀନ ହୋଇ ସେହିଠାରେ ବାସ କରିଥିଲେ । ସେହି ସ୍ଥାନରେ ସେହି ଦୁହେଁ ବାସ କରିବାର ବହୁତ ସମୟ ଅତୀତ ହେଲା ।

ଏକଦିନେ ବୁଦ୍ଧିମାନ ଦେବଳ ମୁନି ଆହାର ସମୟରେ ଜୈଗୀଷବ୍ୟଙ୍କୁ ଦେଖି ନ ଥିଲେ । କିଛିକ୍ଷଣ ଉତ୍ତାରେ ଭିକ୍ଷା ସମୟରେ ଜୈଗୀଷବ୍ୟ ଋଷି ଭିକ୍ଷୁକ ରୂପରେ ଦେବଳଙ୍କ ନିକଟକୁ ଆଗମନ କଲେ । ଭଗବାନ ଦେବଳ ତାହାଙ୍କୁ ଉପସ୍ଥିତ ହେବାର ଦେଖି ପରମ ସମାଦର ପୂର୍ବକ ବିପୁଳ ପ୍ରୀତିରେ ଗୌରବ ସହିତ ଋଷିପ୍ରୋକ୍ତ ବିଧାନାନୁସାରେ ଯଥା-ଶକ୍ତି ପୂଜା କଲେ । ହେ ମହାରାଜ ! ଏକଦିନେ ଜୈଗୀଷବ୍ୟ ମୁନିଙ୍କୁ ଦର୍ଶନ କରି ମହାତ୍ମା ଦେବଳଙ୍କ ଅନ୍ତଃକରଣରେ ମହାଚିନ୍ତା ଜନ୍ମିଲା ଯେ ଅନେକ ବର୍ଷ ଅତୀତ ହେଲା ଆମ୍ଭେ ଏହି ଋଷିବରଙ୍କୁ ସତ୍କାର କରୁଅଛୁ, କିନ୍ତୁ ଏହି ଭିକ୍ଷୁକ ଆଳସ୍ୟବଶରେ ଆମ୍ଭଙ୍କୁ କଦାପି କୌଣସି କଥା କହନ୍ତି ନାହିଁ । ଆକାଶଚର ଶ୍ରୀମାନ ଦେବଳ ମନୋମଧ୍ୟରେ ଏହି ପ୍ରକାର ଆନ୍ଦୋଳନ କରି କଳଶ ଗ୍ରହଣ ପୂର୍ବକ ଆକାଶମାର୍ଗରେ ସାଗରକୁ ଗମନ କଲେ । ସେ ସାଗରରେ ଉପସ୍ଥିତ ହେବା ମାତ୍ରେ ଦେଖିଲେ, ଜୈଗୀଷବ୍ୟ ମୁନି ତାହାଙ୍କ ଆଗମନ ପୂର୍ବେ ସେଠାରେ ଉପସ୍ଥିତ ହୋଇଥିଲେ । ସୁତରାଂ ସେ ତେତେବେଳେ ବିସ୍ମୟାପନ୍ନ ହୋଇ ଭାବନା କଲେ, ଏହି ଭିକ୍ଷୁକ କିପରି ଆମ୍ଭ ଆଗରେ ଆସି ଏଠାରେ ପହଞ୍ଚିଲେ ଏବଂ କେଉଁ ପ୍ରକାରେ ଅବା ଏତେ ଶୀଘ୍ର ସମୁଦ୍ରକୁ ଆସି ସ୍ନାନ କଲେ ।

ସେ ଏହିପରି ଚିନ୍ତା କରି ସାଗରଜଳରେ ବିଧି ଅନୁସାରେ ସ୍ନାନ-ଶୀଳ ହୋଇ ଆହ୍ନିକ ଓ ଜପ ପ୍ରଭୃତି କର୍ମ ସମାପନ ପୂର୍ବକ ଜଳପୂର୍ଣ୍ଣ କଳଶ ଧରି ପୁନଶ୍ଚ ଗଗନ ମାର୍ଗରେ ଗମନ ପୂର୍ବକ ଆଶ୍ରମରେ ପ୍ରବିଷ୍ଟ ହେଲେ ଓ ମହାତପା ଜୈଗୀଷବ୍ୟ ସେହି ଆଶ୍ରମରେ ଉପବିଷ୍ଟ ହୋଇ-ଥିବାର ଦେଖିଲେ । ଜୈଗୀଷବ୍ୟ ଦେବଳଙ୍କୁ କିଛି ନ କହି କାଷ୍ଠସଦୃଶ ଆଶ୍ରମରେ ବସି ରହିଥିଲେ । ହେ ରାଜନ୍ ! ବୁଦ୍ଧିମାନ ଅସିତ ଦେବଳ ସାଗର ସଦୃଶ ଗାମ୍ଭୀର୍ଯ୍ୟଶାଳୀ ସେହି ମହର୍ଷିଙ୍କୁ ଆଶ୍ରମରେ ଉପବିଷ୍ଟ ହୋଇଥିବାର ଦେଖି ବିଚାର କଲେ, ମୁଁ ଏହାଙ୍କୁ ଏହିକ୍ଷଣି ସମୁଦ୍ର କୂଳରେ ଥିବାର ଦେଖିଥିଲି; ଏତେ ଶୀଘ୍ର ଏ କିପରି ଆମ୍ଭ ଆଗମନ ପୂର୍ବରୁ ଆଶ୍ରମରେ ଉପସ୍ଥିତ ହୋଇଅଛନ୍ତି ? ମନ୍ତ୍ରପାରଗ ଦେବଳ ମୁନି ଏହି

ପ୍ରକାର ବିସ୍ମିତ କରି ଭିକ୍ଷୁକ ଜୈଗୀଷବ୍ୟଙ୍କ ଅଲୌକିକ ଯୋଗସିଦ୍ଧିମାନଙ୍କୁ ଜାଣିବା ଅଭିପ୍ରାୟରେ ଆକାଶକୁ ଗମନ କଲେ ।

ସେଠାରେ ଆକାଶଚର ସିଦ୍ଧ ପୁରୁଷମାନେ ସ୍ଥିର ଚିତ୍ତରେ ଜୈଗୀଷବ୍ୟଙ୍କୁ ପୂଜା କରୁଥିବାର ମଧ୍ୟ ଦେଖିଲେ । ୨୭ । ଦୃଢ଼ବ୍ରତ ଉଦ୍‌ଯୋଗଶାଳୀ ଅସିତ ଦେବଳ ତାହା ଦେଖି କ୍ରୁଦ୍ଧ ହେଲେ ଓ ସ୍ୱର୍ଗ-ଲୋକକୁ ଯାଇ ସେଠାରେ ଜୈଗୀଷବ୍ୟଙ୍କୁ ଦେଖିଲେ । ତତ୍ପରେ ପିତୃ-ଲୋକକୁ, ପିତୃଲୋକରୁ ଯମଲୋକକୁ ଯାଇ ମଧ୍ୟ ସେହି ସେହିଠାରେ ଜୈଗୀଷବ୍ୟଙ୍କୁ ଦେଖିଥିଲେ । ଯମଲୋକର ଉପରକୁ ଉଠି ସୋମଲୋକରେ ମଧ୍ୟ ମହାମୁନି ଜୈଗୀଷବ୍ୟଙ୍କୁ ଦର୍ଶନ କଲେ । ୨୯ । ତତ୍ପରେ ସେ ଏକାନ୍ତଯାଜୀ ଅଗ୍ନିହୋତ୍ରୀ ମୁନିଗଣଙ୍କ ମଙ୍ଗଳଦାୟକ ଲୋକସମୂହକୁ ଯାଇ ସେଠାରେ ପୂର୍ବପରି ତାହାଙ୍କୁ ଦେଖିଲେ । ତତ୍‌ପରେ ଯେଉଁ ଋଷିବୃନ୍ଦ ଅମାବାସ୍ୟା ଓ ପୌର୍ଣ୍ଣମାସୀ ଯାଗ କରନ୍ତି ସେମାନଙ୍କ ନିକଟରେ ମଧ୍ୟ ସେହି ଋଷିବରଙ୍କୁ ଦେଖିଥିଲେ । ତଦନନ୍ତର ସେମାନଙ୍କ ନିକଟରୁ ପଶୁଯାଜୀ ଲୋକ ଓ ପଶୁଯାଜୀ ଲୋକରୁ ପରମ ପୂଜନୀୟ ପବିତ୍ର ଦେବ-ପୂଜକ ଲୋକକୁ ଯାଇ ମଧ୍ୟ ସେହି ସେହିଠାରେ ଜୈଗୀଷବ୍ୟଙ୍କୁ ଦେଖିଥିଲେ ।

ତତ୍ପରେ ଯେଉଁ ତପସ୍ୱୀଗଣ ବହୁବିଧ ଚାତୁର୍ମାସ୍ୟ ଯାଗ କରନ୍ତି, ସେମାନଙ୍କ ଲୋକ ମଧ୍ୟରେ ଦେବଳ ଜୈଗୀଷବ୍ୟଙ୍କୁ ଦର୍ଶନ କରି ସେଠାରୁ ଅଗ୍ନିଷ୍ଟୋମଯାଜୀ ଋଷିମାନଙ୍କ ଆବାସକୁ ଯାଇ ସେଠାରେ ମଧ୍ୟ ଉକ୍ତ ମୁନିବର ଉପସ୍ଥିତ ଥିବାର ଦେଖିଲେ । ଯେଉଁମାନେ ଅଗ୍ନିଷ୍ଟୋମ ଯାଗ କରନ୍ତି, ସେମାନଙ୍କ ନିକଟରୁ ଦେବଳ ମହାପ୍ରାଜ୍ଞ ବାଜପେୟ ଓ ବହୁ ସୁବର୍ଣ୍ଣଯାଜୀମାନଙ୍କ ନିକଟକୁ ଯାଇ ପୂର୍ବବତ୍ ସେଠାରେ ମୁନିବରଙ୍କୁ ଦେଖିଲେ । ତଦନନ୍ତର ଯେଉଁମାନେ ପୁଣ୍ଡରୀକ ଓ ରାଜସୂୟ ଯଜ୍ଞ କରନ୍ତି, ଦେବଳ ସେମାନଙ୍କ ମଧ୍ୟରେ ସୁଦ୍ଧା ଜୈଗୀଷବ୍ୟଙ୍କୁ ଦର୍ଶନ କଲେ । ଯେଉଁ ସମସ୍ତ ନରବର ଅଶ୍ୱମେଧ, ନରମେଧ, ଦୁଷ୍କର ସର୍ବମେଧ ଓ ସୌତ୍ରାମଣି ଯାଗ କରନ୍ତି, ସେମାନଙ୍କ ଲୋକ ମଧ୍ୟରେ ମଧ୍ୟ ଦେବଳ ଉକ୍ତ ମୁନିବରଙ୍କୁ ଦେଖିଲେ । ମହାରାଜ ! ଯେଉଁମାନେ ବିବିଧ ଉପହାର ଦ୍ରବ୍ୟଦ୍ୱାରା ଦ୍ୱାଦଶଦିବସସ୍ଥାୟୀ ଯାଗ କରନ୍ତି, ଦେବଳ ସେମାନଙ୍କ ଲୋକ ମଧ୍ୟରେ ଜୈଗୀଷବ୍ୟଙ୍କୁ ଅବଲୋକନ କଲେ ।

ତତ୍ପରେ ଅସିତ ଦେବଳ ମିତ୍ରାବରୁଣ ଓ ଆଦିତ୍ୟଲୋକରେ ଜୈଗୀଷବ୍ୟଙ୍କୁ ମଧ୍ୟ ଦେଖିଥିଲେ । ରୁଦ୍ରଲୋକ, ବସୁଲୋକ ଓ ବୃହସ୍ପତି ଲୋକକୁ ଯାଇ ଦେଖିଲେ ଯେ ଜୈଗୀଷବ୍ୟ ସେହିସବୁ ସ୍ଥାନରେ ସମାନ ଭାବରେ ଅବସ୍ଥାନ କରିଥିଲେ । ତତ୍ପରେ ସେ ଗୋଲୋକ ଓ ବ୍ରହ୍ମସତ୍ର ଲୋକକୁ ଯାଇ ସେହି ସେହି ସ୍ଥାନରେ ଉକ୍ତ ମୁନିବରଙ୍କୁ ଦେଖିଥିଲେ । ତତ୍ପରେ ଦେବଳ ସେହି ଦ୍ୱିଜବରଙ୍କୁ ସ୍ୱକୀୟ ତେଜର ପ୍ରଭାବରେ ଭୂଲୋକ, ଭୁବର୍ଲୋକ ଓ ମହର୍ଲୋକ ଏବଂ ପତିବ୍ରତାଲୋକକୁ ଯାଇଥିବାର ଦେଖିଲେ । ତଦନନ୍ତର ପତିବ୍ରତାଲୋକରୁ ନିର୍ଗତ ହୋଇ ଜୈଗୀଷବ୍ୟ ଯୋଗବଳରେ କେଉଁ ସ୍ଥାନକୁ ଗଲେ, ଦେବଳ ଆଉ ଦେଖି ପାରିଲେ ନାହିଁ । ସେହି ହେତୁରୁ ମହାଭାଗ ଜୈଗୀଷବ୍ୟଙ୍କ ଉତ୍ତମ ବ୍ରତ ଓ ଅନୁପମ ଯୋଗସିଦ୍ଧିର ପ୍ରଭାବ ଜାଣିବାକୁ ଇଚ୍ଛୁକ ହୋଇ ଦେବଳ ଗଗନଚର ସିଦ୍ଧଗଣଙ୍କ ନିକଟରେ କୃତାଞ୍ଜଳି ହୋଇ କହିଲେ, ହେ ବ୍ରହ୍ମସତ୍ରିଗଣ ! ଏତେବେଳେ ଆମ୍ଭେ ମହାତେଜସ୍ୱୀ ଜୈଗୀଷବ୍ୟଙ୍କୁ ନ ଦେଖି ତାହାଙ୍କ ବିଷୟ ଆପଣ-ମାନଙ୍କୁ ପଚାରୁଅଛୁଁ । ସେ କେଉଁଠାରେ ଅଛନ୍ତି, କହିବା ହେଉନ୍ତୁ । ଉକ୍ତ ବିଷୟ ଶୁଣିବାକୁ ଆମ୍ଭର ଅତିଶୟ କୌତୂହଳ ଜନ୍ମିଅଛି ।

ସିଦ୍ଧଗଣ କହିଲେ, ହେ ଦୃଢ଼ବ୍ରତ ଦେବଳ ! ଆମ୍ଭେମାନେ ତୁମ୍ଭଙ୍କୁ ତାହାଙ୍କର ଯଥାର୍ଥ ବିବରଣ କହୁଅଛୁଁ, ଶ୍ରବଣ କର । ଏତେବେଳେ ଜୈଗୀଷବ୍ୟ ଶାଶ୍ୱତ ବ୍ରହ୍ମଲୋକକୁ ଗମନ କରିଅଛନ୍ତି । ବୈଶମ୍ପାୟନ କହିଲେ, ମହାରାଜ ! ଦେବଳ ସିଦ୍ଧ ବ୍ରହ୍ମର୍ଷିମାନଙ୍କ ବାକ୍ୟ ଶୁଣିଲା ପରେ ବ୍ରହ୍ମଲୋକକୁ ଗମନ କରିବା ନିମିତ୍ତ ଅଭିଳାଷୀ ହୋଇ ଊର୍ଦ୍ଧ୍ୱକୁ ଉଠିବା ନିମିତ୍ତ ଚେଷ୍ଟା କରିବା ମାତ୍ରେ ଅବିଳମ୍ବେ ପତିତ ହେଲେ । ତତେବେଳେ ସିଦ୍ଧଗଣ ଦେବଳଙ୍କୁ ସମ୍ବୋଧନ କରି କହିଲେ, ହେ ତପୋଧନ ! ଜୈଗୀଷବ୍ୟ ଯେଉଁ ବ୍ରହ୍ମଲୋକକୁ ଯାଇଅଛନ୍ତି, ତୁମ୍ଭେ ସେହି ସ୍ଥାନକୁ କଦାପି ଯାଇପାରିବ ନାହିଁ । ୫୦ ।

ବୈଶମ୍ପାୟନ କହିଲେ, ଦେବଳ ସିଦ୍ଧଗଣମାନଙ୍କ ବାକ୍ୟ ଶ୍ରବଣ କରି ଉଲ୍ଲିଖିତ ସ୍ଥାନମାନଙ୍କରୁ ଆନୁପୂର୍ବିକ କ୍ରମେ ଅବତରଣ ପୂର୍ବକ ସ୍ୱକୀୟ ପବିତ୍ର ଆଶ୍ରମକୁ ଆଗମନ କଲେ । ସେ ଆଶ୍ରମରେ ପ୍ରବେଶ କଲା ମାତ୍ରେ ସେଠାରେ ଜୈଗୀଷବ୍ୟଙ୍କୁ ଦେଖିଲେ । ୫୨ । ତତ୍ପରେ ଦେବଳ ଧର୍ମଯୁକ୍ତ ବୁଦ୍ଧିରେ ଜୈଗୀଷବ୍ୟ ମୁନିଙ୍କର ଏତାଦୃଶ ଘଟନାକୁ ଯୋଗଜନିତ

ତପସ୍ୟାର ପ୍ରଭାବ ବୋଲି ବିସ୍ମିତ କଲେ । ୫୩ । ତଦନନ୍ତର ସେ ବିନୟରେ ଅବନତ ହୋଇ ସେହି ମହାତ୍ମା ମହାମୁନିଙ୍କ ନିକଟକୁ ଗମନ ପୂର୍ବକ ନମସ୍କାର କରି କହିଲେ (୫୪), ହେ ଭଗବାନ ! ଆମ୍ଭେ ମୋକ୍ଷ-ଧର୍ମ ଆଶ୍ରୟ କରିବାକୁ ଅଭିଳାଷୀ ହୋଇଅଛୁ ।

ମହାମୁନି ଜୈଗୀଷବ୍ୟ ସେହି ବାକ୍ୟ ଶ୍ରବଣ କରି ତାହାଙ୍କୁ ମୋକ୍ଷ-ଧର୍ମ ଉପଦେଶ ପ୍ରଦାନ କଲେ । ୫୫ । ମହାତପା ଜୈଗୀଷବ୍ୟ ଦେବଳଙ୍କୁ ସନ୍ନ୍ୟାସ ଧର୍ମ ଗ୍ରହଣ କରିବା ନିମିତ୍ତ ଦୃଢ଼ଚିତ୍ତ ହୋଇଥିବାର ଦେଖି ତାହାଙ୍କୁ ଯୋଗର ବିଧାନ ଓ ଶାସ୍ତ୍ରାନୁସାରେ କର୍ତ୍ତବ୍ୟାକର୍ତ୍ତବ୍ୟ କାର୍ଯ୍ୟ-ସମୂହ ଉପଦେଶ ପ୍ରଦାନ କଲେ ଓ ବିଧିବିହିତ କର୍ମଦ୍ୱାରା ତାହାଙ୍କର ସମସ୍ତ କ୍ରିୟା ସମ୍ପାଦନ କଲେ । ତାହାଙ୍କ ପିତୃଗଣ ଓ ତଦୀୟ ଆଶ୍ରମସ୍ଥିତ ସମସ୍ତ ପ୍ରାଣୀ ତାହାଙ୍କୁ ସନ୍ନ୍ୟାସ ଧର୍ମ ଗ୍ରହଣ କରିବାର ଦେଖି 'ଆଉ ଆମ୍ଭ-ମାନଙ୍କୁ କିଏ ପ୍ରତିପାଳନ କରିବ' ଏହି କଥା କହି ରୋଦନ କଲେ । ଦେବଳ ଦଶ ଦିଗରୁ ଏହିପରି କରୁଣ ଧ୍ୱନି ଶୁଣି ମୋକ୍ଷମାର୍ଗ ଛାଡ଼ି ଦେବାକୁ ଇଚ୍ଛା କଲେ । ଆଶ୍ରମର ନିକଟବର୍ତ୍ତୀ ପବିତ୍ର ଫଳପୁଷ୍ପଯୁକ୍ତ ବନସ୍ପତି ଓ ଔଷଧିସମୂହ ରୋଦନ କରି କହୁଥିଲେ ଯେ ଦୁର୍ମତି କ୍ଷୁଦ୍ରବୁଦ୍ଧି ଦେବଳ ପ୍ରାଣିମାନଙ୍କୁ ଅଭୟ ଦାନ କରି ଏତେବେଳେ ଯଦି ସନ୍ନ୍ୟାସୀ ହେଉ-ଅଛନ୍ତି, ତେବେ ଜଣାଯାଏ ସେ ଆମ୍ଭମାନଙ୍କୁ ଛେଦନ କରିବେ । ମୁନିବର ଦେବଳ ଏହି କଥା ଶୁଣି ମନେ ମନେ ଆଲୋଚନା କଲେ, ଆମ୍ଭେ ସମସ୍ତ ପ୍ରାଣିଗଣଙ୍କୁ ଅଭୟ ପ୍ରଦାନ କରି କି ହେତୁ ଅଜ୍ଞାନରେ ଜଡ଼ିତ ହେଲୁଁ । ଗାର୍ହସ୍ଥ୍ୟ ଓ ସନ୍ନ୍ୟାସ ଧର୍ମ ଏହି ଦୁହିଁଙ୍କ ମଧ୍ୟରେ କିଏ ଶ୍ରେୟସ୍କର, ତାହା ଆମ୍ଭେ ବିବେଚନା କରି ପାରିଲୁ ନାହିଁ । ଏହି ପ୍ରକାର ନାନାବିଧ ଚିନ୍ତା କରି ପରିଶେଷରେ ଭଗବାନ୍ ଦେବଳ ସ୍ୱକୀୟ ସୁବୁଦ୍ଧି ସହକାରେ ଗାର୍ହସ୍ଥ୍ୟ ଧର୍ମ ପରିତ୍ୟାଗ ପୂର୍ବକ ମୋକ୍ଷଧର୍ମରେ ଚିତ୍ତକୁ ସମାଧାନ କରି ପରମସିଦ୍ଧି ପ୍ରାପ୍ତ ହେଲେ ।

ତତ୍ପରେ ଦେବଗଣ ବୃହସ୍ପତିଙ୍କୁ ଅଗ୍ରସର କରି ସେଠାକୁ ଆସି ତପସ୍ୱୀ ଜୈଗୀଷବ୍ୟ ଓ ତଦୀୟ ତପସ୍ୟାର ପ୍ରଭାବକୁ ଭୂରି ଭୂରି ପ୍ରଶଂସା କଲେ । ଜୈଗୀଷବ୍ୟ ଅସିତ ଦେବଳଙ୍କୁ ବିସ୍ମୟାପନ୍ନ କରିଅଛନ୍ତି ସତ୍ୟ, କିନ୍ତୁ ତାହାଁରେ ତପସ୍ୟାର ପ୍ରଭାବ କିଛି ମାତ୍ର ନାହିଁ । ଦେବତାଗଣ ନାରଦଙ୍କର ଏହି ବାକ୍ୟ ଶୁଣି କହିଲେ, ହେ ନାରଦ ! ଜୈଗୀଷବ୍ୟଙ୍କ

ସମ୍ବନ୍ଧରେ ଏପରି କହିବାର ଆପଣଙ୍କର ଉଚିତ ନୁହେଁ । କାରଣ ଜୈଗୀଷବ୍ୟଙ୍କ ସଦୃଶ ତପସ୍ୟା, ତେଜ ଓ ଯୋଗର ପ୍ରଭାବକୁ ଆମ୍ଭେ ଅନ୍ୟ କୌଣସିଠାରେ ଦେଖୁନାହୁଁ । ଏହି ଶ୍ରେଷ୍ଠ ତୀର୍ଥରେ ସେହି ମହାତ୍ମା ଜୈଗୀଷବ୍ୟ ଓ ଅସିତ ଦେବଳଙ୍କ ଆଶ୍ରମ ଥିଲା । ହେ ମହାରାଜ ! ସାଧୁ କର୍ମଶୀଳ ମହାନୁଭବ ବଳଦେବ ସେହି ତୀର୍ଥରେ ସ୍ନାନକରି ବ୍ରାହ୍ମଣମାନଙ୍କୁ ପ୍ରଭୂତ ଧନ ଦାନପୂର୍ବକ ପରମ ଧର୍ମ ପ୍ରାପ୍ତ ହୋଇ ସୋମ ତୀର୍ଥକୁ ଗମନ କଲେ । ୬୯ ।

---

## ଅଧ୍ୟାୟ—୫୧

ବୈଶମ୍ପାୟନ କହିଲେ—ହେ ଭାରତ ! ପୂର୍ବକାଳରେ ଯେଉଁ ସ୍ଥାନରେ ତାରାପତି ଚନ୍ଦ୍ରମା ରାଜସୂୟ ଯଜ୍ଞ କରିଥିଲେ, ସେହି ତୀର୍ଥରେ ତାରକାସୁରଙ୍କର ଅତି ଉତ୍କୃଷ୍ଟ ଯୁଦ୍ଧ ହୋଇଥିଲା । ଧର୍ମାତ୍ମା ବଳଦେବ ସେଠାରେ ତୀର୍ଥଜଳ ସ୍ପର୍ଶ କରି ବ୍ରାହ୍ମଣମାନଙ୍କୁ ବିପୁଳ ଧନ ଦାନପୂର୍ବକ ସାରସ୍ୱତ ମୁନିଙ୍କ ତୀର୍ଥକୁ ଗମନ କଲେ । ପୂର୍ବକାଳରେ ଦ୍ୱାଦଶବର୍ଷ ବ୍ୟାପୀ ଅନାବୃଷ୍ଟି ସମୟରେ ସାରସ୍ୱତ ମୁନି ସେହି ସ୍ଥାନରେ ବ୍ରାହ୍ମଣମାନଙ୍କୁ ବେଦ ଅଧ୍ୟୟନ କରାଇଥିଲେ । ଜନମେଜୟ କହିଲେ, ହେ ତପୋଧନ ! ପୂର୍ବକାଳରେ ଦ୍ୱାଦଶବାର୍ଷିକ ଅନାବୃଷ୍ଟି ସମୟରେ ସାରସ୍ୱତ ମୁନି ଋଷିମାନଙ୍କୁ କି ନିମିତ୍ତ ବେଦ ଅଧ୍ୟୟନ କରାଇଥିଲେ ?

ବୈଶମ୍ପାୟନ କହିଲେ, ମହାରାଜ ! ପୂର୍ବ କାଳରେ ଦଧୀଚି ନାମରେ ବିଖ୍ୟାତ ବ୍ରହ୍ମଚାରୀ, ଜିତେନ୍ଦ୍ରିୟ, ବୁଦ୍ଧିମାନ୍ ଓ ମହାତପସ୍ୱୀ ଗୋଟିଏ ମୁନି ଥିଲେ । ତାହାଙ୍କର ଘୋରତର ତପସ୍ୟା ପ୍ରଭାବରେ ଦେବରାଜ ଇନ୍ଦ୍ର ନିରନ୍ତର ଭୟଯୁକ୍ତ ଚିତ୍ତରେ କାଳ ଯାପନ କରନ୍ତି । ସେ ନାନାବିଧ ଫଳ ପ୍ରଦାନ ଦ୍ୱାରା ମୁନିବରଙ୍କୁ କଦାପି ଲୋଭଯୁକ୍ତ କରିବାକୁ ସମର୍ଥ ହେଲେ ନାହିଁ । ପରିଶେଷରେ ଇନ୍ଦ୍ରଦେବ ଦଧୀଚି ମୁନିଙ୍କ ପ୍ରଲୋଭନ ନିମିତ୍ତ ଅଲମ୍ବୁଷା ନାମରେ ଲୋଚନ ଲୋଭନୀୟା ମନୋହାରିଣୀ ଗୋଟିଏ ଅପ୍ସରାକୁ ତାହାଙ୍କ ସନ୍ନିଧିକୁ ପ୍ରେରଣ କଲେ । ଯେତେବେଳେ ମହାତ୍ମା ମୁନିବର ସରସ୍ୱତୀ ନଦୀରେ ଦେବତାମାନଙ୍କୁ ତର୍ପଣ କରୁଥିଲେ,

ସେହି ଭାବନା ତପସ୍ୟ ସନ୍ନିଧିରେ ଉପସ୍ଥିତ ହୋଇଥିଲେ । ଦିବ୍ୟରୂପ-ଧାରିଣୀ ସେହି ସ୍ୱର୍ଗବେଶ୍ୟାଙ୍କୁ ଦେଖି ମହାତ୍ମା ଋଷିଙ୍କର ରେତଃ ସ୍ଖଳିତ ହେବାରୁ ନଦୀଶ୍ରେଷ୍ଠା ସରସ୍ୱତୀ ପୁତ୍ର ପ୍ରସବ କରିବା ନିମିତ୍ତ ସେହି ବୀର୍ଯ୍ୟ ଗ୍ରହଣପୂର୍ବକ ସ୍ୱକୀୟ ଗର୍ଭରେ ଧାରଣ କଲେ । ମହାନଦୀ ସରସ୍ୱତୀ ସେହି ରେତଃକୁ ଧାରଣ କରି ଯଥା ସମୟରେ ଗୋଟିଏ ପୁତ୍ର ପ୍ରସବ କଲେ ଓ ପ୍ରସବ କଲା ମାତ୍ରେ ସେହି ପୁତ୍ରକୁ ଘେନି ଋଷିଙ୍କ ନିକଟକୁ ଆସିଲେ । ୧୧ ।

ହେ ମହାରାଜ ! ସରସ୍ୱତୀ ସଭାମଧ୍ୟରେ ମୁନିବରଙ୍କୁ ଦର୍ଶନ କରି ତାହାଙ୍କ ପୁତ୍ରଙ୍କୁ ତପସ୍ୱୀ କ୍ରୋଡ଼ରେ ପ୍ରଦାନ ପୂର୍ବକ କହିଲେ, ହେ ବ୍ରହ୍ମର୍ଷି ! ଏହି ବାଳକଟି ଆପଣଙ୍କ ପୁତ୍ର । ଆମ୍ଭେ ଆପଣଙ୍କଠାରେ ଭକ୍ତି ପ୍ରକାଶ ପୂର୍ବକ ଏହାଙ୍କୁ ଗର୍ଭରେ ଧରିଥିଲୁ । ପୂର୍ବେ ଅଲମ୍ବୁଷା ଅପ୍‌ସରାଙ୍କୁ ଅବଲୋକନ କରି ଆପଣଙ୍କର ଯେଉଁ ରେତଃ ସ୍ଖଳିତ ହୋଇଥିଲା, ତାହା ନଷ୍ଟ ନୋହୁ ବୋଲି ବିଚାର କରି ଆମ୍ଭେ ଭକ୍ତିରେ ନିଜ ଗର୍ଭରେ ତାହା ଧାରଣ କରିଥିଲୁ । ଏତେବେଳେ ଆମ୍ଭେ ଆପଣଙ୍କର ଏହି ଅନିନ୍ଦିତ ପୁତ୍ରକୁ ପ୍ରଦାନ କରୁଅଛୁ । ଆପଣ ନିଜ ସନ୍ତାନକୁ ଗ୍ରହଣ କରନ୍ତୁ । ହେ ଭରତଶ୍ରେଷ୍ଠ ! ଦଧୀଚମୁନି ସରସ୍ୱତୀଙ୍କର ଏହି ବାକ୍ୟ ଶୁଣି ପରମପ୍ରୀତ ହୋଇ ପୁତ୍ରଙ୍କୁ ଗ୍ରହଣ କଲେ ଓ ତେତେବେଳେ ପୁତ୍ରକୁ ସ୍ନେହ ସହକାରେ ବହୁତ ସମୟ ଆଲିଙ୍ଗନ କରି ତାହାର ମସ୍ତକ ଆଘ୍ରାଣ କଲେ । ୧୬ । ମୁନିବର ସରସ୍ୱତୀଙ୍କର ଏହି ପ୍ରିୟ କାର୍ଯ୍ୟରେ ପ୍ରସନ୍ନ ହୋଇ ତାହାଙ୍କୁ ବର ପ୍ରଦାନ ପୂର୍ବକ କହିଲେ, ହେ ସୁଭଗେ ! ତୁମ୍ଭର ପବିତ୍ର ଜଳରେ ସମସ୍ତ ଦେବଗଣ, ପିତୃଗଣ, ଗନ୍ଧର୍ବଗଣ ଓ ଅପ୍‌ସରାଗଣଙ୍କୁ ତର୍ପଣ କଲେ ସେମାନେ ସମସ୍ତେ ତୃପ୍ତ ହେବେ । ହେ ମହାରାଜ ! ମୁନି ସେହି ମହାନଦୀଙ୍କୁ ଏହା କହି ପ୍ରୀତ ଓ ପରମ ହୃଷ୍ଟଚିତ୍ତ ହୋଇ ନାନାବିଧ ମନୋହର ବାକ୍ୟାବଳୀଦ୍ୱାରା ଯେଉଁପରି ସ୍ତବ କରିଥିଲେ, ତାହା ଯଥାର୍ଥରୂପେ କହୁଅଛୁଁ ।

ମୁନି କହିଲେ, ହେ ମହାଭାଗେ ! ନଦୀଶ୍ରେଷ୍ଠେ ! ପୂର୍ବକାଳରେ ତୁମ୍ଭେ ବ୍ରହ୍ମାଙ୍କ ମାନସସରୋବରରୁ ନିର୍ଗତ ହୋଇଅଛ । ପ୍ରଶଂସିତବ୍ରତ ମୁନିଗଣ ତୁମ୍ଭର ପ୍ରଭାବକୁ ସମ୍ପୂର୍ଣ୍ଣ ରୂପେ ଜାଣିଅଛନ୍ତି । ହେ ପ୍ରିୟ-ଦର୍ଶନେ ! ତୁମ୍ଭେ ସର୍ବଦା ଆମ୍ଭର ପ୍ରିୟ କାର୍ଯ୍ୟ ସାଧନ କରିଥାଅ ।

ତୁମ୍ଭର ଅନୁଗ୍ରହରେ ଏହି ସନ୍ତାନଟି ଜନ୍ମଗ୍ରହଣ କରିଅଛି । ଏହି ହେତୁରୁ ତୁମ୍ଭ ନାମରେ ଏହି ବାଳକ ସର୍ବତ୍ର ବିଖ୍ୟାତ ହେବ ବୋଲି ଏହାର ନାମ ସାରସ୍ୱତ ହେଲା । ହେ ମହାଭାଗେ ! ଏହି ବାଳକ ମହାତପସ୍ୱୀ ହେବ ଏବଂ ଦ୍ୱାଦଶବାର୍ଷିକୀ ଅନାବୃଷ୍ଟି ସମୟରେ ପ୍ରଧାନ ପ୍ରଧାନ ବ୍ରାହ୍ମଣମାନଙ୍କୁ ବେଦାଧ୍ୟୟନ କରାଇବ । ହେ ଶୁଭଦାୟିନି ! ମହାଭାଗେ ! ତୁମ୍ଭେ ଆମ୍ଭ ପ୍ରସାଦରେ ପୁଣ୍ୟ ନଦୀମାନଙ୍କ ଅପେକ୍ଷା ଅଧିକ ପୁଣ୍ୟବତୀ ହେବ । ହେ ମହାରାଜ ! ମହାନଦୀ ସରସ୍ୱତୀ ମୁନିବରଙ୍କର ଏତାଦୃଶ ସ୍ତୁତି ବାକ୍ୟ ଶୁଣି ଓ ବରଲାଭ କରି ପ୍ରସନ୍ନା ହୋଇ ପୁତ୍ରଙ୍କୁ ଗ୍ରହଣ ପୂର୍ବକ ସେଠାରୁ ପ୍ରସ୍ଥାନ କଲେ ।

ମହାରାଜ ! ସେହି ସମୟରେ ଦେବାସୁରମାନଙ୍କର ଘୋରତର ବିରୋଧ ଉପସ୍ଥିତ ହେବାରୁ ଦେବରାଜ ଭଗବାନ ଇନ୍ଦ୍ର ଉତ୍ତମ ଅସ୍ତ୍ରଶସ୍ତ୍ର-ନିର୍ମିତ ତ୍ରିଭୁବନ ମଧ୍ୟରେ ବିଚରଣ କଲେ । କୌଣସି ସ୍ଥାନରେ ସୁଦ୍ଧା ଦେବଦ୍ରୋହୀମାନଙ୍କ ବଧର ଉପଯୁକ୍ତ ଅସ୍ତ୍ର ପ୍ରାପ୍ତ ହେଲେ ନାହିଁ । ପରିଶେଷରେ ସେ ଦେବଗଣଙ୍କୁ ଆହ୍ୱାନ ପୂର୍ବକ କହିଲେ, ହେ ସୁରଗଣ ! ଏହି ସମସ୍ତ ମହାସୁରଗଣ ଦଧୀଚିଙ୍କ ଅସ୍ଥି ବିନା ଆମ୍ଭ ଶକ୍ତି ଦ୍ୱାରା କଦାପି ନିହତ ହେବେ ନାହିଁ । ଅତଏବ ତୁମ୍ଭେମାନେ ସମସ୍ତେ ସେହି ମୁନିବରଙ୍କ ନିକଟକୁ ଯାଇ 'ହେ ଦଧୀଚି ! ଆପଣ ସ୍ୱକୀୟ ଅସ୍ଥି ଦାନ କରିବା ହେଉନ୍ତୁ' ଏହି କଥା କହି ତାହାଙ୍କୁ ଅସ୍ଥି ଭିକ୍ଷା କର । ଆମ୍ଭେମାନେ ସେହି ଅସ୍ଥିଦ୍ୱାରା ଶତ୍ରୁମାନଙ୍କୁ ବଧ କରିବୁ । ହେ ମହାରାଜ ! ଅମରଗଣ ଇନ୍ଦ୍ରଙ୍କର ଏହି କଥା ଶୁଣି ଯତ୍ନରେ ଦଧୀଚିଙ୍କ ନିକଟରେ ଅସ୍ଥି ପ୍ରାର୍ଥନା କଲେ । ହେ କୁରୁଶ୍ରେଷ୍ଠ ! ଋଷିବର ସୁରଗଣଙ୍କର ସେହି କଥାରେ କିଛି ବିଚାର ନ କରି ତତ୍କ୍ଷଣାତ୍ ପ୍ରାଣତ୍ୟାଗ କଲେ ଏବଂ ଉକ୍ତ ବିଷୟରେ ଦେବବୃନ୍ଦର ପ୍ରିୟ କର୍ମ କରି ଅକ୍ଷୟ ଲୋକକୁ ଗଲେ ।

ତଦନନ୍ତର ଦେବରାଜ ପ୍ରସନ୍ନ ଚିତ୍ତରେ ଦଧୀଚି ମୁନିଙ୍କ ଅସ୍ଥି ଦ୍ୱାରା ନାନାବିଧ ଅସ୍ତ୍ର ନିର୍ମାଣ କରାଇଲେ । ତାହାଦ୍ୱାରା ବଜ୍ର, ଚକ୍ର, ଗଦା ଓ ଗୁରୁତର ଦଣ୍ଡ ପ୍ରଭୃତି ନାନାବିଧ ପ୍ରହରଣ ନିର୍ମିତ ହେଲା । ପ୍ରଜାପତିଙ୍କ ପୁତ୍ର ମହର୍ଷି ଭୃଗୁଙ୍କର ତୀବ୍ର ତପସ୍ୟା ପ୍ରଭାବରେ ସେହି ଅତିକାୟ, ଅତି ତେଜସ୍ୱୀ ଦଧୀଚି ଉତ୍ପନ୍ନ ହୋଇଥିଲେ । ସେ ନିଜ ମହିମାରେ ଗିରିରାଜ ହିମାଳୟଙ୍କ ଉଚ୍ଚତାକୁ ମଧ୍ୟ ଅବଜ୍ଞା କରିଥିଲେ । ତାଙ୍କର ତେଜୋରାଶି

ପ୍ରଭାବଦ୍ୱାରା ଇନ୍ଦ୍ରଦେବ ସର୍ବଦା ଉଦ୍‌ବିଗ୍ନ ଥିଲେ । ଭଗବାନ ଇନ୍ଦ୍ର ମନ୍ତ୍ର ଉଚ୍ଚାରଣପୂର୍ବକ ବ୍ରହ୍ମତେଜୋଦ୍ଭବ ଅସ୍ଥିମୟ ସେହି ବଜ୍ରପ୍ରୟୋଗଦ୍ୱାରା ନବ ନବତିସଂଖ୍ୟକ ଦୈତ୍ୟ ଦାନବମାନଙ୍କୁ ସଂହାର କଲେ ।

ରାଜନ୍ ! ତଦନନ୍ତର କିୟତ୍‌କାଳ ବିଗତ ହେବାରୁ ଦ୍ୱାଦଶ ବର୍ଷ-ବ୍ୟାପିନୀ ଅନାବୃଷ୍ଟି ଉପସ୍ଥିତ ହେଲା । ଉକ୍ତ ଅନାବୃଷ୍ଟି ସମୟରେ ମହର୍ଷିଗଣ କ୍ଷୁଧାର୍ତ୍ତ ହୋଇ ଜୀବିକା ନିମିତ୍ତ ନାନା ଦିଗକୁ ଧାବିତ ହେଲେ । ତେତେବେଳେ ସାରସ୍ୱତ ମୁନି ସେମାନଙ୍କୁ ନାନାଦିଗକୁ ବିଦ୍ରୁତ ଓ ପଳା-ୟିତ ହେଉଥିବାର ଦେଖି ନିଜେ ମଧ୍ୟ ସ୍ୱସ୍ଥାନରୁ ପଳାୟନ କରିବାକୁ ଇଚ୍ଛୁକ ହେଲେ । ହେ ଭାରତ ! ସରସ୍ୱତୀ ନିଜ ପୁତ୍ରଙ୍କୁ ପଳାୟନ ବିଷୟରେ ପ୍ରସ୍ତୁତ ହେବାର ଦେଖି କହିଲେ, "ହେ ପୁତ୍ର ! ତୁମ୍ଭେ ଏହି ସ୍ଥାନରୁ ଯାଅନା । ଆମ୍ଭେ ତୁମ୍ଭର ଆହାର ନିମିତ୍ତ ସର୍ବଦା ଉତ୍ତମ ମତ୍ସ୍ୟସମୂହ ଯୋଗାଇ ଦେବୁ । ଅତଏବ ଏଠାରେ ବାସ କର ।" ସାରସ୍ୱତ ମୁନି ସରସ୍ୱତୀଙ୍କ ଉକ୍ତ ବାକ୍ୟ ଶ୍ରବଣ କରି ପିତୃଗଣ ଓ ଅମରଗଣଙ୍କୁ ତର୍ପଣ କରି ପ୍ରତିଦିନ ଯେଉଁ ଆହାର ପ୍ରାପ୍ତ ହେଲେ, ତାହାଦ୍ୱାରା ପ୍ରାଣଧାରଣ ଓ ବେଦସ୍ମରଣ ପୂର୍ବକ ଅବସ୍ଥାନ କଲେ ।

ତପୂରେ ସେହି ଅନାବୃଷ୍ଟିର ସମୟ ଅତୀତ ହୁଅନ୍ତେ ମହର୍ଷିଗଣ ପୁନଶ୍ଚ ବେଦାଧ୍ୟୟନ ନିମିତ୍ତ ପରସ୍ପର ପ୍ରଶ୍ନ କଲେ । ସେମାନେ ଅନାବୃଷ୍ଟି ସମୟରେ କ୍ଷୁଧାର୍ତ୍ତ ହୋଇ ଗୃହଦିଗରେ ପର୍ଯ୍ୟଟନ କରିଥିବାରୁ ସେମାନଙ୍କର ପଠିତ ବେଦସବୁ ବିସ୍ମୃତ ହୋଇଥିଲେ । ତେତେବେଳେ ସେମାନଙ୍କ ମଧ୍ୟରେ କାହାରି ସୁଦ୍ଧା ପ୍ରତିଭା ନ ଥିଲା । କିଛିକାଳ ପରେ ସେମାନଙ୍କ ମଧ୍ୟରୁ ଜଣେ ଋଷି ସାରସ୍ୱତ ମୁନିଙ୍କ ନିକଟକୁ ଯାଇଥିଲେ । ତେତେବେଳେ ସେହି ଋଷିବର ବ୍ରତପ୍ରିୟ ହୋଇ ବେଦ ପାଠ କରୁଥିଲେ । ସେହି ଋଷି ତାହାଙ୍କୁ ଦେଖି ସେଠାରୁ ଗମନ କରି ଅନ୍ୟାନ୍ୟ ଋଷିମାନଙ୍କୁ କହିଲେ, ଏହି ନିର୍ଜନ ବନରେ ମହା ତେଜସ୍ୱୀ ସାରସ୍ୱତ ମୁନି ଏକାକୀ ଦେବତା ସଦୃଶ ବେଦାଧ୍ୟୟନ କରୁଅଛନ୍ତି । ଋଷି ଏହି କଥା କହିଲା ଉତ୍ତାରେ ଅନ୍ୟାନ୍ୟ ମହର୍ଷିମାନେ ତାହାଙ୍କ ନିକଟକୁ ଯାଇ ସାରସ୍ୱତଙ୍କୁ କହିଲେ, ହେ ମୁନିବର ! ଆପଣ ଆମ୍ଭଙ୍କୁ ବେଦ ଅଧ୍ୟାପନା କରିବା ହୁଅନ୍ତୁ । ସାରସ୍ୱତ କହିଲେ, ତେବେ ତୁମ୍ଭେମାନେ ସମସ୍ତେ ଯଥାବିଧାନରେ ଆମ୍ଭର

ଶିଷ୍ୟତ୍ୱ ସ୍ୱୀକାର କର । ମୁନିଗଣ କହିଲେ, ହେ ବତ୍ସ ! ତୁମ୍ଭେ ନିତାନ୍ତ ବାଳକ । ଅତଏବ ଆମ୍ଭେମାନେ କପରି ତୁମ୍ଭର ଶିଷ୍ୟ ହେବୁ ?

ସେ ମୁନିଗଣଙ୍କର ଏହି ବାକ୍ୟ ଶ୍ରବଣ କରି ପୁନଶ୍ଚ ସେମାନଙ୍କୁ କହିଲେ, ହେ ଋଷିଗଣ ! ଆମ୍ଭର ଧର୍ମ ନଷ୍ଟ ନୋହୁ । ଯେଉଁ ବ୍ୟକ୍ତି ଶିଷ୍ୟତ୍ୱ ଅସ୍ୱୀକାରୀ ଲୋକଙ୍କୁ ବେଦ ପାଠ କରାନ୍ତି, ଯେଉଁ ବ୍ୟକ୍ତି ଶିଷ୍ୟତ୍ୱ ସ୍ୱୀକାର ନ କରି ଗୁରୁଙ୍କଠାରୁ ବେଦ ଅଧ୍ୟୟନ କରନ୍ତି, ସେହି ଉଭୟ ବ୍ୟକ୍ତିଙ୍କ ଧର୍ମ ନଷ୍ଟ ହୁଏ ଓ ସେହି ଦୁହେଁ ପରସ୍ପରର ଶତ୍ରୁ ହୁଅନ୍ତି । ଋଷିଗଣ ଧନ, ବନ୍ଧୁ, କେଶର ଶୁକ୍ଳତା ଓ ବୟସର ଅଧିକତା ଦ୍ୱାରା କଦାପି ଗୁରୁତ୍ୱ ଲାଭ କରି ପାରନ୍ତି ନାହିଁ । ଯେଉଁ ବ୍ୟକ୍ତି ବେଦର ପ୍ରବଚନ କରିବାକୁ ସମର୍ଥ, ଆମ୍ଭ ମତରେ ସେହି ବ୍ୟକ୍ତି ଗୁରୁ ହେବାର ଉପଯୁକ୍ତ । ମୁନିଗଣ ତାହାଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଯଥା-ବିଧାନରେ ଶିଷ୍ୟତ୍ୱ ସ୍ୱୀକାର ପୂର୍ବକ ବେଦାଧ୍ୟୟନ ଦ୍ୱାରା ପୁନଶ୍ଚ ଧର୍ମା-ଚରଣରେ ପ୍ରବୃତ୍ତ ହେଲେ । ଷଷ୍ଟି ସହସ୍ର ମୁନି ବେଦାଧ୍ୟୟନ ନିମିତ୍ତ ବ୍ରହ୍ମର୍ଷି ସାରସ୍ୱତଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଥିଲେ । ସେହି ମୁନିବର ବସିବା ନିମିତ୍ତ ସେମାନେ ସମସ୍ତେ ମୁଷ୍ଟି ମୁଷ୍ଟି ପରିମିତ କୁଶ ଆହରଣ କରିଥିଲେ । ସାରସ୍ୱତ ବାଳକ ହେଲେ ସୁଦ୍ଧା ସମସ୍ତ ଷଷ୍ଟି ସହସ୍ର ଋଷିବୃନ୍ଦ ତାହାଙ୍କର ବଶୀଭୂତ ହେଲେ । ୫୨ । ହେ ମହାରାଜ ! ରୋହିଣୀଙ୍କ ପୁତ୍ର କୃଷ୍ଣଙ୍କ ଅଗ୍ରଜ ମହାବଳ ବଳଦେବ ସେଠାରୁ ବହୁଳ ବିତ୍ତ ବିତରଣ ପୂର୍ବକ ଆନ-ନ୍ଦିତ ହୋଇ ଯେଉଁ ସ୍ଥାନରେ ଜଣେ ବୃଦ୍ଧା କୁମାରୀ କନ୍ୟା ବାସ କରିଥିଲେ, କ୍ରମେ ସେହି ବିଖ୍ୟାତ ଅତି ଉତ୍କୃଷ୍ଟ ମହାତୀର୍ଥକୁ ଗମନ କଲେ ।୫୩।

---

# ଅଧ୍ୟାୟ—୫୨

ଜନମେଜୟ କହିଲେ—ଭଗବନ୍ ! ପୂର୍ବକାଳରେ ସେହି କୁମାରୀ କେଉଁ ପ୍ରକାରେ ତାଦୃଶ ତପୋଯୁକ୍ତ ହୋଇଥିଲେ ? କେଉଁ କାରଣରେ ତପସ୍ୟା କରିଥିଲେ, ଏବଂ ତାହାଙ୍କ ନିୟମ କିପରି ଥିଲା ? ୧ । ହେ ଭଗବନ୍ ! ଆପଣଙ୍କ ମୁଖରୁ ଅତି ଦୁଷ୍କର ଅତି ଉତ୍କୃଷ୍ଟ ବିଷୟ ଶୁଣିଲୁଁ । ଅତଏବ ସେହି କନ୍ୟା ଯେ କେଉଁପରି ତପସ୍ୟାରେ ନିଯୁକ୍ତ ହୋଇଥିଲେ, ଯଥାର୍ଥ ରୂପେ ସେହି ସମସ୍ତ ବୃତ୍ତାନ୍ତ ଆମ୍ଭଙ୍କୁ କହିବା ହେଉନ୍ତୁ । ବୈଶମ୍ପାୟନ କହିଲେ, ମହାରାଜ ! ପୂର୍ବକାଳରେ ଗର୍ଗ-ବଂଶୀୟ କୁଣିନାମା ଜଣେ ମହାଯଶା ଓ ମହାବୀର୍ଯ୍ୟଶାଳୀ ଋଷି ଥିଲେ । ସେହି ତପସ୍ୱୀ ଉତ୍କୃଷ୍ଟ ତପସ୍ୟାଚରଣ କରି ମାନସୀ ଶକ୍ତିଦ୍ୱାରା ଗୋଟିଏ ମନୋହାରିଣୀ କନ୍ୟା ଉତ୍ପାଦନ କରିଥିଲେ । ମହାଯଶା ଗର୍ଗନନ୍ଦନ କୁଣି ସେହି କନ୍ୟାଙ୍କୁ ଅବଲୋକନ କରି ପରମ ପ୍ରୀତ ହୋଇଥିଲେ । କିଛୁଦିନ ଉତ୍ତାରେ ସେହି ମହାଯଶା ପୃଥିବୀରେ କଳେବର ତ୍ୟାଗପୂର୍ବକ ସ୍ୱର୍ଗକୁ ଗମନ କଲେ । ତତ୍ପରେ ସେହି ଅନିନ୍ଦନୀୟା ପଦ୍ମନୟନା କଲ୍ୟାଣୀ ଉଗ୍ରତର ତପସ୍ୟା ପ୍ରଭାବରେ ଆଶ୍ରମ ନିର୍ମାଣ ପୂର୍ବକ ଉପବାସ କରି ପିତୃଗଣ ଓ ଦେବଗଣଙ୍କ ପୂଜାରେ ତତ୍ପର ହେଲେ । ୬ ।

ହେ ନୃପବର ! ତାହାଙ୍କର ଏହିପରି କଠୋର ତପସ୍ୟାଦ୍ୱାରା ବହୁକାଳ ଅତୀତ ହେଲା । ସେହି ଅନିନ୍ଦିତା ପିତାଙ୍କଦ୍ୱାରା ପ୍ରଦତ୍ତ ହେବା ନିମିତ୍ତ ନିଜସଦୃଶ ସ୍ୱାମୀ ଦେଖିଲେ ନାହିଁ । ତତ୍ପରେ ଉଗ୍ର ତପସ୍ୟାଦ୍ୱାରା ସ୍ୱକୀୟ ଶରୀରକୁ ପୀଡ଼ା ଦେଇ ନିର୍ଜନ ବନ ମଧ୍ୟରେ କେବଳ ପିତୃଗଣ ଓ ଦେବଗଣଙ୍କ ଅର୍ଚ୍ଚନା କାର୍ଯ୍ୟରେ ସର୍ବଦା ଆସକ୍ତା ରହିଲେ ଏବଂ ସେ ଏହିପରି ଶ୍ରମସାଧ୍ୟ କାର୍ଯ୍ୟ ସମ୍ପାଦନ ପୂର୍ବକ ଆପଣାକୁ କୃତକୃତ୍ୟ ଜ୍ଞାନ କଲେ । ୯ । କ୍ରମେ କ୍ରମେ ତାହାଙ୍କର ତପୋବୃଦ୍ଧି ଅନୁସାରେ ବୟୋବୃଦ୍ଧି ହେବାରୁ ବାର୍ଦ୍ଧକ୍ୟ ଦଶା ଉପସ୍ଥିତ ହେଲା । ପରିଶେଷରେ ଯେତେବେଳେ ତାହାଙ୍କର ଗୋଟିଏ ପାଦ ଚଳାଇବାକୁ ଶକ୍ତି ନ ହେଲା, ସେତେବେଳେ ସେ ପରଲୋକଗାମିନୀ ହେବାକୁ ଇଚ୍ଛା କଲେ । ତତ୍ସମୟରେ ମହର୍ଷି ନାରଦ ସେଠାରେ ପ୍ରବେଶ କରି ତାଙ୍କ କଳେବର ତ୍ୟାଗ ଇଚ୍ଛା ଦେଖି କହିଲେ, ହେ ନିଷ୍ପାପେ ! ତୁମ୍ଭେ ଅସଂସ୍କୃତା, ଅତଏବ ଅସଂସ୍କୃତା

କନ୍ୟାର କଦାପି ସଦ୍‌ଗତି ହୁଏ ନାହିଁ । ହେ ମହାବ୍ରତେ ! ଆମ୍ଭେମାନେ ଦେବଲୋକରେ ଏହିପରି ଶୁଣିଅଛୁଁ ଯେ ତୁମ୍ଭେ ପରମ ତପସ୍ୟାର ଫଳ ପ୍ରାପ୍ତ ହୋଇଅଛ ସତ୍ୟ, କିନ୍ତୁ କୌଣସି ଲୋକକୁ ଜୟ କରିବା ନିମିତ୍ତ ସମର୍ଥ ହେବ ନାହିଁ ।

୨ ତପସ୍ୱିନୀ ତେତେବେଳେ ନାରଦ ମୁନିଙ୍କର ସେହି ବାକ୍ୟ ଶୁଣି ଋଷିସଭା ମଧ୍ୟରେ ସେହି ଋଷିବରଙ୍କୁ ସମ୍ବୋଧନ କରି କହିଲେ, ହେ ସାଧୁଶ୍ରେଷ୍ଠ ! ଏତେବେଳେ ଯେ ଆମ୍ଭର ପାଣିଗ୍ରହଣ କରିବେ, ଆମ୍ଭେ ତାହାଙ୍କୁ ତପସ୍ୟାର ଅର୍ଦ୍ଧଭାଗ ଦେବାକୁ ସ୍ୱୀକାର କରୁଅଛୁଁ । କନ୍ୟା ଏହି କଥା କହିଲା ଉତ୍ତାରେ ଗାଲବଙ୍କ ପୁତ୍ର ଶୃଙ୍ଗବାନ୍ ନାମକ ଜଣେ ଋଷି ପ୍ରଥମରେ ତାହାଙ୍କ ପାଣିଗ୍ରହଣ କଲେ ଓ ପ୍ରତିଜ୍ଞା କରି କହିଲେ, ହେ ଶୋଭନାଙ୍ଗି ! ଆମ୍ଭେ ଏହି ପଣହାରି ତୁମ୍ଭର ପାଣି ସ୍ପର୍ଶ କରୁଅଛୁଁ ଯେ ତୁମ୍ଭେ ଆମ୍ଭ ସହିତ ଗୋଟିଏ ରାତ୍ର ବାସ କରିବ । କନ୍ୟା ତାହା ସ୍ୱୀକାର କରି ସେହି ଋଷିଙ୍କୁ ପାଣି ପ୍ରଦାନ କଲେ । ୧୬ । ଗାଲବଙ୍କ ପୁତ୍ର ତେତେବେଳେ ଯଥାବିଧାନରେ ଅଗ୍ନିରେ ଆହୁତି ପ୍ରଦାନପୂର୍ବକ ତାହାଙ୍କ ପାଣିଗ୍ରହଣ କରି ଉଦ୍‌ବାହ କାର୍ଯ୍ୟ ସମାଧା କଲେ । ୧୭ । ହେ ମହାରାଜ ! ତତ୍ପରେ ରାତ୍ରି ସମୟରେ ସେହି ବରବର୍ଣ୍ଣିନୀ ମନୋହର ବସନ ଭୂଷଣ ପରିଧାନ ଓ ଦିବ୍ୟ ଗନ୍ଧ ଏବଂ ପବିତ୍ର ମାଲ୍ୟ ଧାରଣପୂର୍ବକ ତରୁଣୀ ହେଲେ । ୧୮ । ଋଷି ତାହାଙ୍କ ପରମ ସୌନ୍ଦର୍ଯ୍ୟ ଦେଖି ଅତିଶୟ ପ୍ରୀତ ହୋଇ ସେହି କାମିନୀଙ୍କ ସହିତ ଗୋଟିଏ ରାତ୍ର ପରମ ସୁଖରେ ଯାପନ କଲେ ।

ପ୍ରଭାତ ସମୟରେ ସେହି କନ୍ୟା ଋଷିଙ୍କୁ ସମ୍ବୋଧନ କରି କହିଲେ, ହେ ତପସ୍ୱିବର ! ତୁମ୍ଭେ ଆମ୍ଭ ନିକଟରେ ଯେଉଁପରି ପ୍ରତିଜ୍ଞା କରିଥିଲ, ଆମ୍ଭେ ତଦନୁସାରେ ତୁମ୍ଭ ସହିତ ଗୋଟିଏ ରାତ୍ର ଯାପନ କଲୁଁ । ତୁମ୍ଭର ମଙ୍ଗଳ ହେଉ । ଆମ୍ଭେ ଏତେବେଳେ ଯାଉଅଛୁଁ । କନ୍ୟା ଋଷିଙ୍କ ଅନୁମତି ପ୍ରାପ୍ତ ହୋଇ ପୁନଶ୍ଚ କହିଲେ, ଯେଉଁ ବ୍ୟକ୍ତି ସ୍ଥିରଚିତ୍ତ ହୋଇ ଏହି ତୀର୍ଥରେ ଦେବତାମାନଙ୍କୁ ପରିତୃପ୍ତ କରି ଗୋଟିଏ ରାତ୍ର ବାସ କରିବେ, ସେ ଚତୁଃଷଷ୍ଟି ବର୍ଷର ଉପାର୍ଜିତ ବ୍ରହ୍ମଚର୍ଯ୍ୟ ବ୍ରତର ଫଳ ଲାଭ କରିବେ । ସାଧ୍ୱୀ ଏହିପରି କହି ପରିଶେଷରେ ତନୁତ୍ୟାଗପୂର୍ବକ ସୁରପୁରକୁ ଗମନ କଲେ । ଋଷି ତାହାଙ୍କର ଅଲୌକିକ ସୌନ୍ଦର୍ଯ୍ୟ ଚିନ୍ତା କରି ଧ୍ୟାନ ଭାବରେ କାଳହରଣ କଲେ । ସେ ପ୍ରତିଜ୍ଞା ଅନୁସାରେ ଅତି କଷ୍ଟରେ ତପସ୍ୟ

ତପସ୍ୟାର ଅର୍ଦ୍ଧଭାଗ ପ୍ରତିଗ୍ରହଣ କଲେ । ପରିଶେଷରେ ତାହାଙ୍କର ରୂପ-ଲାବଣ୍ୟରେ ବିମୋହିତ ହୋଇ ଅତି ଦୁଃଖିତ ମନରେ ଆତ୍ମସାଧନପୂର୍ବକ ତାହାଙ୍କ ପାରଲୌକିକ ଗତି ଅନୁଗତ ହେଲେ ।

ହେ ମହାରାଜ ! ବୃଦ୍ଧା କନ୍ୟାଙ୍କର ଏହି ଉତ୍କୃଷ୍ଟ ଚରିତ୍ର, ବ୍ରହ୍ମଚର୍ଯ୍ୟ ଏବଂ ସ୍ୱର୍ଗଗମନ ବିଷୟ ଆପଣଙ୍କୁ କହିଲୁଁ । ହଳଧର ସେହି ସ୍ଥାନରେ ଅବସ୍ଥାନ କରି ଶଲ୍ୟଙ୍କ ନିଧନ ସମ୍ବାଦ ଶୁଣିଲେ । ହେ ଶତ୍ରୁତାପନ ! ସେ ସେଠାରେ ଦ୍ୱିଜମାନଙ୍କୁ ଧନଦାନ କରି ସମନ୍ତପଞ୍ଚକ ଦ୍ୱାରରୁ ନିର୍ଗତ ହୋଇ ଋଷିମାନଙ୍କୁ କୁରୁକ୍ଷେତ୍ର ଫଳ ପଚାରିଲେ । ମହାନୁଭବ ଋଷିଗଣ ଯଦୁଶ୍ରେଷ୍ଠ ବଳଦେବଙ୍କ ମୁଖରୁ କୁରୁକ୍ଷେତ୍ରୀୟ ଫଳ ସମ୍ବନ୍ଧୀୟ ପ୍ରଶ୍ନ ଶୁଣି ତାହାଙ୍କ ସମ୍ମୁଖରେ ଯଥାର୍ଥ ରୂପେ ସମସ୍ତ ବୃତ୍ତାନ୍ତ କହିଲେ । ୨୯ ।

---

## ଅଧ୍ୟାୟ—୫୩

ଋଷିଗଣ କହିଲେ—ହେ ରାମ ! ଏହି ସମନ୍ତପଞ୍ଚକ ପ୍ରଜାପତିଙ୍କର ସନାତନୀ ଉତ୍ତରବେଦୀ ବୋଲି ଖ୍ୟାତ ହୋଇଅଛି । ପୂର୍ବକାଳରେ ମହାବରପ୍ରଦ ଦେବଗଣ ଏହି ସ୍ଥାନରେ ପ୍ରଧାନ ପ୍ରଧାନ ଯଜ୍ଞଦ୍ୱାରା ଯାଗନିଷ୍ଠ ହୋଇଥିଲେ ଓ ଅସାଧାରଣ ବୁଦ୍ଧିଶାଳୀ ଅମିତତେଜସ୍ୱୀ ମହାତ୍ମା ରାଜର୍ଷି କୁରୁ ବହୁବର୍ଷ ପର୍ଯ୍ୟନ୍ତ ଏହି ସ୍ଥାନକୁ କର୍ଷଣ କରିଥିଲେ । ଏହି ହେତୁରୁ ଏହି ସ୍ଥାନର ନାମ କୁରୁକ୍ଷେତ୍ର ହୋଇଅଛି । ବଳଦେବ କହିଲେ, ହେ ତପୋଧନଗଣ ! ମହାତ୍ମା କୁରୁ ଯେଉଁ ନିମିତ୍ତ ଏହି କ୍ଷେତ୍ରକୁ କର୍ଷଣ କରିଥିଲେ, ଆମ୍ଭେ ତାହା ଶୁଣିବାକୁ ଇଚ୍ଛା କରୁଅଛୁ । ୩ ।

ଋଷିଗଣ କହିଲେ, ହେ ରାମ ! ପୂର୍ବକାଳରେ ଯେତେବେଳେ କୁରୁରାଜା ଏହି କ୍ଷେତ୍ରକୁ କର୍ଷଣ କରୁଥିଲେ, ତତ୍ସମୟରେ ଦେବରାଜ ଇନ୍ଦ୍ର ସ୍ୱର୍ଗଭୁବନରୁ ଏହି ସ୍ଥାନକୁ ଆସି ତାହାଙ୍କୁ କର୍ଷଣର କାରଣ ଯାହା ପଚାରିଥିଲେ, ତାହା କହୁଅଛୁ, ଶୁଣିବା ହେଉନ୍ତୁ । ୪ । ଇନ୍ଦ୍ର କହିଲେ, ହେ ରାଜର୍ଷି ! ଏ କି କାର୍ଯ୍ୟ ହେଉଅଛି ? ଆପଣ ଏହିପରି ଦୃଢ଼ତର ଯତ୍ନରେ କେଉଁ ଅଭିପ୍ରାୟରେ ଏହି ଭୂମି କର୍ଷଣ କରୁଅଛନ୍ତି ? କୁରୁରାଜା କହିଲେ, ହେ ଦେବରାଜ ! ଏହି କ୍ଷେତ୍ରରେ ଯେଉଁ ନରମାନେ ପ୍ରାଣତ୍ୟାଗ

କରିବେ, ସେମାନେ ପାପଶୂନ୍ୟ ସୁକୃତ ଲୋକକୁ ଅନାୟାସରେ ଗମନ କରିବେ । ୬ । ଇନ୍ଦ୍ରଦେବ କୁରୁରାଜଙ୍କର ଏହିପରି ବାକ୍ୟକୁ ଉପହାସ କରି ସ୍ୱର୍ଗକୁ ଗଲେ । ରାଜର୍ଷି କୁରୁ ଅକ୍ଷୁଣ୍ଣ ଚିତ୍ତରେ ପୂର୍ବପରି ପୃଥିବୀ କର୍ଷଣ କରିଲେ । ୭ । ଦେବରାଜ ବାରମ୍ବାର ଗମନାଗମନ କରି କୁରୁରାଜଙ୍କୁ ପୂର୍ବ-ବର୍ତ୍ତି ପ୍ରଶ୍ନ ପଚାରୁଥିଲେ ଓ ଅଟ୍ଟହାସ କରି ସ୍ୱସ୍ଥାନଗାମୀ ହେଉଥିଲେ । ୮ । ପରିଶେଷରେ ରାଜା ଯେତେବେଳେ ଉଗ୍ରତର ତପସ୍ୟା ଦ୍ୱାରା ପୃଥିବୀକୁ ଏକାବେଳକେ କର୍ଷଣ କଲେ, ସେତେବେଳେ ପୁରନ୍ଦର ଦେବ ଦେବଗଣଙ୍କୁ ରାଜର୍ଷିଙ୍କର ବୃତ୍ତାନ୍ତ ଜଣାଇଲେ ।୯।

ସୁରଗଣ ତାହା ଶ୍ରବଣ କରି ଦେବରାଜଙ୍କୁ କହିଲେ, ହେ ଶକ୍ର ! ତୁମ୍ଭେ ଯଦି କୌଣସି ବରଦାନ ଦ୍ୱାରା ରାଜର୍ଷିଙ୍କୁ ଉକ୍ତ କାର୍ଯ୍ୟରୁ ନିବୃତ୍ତ କରିପାର, ତେବେ ସେ ବିଷୟରେ ଯତ୍ନଶୀଳ ହୁଅ । ନରଗଣ ଯଦି ଆମ୍ଭ-ମାନଙ୍କୁ ଯଜ୍ଞ ପ୍ରଭୃତି ଦ୍ୱାରା ପରିତୁଷ୍ଟ ନ କରି ସ୍ୱର୍ଗଗାମୀ ହେବେ, ତେବେ ଆମ୍ଭମାନଙ୍କର ଯଜ୍ଞଭାଗ ସବୁ ଏକାବେଳକେ ଲୁପ୍ତ ହେବ । ୧୧ । ଦେବରାଜ ଅମରଗଣଙ୍କ କଥା ଅନୁସାରେ ରାଜର୍ଷିଙ୍କ ନିକଟକୁ ଆସି କହିଲେ, ହେ ରାଜର୍ଷି ! ତୁମ୍ଭେ ବୃଥା ଖେଦ କରନା । ଆମ୍ଭେ ଯାହା କହୁ-ଅଛୁ, ତଦନୁସାରେ କାର୍ଯ୍ୟ କର । ହେ ରାଜେନ୍ଦ୍ର ! ଯେଉଁ ନରଗଣ ନିରାହାରରେ ଏଠାରେ ତନୁତ୍ୟାଗ କରିବେ, ସେମାନେ ଯେ ସ୍ୱର୍ଗଗାମୀ ହେବେ ଏହା ଅଧିକ ଆଶ୍ଚର୍ଯ୍ୟଜନକ ନୁହେଁ । ଯେଉଁମାନେ ତିର୍ଯ୍ୟକର ଯୋନି ପ୍ରାପ୍ତ ହୋଇ ସୁଦ୍ଧା ଯୁଦ୍ଧରେ ହତ ହେବେ, ସେମାନେ ସ୍ୱର୍ଗଗାମୀ ହେବାକୁ ଯଥାର୍ଥ ଉପଯୁକ୍ତ । କୁରୁରାଜ ତଥାସ୍ତୁ ବୋଲି କହି ଦେବରାଜଙ୍କ କଥାରେ ସମ୍ମତ ହେଲେ । ବଳାସୁରଶତ୍ରୁ ଶକ୍ର ତାହାଙ୍କୁ ଏହିପରି ଅନୁଜ୍ଞା କରି ଅତି ଶୀଘ୍ର ପ୍ରସନ୍ନ ମନରେ ପୁନଶ୍ଚ ସୁରଲୋକକୁ ଗମନ କଲେ ।

ହେ ଯଦୁପ୍ରବର ! ପୂର୍ବକାଳରେ ରାଜର୍ଷି କୁରୁ ଏହିପରି ସେ କ୍ଷେତ୍ରକୁ କର୍ଷଣ କରିଥିଲେ । ବ୍ରହ୍ମାଦି ଅମରଗଣ ଓ ଦେବରାଜ ଇନ୍ଦ୍ର ଅନୁଜ୍ଞା କରି-ଥିଲେ ଯେ ଭୂମଣ୍ଡଳରେ ଏହା ଅପେକ୍ଷା ଆଉ ପବିତ୍ର ସ୍ଥାନ ହେବ ନାହିଁ । ଯେଉଁ ନରବୃନ୍ଦ ଏହି ସ୍ଥାନରେ ପରମ ତପସ୍ୟା କରିବେ, ସେମାନେ ତନୁ ତ୍ୟାଗ ସମୟରେ ବ୍ରହ୍ମଲୋକଗାମୀ ହେବେ । ଯେଉଁ ସମସ୍ତ ପୁଣ୍ୟାତ୍ମା ନର-କୁଳ ଏହି ସ୍ଥାନରେ ଦାନ କରିବେ, ସେମାନଙ୍କର ସେହି ଦାନର ଫଳ ଅଳ୍ପକାଳ ମଧ୍ୟରେ ସହସ୍ର ଗୁଣ ହେବ; ଓ ଯେଉଁ ସମସ୍ତ ଶୁଭାଭିଳାଷୀ ନର-

ଗଣ ସର୍ବଦା ଏହି ସ୍ଥାନରେ ବାସ କରିବେ, ସେମାନେ କଦାପି ଯମଯନ୍ତ୍ରଣା ଭୋଗ କରିବେ ନାହିଁ । ଯେଉଁ ସମସ୍ତ ନରକୁଳ ଏହି ସ୍ଥାନରେ ଅତି ଉତ୍କୃଷ୍ଟ ଯାଗ କରିବେ, ସେମାନେ ଭୂମଣ୍ଡଳରେ ଥିବା ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରିବେ ।

ହେ ବଳଦେବ ! ସୁରପତି ଶତକ୍ରତୁ ସ୍ୱୟଂ ଏହି ସ୍ଥାନରେ କୁରୁକ୍ଷେତ୍ର ସମ୍ବନ୍ଧରେ ଯେଉଁ ଗାଥା ଗାନ କରିଥିଲେ, ତାହା ମଧ୍ୟ କହୁଅଛୁଁ, ଶୁଣିବା ହେଉନ୍ତୁ । କୁରୁକ୍ଷେତ୍ରର ଧୂଳିସମୂହ ପବନ ବେଗରେ ଉଡ୍ଡୀନ ହୋଇ ଯଦି ପାତକୀମାନଙ୍କ ଦେହରେ ପଡ଼ିବ, ତେବେ ସେମାନେ ପରମ-ଗତି ପ୍ରାପ୍ତ ହେବେ । ହେ ଯଦୁନନ୍ଦନ ! ଅମରଗଣ, ଦ୍ୱିଜବରଗଣ ଓ ନୃଗ ଆଦି ପ୍ରଧାନ ପ୍ରଧାନ ପୁରୁଷସିଂହ ନୃପତି ବହୁମୂଲ୍ୟ ଯାଗ ପ୍ରଭୃତି ଦ୍ୱାରା ଏହି ସ୍ଥାନରେ ଦେହତ୍ୟାଗ କରି ସଦ୍‌ଗତି ପ୍ରାପ୍ତ ହୋଇଅଛନ୍ତି । ତରନ୍ତୁକ, ଅରନ୍ତୁକ, ରାମହ୍ରଦ ଓ ମଚକ୍ରୁକ ହ୍ରଦର ମଧ୍ୟସ୍ଥଳକୁ କୁରୁକ୍ଷେତ୍ର ପଞ୍ଚକ କହନ୍ତି । ତାହା ପ୍ରଜାପତିଙ୍କର ଉତ୍ତରବେଦୀ ନାମରେ ମଧ୍ୟ ଖ୍ୟାତ ଅଟେ । ଏହି ସ୍ଥାନ ଉତ୍କୃଷ୍ଟ କଲ୍ୟାଣଦାୟକ, ମହାପୁଣ୍ୟମୟ ଓ ସର୍ବଗୁଣଯୁକ୍ତ ଅଟେ ବୋଲି ଦେବତାମାନଙ୍କ ଦ୍ୱାରା ସମ୍ମତ ହୋଇଅଛି । ଅତଏବ ଏହି ସ୍ଥାନରେ ଯେଉଁ ନରପାଳକମାନେ ଯୁଦ୍ଧ କରି ହତ ହେବେ, ସେମାନେ ପବିତ୍ର ଅକ୍ଷୟ ଗତି ପ୍ରାପ୍ତ ହେବେ । ୨୫ । ଦେବରାଜ ଇନ୍ଦ୍ର କୁରୁକ୍ଷେତ୍ର ମହିମାକୁ ଏହିପରି ବର୍ଣ୍ଣନା କଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ସମସ୍ତ ଅମରଗଣ ତାହା ଅନୁମୋଦନ କଲେ । ୨୬ ।

---

## ଅଧ୍ୟାୟ—୫୪

ବୈଶମ୍ପାୟନ କହିଲେ—ହେ ଜନ୍ମେଜୟ ! ବଳଦେବ କୁରୁକ୍ଷେତ୍ର ଦର୍ଶନ ପୂର୍ବକ ସେଠାରେ ବହୁ ବିତ୍ତ ବିତରଣ କରି ଗୋଟିଏ ମନୋହର ଅତି ମହତ୍ ଆଶ୍ରମକୁ ଗଲେ । ସେହି ଆଶ୍ରମ ଆମ୍ରବନ, ମହୁଲ, ବଟ, ପ୍ଳକ୍ଷ, ତିରି ବିଲ୍ୱ, ପନସ ଓ ଅର୍ଜ୍ଜୁନ ପ୍ରଭୃତି ନାନାବିଧ ତରୁକୁଳରେ ଅତିଶୟ ଶୋଭିତ ଓ ଅତି ପବିତ୍ର ଥିଲା । ବଳଦେବ ପୂର୍ଣ୍ଣଲକ୍ଷଣଯୁକ୍ତ ଆଶ୍ରମକୁ ଦେଖି ତତ୍ରତ୍ୟ ଋଷିମାନଙ୍କୁ ପଚାରିଲେ, ହେ ଋଷିଗଣ ! ଏହି ଉତ୍କୃଷ୍ଟ

ଆଶ୍ରମ କାହାର ଅଟେ ? ହେ ମହାରାଜ ! ସେହି ସମସ୍ତ ମହାତ୍ମା ମୁନିଗଣ ହଳାୟୁଧଙ୍କୁ ସମ୍ବୋଧନ କରି କହିଲେ, ହେ ରାମ ! ଏହି ଆଶ୍ରମ ପୂର୍ବେ ଯାହାଙ୍କର ଥିଲା, ତାହା ବିସ୍ତାର କରି କହୁଅଛୁଁ, ଶୁଣିବା ହେଉନ୍ତୁ ।୪ ।

ପୂର୍ବକାଳରେ ଭଗବାନ ବିଷ୍ଣୁ ଏହି ସ୍ଥାନରେ ଉତ୍ତମ ତପସ୍ୟା କରିଥିଲେ । ଏହି ସ୍ଥାନରେ ତାହାଙ୍କର ସନାତନ ଯଜ୍ଞସମୂହ ଯଥା-ବିଧାନରେ ସମ୍ପନ୍ନ ହୋଇଥିଲା । ଏହି ସ୍ଥାନରେ କୌମାର ବ୍ରହ୍ମଚାରିଣୀ ଓ ତପସ୍ୱିନୀ ଜଣେ ବ୍ରାହ୍ମଣୀ ଯୋଗବଳରେ ତପସ୍ୟାରେ ସିଦ୍ଧିଲାଭ କରି ସ୍ୱର୍ଗପୁରକୁ ଗଲେ । ହେ ରାଜନ୍ ! ମହାତ୍ମା ଶାଣ୍ଡିଲ୍ୟ ମୁନିଙ୍କର ଶ୍ରୀମତୀ ନାମରେ ଗୋଟିଏ ପତିବ୍ରତା ଦୁହିତା ଥିଲେ । ଏହି ସ୍ଥାନରେ ସେ ସର୍ବଦା ବ୍ରହ୍ମଚର୍ଯ୍ୟରେ ରତ ହୋଇ ବ୍ରତାଚରଣ କରି ଯେଉଁପରି ଘୋରତର ଦୁଷ୍କର ତପସ୍ୟା କରିଥିଲେ, ତାଦୃଶ ତପସ୍ୟା ସ୍ତ୍ରୀଲୋକଙ୍କ ପକ୍ଷରେ କଦାପି ସମ୍ଭବ ନୁହେଁ । ଅତଏବ ସେ ଦେବତା ବ୍ରାହ୍ମଣମାନଙ୍କ-ଦ୍ୱାରା ପୂଜିତା ହୋଇ ସ୍ୱର୍ଗପୁରକୁ ଗମନ କରିଥିଲେ ।

ବଳଦେବ ଋଷିମାନଙ୍କର ସେହି ସମସ୍ତ ବାକ୍ୟ ଶ୍ରବଣ କରି ସେମାନଙ୍କୁ ଅଭିବାଦନପୂର୍ବକ ହିମାଳୟର ପାର୍ଶ୍ୱସ୍ଥିତ ସେହି ଅପୂର୍ବ ଆଶ୍ରମକୁ ଗମନ କଲେ । ସେ ସନ୍ଧ୍ୟାବନ୍ଦନା ସମସ୍ତ କାର୍ଯ୍ୟ ସମାଧାନ କରି ପର୍ବତରେ ଆରୂଢ଼ ହେଲେ । ବଳବାନ ତାଳଧ୍ୱଜ ଅନତିଦୂରକୁ ଯାଇ ଗୋଟିଏ ପବିତ୍ର ତୀର୍ଥ ଦର୍ଶନ କରି ଅତିଶୟ ବିସ୍ମୟାପନ୍ନ ହେଲେ ଓ ସରସ୍ୱତୀର ପ୍ରଭବ ଏବଂ ପ୍ଳକ୍ଷପ୍ରସ୍ରବଣ ଦର୍ଶନ କରି ପ୍ରୀତ ହେଲେ । ତତ୍ପରେ କାରପବନ ନାମକ ପବିତ୍ର ତୀର୍ଥରେ ପ୍ରବିଷ୍ଟ ହେଲେ । ଯୁଦ୍ଧଦୁର୍ମଦ ମହାବଳ ବଳଦେବ ସେଠାରେ ନିର୍ମଳ ସୁଶୀତଳ ପବିତ୍ର ଜଳରେ ସ୍ନାନ କରି ବହୁତ ଧନଦାନ କଲେ ଓ ଦେବତାମାନଙ୍କୁ ତର୍ପଣ କଲେ । ସେ ସେହି ସ୍ଥାନରେ ଯତି ଓ ବ୍ରାହ୍ମଣମାନଙ୍କ ସହିତ ଗୋଟିଏ ରାତି ଯାପନ କରି ମିତ୍ରାବରୁଣଙ୍କର ପବିତ୍ର ଆଶ୍ରମକୁ ଗଲେ । ପୂର୍ବକାଳରେ ଇନ୍ଦ୍ର, ଅଗ୍ନି ଓ ସୂର୍ଯ୍ୟଦେବ ଯେଉଁ ସ୍ଥାନରେ ପରମ ପ୍ରୀତି ପ୍ରାପ୍ତ ହୋଇଥିଲେ, ବଳଦେବ କାରପବନ ତୀର୍ଥରୁ ଯମୁନାର ନିକଟବର୍ତ୍ତୀ ସେହି ସ୍ଥାନକୁ ଗମନ କଲେ ।

ଧର୍ମାତ୍ମା ଯଦୁବର ସେଠାରେ ସ୍ନାନ କରି ଅତିଶୟ ପ୍ରୀତ ହୋଇ ଋଷିଗଣ ଓ ସିଦ୍ଧମାନଙ୍କ ସହିତ ଉପବେଶନପୂର୍ବକ ନିର୍ମଳ ବାକ୍ୟମାନ ଶ୍ରବଣ କଲେ । ସେମାନେ ସମସ୍ତେ ସେଠାରେ ଏହିପରି ଅବସ୍ଥିତ ଥିବା ସମୟରେ ଜଟାମଣ୍ଡଳମଣ୍ଡିତ ସୁବର୍ଣ୍ଣ କୌପୀନଧାରୀ ସୁବର୍ଣ୍ଣଦଣ୍ଡପାଣି

କମଣ୍ଡଳୁଧାରୀ ଭଗବାନ୍ ମହାତପା ନାରଦ ଋଷି ଉତ୍ତମ ସ୍ୱରଯୁକ୍ତ ଅତି ମନୋରମା କଚ୍ଛପୀ ବୀଣା ଧରି ହଠାତ୍ ବଳଦେବଙ୍କ ନିକଟରେ ପ୍ରବିଷ୍ଟ ହେଲେ । ୧୯ । ଦେବବ୍ରାହ୍ମଣପୂଜିତ ସେହି ମୁନିବର ନୃତ୍ୟ ଗୀତ ବିଷୟରେ ବିଶେଷ ପାରଦର୍ଶୀ ଓ ଅତ୍ୟନ୍ତ କଳହପ୍ରିୟ । ସେହି କାରଣରୁ ନିରନ୍ତର କଳହ କନ୍ଦଳର ଆନ୍ଦୋଳନ କରୁଥାଆନ୍ତି । ସେହି ଯତବ୍ରତ ଦେବର୍ଷି ନାରଦ ବଳଦେବଙ୍କ ସନ୍ନିଧିରେ ଉପସ୍ଥିତ ହେବାରୁ ଶ୍ରୀମାନ୍ ବଳରାମ ଗାତ୍ରୋତ୍ଥାନ ପୂର୍ବକ ତାହାଙ୍କ ଅଭ୍ୟର୍ଥନା କରି କୌରବଗଣଙ୍କ ଉପସ୍ଥିତ ଯୁଦ୍ଧଘଟଣାର ବିବରଣ ପ୍ରଶ୍ନ କଲେ ।

ହେ ମହାରାଜ ! ସର୍ବଧର୍ମପଣ୍ଡିତ ନାରଦ ବଳଦେବଙ୍କ ନିକଟରେ କୌରବମାନଙ୍କର କୁଳକ୍ଷୟସମ୍ବନ୍ଧୀୟ ସମସ୍ତ ବୃତ୍ତାନ୍ତ ଯଥାର୍ଥ ରୂପେ କୀର୍ତ୍ତନ କଲେ । ସେ ତାହା ଶ୍ରବଣ କରି ଦୁଃଖିତ ହୋଇ ତାହାଙ୍କୁ ସମ୍ବୋଧନ କରି କହିଲେ, ହେ ତପୋଧନ ! ଆମ୍ଭେ ପୂର୍ବେ ଏହି ବୃତ୍ତାନ୍ତ ସ୍ଥୂଳରେ ଶୁଣିଅଛୁଁ । ଏତେବେଳେ ପଚାରୁଅଛୁଁ ଯେ ଉକ୍ତ କ୍ଷେତ୍ର କିପରି ଅବସ୍ଥାରେ ଅଛି ଓ ସେଠାରେ ଯେଉଁ ନରପାଳଗଣ ଉପସ୍ଥିତ ଥିଲେ, ସେମାନଙ୍କର କିପରି ଅବସ୍ଥା ଘଟିଅଛି ? ତାହା ବିସ୍ତୃତ ରୂପେ ଶୁଣିବାକୁ ଆମ୍ଭର ଅତିଶୟ କୌତୂହଳ ଜନ୍ମିଅଛି । ଅତଏବ ଆପଣ ଉକ୍ତ ବିଷୟକୁ ବିସ୍ତାରରୂପେ କହିବା ହେଉନ୍ତୁ । ନାରଦ କହିଲେ, ହେ ରୋହିଣୀସୁତ ! ଭୀଷ୍ମ, ଦ୍ରୋଣ, ସିନ୍ଧୁରାଜ ଜୟଦ୍ରଥ, କର୍ଣ୍ଣ ଓ ତାହାଙ୍କ ମହାରଥୀ ପୁତ୍ରଗଣ ପ୍ରଥମରେ ନିହତ ହୋଇଅଛନ୍ତି । ଅନନ୍ତର ମହାରାଜ ଶଲ୍ୟ, ଭୂରିଶ୍ରବା ଓ ତଦ୍ଭିନ୍ନ ଅନ୍ୟାନ୍ୟ ଅନେକ ଅନେକ ଯୁଦ୍ଧପ୍ରିୟ ମହାବଳ ରାଜା ଓ ରାଜପୁତ୍ରଗଣ କୌରବମାନଙ୍କ ନିମିତ୍ତ ପ୍ରିୟତମ ପ୍ରାଣକୁ ପରିତ୍ୟାଗ କରିଅଛନ୍ତି ।

ହେ ମହାବାହୋ ମାଧବ ! ସେହିମାନଙ୍କ ମଧ୍ୟରେ ଯେଉଁ ଯେଉଁ ବ୍ୟକ୍ତିମାନେ ହତ ହୋଇନାହାନ୍ତି, ସେମାନଙ୍କ ବିବରଣ କହୁଅଛୁଁ, ଶୁଣିବା ହେଉନ୍ତୁ । କୁରୁ ସୈନ୍ୟଙ୍କ ମଧ୍ୟରେ ସମରମର୍ଦ୍ଦନ କୃପାଚାର୍ଯ୍ୟ, କୃତବର୍ମା ଓ ମହାଚାର୍ଯ୍ୟ ଅଶ୍ୱତ୍ଥାମା, ଏହି ତିନିଜଣ ବୀର ମାତ୍ର ଅବଶିଷ୍ଟ ଅଛନ୍ତି । କିନ୍ତୁ ଏମାନେ ମଧ୍ୟ ଭୟ ହେତୁରୁ ନାନା ଦିଗକୁ ପଳାୟନ କରିଥିବାରୁ କେଉଁଠାରେ ଅଛନ୍ତି ସେମାନଙ୍କର କୌଣସି ସନ୍ଧାନ ମିଳୁନାହିଁ । ଶଲ୍ୟ ନିହତ ଓ କୃପ ପ୍ରଭୃତି ବୀରମାନେ ପଳାୟନ କଲାରୁ ଦୁର୍ଯ୍ୟୋଧନ ଅତିଶୟ ଦୁଃଖିତ ହୋଇ ଦ୍ୱୈପାୟନ ନାମକ ହ୍ରଦରେ ପ୍ରବେଶ

କରିଥିଲେ । ଦୁର୍ଯ୍ୟୋଧନ ଜଳସ୍ତମ୍ଭନ କରି ହ୍ରଦ ମଧ୍ୟରେ ଶୟନ କରିଅଛନ୍ତି । ପାଣ୍ଡବମାନେ ଉକ୍ତ ସମ୍ବାଦ ଶୁଣିବା ମାତ୍ରେ କୃଷ୍ଣଙ୍କ ସହିତ ସେଠାକୁ ଗମନପୂର୍ବକ ନିଷ୍ଠୁର ଓ କର୍କଶ ବାକ୍ୟଦ୍ୱାରା ତାହାଙ୍କ ହୃଦୟରେ ପୀଡ଼ା ଜନ୍ମାଇଲେ । ହେ ରାମ ! ତତ୍ପରେ ଅତି ବଳିଷ୍ଠ ଦୁର୍ଯ୍ୟୋଧନ ବୀର ସେମାନଙ୍କ କଠିନ ବାକ୍ୟରେ ଅତିଶୟ ଦୁଃଖିତ ହୋଇ ଉତ୍କୃଷ୍ଟ ଗଦା-ଗ୍ରହଣପୂର୍ବକ ହ୍ରଦରୁ ଉଠିଅଛନ୍ତି । ଏତେବେଳେ ସେ ଭୀମଙ୍କ ସଙ୍ଗେ ଗଦାଯୁଦ୍ଧ କରିବାକୁ ଉପସ୍ଥିତ ହୋଇଅଛନ୍ତି । ଆଜି ସେମାନଙ୍କର ଅତି ଦାରୁଣ ସମର ଆରମ୍ଭ ହେବ । ଅତଏବ ହେ ମାଧବ ! ଯଦି ଉଭୟ ଶିଷ୍ୟଙ୍କ ସଂଗ୍ରାମଦର୍ଶନ ବିଷୟରେ ଆପଣଙ୍କର କୌତୂହଳ ଜନ୍ମିଅଛି, ତେବେ ବିଳମ୍ବ ନ କରି ଗମନ କରିବା ହେଉନ୍ତୁ ।

ବୈଶମ୍ପାୟନ କହିଲେ, ମହାରାଜ ! ବଳଦେବ ନାରଦଙ୍କ ବାକ୍ୟ ଶୁଣି ସେହି ସମସ୍ତ ବ୍ରାହ୍ମଣମାନଙ୍କୁ ଅର୍ଚ୍ଚନା କରି ତାହାଙ୍କ ସହିତ ଯେଉଁ-ମାନେ ଅଭ୍ୟାଗତ ହୋଇଥିଲେ, ସେମାନଙ୍କୁ ବିଦାୟ ଦେଲେ ଓ ଅନୁଚର-ମାନଙ୍କୁ ଦ୍ୱାରକାଗମନ ବିଷୟରେ ଆଦେଶ ଦେଲେ । ୩୭ । ତତ୍ପରେ ସେ ପ୍ଲକ୍ଷ ପ୍ରସ୍ରବଣ ନାମକ ପର୍ବତ ଶିଖରରୁ ଅବତୀର୍ଣ୍ଣ ହୋଇ ସୁମହତ୍ ତୀର୍ଥଫଳ ଶ୍ରବଣ କରି ପ୍ରୀତିପୂର୍ଣ୍ଣ ଚିତ୍ତରେ ବ୍ରାହ୍ମଣମାନଙ୍କ ନିକଟରେ ଗାନ କଲେ । ହେ ବିପ୍ରଗଣ ! ସାରସ୍ୱତ ତୀର୍ଥରେ ବାସ କରିବା ନିମିତ୍ତ ଯାଦୃଶୀ ପ୍ରୀତି ଜାତ ହୁଏ, ତାଦୃଶୀ ପ୍ରୀତି ଅନ୍ୟଠାରେ ହୁଏ ନାହିଁ । ସରସ୍ୱତୀ ତୀର୍ଥରେ ବାସକଲେ ଯାଦୃଶ ଗୁଣର ଉତ୍ପତ୍ତି ହୁଏ, ତାହା ଅନ୍ୟ କୌଣସିଠାରେ ହୁଏ ନାହିଁ । କେତେ ଶତ ଶତ ନର ସରସ୍ୱତୀଙ୍କୁ ଆଶ୍ରୟ କରି ସ୍ୱର୍ଗଗାମୀ ହୋଇଅଛନ୍ତି । ଅତଏବ ସମସ୍ତେ ସର୍ବଦା ସରସ୍ୱତୀଙ୍କୁ ସ୍ମରଣ କରିବେ ।୩୮। ସମସ୍ତ ନଦୀ ମଧ୍ୟରେ ସରସ୍ୱତୀ ଅତି ପବିତ୍ର । ସରସ୍ୱତୀ ସର୍ବଦା ସର୍ବଲୋକର ସୁଖବାହିନୀ । ନରଗଣ ସରସ୍ୱତୀରେ ସ୍ନାନ କଲେ ଇହଲୋକ ଓ ପରଲୋକରେ ଦୁଷ୍କୃତ ହେତୁରୁ କଦାପି ଶୋକପ୍ରାପ୍ତ ହୁଅନ୍ତି ନାହିଁ ।

ତଦନନ୍ତର ଶତ୍ରୁତାପନ ବଳଦେବ ପ୍ରୀତି ସହକାରେ ସରସ୍ୱତୀଙ୍କୁ ବାରମ୍ବାର ଦର୍ଶନ କରି ମନୋହର ଶ୍ୱେତବର୍ଣ୍ଣ ଅଶ୍ୱଯୁକ୍ତ ଶୁକ୍ଳ ରଥରେ ଆରୋହଣ କଲେ । ଯଦୁନନ୍ଦନ ବଳରାମ ସେହି ଶୀଘ୍ରଗାମୀ ରଥଦ୍ୱାରା ଗମନ କରି ଉଭୟ ଶିଷ୍ୟଙ୍କ ତାତ୍କାଳିକ ଯୁଦ୍ଧଦର୍ଶନ ଇଚ୍ଛାରେ ସମର ପ୍ରାଙ୍ଗଣରେ ଉପସ୍ଥିତ ହେଲେ । ୪୧ ।

---

# ଅଧ୍ୟାୟ—୫୫

ବୈଶମ୍ପାୟନ କହିଲେ—ହେ ଜନମେଜୟ ! ଏହିପରି ମହା ତୁମୁଳ ଯୁଦ୍ଧ ହୋଇଥିଲା, ଯେଉଁ ଯୁଦ୍ଧରେ ରାଜା ଧୃତରାଷ୍ଟ୍ର ନିତାନ୍ତ ଦୁଃଖିତ ହୋଇ ସମ୍ବୋଧନ କରି ସଞ୍ଜୟଙ୍କୁ ଏହିପରି କହିଲେ—ହେ ସଞ୍ଜୟ ! ଗଦାଯୁଦ୍ଧ ହେଉଥିବା ସମୟରେ ବଳରାମଙ୍କୁ ନିକଟରେ ଦେଖି ଆମ୍ଭ ପୁତ୍ର ଦୁର୍ଯ୍ୟୋଧନ ଭୀମଙ୍କ ସହିତ କେଉଁପରି ଯୁଦ୍ଧ କଲେ ? ସଞ୍ଜୟ କହିଲେ, ମହାରାଜ ! ଆପଣଙ୍କ ପୁତ୍ର ମହାବାହୁ ବୀର୍ଯ୍ୟଶାଳୀ ଯୁଦ୍ଧାଭିଳାଷୀ ଦୁର୍ଯୋଧନ ବଳରାମଙ୍କୁ ନିକଟରେ ଦେଖି ଅତ୍ୟନ୍ତ ହର୍ଷପ୍ରାପ୍ତ ହେଲେ । ୩ । ହେ ଭାରତ ! ତତ୍ପରେ ରାଜା ଯୁଧିଷ୍ଠିର ବଳଦେବଙ୍କୁ ଦର୍ଶନ କରି ଗାତ୍ରୋତ୍ଥାନପୂର୍ବକ ପରମ ପ୍ରୀତିଯୁକ୍ତ ଚିତ୍ତରେ ଯଥାବିଧାନରେ ତାହାଙ୍କ ପରିଚର୍ଯ୍ୟା କରି ଆସନ ପ୍ରଦାନ କଲେ ଓ କୁଶଳ ସମାଚାର ପଚାରିଲେ ।

ଯୁଧିଷ୍ଠିରଙ୍କ ଏହିପରି ଅଭ୍ୟର୍ଥନା ପରେ ବଳରାମ ତାହାଙ୍କୁ ଶୂର-ମାନଙ୍କ ହିତଜନକ ମାନସ ପ୍ରୀତିକର ବାକ୍ୟ କହିଲେ । ହେ ରାଜଶ୍ରେଷ୍ଠ ! ଆମ୍ଭେ ଋଷିମାନଙ୍କର ପରସ୍ପର କଥୋପକଥନ ସମୟରେ ଶ୍ରବଣ କରିଅଛୁଁ, କୁରୁକ୍ଷେତ୍ର ଅତି ପୁଣ୍ୟକ୍ଷେତ୍ର ଏବଂ ସ୍ୱର୍ଗ ଓ ମୋକ୍ଷର କାରଣ ହେତୁରୁ ଅତିଶୟ ପାବନ ଅଟେ । ଦେବତା, ଋଷି ଓ ମହାନୁଭବ ବ୍ରାହ୍ମଣମାନେ ଯେଉଁ ସ୍ଥାନରେ ସର୍ବଦା ବାସ କରନ୍ତି, ସେହି ସ୍ଥାନରେ ଯେଉଁ ନରମାନେ ତନୁତ୍ୟାଗ କରିବେ, ସେମାନେ ଇନ୍ଦ୍ରଙ୍କ ସହିତ ନିଶ୍ଚୟ ସ୍ୱର୍ଗରେ ବାସ କରି ପାରିବେ । ୮ । ହେ ନୃପବର ! ଅତଏବ ଆମ୍ଭେମାନେ ଏହି ସ୍ଥାନରୁ ହନାବଳମ୍ବରେ ସମନ୍ତପଞ୍ଚକ ତୀର୍ଥକୁ ଯିବୁ । ସେହି ମହାତୀର୍ଥ ଦେବ-ଲୋକ ପ୍ରଜାପତିଙ୍କ ଉତ୍ତରବେଦୀ ବୋଲି ଖ୍ୟାତ । ତ୍ରିଲୋକ ମଧ୍ୟରେ ସେହି ସନାତନ ଓ ମହା ପୁଣ୍ୟତମ ସ୍ଥାନରେ ଯୁଦ୍ଧରେ ନିଧନ ଲଭ କଲେ ଯୋଦ୍ଧାମାନଙ୍କର ନିଶ୍ଚୟ ସ୍ୱର୍ଗବାସ ହେବ । ବଳଦେବ ଏହିପରି କହିଲାରୁ ହେ ମହାରାଜ ! କୁନ୍ତୀପୁତ୍ର ବୀର ଯୁଧିଷ୍ଠିର ସମନ୍ତପଞ୍ଚକ ତୀର୍ଥକୁ ଗମନ କଲେ ।

ତତ୍ପରେ ମହର୍ଷୀ ଗଦାଧାରୀ ତେଜସ୍ୱୀ ରାଜା ଦୁର୍ଯ୍ୟୋଧନ ଅମର୍ଷ-ବଶରୁ ପାଣ୍ଡବମାନଙ୍କ ସହିତ ପଦବ୍ରଜରେ ଗମନ କଲେ । ୧୨ । ସେ ବଦ୍ଧକବଚ ଗଦାପାଣି ହୋଇ ଗମନ କରୁଥିବାର ଦେଖି ଅନ୍ତରୀକ୍ଷଚର

ଅମରଗଣ ତାହାଙ୍କୁ ଶତ ଶତ ଧନ୍ୟବାଦ ପ୍ରଦାନ କଲେ । ବାର୍ତ୍ତାବହ ଚାରଣଗଣ ତାହାଙ୍କୁ ଦେଖି ଅତିଶୟ ହୃଷ୍ଟ ହେଲେ । ମହାରାଜ ! ଆପଣଙ୍କ ପୁତ୍ର କୁରୁରାଜ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ମଦ୍-ମତ୍ତ-ଗଜେନ୍ଦ୍ର ସଦୃଶ ଗମନ କଲେ । ତତ୍ପରେ ଶଙ୍ଖଭେରୀ ମହାନାଃସ୍ୱନରେ ଓ ବୀରବୃନ୍ଦର ସିଂହନାଦରେ ଦିଗସବୁ ପରିପୂର୍ଣ୍ଣ ହେଲା । ସେହି ଦଳର ବୀରମାନେ ଏହିପରି ଭବଦୀୟ ପୁତ୍ରଙ୍କ ସହିତ ପଶ୍ଚିମାଭିମୁଖକୁ ଗମନ କରି କ୍ରମେ କ୍ରମେ ପୂର୍ବୋକ୍ତ କୁରୁକ୍ଷେତ୍ରରେ ଉପସ୍ଥିତ ହେଲେ । ସେଠାରେ ସରସ୍ୱତୀଙ୍କ ଦକ୍ଷିଣ ବିଭାଗରେ ଅନ୍ୟ ଗୋଟିଏ ସୁଗତିପ୍ରଦ ତୀର୍ଥ ଥିଲା । ସେମାନେ ସେହି ଉର୍ବର ପ୍ରଦେଶରେ ସଂଗ୍ରାମ କରିବାକୁ ଅଭିଳାଷୀ ହେଲେ ।

ହେ ମହାରାଜ ! ତତ୍ପରେ ମହାବୀର ଭୀମ ବର୍ଦ୍ଧକବଚ ହୋଇ ମହାକୋଟିଶାଳିନୀ ଗଦା ଗ୍ରହଣ ପୂର୍ବକ ଗରୁଡ଼ ସଦୃଶ ଭୀଷଣ ରୂପ ଧାରଣ କଲେ । ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ସମର ମଧ୍ୟରେ ସୁବର୍ଣ୍ଣମୟ କବଚ ଧାରଣ ଓ ଶିରସ୍ତ୍ରାଣ ବନ୍ଧନ କରି ସୁମେରୁ ପର୍ବତ ସଦୃଶ ବିରାଜିତ ହେଲେ । ବୀର ଦୁର୍ଯ୍ୟୋଧନ ଓ ଭୀମସେନ ଯୁଦ୍ଧସଜ୍ଜାରେ କବଚ ପ୍ରଭୃତି ଦ୍ୱାରା ସୁସଜ୍ଜିତ ହୋଇ ସମର ମଧ୍ୟରେ ପ୍ରମତ୍ତ ଦୁଇଗୋଟି ଗଜ ସଦୃଶ ଶୋଭିତ ହେଲେ । ହେ ମହାରାଜ ! ତେତେବେଳେ ସମରମଣ୍ଡଳର ମଧ୍ୟବର୍ତ୍ତୀ ସେହି ଭ୍ରାତୃଦ୍ୱୟ ସମୁଦିତ ଚନ୍ଦ୍ର ଓ ସୂର୍ଯ୍ୟଦେବଙ୍କ ସଦୃଶ ଶୋଭା ପାଇଲେ । ସେହି ଦୁହେଁ ପରସ୍ପର ବଧକାମନାରେ ନୟନ ଦ୍ୱାରା ଦଗ୍ଧ କଲା ପରି ହୋଇ କ୍ରୋଧଯୁକ୍ତ ଦୁଇଗୋଟି ହସ୍ତୀ ସଦୃଶ ପରସ୍ପରକୁ ନିରୀକ୍ଷଣ କଲେ ।

ହେ ନୃପବର ! କୁରୁରାଜ ଦୁର୍ଯ୍ୟୋଧନ ସାନନ୍ଦ ଚିତ୍ତରେ ଗଦାଗ୍ରହଣ ପୂର୍ବକ କ୍ରୋଧରେ ଆରକ୍ତଲୋଚନ ହୋଇ ସୃକ୍କଣୀଦ୍ୱୟ ଲେହନ କରି ଦୀର୍ଘ ନିଃଶ୍ୱାସ ପରିତ୍ୟାଗ କଲେ । ବୀର୍ଯ୍ୟଶାଳୀ ଦୁର୍ଯ୍ୟୋଧନ ଏହିପରି ଦୁର୍ଦ୍ଧର୍ଷ ଗଦା ଧାରଣ କରି ମତ୍ତଗଜ ଯେଉଁପରି ଅନ୍ୟ ଗଜକୁ ଆହ୍ୱାନ କରେ, ସେହିପରି ରାଜା ଦୁର୍ଯ୍ୟୋଧନଙ୍କୁ ଭୟଙ୍କର ସ୍ୱରରେ ଆହ୍ୱାନ କଲେ । ଏହିପରି ଦୁର୍ଯ୍ୟୋଧନ ଓ ଭୀମସେନ ହସ୍ତରେ ଗଦା ଉତ୍ତୋଳନ କରି ସମର ମଧ୍ୟରେ ଶୃଙ୍ଗବିଶିଷ୍ଟ ଗିରିଦ୍ୱୟ ସଦୃଶ ବିରାଜମାନ ହେଲେ । ସେହି ଦୁହେଁ ଗଦାଯୁଦ୍ଧରେ ରୋହିଣୀନନ୍ଦନ ବୁଦ୍ଧିମାନ ବଳଦେବଙ୍କ ଶିଷ୍ୟ ।

ଅତଏବ ଦୁହେଁ ସମାନ ରୂପରେ ଘୋରତର ପରାକ୍ରମ ପ୍ରକାଶ କରି ଅତିଶୟ କ୍ରୋଧାକ୍ରାନ୍ତ ହେଲେ ।

ସେହି ମହାବଳ ବୀରଦୁହେଁ ମୟଦାନବ ଓ ଇନ୍ଦ୍ରଙ୍କ ସଦୃଶ ସମରଦକ୍ଷ ଅଟନ୍ତି । ଦୁହେଁ ବରୁଣଙ୍କ ସଦୃଶ ବିକ୍ରମଶାଳୀ, କୁବେର ବସୁଦେବନନ୍ଦନ ବଳଦେବଙ୍କ ସଦୃଶ କର୍ମକ୍ଷମ । ସେହି ଦୁହେଁ ଯୁଦ୍ଧରେ ମଧୁ ଓ କୈଟଭ, ସୁନ୍ଦ ଓ ଉପସୁନ୍ଦ, ରାମ ଓ ରାବଣ ଏବଂ ବାଳୀ ଓ ସୁଗ୍ରୀବଙ୍କ ସଦୃଶ ଅଟନ୍ତି । କାଳାନ୍ତକ ଯମ ସଦୃଶ ଶତ୍ରୁତାପନ ବୀର-ଦୁହେଁ ଦୁଇଗୋଟି ମତ୍ତ ମାତଙ୍ଗ ପରି ପରସ୍ପରଙ୍କ ନିକଟକୁ ଧାବମାନ ହେଲେ । ହେ ମହାରାଜ ! ଶରତକାଳରେ ମଦମତ୍ତ ଗଜଯୁଗଳ ଯେଉଁପରି ଗୋଟିଏ ହସ୍ତିନୀ ସମ୍ଭୋଗ ବିଷୟରେ ପରସ୍ପର ଜୟ ଇଚ୍ଛା କରନ୍ତି, ସେତେବେଳେ ଭରତବଂଶୀ ସେହି ବୀରଦୁହେଁ ସେହିପରି ଇଚ୍ଛୁକ ହୋଇ-ଥିଲେ । ଶତ୍ରୁଦମନକାରୀ ସେହି ବୀରଦୁହେଁ ଦୁଇଗୋଟି ସର୍ପସଦୃଶ କ୍ରୋଧରୂପ ବିଷକୁ ଦମନ କରି ଅତ୍ୟନ୍ତ କ୍ରୋଧଯୁକ୍ତ ହୋଇ ପରସ୍ପରକୁ ନିରୀକ୍ଷଣ କଲେ । ୩୩ । ଗଦାଯୁଦ୍ଧବିଶାରଦ ଶତ୍ରୁପ୍ରତାପଦାୟକ ବିକ୍ରମଯୁକ୍ତ ଭରତକୁଳଶ୍ରେଷ୍ଠ ସେହି ବୀରଦୁହେଁ ଦୁଇଗୋଟି ସିଂହସମାନ ଦୁର୍ଜୟ ଅଟନ୍ତି । ୩୪ । ତୀକ୍ଷ୍ଣ ନଖଦଂଷ୍ଟ୍ରାଯୁଧ ବ୍ୟାଘ୍ରଦ୍ୱୟ ସଦୃଶ ଦୁର୍ଜୟ ସେହି ବୀର ଅତ୍ୟନ୍ତ କ୍ରୋଧାକ୍ରାନ୍ତ ହୋଇ ପ୍ରଜାସଂହାର ନିମିତ୍ତ କ୍ଷୁବ୍‌ଧ ସାଗରଦ୍ୱୟ ସଦୃଶ ଦୁସ୍ତର ହେଲେ । ପ୍ରତାପଯୁକ୍ତ ସେହି ମହାରଥଦୁହେଁ କ୍ରୋଧପରାୟଣ ଦୁଇଗୋଟି ମଙ୍ଗଳ ଗ୍ରହଙ୍କ ସମାନ ପରିଦୃଶ୍ୟ ହେଲେ ।

ବର୍ଷାକାଳରେ ବାୟୁଦ୍ୱାରା ପରିଚାଳିତ ବିଷମ ଜଳଧାରାବର୍ଷଣଶୀଳ ପୂର୍ବ ଓ ପଶ୍ଚିମ ଦିଗଜାତ ଦୁଇଗୋଟି ମହାମେଘସଦୃଶ ଦୁହେଁ ଘୋରତର ଗର୍ଜନ କଲେ । ଧୃତିଯୁକ୍ତ ମହାବଳ ମହାତ୍ମା କୁରୁଶ୍ରେଷ୍ଠଦୁହେଁ ପ୍ରଳୟ-କାଳିକ ସମୁଦିତ କିରଣଶାଳୀ ଦୁଇଗୋଟି ସୂର୍ଯ୍ୟଦେବଙ୍କ ସଦୃଶ ଦୃଶ୍ୟମାନ ହେଲେ । ତର୍ଜନକାରୀ ଶାର୍ଦ୍ଦୂଳଦ୍ୱୟ, ଗର୍ଜନକାରୀ ଜଳଧରଯୁଗଳ, କେଶର ବିସ୍ତାରକାରୀ ସିଂହଦ୍ୱୟ ସମାନ ସେହି ମହାବାହୁଦୁହେଁ ଘୋରତର ବିକଟ ଗର୍ଜନ କଲେ । ସେତେବେଳେ ସେହି ମହାତ୍ମା ଦୁହେଁ ଶୃଙ୍ଗଯୁକ୍ତ ଦୁଇଗୋଟି ପର୍ବତ ସଦୃଶ, ପ୍ରମତ୍ତ ମାତଙ୍ଗ ଯୁଗଳ ସଦୃଶ ଓ ପ୍ରଜ୍ୱଳିତ ହୁତାଶନ ସମାନ ଦୃଶ୍ୟମାନ ହେଲେ । ତତ୍ ସମୟରେ ସେହି ଭୟଙ୍କର ରୋଷବଶରେ ଓଷ୍ଠ ପ୍ରସ୍ଫୁରିତ ହେଲା ଓ ସେହି ଦୁହେଁ

ଅନ୍ତିମଶେଷରେ ପରସ୍ପରକୁ ନିରୀକ୍ଷଣ କଲେ । ୪୦ । ସେହି ମହାତ୍ମା ନରଶ୍ରେଷ୍ଠ ଭୀମ ଦୁର୍ଯ୍ୟୋଧନ ଦୁହେଁ ହସ୍ତରେ ଗଦା ଧାରଣ କରି ଅତି ପ୍ରଫୁଲ୍ଲ ଚିତ୍ତରେ ଗର୍ଜନ କରନ୍ତେ ତଦ୍ଦ୍ୱାରା ଉତ୍କୃଷ୍ଟ ଅଶ୍ୱଯୁଗଳ ହ୍ରେଷା-ରବକଲା ପରି, ଗଜଦ୍ୱୟ ବୃଂହିତ ଧ୍ୱନି କଲାପରି, ଓ ବୃଷଭଦ୍ୱୟ ଗର୍ଜନ କଲାପରି ଜଣାଗଲା । ଏହିପରି ସେହି ନରୋତ୍ତମଦୁହେଁ ବଳୋନ୍ମତ୍ତ ଦୁଇଗୋଟି ଦୈତ୍ୟଙ୍କ ପରି ବିରାଜମାନ ହେଲେ ।

ହେ ମହାରାଜ ! ତତ୍ପରେ ଦୁର୍ଯ୍ୟୋଧନ କୃଷ୍ଣ, ବଳଦେବ, ପାଞ୍ଚାଳବୀର, ସୃଞ୍ଜୟ, କେକୟ ବୀରଗଣ ଓ ଭ୍ରାତୃଗଣରେ ପରିବେଷ୍ଟିତ ରାଜା ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି ଏହି ଗର୍ବଯୁକ୍ତ ବାକ୍ୟ କହିଲେ—ହେ ଯୁଧିଷ୍ଠିର ! ଆମ୍ଭର ଭୀମସେନଙ୍କ ସହିତ ଯେଉଁ ଗଦାଯୁଦ୍ଧ ହେବ, ତାହାକୁ ତୁମ୍ଭେମାନେ ଏହି ନୃପଶ୍ରେଷ୍ଠମାନଙ୍କ ସହିତ ନିକଟରେ ଉପବିଷ୍ଟ ହୋଇ ଦେଖ । ମହାରାଜ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କ ବାକ୍ୟ ଶ୍ରବଣ ପୂର୍ବକ ତଦନୁସାରେ ନୃପବରମାନଙ୍କ ସହିତ ସେହି ଉଭୟ ବୀରଙ୍କର ଗଦାଯୁଦ୍ଧ ନିରୀକ୍ଷଣ କଲେ । ୪୬ । ତତ୍ପରେ ସମସ୍ତ ନରପାଳଗଣ ଏକତ୍ର ଉପବିଷ୍ଟ ହେଲେ । ସେମାନେ ଉପବେଶନ କରନ୍ତେ ଆକାଶମଣ୍ଡଳରେ ଆଦିତ୍ୟ ମଣ୍ଡଳ ବିରାଜମାନ ହେଲାଭଳି ଜଣାଗଲା । ୪୭ । ସେମାନଙ୍କ ମଧ୍ୟରେ ଶ୍ରୀମାନ କେଶବାଗ୍ରଜ ବଳଦେବ ସମସ୍ତଙ୍କ କର୍ତ୍ତୃକ ପୂଜିତ ହୋଇ ଉପବିଷ୍ଟ ହେଲେ । ନୀଳାମ୍ବରଧାରୀ ଶ୍ୱେତକାନ୍ତି ବଳଦେବ ରାଜମଣ୍ଡଳ ମଧ୍ୟରେ ଅବସ୍ଥିତ ହୋଇ ରାତିରେ ନକ୍ଷତ୍ରମଣ୍ଡଳ ମଧ୍ୟଗତ ପୂର୍ଣ୍ଣଚନ୍ଦ୍ର ସଦୃଶ ଶୋଭା ପାଇଲେ । ୪୯ । ହେ ମହାରାଜ ! ତତ୍ପରେ ସେହି ଦୁର୍ଜୟ ବୀରଦୁହେଁ ହସ୍ତରେ ଗଦାଧାରଣ କରି ପରସ୍ପରକୁ ନିଷ୍ଠୁର ବାକ୍ୟା-ବଳୀଦ୍ୱାରା ଜର୍ଜରିତ କଲେ । ସେହି କୁରୁଶ୍ରେଷ୍ଠ ବୀରଦୁହେଁ ଏହିପରି ପରସ୍ପରରେ ଅପ୍ରିୟ ବାକ୍ୟ ପ୍ରୟୋଗ କରି ଯୁଦ୍ଧରେ ବୃତ୍ରାସୁର ଓ ଇନ୍ଦ୍ର-ଦେବଙ୍କ ପରି ପରସ୍ପରକୁ ନିରୀକ୍ଷଣ କଲେ । ୫୧ ।

---

# ଅଧ୍ୟାୟ—୫୭

ବୈଶମ୍ପାୟନ କହିଲେ— ହେ ଜନମେଜୟ ! ତତ୍ପରେ ସେହି ବୀର ଦୁହିଁଙ୍କର ଘୋରତର ବାକ୍ଯୁଦ୍ଧ ହେଲା । ସେତେବେଳେ ରାଜା ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଆମ୍ଭର ଯେଉଁ ପୁତ୍ର ଏକାଦଶ ଅକ୍ଷୌ-ହିଣୀ ସେନାର ଅଧିପତି ହୋଇ ସମସ୍ତ ଭୂମଣ୍ଡଳ ଉପଭୋଗ କରି ସମଗ୍ର ଭୂପାଳମାନଙ୍କ ଉପରେ ଆଜ୍ଞାପ୍ରଚାର କରୁଥିଲେ, ଏତେବେଳେ ସେ ଯୁଦ୍ଧ ମଧ୍ୟରେ ଗଦାଗ୍ରହଣ କରି ମଦାନ୍ତ ସଦୃଶ ପଦଗାମୀ ହେଲେ । ୩ । ଆମ୍ଭର ଯେଉଁ ପୁତ୍ର ସମ୍ପୂର୍ଣ୍ଣ ଜଗତର ନାଥ ଥିଲେ, ସେ ଅନାଥଙ୍କ ପରି ହାତରେ ଗଦା ଧରି ପାଦରେ ଚାଲି ଚାଲି ଯୁଦ୍ଧକୁ ଯାଉଅଛନ୍ତି । ଅତଏବ ଜଣାଯାଏ ଯେ ଦୈବଙ୍କ ବିଚିତ୍ର ଗତି ବ୍ୟତିରେକେ ଅନ୍ୟ କୌଣସି ଘଟନା ଘଟିପାରେ ନାହିଁ । ହେ ଅନଘ ! ଆମ୍ଭ ପୁତ୍ର ମହାଦୁଃଖରେ ଗ୍ରସ୍ତ ହେଲେ; ଅତଏବ ଯେଉଁ ବ୍ୟକ୍ତି ଅବିବେଚନା ଦୋଷରେ ଏତାଦୃଶ ଦୁର୍ଦ୍ଦଶାରେ ପତିତ ହୁଅନ୍ତି, ସେମାନଙ୍କ ମନୁଷ୍ୟପଣକୁ ଧିକ୍କାର କରୁଅଛୁଁ । ହେ ମହାରାଜ ! ରାଜା ଧୃତରାଷ୍ଟ୍ର ଅତିଶୟ ଦୁଃଖରେ ଆର୍ତ୍ତ ହୋଇ ଏହି ପ୍ରକାର କହି ନିବୃତ୍ତ ହେଲେ ।

ମହାରାଜ ! ତତ୍ପରେ ମେଘ ସଦୃଶ ନାଦକାରୀ ବୀର୍ଯ୍ୟଶାଳୀ ଦୁର୍ଯ୍ୟୋଧନ ହର୍ଷଯୁକ୍ତ ହୋଇ ବୃଷଭ ସମାନ ଗର୍ଜନ କରି ଯୁଦ୍ଧକ୍ଷେତ୍ରରେ ଭୀମସେନଙ୍କୁ ଯୁଦ୍ଧନିମିତ୍ତ ଆହ୍ୱାନ କଲେ । ମହାତ୍ମା କୁରୁରାଜ ଦୁର୍ଯ୍ୟୋଧନ ବୃକୋଦରଙ୍କୁ ଆହ୍ୱାନ କରିବା ସମୟରେ ଅତି ଭୟଙ୍କର ବିବିଧ ଉତ୍ପାତ ପ୍ରାଦୁର୍ଭୂତ ହେଲା । ଅତି ନିର୍ଘାତ ସହିତ ବାୟୁ ପ୍ରବାହିତ ହେଲା । ଚତୁ-ର୍ଦ୍ଦିଗରେ ପାଂଶୁବୃଷ୍ଟି ହେଲା, ଦିଙ୍ମଣ୍ଡଳ ଅନ୍ଧକାରସମୂହରେ ଆଚ୍ଛନ୍ନ ହେଲା । ନିର୍ଘାତ ସଦୃଶ ମହାସ୍ୱନ ବିଶିଷ୍ଟ ଲୋମହର୍ଷଣକାରୀ ମହାଭୟଙ୍କର ଶତ ଶତ ଉଲ୍କା ଆକାଶ ତଳକୁ ପ୍ରସ୍ଫୁଟିତ କରି ପୃଥିବୀରେ ପତିତ ହେଲେ । ୯ । ହେ ମହାରାଜ ! ସେତେବେଳେ ଅମାବାସ୍ୟା ନୋହିଥିଲେ ସୁଦ୍ଧା ରାହୁ ଆଦିତ୍ୟଙ୍କୁ ଗ୍ରାସ କଲେ । ବନତରୁଯୁକ୍ତ ପୃଥିବୀ ମହାକମ୍ପରେ କମ୍ପିତ ହେଲେ । ୧୦ । ପ୍ରବଳ ବାୟୁ ଧୂଳି ଓ କଙ୍କରବୃଷ୍ଟି କରି ପ୍ରବାହିତ ହେଲା । ପର୍ବତମାନଙ୍କର ଶୃଙ୍ଗସମୂହ ଭୂତଳରେ ନିପତିତ ହେଲା । ୧୧ । ନାନାବିଧ ଆକୃତିଶୀଳ ମୃଗମାନେ ଦଶ ଦିଗକୁ ପଳାଇଲେ । ସୁଦାରୁଣ

ଶୃଗାଳଗଣ ମୁଖବହ୍ନିର ଦ୍ୱାରା ଆଲୋକ ପ୍ରକାଶ ପୂର୍ବକ ନାଦ କଲେ । ୧୨ । ଲୋମହର୍ଷଣକାରକ ମହାଘୋର ନିର୍ଘାତସମୂହ ପ୍ରାଦୁର୍ଭୂତ ହେଲା । ଚତୁର୍ଦ୍ଦିଗ ଜଳୁଥିବା ପରି ଦେଖାଯାଉଥିଲା ଏବଂ ମୃଗଗଣ ଅଶୁଭ ସୂଚନା କଲେ ଓ କୂପ ମଧ୍ୟରେ ଜଳରାଶି ଅକସ୍ମାତ୍ ବର୍ଦ୍ଧିତ ହେଲା । ହେ ନୃପ ! ସେତେବେଳେ ଏକ ପ୍ରକାର ଅଶରୀରୀ ମହାନାଦ ଶ୍ରୁତିଗୋଚରର ହେଲା । ୧୪ ।

ଭୀମସେନ ଏତାଦୃଶ ବିବିଧ ମନ୍ଦ କାରଣମାନଙ୍କୁ ଦର୍ଶନ କରି ଜ୍ୟେଷ୍ଠଭ୍ରାତା ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ, ମହାରାଜ ! ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ଅଦ୍ୟ ଯୁଦ୍ଧରେ ଆମ୍ଭଙ୍କୁ ଜୟ କରିବାକୁ କଦାପି ସମର୍ଥ ହେଉ-ନାହିଁ । ଆମ୍ଭ ହୃଦୟ ମଧ୍ୟରେ ବହୁ କାଳରୁ ଯେଉଁ କ୍ରୋଧ ନିଗୂଢ଼ ଭାବରେ ରହିଅଛି, ଆମ୍ଭେ ଅଦ୍ୟ ତାହାକୁ କୌରବରାଜ ଦୁର୍ଯ୍ୟୋଧନଙ୍କ ଉପରେ ଖାଣ୍ଡବ ବନରେ ଅଗ୍ନି ସଦୃଶ ମୋଚନ କରିବୁ । ହେ ପାଣ୍ଡବ ! ଆପଣଙ୍କ ହୃଦୟରୁ ଶୋକରୂପ ଶଲ୍ୟକୁ ଅଦ୍ୟ ଆମ୍ଭେ ଉଦ୍ଧାର କରିବୁ । ଏହି ଅନିଷ୍ଟ-କାରକ କୁରୁକୁଳାଧମକୁ ଗଦାଘାତରେ ନିହତ କରି ଆପଣଙ୍କ ଗଳଦେଶରେ କୀର୍ତ୍ତିମୟୀ ମାଳା ସମର୍ପଣ କରିବୁ । ୧୮ । ଆମ୍ଭେ ଅଦ୍ୟ ଗଦାଯୁଦ୍ଧରେ ଏହି ଗଦାଘାତରେ ପାପକର୍ମା ଦୁର୍ଯ୍ୟୋଧନଙ୍କୁ ସଂହାର କରି ତଦୀୟ ଶରୀରକୁ ଶତ ଖଣ୍ଡରେ ଭେଦ କରିବୁ । ଏହି ଦୁର୍ଯ୍ୟୋଧନ ହସ୍ତିନାପୁରରେ ପ୍ରବେଶ କରି ପାରିବ ନାହିଁ । ହେ ଭରତକୁଳତିଳକ ! ଶୟନରେ ସର୍ପ ବିସର୍ଜନ, ଭୋଜନରେ ବିଷଦାନ, ପ୍ରମାଣକୋଟୀରେ ପତନ, ଅର୍ଥାତ୍ ପଶାଖେଳରେ ପରାଜୟ ଦାନ, ଜତୁଗୃହରେ ଅଗ୍ନିଦାନ, ସଭା ମଧ୍ୟରେ ଉପହାସ କରି ସର୍ବସ୍ୱ ଅପହରଣ, ଦ୍ୱାଦଶ ବର୍ଷ ବନବାସ ଏବଂ ଏକବର୍ଷ ଅଜ୍ଞାତ ବାସ—ଏହି ସମସ୍ତ ବିଷୟରେ ଆମ୍ଭେମାନେ ଯେଉଁ ଦୁଃଖସବୁ ଅନୁଭବ କରିଥିଲେ, ଅଦ୍ୟ ସେହି ସମସ୍ତ କ୍ଳେଶ-ସାଗରକୁ ପାର ହେବୁ ।

ମହାରାଜ ! ଆମ୍ଭେ ଆଜଦିନ ମଧ୍ୟରେ ଦୁର୍ଯ୍ୟୋଧନଙ୍କୁ ବିନାଶ କରି ଆପଣଙ୍କଠାରୁ ଋଣଶୂନ୍ୟ ହେବୁ । ଅଦ୍ୟ ଅକୃତଜ୍ଞ ଦୁର୍ମତି ଦୁର୍ଯ୍ୟୋଧନଙ୍କ ପରମାୟୁ ପୂର୍ଣ୍ଣ ହେବ ଓ ତଦୀୟ ମାତାପିତାଙ୍କ ଦର୍ଶନ ମଧ୍ୟ ସମାପ୍ତ ହେବ । ହେ ରାଜେନ୍ଦ୍ର ! ଅଦ୍ୟ ଦୁର୍ବୁଦ୍ଧି କୁରୁରାଜାଙ୍କର ସୁଖ ସୀମା ସମାପ୍ତ ହେବ ଓ ନାରୀ ମୁଖ ପୁନର୍ଦର୍ଶନ ମଧ୍ୟ ସମାପ୍ତ ହେବ । ଅଦ୍ୟ କୁରୁରାଜ ଶାନ୍ତନୁଙ୍କ କୁଳଦୂଷଣ ଦୁର୍ଯ୍ୟୋଧନ ପ୍ରାଣ, ଶ୍ରୀ ଓ ରାଜ୍ୟ ପରିତ୍ୟାଗ

ପୂର୍ବକ ଭୂତଳରେ ଶୟନ କରିବେ । ରାଜା ଧୃତରାଷ୍ଟ୍ର ସ୍ୱକୀୟ ପୁତ୍ରଙ୍କ ନିପାତ ସମ୍ବାଦ ଶ୍ରବଣ କରି ଶକୁନିଙ୍କ ଖଳବୁଦ୍ଧିଜନିତ ଅଶୁଭ କର୍ମମାନଙ୍କୁ ସ୍ମରଣ କରିବେ । ହେ ନୃପବର ! ବୀର୍ଯ୍ୟଶାଳୀ ଭୀମ ଏହିପରି କହି ଗଦାଗ୍ରହଣ ପୂର୍ବକ ଦେବରାଜ ବୃତ୍ରାସୁରକୁ ଯେଉଁପରି ଆହ୍ୱାନ କରି ଦଣ୍ଡାୟମାନ ହୋଇଥିଲେ, ସେହିପରି ଯୁଦ୍ଧ ନିମିତ୍ତ ଅବସ୍ଥିତ ହେଲେ ।

କ୍ରୋଧଯୁକ୍ତ ଭୀମ ଅନ୍ୟ ଭାଗରେ କୈଳାସଗିରି ସଦୃଶ ଦୁର୍ଯ୍ୟୋଧନଙ୍କୁ ଗଦା ଉତ୍ତୋଳନ କରି ଉତ୍ଥିତ ହୋଇଥିବାର ଦେଖି ପୁନଶ୍ଚ କହିଲେ, ହେ ଦୁର୍ବୁଦ୍ଧେ ! ବାରଣାବତ ନଗରରେ ରାଜା ଧୃତରାଷ୍ଟ୍ର ଓ ତୁମ୍ଭେ ସ୍ୱୟଂ ଯେଉଁ ଦୁଷ୍କୃତ କର୍ମସବୁ କରିଥିଲ, ଅଦ୍ୟ ତାହା ସ୍ମରଣ କର । ସଭା ମଧ୍ୟରେ ରଜସ୍ୱଳା ଦ୍ରୌପଦୀଙ୍କୁ ଯେଉଁ ଅସହ୍ୟ କ୍ଲେଶ ପ୍ରଦାନ କରିଥିଲ, ଶକୁନିଙ୍କ କୁବୁଦ୍ଧି କୌଶଳରେ ଦ୍ୟୂତକ୍ରୀଡ଼ା ଛଳରେ ଆମ୍ଭମାନଙ୍କୁ ଯେ ବଞ୍ଚିତ କରିଥିଲ, ଆମ୍ଭେମାନେ ତୁମ୍ଭ ହେତୁରୁ ବନରେ ରହି ଯେଉଁ ଦୁଃସହ କ୍ଲେଶ ଭୋଗ କରିଅଛୁଁ, ପରିଶେଷରେ କପଟ ବେଶ ଧାରଣ ପୂର୍ବକ ବିରାଟ ଦେଶରେ ଦାରୁଣ କ୍ଲେଶରେ ଅଜ୍ଞାତବାସରେ, ପୁନରପି ଗର୍ଭଗତ ହେଲା ପରି ଯେ କାଳ ହରଣ କରିଥିଲୁଁ, ଅଦ୍ୟ ସେହି ସମସ୍ତ ଦାରୁଣ ଦୁଃଖକୁ ଶେଷ କରିବୁ । ଅଦ୍ୟ ତୁମ୍ଭେ ଭାଗ୍ୟବଳରେ ଆମ୍ଭ ଦୃଷ୍ଟିପଥରେ ପଡ଼ିଅଛ । ୨୧-୨୩ । ତୁମ୍ଭ ହେତୁରୁ ପ୍ରତାପଶାଳୀ ଗଙ୍ଗାଙ୍କ ପୁତ୍ର ରଥିଶ୍ରେଷ୍ଠ ଭୀଷ୍ମ ଶିଖଣ୍ଡି ଦ୍ୱାରା ନିହତ ହୋଇ ଆଜି ପର୍ଯ୍ୟନ୍ତ ଶରଶଯ୍ୟାରେ ଶୟନ କରି-ଅଛନ୍ତି । ତୁମ୍ଭ ହେତୁରୁ ମହାବଳ ପରାକ୍ରାନ୍ତ ଦ୍ରୋଣ, କର୍ଣ୍ଣ ଓ ଶଲ୍ୟ ନିହତ ହୋଇଅଛନ୍ତି ଓ ବୈରି ଆଦିକର୍ତ୍ତା ଶକୁନି ମଧ୍ୟ ପ୍ରାଣ ବିସର୍ଜନ କରିଅଛନ୍ତି । ୩୪ । ଯେଉଁ ପାପାତ୍ମା ଦୁଃଶାସନ ଦ୍ରୌପଦୀଙ୍କ ପ୍ରୀତିକାମନାରେ ତାହାଙ୍କ କେଶାକର୍ଷଣ କରିଥିଲେ, ସେହି ଦୁରାତ୍ମା ହତ ହୋଇଅଛନ୍ତି । ତଦ୍ଭିନ୍ନ ତୁମ୍ଭର ଅନ୍ୟାନ୍ୟ ବିକ୍ରମଶୀଳ ଶୂରବର ଭ୍ରାତାମାନେ ମଧ୍ୟ ନିହତ ହୋଇ-ଅଛନ୍ତି । ୩୫ । ଏମାନଙ୍କ ବ୍ୟତିରେକେ ଅନ୍ୟାନ୍ୟ ଅସଂଖ୍ୟ ନୃପତିଗଣ ମଧ୍ୟ ତୁମ୍ଭ ହେତୁରୁ ପ୍ରାଣ ପରିତ୍ୟାଗ କରିଅଛନ୍ତି । ଆମ୍ଭେ ଅଦ୍ୟ ଏହି ଗଦାଘାତରେ ତୁମ୍ଭଙ୍କୁ ବିନାଶ କରିବୁ । ଏହି ବିଷୟରେ କିଛି ମାତ୍ର ସଂଶୟ ନାହିଁ ।

ହେ ମହାରାଜ ! ବୃକୋଦର ଉଚ୍ଚୈଃସ୍ୱରରେ ଏହିପରି କହିବାରୁ ଆପଣଙ୍କ ପୁତ୍ର ସତ୍ୟବିକ୍ରମ ଦୁର୍ଯ୍ୟୋଧନ ନିର୍ଭୟ ହୋଇ କହିଲେ, ହେ

ବୃକୋଦର ! କୁଳାଧମ ! କାହିଁପାଇଁ ନିରର୍ଥକ ଆତ୍ମବଡ଼ିମା ପ୍ରକାଶ କରୁଅଛ ? ଏତେଡ଼େବଳେ ଯୁଦ୍ଧ କର ; ଆମ୍ଭେ ଅଦ୍ୟ ତୁମ୍ଭର ଯୁଦ୍ଧଶ୍ରଦ୍ଧାକୁ ବିନାଶ କରିବୁ । ୩୮ । ହେ କ୍ଷୁଦ୍ରାଶୟ ! ଦୁର୍ଯ୍ୟୋଧନ ସାମାନ୍ୟ ଲୋକପରି ତୁମ୍ଭ ସଦୃଶ କୌଣସି ବ୍ୟକ୍ତିଙ୍କ ବଚନରେ ତ୍ରାସ ପାଇବେ ନାହିଁ । ୩୯ । ତୁମ୍ଭ ସଙ୍ଗରେ ଗଦାଯୁଦ୍ଧ କରିବୁ ବୋଲି ବହୁକାଳରୁ ଇଚ୍ଛା ରଖିଅଛୁ ଏବଂ ଦେବତାମାନେ ମଧ୍ୟ ତାହା ଘଟାଇଅଛନ୍ତି । ଅତଏବ ହେ ଦୁର୍ବୁଦ୍ଧେ ! ଅନର୍ଥକ ବାକ୍ୟବ୍ୟୟ ଓ ଆତ୍ମଶ୍ଳାଘା କରନା । ଯେଉଁ କଥା କହୁଅଛ, ତାହା ଶୀଘ୍ର କାର୍ଯ୍ୟରେ ସମ୍ପାଦନ କର । ୪୧ । ହେ ମହାରାଜ ! ସେଠାରେ ଉପସ୍ଥିତ ଥିବା ସୋମକ ପ୍ରଭୃତି ସମସ୍ତ ନରପାଳଗଣ ଦୁର୍ଯ୍ୟୋଧନଙ୍କର ଏହି ସବୁ କଥା ଶ୍ରବଣ କରି ତାହାଙ୍କୁ ବାରମ୍ବାର ପ୍ରଶଂସା କଲେ । ୪୨ ।

ତଦୁପରେ କୁରୁନନ୍ଦନ ସମସ୍ତଙ୍କ ପ୍ରଶଂସା ବାକ୍ୟରେ ପୁଲକିତ-କଳେବର ହୋଇ ପୁନଶ୍ଚ ଯୁଦ୍ଧ ନିମିତ୍ତ ବୁଦ୍ଧି ସ୍ଥିର କଲେ । ୪୩ । ନରପାଳଗଣ ଉନ୍ମତ୍ତ ମାତଙ୍ଗ ସଦୃଶ ଦୁର୍ଜୟ ଦୁର୍ଯ୍ୟୋଧନଙ୍କୁ ପୁନଶ୍ଚ କରତଳ ଧ୍ୱନି ଦ୍ୱାରା ହର୍ଷଯୁକ୍ତ କରାଇଲେ । ୪୪ । ପାଣ୍ଡୁପୁତ୍ର ମହାତ୍ମା ବୃକୋଦର ଗଦା ଉତ୍ତୋଳନ କରି ଅତି ଶୀଘ୍ର ଧୃତରାଷ୍ଟ୍ରଙ୍କ ସୁତ ମହାତ୍ମା ଦୁର୍ଯ୍ୟୋଧନଙ୍କ ଅଭିମୁଖକୁ ଧାବମାନ ହେଲେ । ୪୫ । ସେତେବେଳେ ଜୟାଭିଳାଷୀ ପାଣ୍ଡବମାନଙ୍କର କୁଞ୍ଜରଯୂଥ ବୃଂହିତଧ୍ୱନି ଓ ଅଶ୍ୱମାନେ ହ୍ରେଷା ରବ କଲେ ଓ ଅସ୍ତ୍ରଶସ୍ତ୍ର ସମୂହ ପ୍ରଦୀପ୍ତ ହେଲା । ୪୬ ।

---

## ଅଧ୍ୟାୟ—୫୬

ସଞ୍ଜୟ କହିଲେ—ମହାରାଜ ! ତଦୁପରେ ଅଧୀରାତ୍ମା ଦୁର୍ଯ୍ୟୋଧନ ଭୀମଙ୍କୁ ନ୍ୟାଦଶ ଭାବରେ ଆସୁଥିବାର ଦେଖି ନିନାଦ କରି ଅତି ବେଗରେ ତାହାଙ୍କ ନିକଟକୁ ଧାବିତ ହେଲେ । ୧ । ଦୁହେଁ ପରସ୍ପର ମହାଶୃଙ୍ଗ ବୃଷଭ ସଦୃଶ ଏକତ୍ରିତ ହେଲେ । ପ୍ରହାରମାନଙ୍କର ମହାନିର୍ଘାତ ସଦୃଶ ନିର୍ଘୋଷ ଜାତ ହେଲା । ୨ । କ୍ରମେ କ୍ରମେ ଇନ୍ଦ୍ର ଓ ପ୍ରହ୍ଲାଦଙ୍କ ସଦୃଶ ପରସ୍ପର ବିଜୟାଭିଳାଷୀ ବୀର ଦୁହିଁଙ୍କର ଲୋମହର୍ଷଣକାରକ ଯୁଦ୍ଧ ହେଲା । ୩ । ସେହି ଗଦାହସ୍ତ ମନସ୍ୱୀ ମହାତ୍ମାଦୁହିଁଙ୍କର ସର୍ବାଙ୍ଗ ରୁଧିରଧାରରେ

ଜର୍ଜରିତ ହେବାରୁ ସେହି ଦୁହେଁ ପୁଷ୍ପଯୁକ୍ତ ପଳାଶବୃକ୍ଷ ସଦୃଶ ଦୃଶ୍ୟମାନ ହେଲେ । ୪ । ଏହିପରି ଅତି ଦାରୁଣ ମହାଯୁଦ୍ଧ ହେଉଥିବା ସମୟରେ ଅର୍ଥାତ୍ ପରସ୍ପରଙ୍କର ଗଦାଘାତରେ ହୁତାଶନ କଣା ଉତ୍ଥିତ ହେବାରୁ ଆକାଶ ମଣ୍ଡଳ ଖଦ୍ୟୋତସମୂହରେ ବିରାଜିତ ହେଲା ପରି ଦେଖା ଗଲେ । ୫ ।

ସେହି ତୁମୁଳ ସଂକୁଳ ସମୟରେ ଶତ୍ରୁଦମନ ଦୁର୍ଯ୍ୟୋଧନ ଓ ବୃକୋଦର ଉଭୟ ବୀର ବାରମ୍ବାର ଯୁଦ୍ଧ କରି ଅତିଶୟ ପରିଶ୍ରାନ୍ତ ହେଲେ । ୬ । ସେହି ଶତ୍ରୁଦମନଶୀଳ ବୀରଦୁହେଁ ମୁହୂର୍ତ୍ତିକ ସମୟ ପର୍ଯ୍ୟନ୍ତ ଆଶ୍ୱାସ ଲଭ କରି ପୁନଶ୍ଚ ଶୋଭନ ଗଦାଗ୍ରହଣ ପୂର୍ବକ ପରସ୍ପର ସଂଗ୍ରାମ କଲେ । ୭ । ଯେଉଁପରି ମଦୋତ୍କଟ ବଳିଷ୍ଠ ବାରଣଦ୍ୱୟ ଉନ୍ମତ୍ତ ହସ୍ତିନୀ ନିମିତ୍ତ ମତ୍ତ ହୁଅନ୍ତି, ସେହି ବୀରଦ୍ୱୟ କ୍ଷଣକାଳ ବିଶ୍ରାମ କଲା ଉତ୍ତାରେ ସେହିପରି ହେଲେ । ୮ । ଦେବଗନ୍ଧର୍ବଗଣ ସାମାନ୍ୟ ବୀର୍ଯ୍ୟଶାଳୀ ଗଦା ଉତ୍ତୋଳନକାରୀ ସେହି ଉଭୟ ବୀରଙ୍କୁ ଦେଖି ଅତି ଶୀଘ୍ର ଚମତ୍କୃତ ହେଲେ । ୯ । ଗଦା ଉତ୍ତୋଳନକାରୀ ଦୁର୍ଯ୍ୟୋଧନ ଓ ବୃକୋଦରଙ୍କୁ ଦେଖି ସମସ୍ତ ଲୋକଙ୍କର ଅନ୍ତଃକରଣରେ ଉଭୟ ବୀରଙ୍କର ବିଜୟ ବିଷୟରେ ସଂଶୟ ଜାତ ହେଲା । ୧୦ ।

ତତ୍ପରେ ବଳୀଶ୍ରେଷ୍ଠ ସେହି ଭ୍ରାତୃଦ୍ୱୟ ବାରମ୍ବାର ନିକଟବର୍ତ୍ତୀ ହୋଇ ପରସ୍ପରଙ୍କ ଛିଦ୍ର ଅନ୍ୱେଷଣରେ ନାନାପ୍ରକାର ଗତି କଲେ । ୧୧ । ଦର୍ଶକଗଣ ଯମଦଣ୍ଡ ଓ ଇନ୍ଦ୍ରଙ୍କ ବଜ୍ର ସଦୃଶ ଉତ୍ତୋଳିତ ଗୁରୁତର ଗଦାକୁ ଭୟଙ୍କର ହିଂସ୍ର ଅସ୍ତ୍ର ସଦୃଶ ଅବଲୋକନ କଲେ । ୧୨ । ବୃକୋଦର ଯେତେବେଳେ ସମର ମଧ୍ୟରେ ଗଦା ଭ୍ରମଣ କରାନ୍ତି, ସେତେବେଳେ ତାହାଙ୍କର ସେହି ଅତିଶୟ ତୁମୁଳ ଘୋରତର ନାଦ ମୁହୂର୍ତ୍ତ ପର୍ଯ୍ୟନ୍ତ ସ୍ଥିର ଥାଏ । ପାଣ୍ଡବ ଭୀମ ସେହି ଅନୁପମବେଗ ସମ୍ପନ୍ନ ଗଦାକୁ ଭ୍ରମଣ କରାଇବାରୁ ଦୁର୍ଯ୍ୟୋଧନ ତାହା ଦେଖି ବିସ୍ମୟଯୁକ୍ତ ହେଲେ । ୧୪ । ବୀରବର ବୃକୋଦର ସଂଗ୍ରାମରେ ଦୁର୍ଯ୍ୟୋଧନଙ୍କ ଚତୁର୍ଦ୍ଦିଗରେ ବାରମ୍ବାର ବିବିଧ ମାର୍ଗରେ ମଣ୍ଡଳାକାର ଗତିରେ ବିଚରଣ କରି ସୁଶୋଭିତ ହେଲେ । ସେ ଦୁହେଁ ନିକଟବର୍ତ୍ତୀ ହୋଇ ପରସ୍ପରଠାରୁ ପରସ୍ପର ରକ୍ଷା ନିମିତ୍ତ ଅତି ଯତ୍ନଶୀଳ ହେଲେ ଓ ଭକ୍ଷ୍ୟଦ୍ରବ୍ୟ ନିମିତ୍ତ ଅତିଶୟ ବ୍ୟାକୁଳ ମାର୍ଜାରଦ୍ୱୟ ସଦୃଶ ବାରମ୍ବାର ପ୍ରହାର କଲେ । ୧୬ । ସେତେବେଳେ ଭୀମ ବାରମ୍ବାର

ବହୁବିଧ ମାର୍ଗରେ ବିଚରଣ ଓ ମଣ୍ଡଳାକାର ମାର୍ଗରେ ଶତ୍ରୁର ସମ୍ମୁଖକୁ ଗମନ କରି ସେଠାରୁ ପ୍ରତ୍ୟାଗତ ହେଲେ । ୧୭ ।

ବିଚିତ୍ର ଅସ୍ତ୍ର କୌଶଳରେ ବିବିଧ ସ୍ଥାନ ଭ୍ରମଣ କରି ପ୍ରହାରରୁ ଶରୀରକୁ ରକ୍ଷା କରିବାର, ପ୍ରହାର ବାରଣ, ପ୍ରହାର ବର୍ଜନ, ଅତି ବେଗରେ ସମ୍ମୁଖକୁ ଧାବନ, ଗଦାଦ୍ୱାରା ଗଦାର ଆଘାତରୁ ବଞ୍ଚନାପୂର୍ବକ ଅବସ୍ଥାନ, ପ୍ରହାର ପାତନ, ପଶ୍ଚାତ୍ ଗମନ, ଅବପ୍ଲୁତ (ଅର୍ଥାତ୍ ପ୍ରହାର ବଞ୍ଚନାର୍ଥ ନମ୍ରୀଭୂତ ହୋଇ ନିଃସୃତ ହେବାର), ଉପପ୍ଲୁତ (ଅର୍ଥାତ୍ ନମ୍ରୀ-ଭୂତ ହୋଇ ଅଗ୍ରଭାଗରେ ଗମନଯୁକ୍ତ ହେବାର), (୧୯) ଉପନ୍ୟସ୍ତ (ଅର୍ଥାତ୍ ନିକଟବର୍ତ୍ତୀ ହୋଇ ଆୟୁଧ ନିକ୍ଷେପ କରିବାର), ଅପନ୍ୟସ୍ତ (ଅର୍ଥାତ୍ ଫେରି ଆସି ପୃଷ୍ଠରେ ହସ୍ତଦ୍ୱାରା ଶତ୍ରୁକୁ ତାଡ଼ନ କରିବାର) ପ୍ରଭୃତି ଗଦାଯୁଦ୍ଧରେ ଯାଦୃଶ କୌଶଳମାନ ପ୍ରଦର୍ଶନ କରିବାର ଉଚିତ, ସେହି ଗଦାଯୁଦ୍ଧବିଶାରଦ ବୀରଦ୍ୱୟ ତାଦୃଶ କୌଶଳ ପ୍ରକାଶ କରି ପରସ୍ପର ପ୍ରହାରରେ ପ୍ରବୃତ୍ତ ହେଲେ । ୨୦ । ଅତି ବଳିଷ୍ଠ କୁରୁଶ୍ରେଷ୍ଠ ବୀର-ଦୁହେଁ ତାଦୃଶ ଭାବରେ ରଣସ୍ଥଳରେ ପରସ୍ପର ବଞ୍ଚନାଦ୍ୱାରା କ୍ରୀଡ଼ା କରି ମଣ୍ଡଳାକାର ପଥରେ ବିଚରଣ କଲେ । ୨୧ । ଶତ୍ରୁଦମନଶୀଳ ସେହି ବୀରଦ୍ୱୟ ଯୁଦ୍ଧକ୍ଷେତ୍ରରେ ଚତୁର୍ଦ୍ଦିଗରେ ଯୁଦ୍ଧ କ୍ରୀଡ଼ାକୁ ପରିଦର୍ଶନ କରାଇ ସହସା ଉଭୟ ଗଦାଦ୍ୱାରା ପରସ୍ପରକୁ ପ୍ରହାର କଲେ ।୨୨।

ହେ ମହାରାଜ ! ରକ୍ତାକ୍ତକଳେବର ସେହି ବୀର ଦୁହେଁ ଗଦାଦ୍ୱାରା ଯୁଦ୍ଧ କରି ଦନ୍ତଦ୍ୱାରା ପରସ୍ପର ସଂଗ୍ରାମକାରୀ ଦୁଇଗୋଟି ହସ୍ତୀ ସଦୃଶ ଶୋଭିତ ହେଲେ । ୨୩ । ଏହି ପ୍ରକାରରେ ଦିବସର ଶେଷଭାଗରେ ଇନ୍ଦ୍ର ଓ ବୃତ୍ରାସୁରଙ୍କ ଯୁଦ୍ଧ ପରି ଅନିବାରିତ ଘୋରତର ଦାରୁଣ ଯୁଦ୍ଧ ହୋଇ-ଥିଲା । ୨୪ । ତତ୍ପରେ ସେହି ଗଦାହସ୍ତ ବଳିଷ୍ଠ ବୀରଦ୍ୱୟ ମଣ୍ଡଳ ମଧ୍ୟରେ ଅବସ୍ଥିତ ଥିଲେ । ମହାବଳ ଦୁର୍ଯ୍ୟୋଧନ ପ୍ରଥମରେ ଦକ୍ଷିଣ ମଣ୍ଡଳରେ ଅବସ୍ଥିତ ହେଲେ । ତତ୍ପରେ ଭୀମ ତାଦୃଶ ଭାବରେ ସମରକ୍ଷେତ୍ରର ଅଗ୍ରଭାଗରେ [illegible] କରନ୍ତେ ଦୁର୍ଯ୍ୟୋଧନ ତାହାଙ୍କୁ ଗଦାଦ୍ୱାରା ପାର୍ଶ୍ୱ ଦେଶରେ ତାଡ଼ନ କଲେ ।

ହେ ମହାରାଜ ! ବୃକୋଦର ଭବଦୀୟ ପୁତ୍ରଙ୍କ ପ୍ରହାରରେ ଆଘାତପ୍ରାପ୍ତ ହୋଇ (୨୬) ତାହାକୁ ଅନାସ୍ଥା କରି ଗୁରୁତର ଗଦାକୁ ବୁଲେଇଲେ । ଦର୍ଶକଗଣ ଭୀମସେନଙ୍କ ସେହି ଭୟଙ୍କର ଗଦାକୁ ବଜ୍ର ଓ

ଉତ୍ତୋଳିତ ଯମଦଣ୍ଡ ସଦୃଶ ଦର୍ଶନ କଲେ । ଆପଣଙ୍କ ପୁତ୍ର ଶତ୍ରୁତାପନ ଦୁର୍ଯ୍ୟୋଧନ ଭୀମସେନଙ୍କ ଗଦା ଭ୍ରମଣ ଦେଖି ଉଗ୍ରଙ୍କର ଗଦା ଉତ୍ତୋଳନ-ପୂର୍ବକ ପ୍ରତିବନ୍ଧ କଲେ । ହେ ମହାରାଜ ! ଉଭୟଙ୍କ ପୁତ୍ରଙ୍କ ଗଦା ଭ୍ରମଣରେ ପବନ ବେଗରେ ଘୋରତର ତୁମୁଳ ଶବ୍ଦ ଓ ତେଜ ପ୍ରାଦୁର୍ଭୂତ ହେଲା । ତେଜସ୍ୱୀ ସୁଯୋଧନ ବିବିଧ ମଣ୍ଡଳାକାର ମାର୍ଗରେ ବାରମ୍ବାର ନାନା ପ୍ରକାର ବିଚରଣ କରି ଭୀମଙ୍କ ଅପେକ୍ଷା ଅତି ଅଧିକ ଭାବରେ ଶୋଭିତ ହେଲେ । ଭୀମଙ୍କଦ୍ୱାରା ମହାବେଗରେ ଘୂର୍ଣ୍ଣାୟିତ ଗଦାୟୁମାନ ମହାଗଦା ଧୂମଯୁକ୍ତ ଜ୍ୱଳନ୍ତ ଅଗ୍ନି ପରିତ୍ୟାଗ କଲା । ସୁଯୋଧନ ଭୀମଙ୍କ ଗଦାଭ୍ରମଣ ଅବଲୋକନ କରି ପର୍ବତ ସାରମୟୀ ଗୁରୁତର ସ୍ୱକୀୟ ଗଦାକୁ ଭ୍ରମଣ କରାଇ ଅତ୍ୟନ୍ତ ଶୋଭା ପାଇଲେ । ସେହି ମହାନୁଭବଙ୍କ ଗଦାଭ୍ରମଣଜନିତ ପବନର ବେଗ ଦର୍ଶନ କରି ସୋମକ ଓ ପାଣ୍ଡବଗଣଙ୍କ ଅନ୍ତଃକରଣରେ ଭୟ ଜନ୍ମିଲା । ସେହି ଶତ୍ରୁଦମନଶୀଳ ବୀରଦ୍ୱୟ ସମର-କ୍ଷେତ୍ରରେ ଚତୁର୍ଦ୍ଦିଗରେ ଦର୍ଶକମାନଙ୍କୁ ଯୁଦ୍ଧ କ୍ରୀଡ଼ା ପରିଦର୍ଶନ କରାଇ ସହସା ଗଦାଦ୍ୱାରା ପରସ୍ପର ପ୍ରହାର କଲେ ।

ହେ ମହାରାଜ ! ସେହି ବୀରଦ୍ୱୟ ପରସ୍ପର ନିକଟବର୍ତ୍ତୀ ହୋଇ ଯୁଦ୍ଧ କରି ଦନ୍ତଦ୍ୱାରା ପ୍ରହାରକାରୀ ଦ୍ୱନ୍ଦ୍ୱକାରକ ଦୁଇଗୋଟି ଦ୍ୱିରଦ ସଦୃଶ ଶୋଭା ପାଇଲେ । ଦିବସ ଶେଷରେ ସେହି ଦୁହେଁ ପରସ୍ପର ଇନ୍ଦ୍ର ଓ ବୃତ୍ରାସୁରଙ୍କ ପରି ଘୋରତର ତୁମୁଳ ସଂଗ୍ରାମ କଲେ । ଆପଣଙ୍କ ପୁତ୍ର ମହାବଳ ଦୁର୍ଯ୍ୟୋଧନ ଭୀମସେନଙ୍କୁ ଅବସ୍ଥିତ ଦେଖି (୩୮) ବିବିଧ ବିଚିତ୍ର ମାର୍ଗରେ ବିଚରଣ କରି କୁନ୍ତୀପୁତ୍ରଙ୍କ ନିକଟକୁ ଧାବମାନ ହେଲେ । କ୍ରୋଧଯୁକ୍ତ ଭୀମ ଅତି କ୍ରୋଧପରାୟଣ ଦୁର୍ଯ୍ୟୋଧନଙ୍କ ମହା-ବେଗବତୀ ଓ ସୁବର୍ଣ୍ଣ ପରିଷ୍କୃତା ଗଦାକୁ ସ୍ୱକୀୟ ଗଦାଦ୍ୱାରା ପ୍ରହାର କଲେ । ହେ ମହାରାଜ ! ଗଦାଦ୍ୱୟର ପରସ୍ପର ସଂଘର୍ଷଣରେ ଦୁଇଗୋଟି ବଜ୍ରର ଅଭିଘାତଜନିତ ଶବ୍ଦ ସଦୃଶ ଅଗ୍ନିକଣା ସହିତ ମହା ନିନାଦ ପ୍ରାଦୁର୍ଭୂତ ହେଲା ।

ହେ ମହାରାଜ ! ଭୀମସେନଙ୍କ ଦ୍ୱାରା ବିମୁକ୍ତ ବେଗଯୁକ୍ତ ଗଦା-ନିପାତ ସମୟରେ ଭୂମଣ୍ଡଳ ବିକମ୍ପିତ ହେଲା । ମତ୍ତ ମାତଙ୍ଗ ଯେଉଁପରି ଅନ୍ୟ ଗୋଟିଏ ହସ୍ତୀକୁ ଦର୍ଶନ କରି କ୍ରୋଧଯୁକ୍ତ ହୁଏ, ଦୁର୍ଯ୍ୟୋଧନ ସେହିପରି ରଣସ୍ଥଳରେ କ୍ରୋଧଯୁକ୍ତ ହୋଇ ତାହାଙ୍କ ଗଦାର ପ୍ରତିଘାତକୁ

ଆସ୍ଥା କଲେ ନାହିଁ । ଭୀମସେନଙ୍କ ସହାର ବକ୍ଷସ୍ଥଳରେ କୃତନିଶ୍ଚୟ ଦୁର୍ଯ୍ୟୋଧନ ବାମ ଭାଗରେ ଭ୍ରମଣ କରି ଭୟଙ୍କର ବେଗଶାଳୀ ଗଦାଦ୍ୱାରା ପାଣ୍ଡୁନନ୍ଦନଙ୍କ ମସ୍ତକରେ ଆଘାତ କଲେ । ଭୀମ ଭବଦୀୟ ପୁତ୍ରଙ୍କ ଗଦା ଦ୍ୱାରା ଆହତ ହୋଇ କଣ୍ଟିନ୍ମାତ୍ର ବିଚଳିତ ହେଲେ ନାହିଁ । ଅତଏବ ତାହା ଅତି ଆଶ୍ଚର୍ଯ୍ୟ ପ୍ରାୟ ଜଣାଗଲା । ହେ ରାଜନ୍ ! ସେ ଦୁର୍ଯ୍ୟୋଧନଙ୍କ ଗଦା-ଘାତଦ୍ୱାରା ଏକ ପଦ ମାତ୍ର ବିଚଳିତ ନ ହେବାରୁ ଏହି ଆଶ୍ଚର୍ଯ୍ୟ ଘଟଣା ଦେଖି ସୈନ୍ୟମାନେ ସମସ୍ତେ ତାହାଙ୍କୁ ପ୍ରଶଂସା କଲେ । ୪୫ ।

ତତ୍ପରେ ଭୟଙ୍କର ପରାକ୍ରମଶାଳୀ ଭୀମ ସୁବର୍ଣ୍ଣପରିଷ୍କୃତ, ବ୍ରଜାପ୍ତ ଓ ଗୁରୁତର ଗଦା ଗ୍ରହଣ କରି ଦୁର୍ଯ୍ୟୋଧନଙ୍କୁ ନିକ୍ଷେପ କଲେ । ମହାବଳ ଦୁର୍ଯ୍ୟୋଧନ କୌଶଳରେ ତାହା ବିଫଳ କରି ଦର୍ଶକମାନଙ୍କୁ ବିସ୍ମୟ-ସିନ୍ଧୁରେ ମଗ୍ନ କଲେ । ଯେତେବେଳେ ଭୀମଙ୍କ ଗୃହୀତ ଗଦା ବିଫଳ ହୋଇ ଗମ୍ଭୀର ଧ୍ୱନି ସହିତ ପୃଥିବୀରେ ନିପତିତ ହେଲା, ସେତେବେଳେ ଭୂକମ୍ପ ହେଲା । ଦୁର୍ଯ୍ୟୋଧନ କୌଶିକଙ୍କ ପ୍ରଦର୍ଶିତ ପଥ ଅବଲମ୍ବନଦ୍ୱାରା କୌଶଳରେ ବୃକୋଦରଙ୍କୁ ବଞ୍ଚିତ କରି ବାରମ୍ବାର ଉତ୍ପତନପୂର୍ବକ ମହାବଳ ପ୍ରକାଶ କରି କ୍ରୋଧରେ ଭୀମସେନଙ୍କ ବକ୍ଷସ୍ଥଳରେ ଗଦା ପ୍ରହାର କଲେ । ହେ ମହାରାଜ ! ବୃକୋଦର ସେହି ସମର ମଧ୍ୟରେ ଭବଦୀୟ ପୁତ୍ରଙ୍କ ଗଦାଘାତରେ ମୋହଗ୍ରସ୍ତ ହୋଇ ମୁହୂର୍ତ୍ତ ପର୍ଯ୍ୟନ୍ତ କିଛି କର୍ତ୍ତବ୍ୟ କାର୍ଯ୍ୟ ସ୍ଥିର କରି ପାରିଲେ ନାହିଁ । ଭୀମ ତାଦୃଶ ଅବସ୍ଥାରେ ଅବସ୍ଥିତ ହେବାରୁ ହତସଙ୍କଳ୍ପ ସୋମକ ଓ ପାଣ୍ଡବଗଣ ଅତ୍ୟନ୍ତ ଦୁଃଖିତ ହେଲେ ।

ତଦନନ୍ତର ମତ୍ତ ମାତଙ୍ଗ ସଦୃଶ ଭୀମ ସେହି ଦାରୁଣ ପ୍ରହାରଦ୍ୱାରା ହସ୍ତୀ ନିକଟକୁ ହସ୍ତୀ ଗମନ କଲାପରି ରୋଷାକ୍ରାନ୍ତ ହୋଇ ଭବଦୀୟ ପୁତ୍ରଙ୍କ ସମ୍ମୁଖକୁ ଧାବମାନ ହେଲେ । ହେ ରାଜନ୍ ! ତତ୍ପରେ ଭୀମ ଗଦାଗ୍ରହଣ କରି ସିଂହ ବନଗଜ ନିକଟକୁ ଧାବିତ ହେଲାପରି ଅତି ବେଗରେ ଭବଦୀୟ ପୁତ୍ରଙ୍କ ସମ୍ମୁଖକୁ ଧାବିତ ହେଲେ । କ୍ଷଣକ ସମୟ ମଧ୍ୟରେ ଗଦାଯୁଦ୍ଧ-ବିଶାରଦ ସେହି ପାଣ୍ଡବ ଭୀମ ଦୁର୍ଯ୍ୟୋଧନଙ୍କ ନିକଟବର୍ତ୍ତୀ ହୋଇ ତାହାଙ୍କ ପାର୍ଶ୍ୱକୁ ଲକ୍ଷ୍ୟ କରି ପ୍ରବଳ ବେଗରେ ଗଦା ପ୍ରହାର କରନ୍ତେ କୁରୁରାଜ ବିହ୍ୱଳ ହୋଇ ଜାନୁଦ୍ୱୟ ଦ୍ୱାରା ପୃଥିବୀରେ ଉପବିଷ୍ଟ ହେଲେ । ହେ ମହାରାଜ ! କୁରୁକୁଳଶ୍ରେଷ୍ଠ ଦୁର୍ଯ୍ୟୋଧନ ଜାନୁଦ୍ୱୟ ଦ୍ୱାରା ପୃଥିବୀରେ

ଉପବିଷ୍ଟ ହେବାରୁ ସୃଞ୍ଜୟ ସୈନ୍ୟମାନଙ୍କର ଅତି ଉତ୍କୃଷ୍ଟ ଆନନ୍ଦ ଧ୍ୱନି ଉତ୍ଥିତ ହେଲା । ଆପଣଙ୍କ ପୁତ୍ର ସେହିମାନଙ୍କ ଆନନ୍ଦ ଧ୍ୱନି ଶୁଣି ଅମର୍ଷ ହେତୁରୁ ଅତିଶୟ କୋପଯୁକ୍ତ ହେଲେ । ସେହି ମହାବାହୁ କ୍ରମେ କ୍ରମେ ମହାନାଗ ସଦୃଶ ଘନ ଘନ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ କରି ଗାତ୍ରୋତ୍ଥାନ-ପୂର୍ବକ ନେତ୍ରଦ୍ୱୟଦ୍ୱାରା ଭୀମଙ୍କୁ ଦଗ୍ଧ କଲାପରି ନିରୀକ୍ଷଣ କଲେ ।"

ହେ ମହାରାଜ ! ତତ୍ପରେ ଜଣାଗଲା, କୁରୁବର ଦୁର୍ଯ୍ୟୋଧନ ହସ୍ତରେ ଗଦାଧାରଣ ପୂର୍ବକ ଭୀମଙ୍କ ମସ୍ତକକୁ ଚୂର୍ଣ୍ଣ କରିବାର ଇଚ୍ଛାରେ ଯୁଦ୍ଧଭୂମିକୁ ଧାବମାନ ହେଲେ । ତତ୍ପରେ ପ୍ରବଳ ପରାକ୍ରାନ୍ତ ମହାତ୍ମା କୁରୁରାଜ ମହାନୁଭବ ଭୀମଙ୍କ ଲଲାଟରେ ଗଦାଘାତ କଲେ ସୁଦ୍ଧା ସେ ପର୍ବତ ସଦୃଶ କିଞ୍ଚିନ୍ମାତ୍ର ବିଚଳିତ ହେଲେ ନାହିଁ । ମହାରାଜ ! ଭୀମ ପୁନଶ୍ଚ ଦୁର୍ଯ୍ୟୋଧନଙ୍କ ଗଦାପ୍ରହାର ସହ୍ୟକରି ରକ୍ତାକ୍ତ କଳେବର ହୋଇ ଯୁଦ୍ଧ କ୍ଷେତ୍ରରେ ମତ୍ତଗଜ ସଦୃଶ ଶୋଭା ପାଇଲେ ।୬୨। ତତ୍ପରେ ଶତ୍ରୁଦଳନ ଅର୍ଜ୍ଜୁନାଗ୍ରଜ ଭୀମ ବଜ୍ରାଶନି ସଦୃଶ ନିଃସ୍ୱନକାରିଣୀ ହୀର-ଘାତିମା ଲୌହମୟୀ ଗଦା ଗ୍ରହଣ ପୂର୍ବକ ସ୍ୱକୀୟ ଶକ୍ତି ଅନୁସାରେ ବିକ୍ରମ ପ୍ରକାଶ କରି ଶତ୍ରୁକୁ ପ୍ରହାର କଲେ ।୬୩।

ହେ ମହାରାଜ ! ଭବଦୀୟ ପୁତ୍ର ଦୁର୍ଯ୍ୟୋଧନ ଭୀମଙ୍କଦ୍ୱାରା ଆହତ ହୋଇ ଭୂତଳରେ ପତିତ ହେଲେ । ତେତେବେଳେ ତାହାଙ୍କର ଶରୀରର ବନ୍ଧନ ସମୂହ ଶିଥିଳ ହେଲା । ବନମଧ୍ୟରେ ସୁନ୍ଦର ପୁଷ୍ପଯୁକ୍ତ ବୃକ୍ଷ ପ୍ରବଳ ପବନ ବେଗରେ ଘୂର୍ଣ୍ଣିତ ହୋଇ ଭୂତଳରେ ପଡ଼ିଲେ ଯେଉଁପରି ଦିଶେ, ଦୁର୍ଯ୍ୟୋଧନ ସେହିପରି ଦିଶିଲେ ।୬୪। ତତ୍ପରେ ପାଣ୍ଡବୀୟ ସୈନ୍ୟ-ସମୂହ କୁରୁରାଜଙ୍କୁ ଧରାତଳରେ ପଡ଼ିବାର ଦେଖି ଉଚ୍ଚୈଃସ୍ୱରରେ ନାଦ-କଲେ ଓ ନାନାପ୍ରକାର ଉପହାସ ବାକ୍ୟ ବିନ୍ୟାସ କଲେ । କିୟତ୍କାଳ ବିଳମ୍ବରେ ଭବଦୀୟ ପୁତ୍ର ଜ୍ଞାନଲାଭ କରି ହ୍ରଦରୁ ଉତ୍ଥିତ ହସ୍ତୀ ସଦୃଶ ଗାତ୍ରୋତ୍ଥାନ କଲେ ।୬୫। ମହାରଥ କୁରୁରାଜ ସ୍ୱଭାବରେ ମନ୍ଦା କ୍ରୋଧପରାୟଣ ଅଟନ୍ତି । ତେତେବେଳେ ଶତ୍ରୁଙ୍କଦ୍ୱାରା ତାହାଙ୍କର ତାଦୃଶ ଅବମାନନା ହେବାରୁ ସେ ଶିକ୍ଷିତ ଯୋଦ୍ଧାପରି କିୟତ୍ ଭ୍ରମଣ କରି ଅଗ୍ରସ୍ଥିତ ପାଣ୍ଡବଙ୍କୁ ଗଦାଦ୍ୱାରା ତାଡ଼ନ କଲେ ।

ସେହି ପ୍ରହାରରେ ଭୀମ ବିହ୍ୱଳ ହୋଇ ଭୂତଳରେ ପଡ଼ିଲେ ।୬୬। କୌରବ ବଳଦ୍ୱାରା ଭୀମଙ୍କୁ ଭୂତଳରେ ନିପାତିତ କରି ଘୋରତର

ସିଂହନାଦ କଲେ ଓ ବଜ୍ରସଦୃଶ କଠୋର ଗଦାର ପ୍ରହାରଦ୍ୱାରା ଭୀମଙ୍କ ଶରୀରରକ୍ଷଣ ଅର୍ଥାତ୍ କବଚକୁ ଛିନ୍ନଭିନ୍ନ କଲେ । ୬୭ । ତତ୍ପରେ ଆକାଶ ମଣ୍ଡଳରେ ବାଦ୍ୟକାରୀ ଅମରଗଣ ଓ ଅପ୍‌ସରାଗଣଙ୍କର ଅତି ଉତ୍କୃଷ୍ଟ ନାଦ ହେଲା ଓ ଅନ୍ତରୀକ୍ଷରୁ ଦେବଗଣଙ୍କଦ୍ୱାରା ବିସୃଷ୍ଟ ବିଚିତ୍ର ପୁଷ୍ପସମୂହର ବୃଷ୍ଟି ହେଲା । ୬୮ । ହେ ମହାରାଜ ! ପାଣ୍ଡବୀୟ ସୈନ୍ୟଗଣ ନରବର ଭୀମଙ୍କୁ ଭୂତଳରେ ପତିତ ଓ ତାହାଙ୍କ ଦୃଢ଼ତର କବଚ ବିଭିନ୍ନ ଓ କୁରୁରାଜଙ୍କୁ ବିଜୟୀ ହେବାର ଦେଖି ଅତିଶୟ ଭୟାବିଷ୍ଟ ହେଲେ । ୬୯ ।

ମୁହୂର୍ତ୍ତିକ ଉତ୍ତାରେ ଭୀମ ସଚେତନ ହୋଇ ସ୍ୱକୀୟ ରୁଧିରାର୍ଦ୍ର ମୁଖକୁ ମାର୍ଜନ କରି ଧୈର୍ଯ୍ୟ ଅବଲମ୍ବନ ପୂର୍ବକ ବଳ ପ୍ରଭାବରେ ବେଦନା ସହ୍ୟ କରି ଉନ୍ମୀଳିତ ନୟନରେ ସମରାଙ୍ଗଣରେ ଅବସ୍ଥାନ କଲେ । ୭୦ ।

---

## ଅଧ୍ୟାୟ—୫୮

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ଅର୍ଜୁନ କୁରୁବର ଦୁହିଁଙ୍କର ଉତ୍କୃଷ୍ଟ ତାଦୃଶ ତୁମୁଳ ଯୁଦ୍ଧ ଦେଖି ଯଶସ୍ୱୀ ବାସୁଦେବଙ୍କୁ ସମ୍ବୋଧନ କରି କହିଲେ, ହେ ଜନାର୍ଦ୍ଦନ ! ଏହି ଦୁଇ ବୀରଙ୍କ ମଧ୍ୟରେ କେଉଁ ବ୍ୟକ୍ତି ଯୁଦ୍ଧ ବିଷୟରେ ଶ୍ରେଷ୍ଠ ବୋଲି ଜଣାଯାଉଅଛି ? କାହାର କେଉଁ ଗୁଣ ଅଧିକ, ତାହା ଆମ୍ଭଙ୍କୁ କହ । ୨ ।

ବାସୁଦେବ କହିଲେ, ଏହି ଦୁହିଁଙ୍କର ଉପଦେଶ ସମାନ, କିନ୍ତୁ ଭୀମ ଅତି ଅଧିକ ବଳବାନ୍ । ଦୁର୍ଯ୍ୟୋଧନ ଭୀମଙ୍କ ଅପେକ୍ଷା ରଣନିପୁଣ ଓ ଅତିଶୟ ଯତ୍ନପରାୟଣ । ୩ । ଭୀମ ଯଦି ଧର୍ମାନୁସାରେ ଯୁଦ୍ଧ କରିବେ, ତେବେ କଦାପି ଦୁର୍ଯ୍ୟୋଧନଙ୍କୁ ଜୟ କରି ପାରିବେ ନାହିଁ । ଯଦି ଅନ୍ୟାୟ ଯୁଦ୍ଧ କରିବେ, ତେବେ ଅନାୟାସରେ ସୁଯୋଧନଙ୍କୁ ସଂହାର କରିବେ । ୪ । ଆମ୍ଭେ ଶୁଣିଅଛୁ, ଦେବତାମାନେ ମାୟାଦ୍ୱାରା ଅସୁରମାନଙ୍କୁ ଜୟ-କରିଥିଲେ, ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ଇନ୍ଦ୍ରଙ୍କ ମାୟାରେ ପରାସ୍ତ ହୋଇ-ଥିଲେ ଓ ବଳସୂଦନ ଦେବରାଜ ମାୟାଦ୍ୱାରା ବୃତ୍ରାସୁରର ତେଜ ହରଣ

କରିଥିଲେ । ଅତଏବ ଭୀମ ମାୟାମୟ ପରାକ୍ରମକୁ ଅବଲମ୍ବନ କରନ୍ତୁ । ୭ । ହେ ଧନଞ୍ଜୟ ! ପୂର୍ବେ ଦ୍ୟୂତକ୍ରୀଡ଼ା ସମୟରେ ଭୀମ ପ୍ରତିଜ୍ଞା କରି କହିଥିଲେ, ହେ ସୁଯୋଧନ ! ଆମ୍ଭେ ଯୁଦ୍ଧରେ ତୁମ୍ଭର ଊରୁଦ୍ୱୟ ଭଗ୍ନ କରିବୁ । ଶତ୍ରୁଦଳନ ଭୀମ ଏତେବେଳେ ମାୟାବୀ ରାଜାଙ୍କୁ ମାୟାଦ୍ୱାରା ବିନାଶ କରନ୍ତୁ ଓ ସେ ପୂର୍ବକୃତ ପ୍ରତିଜ୍ଞାକୁ ପାଳନ କରନ୍ତୁ ।୮। ଏ ଯଦି ନିଜର ବିକ୍ରମ ପ୍ରକାଶ ପୂର୍ବକ ନ୍ୟାୟାନୁସାରେ ସୁଯୋଧନଙ୍କୁ ପ୍ରହାର କରିବେ, ତା ହେଲେ ରାଜା ଯୁଧିଷ୍ଠିର ବିଷମ ସଙ୍କଟରେ ପଡ଼ିବେ ।

ହେ ପାଣ୍ଡବ ! ଆମ୍ଭେ ତୁମ୍ଭଙ୍କୁ ପୁନଶ୍ଚ ଆଉ କିଛି କହୁଅଛୁ ଶୁଣ । ଧର୍ମରାଜଙ୍କ ଅପରାଧରେ ଆମ୍ଭମାନଙ୍କ ମନରେ ପୁନଶ୍ଚ ଭୟର ସଞ୍ଚାର ହେଉଅଛି । ସେ ଭୀଷ୍ମ ପ୍ରଭୃତି ମହାବୀର କୌରବ ସେନାପତିମାନଙ୍କୁ ସଂହାର ପୂର୍ବକ ଅତି ଉତ୍କୃଷ୍ଟ କର୍ମ ସମାଧାନ କଲେ ଓ ତାହାଦ୍ୱାରା ଜୟଲାଭ, ଯଶ ଉପାର୍ଜନ ଓ ଶତ୍ରୁନିର୍ଯ୍ୟାତନ କରି କୃତକାର୍ଯ୍ୟ ହେଲେ । ତଥାପି ଗୋଟିଏ ମାତ୍ର ଦୁର୍ଯ୍ୟୋଧନଙ୍କୁ ଜୟ କରିବା ନିମିତ୍ତ ତାହାଙ୍କ ମନ ଯେ ସଂଶୟାପନ୍ନ ହୋଇଅଛି, ଏହା ତାଙ୍କର ମହତ୍ତ୍ୱ ଅବିବେକ ଶକ୍ତିର କାର୍ଯ୍ୟ ଅଟେ, କାରଣ ସେ ଯାହା ଗୋଟିଏ ବ୍ୟକ୍ତିର ବିଜୟ ବିଷୟରେ ଏତାଦୃଶ ଘୋରତର ଯୁଦ୍ଧ ହେବ ବୋଲି ପଣ କଲେ । ଏତେବେଳେ ରଣପଣ୍ଡିତ ସୁଯୋଧନ ଜୀବନର ଆଶା ପରିତ୍ୟାଗ କରିଅଛନ୍ତି । ୧୩ । ଭଗବାନ୍ ଭାର୍ଗବ ଯେଉଁ ସାରାର୍ଥସଂଯୁକ୍ତ ପୁରାତନ ଶ୍ଳୋକ କହିଥିଲେ, ଆମ୍ଭେ ତାହା ଶୁଣିଅଛୁ । ଏତେବେଳେ ତାହାର ଭାବାର୍ଥ କହୁଅଛୁ, ଶ୍ରବଣ କର । ୧୪ । ହେ ଧନଞ୍ଜୟ ! ଯେଉଁ ପ୍ରାଣରକ୍ଷାଭିଳାଷୀ ଯୋଦ୍ଧାମାନେ ଯୁଦ୍ଧସ୍ଥଳରୁ ପଳାୟନ କରି ପୁନଶ୍ଚ ପ୍ରତ୍ୟାଗତ ହୋଇଥାଆନ୍ତି, ସେମାନେ ତେତେବେଳେ ଦୃଢ଼ପ୍ରତିଜ୍ଞ ଓ ଏକାଗ୍ରଚିତ୍ତ ହୋଇଥାଆନ୍ତି । ଅତଏବ ଏତାଦୃଶ ହତାବଶିଷ୍ଟ ଶତ୍ରୁଠାରୁ ଭୀତ ହେବାର ଉଚିତ ।୧୫।

ହେ ଧନଞ୍ଜୟ ! ଯେଉଁମାନେ ଜୀବନ ଧାରଣର ଆଶା ... କରି ଅତର୍କିତ ଭାବରେ ଉତ୍ଥିତ ହୋଇଥାଆନ୍ତି, ସେମାନଙ୍କ ସମ୍ମୁଖରେ ଦେବରାଜ ସୁଦ୍ଧା ଅବସ୍ଥାନ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୧୬ । ଏତେବେଳେ ସୁଯୋଧନ ହତସୈନ୍ୟ ହୋଇଥିବାରୁ ହ୍ରଦମଧ୍ୟରେ ପ୍ରବେଶ କରିଥିଲେ ଓ ପରାସ୍ତ ହୋଇଥିବାରୁ ରାଜ୍ୟଲାଭ ବିଷୟରେ ଆଶା ନ ରଖି ବନକୁ ଯିବା ନିମିତ୍ତ ଇଚ୍ଛା କରିଥିଲେ । ଯାହାଙ୍କର ଏପରି ଅବସ୍ଥା,

ତାହାଙ୍କୁ ଦ୍ୱନ୍ଦ୍ୱ ଯୁଦ୍ଧରେ ଆହ୍ୱାନ କରିବାର କୌଣସି ପ୍ରାଜ୍ଞ ବ୍ୟକ୍ତିଙ୍କ ବିବେଚନାସିଦ୍ଧ କାର୍ଯ୍ୟ ବୋଲି କୁହାଯାଇପାରେ କି ? ଦୁର୍ଯ୍ୟୋଧନ ଆମ୍ଭମାନଙ୍କ ବିଜିତ ରାଜ୍ୟକୁ ପୁନର୍ବାର ହରଣ ନ କରନ୍ତୁ । ୧୮ । ଯେ ଭୀମଙ୍କୁ ବିନାଶ କରିବା ଇଚ୍ଛାରେ ଗଦାଧାରଣ କରି ତ୍ରୟୋଦଶ ବର୍ଷକାଳ ତିର୍ଯ୍ୟକ ଓ ଊର୍ଦ୍ଧ୍ୱ ଭାଗରେ ବିଚରଣ ଶିକ୍ଷାଲାଭ କରିଅଛନ୍ତି, ମହାବାହୁ ଭୀମ ଯଦି ତାହାଙ୍କୁ ଅନ୍ୟାୟରେ ସଂହାର ନ କରିବେ, ତେବେ ଜଣାଯାଏ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନ ପୁନର୍ବାର ତୁମ୍ଭମାନଙ୍କର ନିଶ୍ଚୟ ରାଜା ହେବେ । ୨୦ ।

ହେ ମହାରାଜ ! ଅର୍ଜ୍ଜୁନ ମହାତ୍ମା ବାସୁଦେବଙ୍କର ଏହି ବାକ୍ୟସବୁ ଶ୍ରବଣ କରି ଭୀମଙ୍କ ସାକ୍ଷାତରେ ସ୍ୱକୀୟ ବାମ ଊରୁରେ କରାଘାତ କଲେ । ୨୧ । ଭୀମ ସେହି ସଙ୍କେତର ମର୍ମ ଜାଣି ଗଦାଗ୍ରହଣ କରି ବିପକ୍ଷମାନଙ୍କୁ ମୋହିତ କରି ରଣଭୂମିରେ ବିବିଧ ବିଚିତ୍ର ମଣ୍ଡଳାକାର ମାର୍ଗରେ ବିଚରଣ କଲେ । ୨୨ । ହେ ମହାରାଜ ! ଗୋମୂତ୍ର ଯେଉଁପରି ଦକ୍ଷିଣ ବାମ ଭାଗରେ ନିପତିତ ହୁଏ, ଭୀମ ତଦ୍‌ବତ୍ ପର୍ଯ୍ୟଟନ କଲାରୁ ଗଦାଯୁଦ୍ଧବିଶାରଦ ଆପଣଙ୍କ ପୁତ୍ର ମଧ୍ୟ ଭୀମଙ୍କ ବିନାଶ ନିମିତ୍ତ ସତ୍ୱର ଭାବରେ ବିଚରଣ କଲେ । ୨୪ । ସେହି ଉଭୟ ବୀର ଅଗୁରୁଚନ୍ଦନଚର୍ଚ୍ଚିତ ଘୋରତର ଗଦାହସ୍ତ ଘୂର୍ଣ୍ଣନ କରି ବୈରର ଅନ୍ତ କରିବା ଇଚ୍ଛାରେ ଯତ୍ନଶୀଳ ହୋଇ କ୍ରୋଧାକ୍ରାନ୍ତ ଦୁଇଟି କୃତାନ୍ତ ସଦୃଶ ଦିଶିଲେ । ୨୫ । ସେହି ପୁରୁଷଶ୍ରେଷ୍ଠ ବୀରଦୁହେଁ ପରସ୍ପରକୁ ସଂହାର କରିବା ଇଚ୍ଛାରେ ନାଗାନ୍ୱେଷଣକାରୀ ଦୁଇଗୋଟି ଗରୁଡ଼ଙ୍କ ସଦୃଶ ସଂଗ୍ରାମ କଲେ ।୨୬।

ଭୀମ ଓ ଦୁର୍ଯ୍ୟୋଧନ ବିଚିତ୍ର ମଣ୍ଡଳାକାର ପଥରେ ବିଚରଣ କରିବାରୁ ସେ ଦୁହିଙ୍କର ଗଦାସଂପାତଜନିତ ଅଗ୍ନିକଣାସମୂହ ନିର୍ଗତ ହେଲା । ୨୭ । ତେତେବେଳେ ସେହି ବଳିଷ୍ଠ ଉଭୟ ବୀର ସମାନ ଭାବରେ ସଂଗ୍ରାମ କରୁଥିବାରୁ ପ୍ରବଳ ପବନ ବେଗରେ ଆନ୍ଦୋଳିତ ଦୁଇଗୋଟି ସମୁଦ୍ରଙ୍କ ତରଙ୍ଗ ଧ୍ୱନି ପରି ନାଦ ଉତ୍‌ଥିତ ହେଉଥିଲା । ୨୮ । ସେହି ଉଭୟ ବୀର ମତ୍ତ ଗଜ ସଦୃଶ ପରସ୍ପର ଗଦା ପ୍ରହାର କରିବାରୁ ତୁମୁଳ ଧ୍ୱନି ଉତ୍‌ଥିତ ହେଲା । ୨୯ । ଏହିପରି ଅତି ଦାରୁଣ ସଂକୁଳ ପ୍ରହାର ସମୟରେ ସେହି ଶତ୍ରୁଦମନ ବୀରଦୁହେଁ ଅତିଶୟ ଶ୍ରାନ୍ତ ହେଲେ । ମୁହୂର୍ତ୍ତ ଉତ୍ତାରେ ସେହି ବୀରଦ୍ୱୟ କିଞ୍ଚିତ୍ ଆଶ୍ୱସ୍ତ ହୋଇ ମହାର୍ଘ ଗଦା ଧାରଣପୂର୍ବକ ପୁନର୍ବାର ଅତି କ୍ରୋଧରେ ସଂଗ୍ରାମ କଲେ । ୩୧ । ହେ ରାଜେନ୍ଦ୍ର ! ପରସ୍ପର

ଗଦାନିପାତଦ୍ୱାରା କ୍ଷତବିକ୍ଷତାଙ୍ଗ ସେହି ଉଭୟ ବୀରଙ୍କର ଅନିବାର୍ଯ୍ୟ ଭୟଙ୍କର ଯୁଦ୍ଧ ହେଲା । ୩୨ । ବୃଷଭଲୋଚନ ସେହି ବୀରଦୁହେଁ ପଙ୍କସ୍ଥିତ ଦୁଇଗୋଟି ମହିଷ ସଦୃଶ ପରସ୍ପର ଗଦା ପ୍ରହାର କଲେ । ୩୩ । ଉଭୟ ବୀରଙ୍କ ସର୍ବାଙ୍ଗ ରୁଧିରରେ ଜର୍ଜ୍ଜରିତ ଓ ପରିପ୍ଲୁତ ହେବାରୁ ହିମାଳୟ ଗିରି ଉପରେ ପୁଷ୍ପିତ ଦୁଇଗୋଟି ପଲାଶ ବୃକ୍ଷପରି ଦୁହେଁ ଦୃଶ୍ୟମାନ ହେଲେ । ୩୪ ।

ତତ୍ପରେ ଭୀମ ଛିଦ୍ରାନ୍ୱେଷଣରେ ପ୍ରବୃତ୍ତ ହେବାରୁ ଦୁର୍ଯ୍ୟୋଧନ କିଞ୍ଚିତ୍ ବିସ୍ମିତ ହୋଇ ହଠାତ୍ ଅପସୃତ ହେଲେ । ୩୫ । କିୟତ୍‌କ୍ଷଣ ଉତ୍ତାରେ ଦୁର୍ଯ୍ୟୋଧନ ମହାପ୍ରାଜ୍ଞ ଭୀମଙ୍କ ସମ୍ମୁଖକୁ ଆଗମନ କରନ୍ତେ ସେ ତାହାଙ୍କୁ ଅତି ଶୀଘ୍ର ଗଦା ନିକ୍ଷେପ କଲେ । ଦୁର୍ଯ୍ୟୋଧନ ତେତେବେଳେ ସେଠାରୁ ଅନ୍ୟ ସ୍ଥାନକୁ ପ୍ରସ୍ଥାନ କଲାରୁ ଭୀମସେନଙ୍କ ଗଦା ନିଷ୍ଫଳ ହୋଇ ଭୂମିତଳରେ ପଡ଼ିଲା । ୩୭ । ହେ ନୃପବର ! ଆପଣଙ୍କ ପୁତ୍ର ଏହିପରି ସସମ୍ଭ୍ରମରେ ସେହି ପ୍ରହାରରୁ ଆତ୍ମରକ୍ଷା କରି ବୃକୋଦରଙ୍କୁ ଗଦାଦ୍ୱାରା ପ୍ରହାର କଲେ । ୩୮ । ତାହାଙ୍କର ତାଦୃଶ ଦାରୁଣ ପ୍ରହାରରେ ଭୀମଙ୍କ କଳେବରରୁ ଅନର୍ଗଳ ରୁଧିରଧାରା ନିସ୍ୟନ୍ଦିତ ହେଲା ଏବଂ ସେହି ଗୁରୁତର ଆଘାତଦ୍ୱାରା ଭୀମ ମୂର୍ଚ୍ଛିତ ହେଲାପରି ଜଣାଗଲା କିନ୍ତୁ ସେ ସେହି ଆଘାତଦ୍ୱାରା ପତିତ ହେଲେ ବୋଲି ଦୁର୍ଯ୍ୟୋଧନ ଜାଣିପାରି ନ ଥିଲେ । ଭୀମ ମଧ୍ୟ ଅତିଶୟ ପୀଡ଼ିତ ଶରୀରକୁ ଧାରଣ କଲେ । ୪୦ । ଦୁର୍ଯ୍ୟୋଧନ ତାହାଙ୍କୁ ତେତେବେଳେ ପୁନଶ୍ଚ ପ୍ରହାର କରିବା ନିମିତ୍ତ ଉଦ୍ୟତ ଥିଲାପରି ମଣି ତେତେବେଳେ ତାହାଙ୍କୁ ପୁନଶ୍ଚ ପ୍ରହାର କଲେ ନାହିଁ । ୪୧ ।

ହେ ରାଜନ୍ ! ପ୍ରତାପଶାଳୀ ଭୀମ ସମ୍ୟକ୍‌ରୂପେ ଆଶ୍ୱସ୍ତ ହୋଇ ଉପସ୍ଥିତ ଦୁର୍ଯ୍ୟୋଧନଙ୍କ ନିକଟକୁ ଅତି ଶୀଘ୍ର ଧାବିତ ହେଲେ । ୪୨ । ହେ ଭରତଶ୍ରେଷ୍ଠ ! ତେତେବେଳେ ସୁଯୋଧନ ଅତି ବେଗରେ ଆସୁଥିବା ଭୀମଙ୍କୁ ଦେଖି ତାଙ୍କ ପ୍ରହାରକୁ ବିଫଳ କରିବା କାମନାରେ ଭୀମଙ୍କୁ ଛଳନା କରି ଅବସ୍ଥାନ ସ୍ଥାନରୁ ବଳପୂର୍ବକ ଡେଇଁ ପଡ଼ିଲେ । ୪୪ । ଭୀମ ତାହାଙ୍କର ଏତାଦୃଶ କାର୍ଯ୍ୟ କୌଶଳ ଅବଲୋକନ କରି କ୍ରୋଧରେ ସିଂହ ସଦୃଶ ଉତ୍‌ଥିତ ହୋଇ ଅତି ଶୀଘ୍ର ତଦୀୟ ଊରୁଦ୍ୱୟକୁ ଆଘାତ କଲେ । ୪୬ । ଭୀମସେନଙ୍କ ବଜ୍ର ସଦୃଶ ସେହି ଗଦାଦ୍ୱାରା ତତ୍‌କ୍ଷଣାତ୍ ଦୁର୍ଯ୍ୟୋଧନଙ୍କ ପ୍ରିୟଦର୍ଶନ ଅର୍ଥାତ୍ ଅତି ରମଣୀୟ ଊରୁଯୁଗଳ ଭଗ୍ନ ହେଲା । ୪୭ । ହେ ମହାରାଜ ! ତେତେବେଳେ ଭବଦୀୟ ପୁତ୍ର ନରବର

ଦୁର୍ଯ୍ୟୋଧନଙ୍କ ଉରୁଦ୍ୱୟ ଭୀମସେନଙ୍କ ଗଦାଘାତରେ ଭଗ୍ନ ହେବାରୁ ସେ ଧରାତଳରେ ଉଚ୍ଚ ନାଦ କରି ପତିତ ହେଲେ । ୪୮ ।

ତେତେବେଳେ ନିର୍ଘାତ ସହିତ ବାୟୁସମୂହ ପ୍ରବାହିତ ହେଲା । ଚତୁର୍ଦ୍ଦିଗରେ ପାଂଶୁବୃଷ୍ଟି ହେଲା, ବନତରୁଗିରିଯୁକ୍ତ ଭୂମଣ୍ଡଳ ବିଚଳିତ ହେଲା । ସମସ୍ତ ନରପାଳକୁଳର ଅଧୀଶ୍ୱର କୁରୁବର ଦୁର୍ଯ୍ୟୋଧନ ଧରାଶଯ୍ୟାରେ ଶୟନ କଲା ସମୟରେ ନିର୍ଘାତ ସହିତ ମହାସ୍ୱନଯୁକ୍ତା ମହାଭୟଙ୍କରୀ ଦୀପ୍ତିଶାଳିନୀ ଉଲ୍କା ପତିତ ହେଲା । ହେ ନୃପବର ! ଭବଦୀୟ ପୁତ୍ର ନିପାତ ହେବା ସମୟରେ ଭଗବାନ ଇନ୍ଦ୍ର ଶୋଣିତ ଓ ପାଂଶୁରାଶି ବର୍ଷଣ କଲେ । ୫୧ । ତତ୍ସମୟରେ ଆକାଶମଣ୍ଡଳରେ ନିଃସ୍ୱନ ଶୁଣାଗଲା । ସେହି ଘୋରତର ନିନାଦରେ ଅସଂଖ୍ୟ ମୃଗ ଓ ପକ୍ଷୀମାନଙ୍କର ଅତି ଭୟଙ୍କର ଶବ୍ଦ ଦିଗବିଦିଗରେ ବ୍ୟାପ୍ତ ହେଲା । ଆପଣଙ୍କ ପୁତ୍ର ନିପତିତ ହେବାରୁ ଅବଶିଷ୍ଟ ଅଶ୍ୱ, ଗଜ ଓ ନରସମୂହ ଆର୍ତ୍ତନାଦ ଓ ରୋଦନର ଧ୍ୱନିଦ୍ୱାରା ଭୂମଣ୍ଡଳ ଆଚ୍ଛନ୍ନ କଲେ । ଶଙ୍ଖ, ଭେରୀ ଓ ମୃଦଙ୍ଗସମୂହର ତୁମୁଳ ଶବ୍ଦରେ ଦଶଦିଗ ବ୍ୟାପ୍ତ ହେଲା । ୫୧ । ହେ ମହାରାଜ ! ଆପଣଙ୍କ ପୁତ୍ର ନିହତ ହୁଅନ୍ତେ ଅସଂଖ୍ୟ କରଣଶାଳୀ ଅତି ଭୟଙ୍କର ନୃତ୍ୟକାରୀ କବନ୍ଧମାନଙ୍କଦ୍ୱାରା ଦଶଦିଗ ବ୍ୟାପ୍ତ ହେଲା । ହେ ମହାରାଜ ! ଆପଣଙ୍କ ପୁତ୍ର ନିପତିତ ହେବାରୁ ଧ୍ୱଜବନ୍ତ, ଅସ୍ତ୍ରବନ୍ତ ଓ ଶସ୍ତ୍ରବନ୍ତ ନରମାନେ କମ୍ପମାନ କଳେବର ହୋଇ କାଳଯାପନ କଲେ । ହ୍ରଦ ଓ କୂପ ସମୂହରେ ରକ୍ତବାରି ଉଚ୍ଛଳିତ ହେଲା । ୫୮ । ବେଗବତୀ ନଦୀବୃନ୍ଦର ବିପରୀତ ଦିଗରୁ ସ୍ରୋତ ପ୍ରବାହିତ ହେଲା । ସ୍ତ୍ରୀସମୂହ ପୁରୁଷମାନଙ୍କ ସଦୃଶ ଓ ପୁରୁଷଗଣ ସ୍ତ୍ରୀମାନଙ୍କ ସଦୃଶ ଦୃଶ୍ୟମାନ-ହେଲେ । ୫୯ ।

ହେ ନୃପବର ! ଭରତଶ୍ରେଷ୍ଠ ଭବଦୀୟ ପୁତ୍ର ଦୁର୍ଯ୍ୟୋଧନ ନିପତିତ ହେବାରୁ ପାଣ୍ଡବ ଓ ପାଞ୍ଚାଳମାନେ ସେହି ସମସ୍ତ ଅଦ୍ଭୁତ ଉତ୍ପାତ ଦେଖି ଉଦ୍‌ବେଗଯୁକ୍ତ ଚିତ୍ତରେ କାଳହରଣ କଲେ । ଦେବ, ଗନ୍ଧର୍ବ ଓ ଅପ୍‌ସରାଗଣ ନିଜ ନିଜ ଅଭୀଷ୍ଟ ସ୍ଥାନକୁ ଗମନ କଲେ । ସିଦ୍ଧ ଓ ଚାରଣଗଣ ଦୁର୍ଯ୍ୟୋଧନ ଓ ଭୀମଙ୍କର ଯୁଦ୍ଧକଥା ବାରମ୍ବାର କହି କହି ଦୁହିଁଙ୍କୁ ପ୍ରଶଂସା କରି ନିଜ ନିଜ ସ୍ଥାନକୁ ଗମନ କଲେ । ୬୩ ।

---

# ଅଧ୍ୟାୟ—୫୯

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ପାଣ୍ଡବଗଣ ଅତି ଉନ୍ନତ ମହାଶାଳତରୁ ସଦୃଶ ନିପତିତ ଦୁର୍ଯ୍ୟୋଧନଙ୍କୁ ଅତି ହୃଷ୍ଟମନା ହୋଇ ନିରୀକ୍ଷଣ କଲେ । ସମସ୍ତ ସୋମକଗଣ ମଧ୍ୟ ସିଂହଦ୍ୱାରା ନିପାତିତ ମତ୍ତଗଜ ସଦୃଶ ଦୁର୍ଯ୍ୟୋଧନଙ୍କୁ ପୁଲକିତକଳେବର ହୋଇ ଦର୍ଶନ କଲେ । ୨ । ତତ୍ପରେ ପ୍ରତାପଶାଳୀ ଭୀମ କୌରବେନ୍ଦ୍ର ଦୁର୍ଯ୍ୟୋଧନଙ୍କୁ ଆହତ ଓ ପାତିତ କରି ତଦୀୟ ନିକଟକୁ ଯାଇ କହିଲେ, ହେ ଦୁର୍ବୁଦ୍ଧେ ! ତୁମ୍ଭେ ପୂର୍ବେ ସଭା ମଧ୍ୟରେ ଆମ୍ଭଙ୍କୁ 'ଗୋରୁ' ବୋଲି କହି ଯେଉଁ ଉପହାସ କରିଥିଲ ଏବଂ ଦ୍ରୌପଦୀଙ୍କୁ ଯେଉଁ କଟୁବାକ୍ୟ କହିଥିଲ, ଅଦ୍ୟ ତାହାର ଫଳ ଭୋଗ କର ।

ହେ ନୃପବର ! ବୃକୋଦର ଏହି କଥା କହି ଦୁର୍ଯ୍ୟୋଧନଙ୍କ ମୌଳିରେ ବାମପାଦଦ୍ୱାରା ଆଘାତ କଲେ ଏବଂ ଚରଣଦ୍ୱାରା ସେହି ରାଜସିଂହଙ୍କର ମସ୍ତକକୁ ଆଘାତ କଲେ । ହେ ରାଜନ୍ ! ଶତ୍ରୁକୁଳ-ସଂହାରକାରୀ ଭୀମ ରାଗରେ ଆରକ୍ତଲୋଚନ ହୋଇ ଯାହା କହିଲେ, ତାହା ମଧ୍ୟ କହୁଛୁ, ଶ୍ରବଣ କରିବା ହେଉନ୍ତୁ । ଭୀମସେନ କହିଲେ, ପୂର୍ବେ ଯେଉଁ ସମସ୍ତ ମୂର୍ଖଗଣ ଆମ୍ଭମାନଙ୍କୁ 'ଗୋରୁ' କହି ନୃତ୍ୟ କରୁଥିଲେ, ସମ୍ପ୍ରତି ଆମ୍ଭେ ସେମାନଙ୍କୁ ଗୋରୁ ଗୋରୁ ବୋଲି ନଚାଇବୁଁ । ବୈରୀ ନିର୍ଯ୍ୟାତନ କରିବାନିମିତ୍ତ ଆମ୍ଭେମାନେ ଶଠତାଚରଣ, ଅଗ୍ନିପ୍ରଦାନ, ଅକ୍ଷକ୍ରୀଡ଼ାଦ୍ୱାରା ଛଳ ଅଥବା ଅନ୍ୟ ପ୍ରକାର କୌଣସି ବଞ୍ଚନା କରୁନାହୁଁ, ଆମ୍ଭେମାନେ ସ୍ୱକୀୟ ବାହୁବଳ ଅବଲମ୍ବନ କରି ଶତ୍ରୁକୁଳକୁ ନିର୍ମୂଳ କଲୁଁ । ୮ ।

ଭୀମସେନ ବୈର-ସିନ୍ଧୁ ଉତ୍ତୀର୍ଣ୍ଣ ହୋଇ ହାସ୍ୟଯୁକ୍ତ ବଦନରେ ଯୁଧିଷ୍ଠିର, କୃଷ୍ଣ, ଅର୍ଜୁନ, ସୃଞ୍ଜୟଗଣ, ନକୁଳ ଓ ସହଦେବଙ୍କ ନିକଟରେ କହିଲେ ଯେ ଯେଉଁମାନେ ରଜସ୍ୱଳା ଦ୍ରୌପଦୀଙ୍କୁ ସଭା ମଧ୍ୟକୁ ଅଣାଇ ବିବସ୍ତ୍ରା କରିବାନିମିତ୍ତ ଯତ୍ନଶୀଳ ହୋଇଥିଲେ, ସେହି ଦୁରାତ୍ମା ଧୃତରାଷ୍ଟ୍ର-ପୁତ୍ରମାନେ ଦ୍ରୁପଦନନ୍ଦିନୀଙ୍କ ତପସ୍ୟା ପ୍ରଭାବରେ ସଂଗ୍ରାମରେ ପାଣ୍ଡବଗଣଙ୍କ ଦ୍ୱାରା ହତ ହେଲେ, ଆପଣମାନେ ଦେଖିବା ହେଉନ୍ତୁ । ରାଜା ଧୃତରାଷ୍ଟ୍ରଙ୍କର ଯେଉଁ ନିର୍ଦ୍ଦୟ ପୁତ୍ରମାନେ ପୂର୍ବେ ଆମ୍ଭମାନଙ୍କୁ ଷଣ୍ଢତିଳ ଅର୍ଥାତ୍ ତିଳ

ଅଗାଡ଼ି ବା ନପୁଂସକ ବୋଲି ଉପହାସ କରିଥିଲେ, ସେମାନେ ସମସ୍ତେ ଉପକରଣ ଓ ସ୍ୱପଣ ସହିତ ଆମ୍ଭମାନଙ୍କ ହସ୍ତରେ ପ୍ରାଣ ବିସର୍ଜନ କଲେ । ଏଥି ଉତ୍ତରେ ଆମ୍ଭେମାନେ ସ୍ୱର୍ଗକୁ ଯିବୁ, ଅଥବା ନରକଗାମୀ ହେବୁ, ତଦ୍-ବିଷୟରେ କିଛି ଭାବନା ନାହିଁ । ସେହି ଭୀମ ପୃଥିବୀରେ ନିପତିତ ରାଜା ଦୁର୍ଯ୍ୟୋଧନଙ୍କ ମସ୍ତକକୁ ବାମପାଦରେ ମର୍ଦ୍ଦନ କରି ତଦୀୟ ସ୍କନ୍ଧସ୍ଥିତ ଗଦାକୁ ହସ୍ତରେ ଧାରଣପୂର୍ବକ ପୁନଶ୍ଚ ଏହିପରି ନିର୍ଦ୍ଦୟ ବାକ୍ୟ କହିଲେ । ୧୨।

ହେ ନୃପ ! ଦୁଷ୍ଟାତ୍ମା କ୍ଷୁଦ୍ରବୁଦ୍ଧି ଭୀମ ହୃଷ୍ଟଚିତ୍ତରେ କୁରୁଶ୍ରେଷ୍ଠ ଦୁର୍ଯ୍ୟୋଧନଙ୍କ ମସ୍ତକରେ ଯେତେବେଳେ ପାଦନିକ୍ଷେପ କରୁଥିଲେ, ଧର୍ମାତ୍ମା ସୋମକ ଶ୍ରେଷ୍ଠମାନେ ତାହା ଅବଲୋକନ କରି କିଞ୍ଚିନ୍ମାତ୍ର ଆନନ୍ଦିତ ହେଉ ନ ଥିଲେ । ଭୀମ ତାଦୃଶ ଭାବରେ ଭବଦୀୟ ପୁତ୍ରଙ୍କୁ ହତ କରି ନିଜର ପ୍ରଶଂସା ସହିତ ବାରମ୍ବାର ନୃତ୍ୟ କରୁଥିବାର ଦେଖି ଧର୍ମରାଜ ସମ୍ବୋଧନ କରି ତାହାଙ୍କୁ କହିଲେ, ହେ ଭୀମ ! ତୁମ୍ଭେ ଶତ୍ରୁଋଣ ପରିଶୋଧ କଲ ! ଶୁଭ ବା ଅଶୁଭ କର୍ମଦ୍ୱାରା ପ୍ରତିଜ୍ଞା ପୂରଣ କଲ । ଏତେବେଳେ ଏତାଦୃଶ କାର୍ଯ୍ୟରୁ ନିବୃତ୍ତ ହୁଅ । ଏହାଙ୍କ ମସ୍ତକକୁ ପାଦଦ୍ୱାରା ମର୍ଦ୍ଦନ କରନା । ତାହା କଲେ ତୁମ୍ଭେ ଧର୍ମଦ୍ରୋହୀ ହେବ । ହେ ନିଷ୍ପାପ ! ଏହି ଦୁର୍ଯ୍ୟୋଧନ ରାଜା ଓ ଆମ୍ଭର ଜ୍ଞାତି; ଏତେବେଳେ ସେ ହତ ହୋଇଅଛନ୍ତି ବୋଲି ତୁମ୍ଭେ ଯେ ଏହାଙ୍କଠାରେ ଏତାଦୃଶ ବ୍ୟବହାର କରୁଅଛ, ଏହା କଦାପି ଉଚିତ ନୁହେଁ ।

ହେ ଭୀମ ! ଯେଉଁ ବ୍ୟକ୍ତି କୌରବମାନଙ୍କର ଏକାଦଶ ଅକ୍ଷୌହିଣୀ ସେନାର ଅଧୀଶ୍ୱର ଥିଲେ, ଆମ୍ଭର ସେହି ଜ୍ଞାତି ରାଜା ଦୁର୍ଯ୍ୟୋଧନଙ୍କ ମସ୍ତକକୁ ପାଦଦ୍ୱାରା ସ୍ପର୍ଶ କରିବାର ତୁମ୍ଭର ଉଚିତ ନୁହେଁ । ଏହାଙ୍କର ବନ୍ଧୁ ଅମାତ୍ୟଗଣ ନିହତ ହୋଇଅଛନ୍ତି ଏବଂ ଯୁଦ୍ଧରେ ସୈନ୍ୟବୃନ୍ଦ ଭ୍ରଷ୍ଟ ହୋଇଅଛନ୍ତି । ପରିଶେଷରେ ସେ ସ୍ୱୟଂ ହତ ହେଲେ; ଅତଏବ ଏ ସର୍ବ ପ୍ରକାରରେ ଶୋଚନୀୟ । ଏହାଙ୍କୁ ଉପହାସ କଲେ କେଉଁ ଫଳ ହେବ ? ଏତେବେଳେ ଏହାଙ୍କ ପିଣ୍ଡ ଲୋପ ହେଲା । ଏହାଙ୍କ ସୋଦରଗଣ, ପୁତ୍ର-ସମୂହ ଓ ସମସ୍ତ ଅମାତ୍ୟ ହତ ହୋଇଥିବାରୁ ଏ ଏକାବେଳକେ ଧ୍ୱଂସ ଦଶାରେ ଉପସ୍ଥିତ । ଏ ତୁମ୍ଭର ଭ୍ରାତା, ଅତଏବ ଏହାଙ୍କଠାରେ ଏତାଦୃଶ ବ୍ୟବହାର କରିବାର ତୁମ୍ଭର କଦାପି ନ୍ୟାୟସଙ୍ଗତ ନୁହେଁ । ହେ ଭୀମ !

ପୂର୍ବ ଲୋକମାନେ ତୁମ୍ଭଙ୍କୁ ଧାର୍ମିକ ବୋଲି କହନ୍ତି । ତେବେ ତୁମ୍ଭେ ସେହି ଧାର୍ମିକ ଭୀମ କାହିଁପାଇଁ ରାଜାଙ୍କ ମସ୍ତକରେ ପଦାଘାତ କଲ ?

ଯୁଧିଷ୍ଠିର ଭୀମଙ୍କୁ ଏହିପରି କହି ଅତି ଦୀନ ଭାବରେ ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇ ଅଶ୍ରୁପୂର୍ଣ୍ଣ ଭାବରେ କହିଲେ, ହେ ତାତ ! ତୁମ୍ଭେ ଶୋକ କରନା, ବୁଦ୍ଧିକୁ ଖେଦଯୁକ୍ତ କରନା । କାରଣ ସମସ୍ତେ ପୂର୍ବ କର୍ମକୃତ ଭୟଙ୍କର ଫଳକୁ ଅନୁଭବ କରନ୍ତି । ୨୨ । ଆମ୍ଭେମାନେ ତୁମ୍ଭଙ୍କୁ ବିନାଶ କରିବା ଇଚ୍ଛାରେ ପ୍ରବୃତ୍ତ ହେବୁଁ, ତୁମ୍ଭେ ମଧ୍ୟ ଆମ୍ଭମାନଙ୍କୁ ବିନାଶ କରିବା ଇଚ୍ଛାରେ ପ୍ରବୃତ୍ତ ହେବ ବୋଲି ବିଧାତାଙ୍କର ପୂର୍ବରୁ ଆଦେଶ ହୋଇଥିଲା । ଏତେବେଳେ ତୁମ୍ଭେ ନିଜ ଅପରାଧରୁ ଲୋଭ, ଗର୍ବ, ମୋହ ଓ ବାଲ୍ୟବଶରୁ ଏତାଦୃଶ ବିଷମ ବିପଦ ପ୍ରାପ୍ତ ହେଲ । ୨୪ । ତୁମ୍ଭେ ପିତା, ଭ୍ରାତା, ପୁତ୍ର, ପୌତ୍ର, ବୟସ୍ୟ ଓ ଅନ୍ୟାନ୍ୟ ଅନେକ ଅନେକ ବ୍ୟକ୍ତିମାନଙ୍କୁ ନିହତ କରାଇ ପରିଶେଷରେ ସ୍ୱୟଂ ନିଧନ ଲାଭ କଲ । ୨୫ । ତୁମ୍ଭ ଅପରାଧରେ ଆମ୍ଭେମାନେ ଭ୍ରାତୃ ମହାବୀର ସହୋଦରମାନଙ୍କୁ ଓ ଅନ୍ୟାନ୍ୟ ଜ୍ଞାତି ବନ୍ଧୁ ସମସ୍ତଙ୍କୁ ନିହତ କଲୁଁ; ଅତଏବ ଜାଣୁଅଛୁ ଯେ କେହି କଦାପି ଭାଗ୍ୟକୁ ଅତିକ୍ରମ କରି ପାରନ୍ତି ନାହିଁ ।

ହେ କୌରବ ଅନଘ ! ତୁମ୍ଭ ପକ୍ଷରେ ମୃତ୍ୟୁ ପ୍ରଶଂସନୀୟ ଅଟେ । ଆଉ ଶୋଚନା ନ କର । ଏତେବେଳେ ଆମ୍ଭେମାନେ ସର୍ବାବସ୍ଥାରେ ଶୋଚନୀୟ ହୋଇ ରହିଲୁ । ୨୭ । ଆମ୍ଭେମାନେ ସପ୍ରତି ଭ୍ରାତା, ପୁତ୍ର ପ୍ରଭୃତି ସମସ୍ତ ପ୍ରିୟବନ୍ଧୁ ଶୂନ୍ୟ ହେଲୁଁ ; ସୁତରାଂ ଶୋକବିହ୍ୱଳ ହୋଇ ନିତାନ୍ତ ଦୁଃଖିତାନ୍ତଃକରଣରେ କାଳଯାପନ କରିବୁ । ଏତେବେଳେ ଶୋକବିହ୍ୱଳା ବିଧବା ବଧୂମାନଙ୍କୁ କେଉଁପରି ଅବଲୋକନ କରିବୁ ? ହେ ରାଜନ୍ ! ତୁମ୍ଭେ ଏକାକୀ ପ୍ରସ୍ଥାନ କର, ନିଶ୍ଚୟ ତୁମ୍ଭର ସ୍ୱର୍ଗରେ ବାସ ହେବ । ୨୯ । ଆମ୍ଭେମାନେ ଦାରୁଣ ନରକ ଦୁଃଖ ଅନୁଭବ କରିବୁ । ଧୃତରାଷ୍ଟ୍ରଙ୍କର ଶୋକାକ୍ରାନ୍ତା ବିଧବା ପୁତ୍ରବଧୂ ଓ ପୌତ୍ରବଧୂମାନେ ଆମ୍ଭମାନଙ୍କୁ ନିଶ୍ଚୟ ନିନ୍ଦା କରିବେ । ସଞ୍ଜୟ କହିଲେ, ମହାରାଜ ! ଧର୍ମନନ୍ଦନ ରାଜା ଯୁଧିଷ୍ଠିର ଅତ୍ୟନ୍ତ ଦୁଃଖାକ୍ରାନ୍ତ ହୋଇ ଦୀର୍ଘ ନିଃଶ୍ୱାସ ପରିତ୍ୟାଗ କଲେ ଓ ବହୁକ୍ଷଣ ପର୍ଯ୍ୟନ୍ତ ବିଳାପ କଲେ ।୩୧।

---

# ଅଧ୍ୟାୟ—୭୦

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ସୂତ ! ଅଧର୍ମରେ ହତ ଆମ୍ଭ ପୁତ୍ର ରାଜା ଦୁର୍ଯ୍ୟୋଧନଙ୍କୁ ଦେଖି ମାଧବୋତ୍ତମ ମହାବଳ ବଳଦେବ କଣ କହିଲେ ? ସେହି ରୋହିଣୀପୁତ୍ର ଗଦାଯୁଦ୍ଧରେ ବିଶେଷ ପଣ୍ଡିତ ଓ ଗଦାଯୁଦ୍ଧ-ବିଶାରଦ ବୋଲି ଭୁବନରେ ଖ୍ୟାତି ଲାଭ କରିଅଛନ୍ତି । ଅତଏବ ଏହି ଅନ୍ୟାୟ ଯୁଦ୍ଧ ନିରୀକ୍ଷଣ କରି ଯାହା କହିଥିଲେ, ତାହା ଆମ୍ଭଙ୍କୁ କହ । ସଞ୍ଜୟ କହିଲେ, ମହାରାଜ ! ଭୀମସେନ ଭବଦୀୟ ପୁତ୍ରଙ୍କ ଊରୁଦେଶରେ ଗଦାଘାତ କରିବାର ଦେଖି ବଳଶ୍ରେଷ୍ଠ ବଳରାମ ଅତିଶୟ କ୍ରୋଧାନ୍ୱିତ ହେଲେ । ତତ୍ପରେ ହଳଧର ନରେନ୍ଦ୍ରମାନଙ୍କ ମଧ୍ୟରେ ଭୁଜ ଉତ୍ତୋଳନ ପୂର୍ବକ ଘୋରତର ଆର୍ତ୍ତସ୍ୱରରେ ଭୀମଙ୍କୁ ସମ୍ବୋଧନ କରି କହିଲେ, ହେ ବୃକୋଦର ! ତୁମ୍ଭଙ୍କୁ ଧିକ୍କାର କରୁଅଛୁ, କାରଣ ତୁମ୍ଭେ ଏହି ଧର୍ମ-ଯୁଦ୍ଧରେ ଯାହା ଦୁର୍ଯ୍ୟୋଧନଙ୍କ ନାଭିର ଅଧଃପ୍ରଦେଶରେ ଗଦାଘାତ କଲ । ହେ ବୃକୋଦର ! ତୁମ୍ଭେ ଗଦାଯୁଦ୍ଧରେ ଯେଉଁ କାର୍ଯ୍ୟ କଲ, ତାଦୃଶ କାର୍ଯ୍ୟ ଆମ୍ଭେ କଦାପି କୌଣସିଠାରେ ଦେଖିନାହୁଁ । ନାଭିର ନିମ୍ନରେ ଶସ୍ତ୍ର ପ୍ରହାର କରିବାର ଉଚିତ ନୁହେଁ ବୋଲି ଶାସ୍ତ୍ରରେ ନିଶ୍ଚୟ କରାଯାଇ-ଅଛି, କିନ୍ତୁ ତୁମ୍ଭେ ଶାସ୍ତ୍ର ଅନଭିଜ୍ଞ ମୂଢ଼ ଯଦୃଚ୍ଛାଚାରୀ କଲ । ହେ ମହାରାଜ ! ବଳଦେବ ଏହିପରି ବାକ୍ୟ କହିବା ସମୟରେ ତାହାଙ୍କ ହୃଦୟରେ ଅତି ମହାନ୍ କ୍ରୋଧ ଉଦିତ ହେଲା । ତତ୍ପରେ ସେ ଲଙ୍ଗଳ ଉତ୍ତୋଳନ ପୂର୍ବକ ଭୀମଙ୍କ ନିକଟକୁ ଧାବମାନ ହେଲେ । ସେହି ମହାତ୍ମାଙ୍କ ରୂପ ସେତେ-ବେଳେ ବହୁ ଧାତୁବିଚିତ୍ର ଶ୍ୱେତପର୍ବତ ସଦୃଶ ଦୃଶ୍ୟମାନ ହେଲା ।

ହେ ମହାରାଜ ! ବଳଦେବ ଧାବିତ ହେବାରୁ ବାସୁଦେବ ବିନତ ହୋଇ ସ୍ଥୂଳ ବର୍ତ୍ତୁଳ ବାହୁଯୁଗଳ ଦ୍ୱାରା ଯତ୍ନ ପୂର୍ବକ ତାହାଙ୍କୁ ଧାରଣ କଲେ । ସେତେବେଳେ ଶ୍ୱେତ ଓ କୃଷ୍ଣବର୍ଣ୍ଣ ଯଦୁନନ୍ଦନଦ୍ୱୟ ଏକତ୍ର ଦଣ୍ଡାୟମାନ ହେବାରୁ ଦିବାବସାନ ସମୟରେ ନଭୋମଣ୍ଡଳଗତ ଚନ୍ଦ୍ର-ସୂର୍ଯ୍ୟଙ୍କ ସଦୃଶ ସୁଶୋଭିତ ହେଲେ । ୧୨ । କୃଷ୍ଣ ଅତିଶୟ କ୍ରୋଧାନ୍ୱିତ ବଳଦେବଙ୍କୁ ଅବଲୋକନ କରି ସାନ୍ତ୍ୱନା ପ୍ରଦାନ ପୂର୍ବକ କହିଲେ, ହେ ଭ୍ରାତଃ ! ଛଅ ପ୍ରକାରରେ ନିଜର ଉନ୍ନତି ହୁଏ—ନିଜର ବୃଦ୍ଧି, ମିତ୍ରର ବୃଦ୍ଧି ଓ ମିତ୍ରଙ୍କ ମିତ୍ରର ବୃଦ୍ଧି ; ସେହିପରି ଶତ୍ରୁପକ୍ଷରେ ଏହାର ବିପରୀତ ହେଲେ ଅର୍ଥାତ୍ ଶତ୍ରୁର ହାନି, ଶତ୍ରୁଙ୍କ ମିତ୍ରର ହାନି

ତଥା ଶତ୍ରୁର ମିତ୍ରଙ୍କ ମିତ୍ରର ହାନି । ନିଜର ଓ ନିଜ ମିତ୍ରଙ୍କର ଯଦି ଏହାର ବିପରୀତ ପରିସ୍ଥିତି ଘଟେ, ତେବେ ସ୍ୱତଃ ମନରେ ଗ୍ଳାନି ଜାତ ହୁଏ । ଏତେବେଳେ ପବିତ୍ର ପୌରୁଷଯୁକ୍ତ ପାଣ୍ଡବ-ଗଣ ଆମ୍ଭମାନଙ୍କର ସହଜ ମିତ୍ର ଏବଂ ସ୍ୱକୀୟ ପିତୃସ୍ୱସାଙ୍କ ପୁତ୍ର ବିପକ୍ଷ-ମାନେ ସେମାନଙ୍କୁ ନିରାକୃତ କରିଥିଲେ । ଯୁଦ୍ଧରେ ପ୍ରତିଜ୍ଞାପାଳନ କରିବା କ୍ଷତ୍ରିୟମାନଙ୍କର ଧର୍ମ ବୋଲି ଆପଣଙ୍କୁ ଜଣା ଅଛି । ପୂର୍ବେ ଭୀମ ସଭା ମଧ୍ୟରେ ସମସ୍ତଙ୍କ ସାକ୍ଷାତରେ ପ୍ରତିଜ୍ଞା କରିଥିଲେ, ଆମ୍ଭେ ମହାଯୁଦ୍ଧରେ ଗଦାଦ୍ୱାରା ଦୁର୍ଯ୍ୟୋଧନଙ୍କ ଊରୁ ଭଙ୍ଗ କରିବୁ । ପୁନଶ୍ଚ ମୈତ୍ରେୟ ମହର୍ଷି ଦୁର୍ଯ୍ୟୋଧନଙ୍କୁ ଅଭିଶାପ ପ୍ରଦାନ ପୂର୍ବକ କହିଥିଲେ, ହେ ଶତ୍ରୁତାପନ ଦୁର୍ଯ୍ୟୋଧନ ! ଭୀମଙ୍କ ଗଦାଦ୍ୱାରା ତୁମ୍ଭ ଊରୁ ଭଗ୍ନ ହେବ । ଅତଏବ ଆମ୍ଭେ ଏହି କାରଣରୁ ଭୀମଙ୍କର କୌଣସି ଦୋଷ ନାହିଁ, ଦେଖୁ ଛୁ । ସୁତରାଂ ଆପଣ ରୋଷ ପ୍ରକାଶ କରନ୍ତୁ ନାହିଁ । କୁଟୁମ୍ବିତା ଓ ମିତ୍ରତା ଉଭୟ ବିଷୟରେ ପାଣ୍ଡବମାନଙ୍କ ସହିତ ଆମ୍ଭମାନଙ୍କର ନିକଟ ସମ୍ବନ୍ଧ ଅଛି । ସେହି କାରଣରୁ ସେମାନଙ୍କ ବୃଦ୍ଧିରେ ଆମ୍ଭମାନଙ୍କ ବୃଦ୍ଧି ସ୍ୱତଃସିଦ୍ଧ ଅଟେ । ଅତଏବ ହେ ପୁରୁଷସିଂହ ! ଏତେବେଳେ ଆପଣଙ୍କ କ୍ରୋଧ ସମ୍ବରଣ କରିବା ହେଉନ୍ତୁ ।

ଧର୍ମଜ୍ଞ ହଳଧର କେଶବଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି କହିଲେ, ହେ ଗୋବିନ୍ଦ ! ସାଧୁମାନଙ୍କ ସୁଚରିତ ଧର୍ମ ଦୁଇଗୋଟି ବିଷୟ ଦ୍ୱାରା ନିପୀଡ଼ିତ—ପ୍ରଥମରେ ନିରତିଶୟ ଅର୍ଥଲୋଲୁପ ବ୍ୟକ୍ତିର ଅର୍ଥଦ୍ୱାରା, ଦ୍ୱିତୀୟରେ ଅତି ପ୍ରସଙ୍ଗୀ ଲୋକର କାମଦ୍ୱାରା । ଯେଉଁ ବ୍ୟକ୍ତି ଧର୍ମାର୍ଥ ଓ ଧର୍ମ କାମ ଓ କାମାର୍ଥ ଏହି ତିନି ବିଷୟରେ ବିମୋହିତ ନ ହୋଇ ଧର୍ମାର୍ଥ କାମକୁ ସେବା କରେ, ସେହି କେବଳ ନିରତିଶୟ ସୁଖ ଭୋଗ କରେ । ସମ୍ପ୍ରତି ତୁମ୍ଭେ ଆମ୍ଭଙ୍କୁ ଯେଉଁପରି କହିଲ, ତାହାଦ୍ୱାରା ଆମ୍ଭେ ନିଶ୍ଚୟ ଜାଣିଥିଲୁଁ ଯେ ଭୀମ ଧର୍ମବିଗର୍ହିତ କର୍ମଦ୍ୱାରା ପୂର୍ବୋକ୍ତ ସମସ୍ତ ମାର୍ଗ ବ୍ୟାକୁଳ କରିଅଛନ୍ତି । ୨୩ । କୃଷ୍ଣ ଅଗ୍ରଜଙ୍କ ଏତାଦୃଶ ଉକ୍ତି ଶ୍ରବଣ କରି ଅନ୍ୟ କିଛି ନ କହି କହିଲେ, ହେ ଭଗବନ୍ ! ଆପଣ କ୍ରୋଧଶୂନ୍ୟ, ଧର୍ମବତ୍ସଳ ଓ ଧର୍ମାତ୍ମା ବୋଲି ଲୋକ ମଧ୍ୟରେ ଖ୍ୟାତି ଲାଭ କରିଅଛନ୍ତି । ଅତଏବ ଏତେବେଳେ କ୍ରୋଧ ସମ୍ବରଣ କରି ଶାନ୍ତ ମୂର୍ତ୍ତି ଧାରଣ କରିବା ହେଉନ୍ତୁ । ସମ୍ପ୍ରତି କଳିଯୁଗ ଆରମ୍ଭ ହୋଇଅଛି । ଏହି ଯୁଗରେ ଏତାଦୃଶ ପାପ ଅତିଶୟ ଖେଦାବହ ନୁହେଁ ବୋଲି ଜାଣିବା

ହେଉନ୍ତୁ । ପାଣ୍ଡବମାନେ ବୈର ନିର୍ଯ୍ୟାତନଦ୍ୱାରା ଯେ ନିଜର ପ୍ରତିଜ୍ଞା ପାଳନ କରିଅଛନ୍ତି, ତହିଁରେ ସେମାନଙ୍କର ଯଦି କିଛି ଅପରାଧ ଥିବ, ତେବେ ଆପଣ ତାହା କ୍ଷମା କରନ୍ତୁ । ୨୫ ।

ସଞ୍ଜୟ କହିଲେ, ହେ ନୃପବର ! ବଳଦେବ କେଶବଙ୍କର ଏହି ସମସ୍ତ ଧର୍ମବିଷୟକ ଛଳବାକ୍ୟ ଶ୍ରବଣ କରି କିଞ୍ଚିନ୍ମାତ୍ର ପ୍ରୀତିଯୁକ୍ତ ନ ହୋଇ ସଭା ମଧ୍ୟରେ ଯୁକ୍ତମୁକ୍ତ କଣ୍ଠରେ କହିଲେ, ଭୀମ ଅଧର୍ମରେ ଧର୍ମାତ୍ମା ରାଜା ଦୁର୍ଯ୍ୟୋଧନଙ୍କୁ ହତ କରିଅଛନ୍ତି । ଏହି ହେତୁରୁ ଅଦ୍ୟାବଧି ଭୀମ କୁଟିଳ ଯୋଦ୍ଧା ବୋଲି ଲୋକ ସମାଜରେ ଖ୍ୟାତ ହେବେ । ୨୭ । ଧୃତରାଷ୍ଟ୍ରନନ୍ଦନ ରାଜା ଦୁର୍ଯ୍ୟୋଧନ ସରଳ ଭାବରେ ଯୁଦ୍ଧ କରି ହତ ହୋଇଅଛନ୍ତି । ଅତଏବ ସେ ଶାଶ୍ୱତ ଗତି ପ୍ରାପ୍ତ ହେବେ । ୨୮ । ସେହି ଧର୍ମାତ୍ମା ଯୁଦ୍ଧରେ ଦୀକ୍ଷିତ ହୋଇ ରଣଯଜ୍ଞ ବିସ୍ତାରପୂର୍ବକ ଶତ୍ରୁରୂପ ହୁତାଶନରେ ନିଜ ଶରୀରକୁ ଆହୁତି ପ୍ରଦାନ କରି ଅବଭୃଥ ଯଶ ପ୍ରାପ୍ତ ହେଲେ । ୨୯ । ପ୍ରତାପଶାଳୀ ରୋହିଣୀନନ୍ଦନ ଏହିପରି କହି ରଥାରୋହଣ-ପୂର୍ବକ ଦ୍ୱାରକାଭିମୁଖରେ ଗମନ କଲେ । ୩୦ । ବଳରାମ ଦ୍ୱାରକାକୁ ଗମନ କରନ୍ତେ ପାଣ୍ଡବ, ପାଞ୍ଚାଳ ଓ ବୃଷ୍ଣିବଂଶୀୟ ବୀରମାନେ ଉଦାସ ହୋଇଗଲେ । ସେମାନଙ୍କ ମନରେ ଅଧିକ ଉତ୍ସାହ ରହିଲା ନାହିଁ । ୩୧ ।

ତତ୍ପରେ ବାସୁଦେବ ଶୋକଦ୍ୱାରା ହତସଙ୍କଳ୍ପ, ଚିନ୍ତାପରାୟଣ, ଦୀନଭାବାପନ୍ନ, ଅଧୋମୁଖରେ ଅବସ୍ଥିତ, ରାଜା ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଲେ, ହେ ଧର୍ମରାଜ ! ଆପଣ କେଉଁ ହେତୁରୁ ଭୀମସେନଙ୍କ କାର୍ଯ୍ୟକୁ ଅଧର୍ମ ଜ୍ଞାନ କରି ବିଷଣ୍ଣ ହୋଇଅଛନ୍ତି ? ହେ ନରାଧୀଶ ! ଅଚେତନ ଭାବରେ ନିପତିତ ବନ୍ଧୁଶୂନ୍ୟ ଏହି ଦୁର୍ଯ୍ୟୋଧନଙ୍କ ମସ୍ତକକୁ ଏହି ଭୀମ ପାଦଦ୍ୱାରା ମର୍ଦ୍ଦନ କରିଅଛନ୍ତି ବୋଲି, ସେହି କାର୍ଯ୍ୟକୁ ଆପଣ ଧର୍ମଜ୍ଞ ହୋଇ କାହିଁପାଇଁ ଘୃଣା କରୁଅଛନ୍ତି ? ୩୪ ।

ଯୁଧିଷ୍ଠିର କହିଲେ, ହେ କୃଷ୍ଣ ! ବୃକୋଦର କ୍ରୋଧବଶରେ ପାଦ-ଦ୍ୱାରା ଯେ ରାଜା ଦୁର୍ଯ୍ୟୋଧନଙ୍କ ମସ୍ତକକୁ ମର୍ଦ୍ଦନ କରିଥିଲେ, ତାହା ଆମ୍ଭର ପ୍ରୀତି ଉତ୍ପାଦକ ନୁହେଁ ଏବଂ କୁଳର କ୍ଷୟ ସମୟ ଉପସ୍ଥିତ ହୋଇ-ଥିବାରୁ ମଦୀୟ ଅନ୍ତଃକରଣରେ କିଞ୍ଚିନ୍ମାତ୍ର ହର୍ଷର ସଞ୍ଚାର ହେଉ-ନାହିଁ । ୩୫ । ଧୃତରାଷ୍ଟ୍ରଙ୍କ ସନ୍ତାନଗଣ ସର୍ବଦା ଆମ୍ଭମାନଙ୍କୁ ଶତ୍ରୁଦ୍ୱାରା ନିରାକୃତ କରି ରଖିଥିଲେ, ଅନେକ ନିଷ୍ଠୁର ବାକ୍ୟ କହିଥିଲେ, ତଦ୍ଦ୍ୱାରା ଦୌରାତ୍ମ୍ୟରେ ଆମ୍ଭେମାନେ ସମସ୍ତେ ବନବାସୀ ହୋଇଥିଲୁ । ସେହିସବୁ

ଦୁଃଖ ଭୀମଙ୍କ ହୃଦୟରେ ଦୃଢ଼ରୂପେ ରହିଅଛି । ହେ କୃଷ୍ଣ ! ଆମ୍ଭେ ସେହି କଥା ଭାବନା କରି ଭୀମଙ୍କ କାର୍ଯ୍ୟକୁ ଆଉ ଘୃଣା କରୁନାହୁଁ । ଅତଏବ ଭୀମ ଧର୍ମରେ ଅଥବା ଅଧର୍ମରେ କୃତବୁଦ୍ଧି, ଲୋଭୀ ଓ କାମବଶୀଭୂତ ଦୁର୍ଯ୍ୟୋଧନଙ୍କୁ ହତ କରି ନିଜର ମନୋମତ କାର୍ଯ୍ୟ ସାଧନ କରନ୍ତୁ । ୩୮ ।

ସଞ୍ଜୟ କହିଲେ, ମହାରାଜ ! ଧର୍ମରାଜ ଏହିପରି କହିଲା ଉତ୍ତାରେ କୃଷ୍ଣ ତଦୀୟ ବାକ୍ୟରେ ପରମ ପ୍ରୀତି ପ୍ରକାଶ ପୂର୍ବକ ମୁକ୍ତ କଣ୍ଠରେ କହିଲେ, ହେ ଯୁଧିଷ୍ଠିର ! ଆପଣ ଯାହା କହିଲେ, ତାହା ହେଉ ! ଭୀମସେନଙ୍କ ପ୍ରିୟାଭିଳାଷୀ ଓ ହିତୈଷୀ ବାସୁଦେବ ଏତାଦୃଶ ଉତ୍ସାହ ପ୍ରଦାନ କରିବାରୁ ଅନ୍ୟାନ୍ୟ ସମସ୍ତ ନରଗଣ ଭୀମଙ୍କର ଯୁଦ୍ଧସମ୍ବନ୍ଧୀୟ କୃତ-କାର୍ଯ୍ୟକୁ ଅନୁମୋଦନ କଲେ । ୪୦ । ହେ ମହାରାଜ ! ମହାତେଜସ୍ୱୀ ଅମର୍ଷଣ ଭୀମସେନ ମଧ୍ୟ ସମର ମଧ୍ୟରେ ଭବଦୀୟ ପୁତ୍ର ଦୁର୍ଯ୍ୟୋଧନଙ୍କୁ ହତ କରି ହର୍ଷୋତ୍‌ଫୁଲ୍ଲ ନୟନରେ ପ୍ରଥମେ ଧର୍ମରାଜ ଯୁଧିଷ୍ଠିରଙ୍କୁ ଅଭିବାଦନ କରି କୃତାଞ୍ଜଳିପୁଟରେ ଅତି ଆନନ୍ଦରେ କହିଲେ, ମହାରାଜ ! ଆପଣଙ୍କ ପୃଥିବୀମଣ୍ଡଳ ଆଜି ନିଷ୍କଣ୍ଟକ ହୋଇ ମଙ୍ଗଳ ଲାଭ କଲା । ଅତଏବ ଏତେବେଳେ ତାହାକୁ ଶାସନ କରି ସ୍ୱଧର୍ମ ପାଳନ-କରନ୍ତୁ । ୪୩ । ସ୍ୱଭାବରେ ଯେଉଁ ନୀଚପ୍ରକୃତି ଦୁରାତ୍ମା ଏହି ଶତ୍ରୁତାର ମୂଳକାରଣ ଓ ଆଦିକର୍ତ୍ତା ହୋଇଥିଲା, ସେ ଏତେବେଳେ ଆମ୍ଭ ହସ୍ତରେ ନିହତ ହୋଇ ଧରାତଳରେ ଶୟନ କରିଅଛି । ୪୪ । ଦୁଃଶାସନ ପ୍ରଭୃତି ଯେଉଁମାନେ ଆମ୍ଭମାନଙ୍କୁ ପୂର୍ବେ ବାକ୍ୟବାଣରେ ଜର୍ଜରିତ କରିଥିଲେ ଏବଂ ଶକୁନି ଓ କର୍ଣ୍ଣ ପ୍ରଭୃତି ଆପଣଙ୍କର ଯେଉଁ ଶତ୍ରୁଗଣ ଥିଲେ, ସେମାନେ ସମସ୍ତେ ଯୁଦ୍ଧରେ ହତ ହୋଇଅଛନ୍ତି । ହେ ମହାରାଜ ! ଅଦ୍ୟାବଧି ଚିରବନସଂଯୁକ୍ତ ନାନାରତ୍ନସମାକୀର୍ଣ୍ଣ ଏହି ଭୂମଣ୍ଡଳ ପୁନଶ୍ଚ ନିଷ୍କଣ୍ଟକ ହୋଇ ଭବଦୀୟ ନିକଟକୁ ପ୍ରତ୍ୟାଗତ ହେଲା । ୪୬ ।

ଯୁଧିଷ୍ଠିର ଭୀମଙ୍କ ବାକ୍ୟ ଶ୍ରବଣ କରି କହିଲେ, ହେ ଭ୍ରାତଃ ! ଏତେକାଳରେ ଶତ୍ରୁତାର ବିନାଶ ହେଲା, ଏତେକାଳେ ରାଜା ଦୁର୍ଯ୍ୟୋଧନ ପ୍ରାଣ ବିସର୍ଜନ କଲେ । ଆମ୍ଭେମାନେ କୃଷ୍ଣଙ୍କ ମତାନୁସାରେ କର୍ମ କରି ଏହି ଭୂମଣ୍ଡଳକୁ ଜୟ କଲୁଁ । ଏତେବେଳେ ତୁମ୍ଭେ ଭାଗ୍ୟବଳରେ ଜନନୀଙ୍କ ନିକଟରେ ଏବଂ କ୍ରୋଧର ନିକଟରେ ଋଣଶୂନ୍ୟ ହେଲ ଓ ଭାଗ୍ୟବଳରେ ଅତି ଦୁର୍ଜୟ ଶତ୍ରୁ ସଂହାର ପୂର୍ବକ ଜୟଲାଭ କଲ । ୪୮ ।

---

# ଅଧ୍ୟାୟ—୭୧

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ପାଣ୍ଡବ ଏବଂ ସୃଞ୍ଜୟ ସୈନ୍ୟଗଣ ଭୀମଙ୍କଦ୍ୱାରା ଆହତ ଦୁର୍ଯ୍ୟୋଧନଙ୍କୁ ଦେଖି କଅଣ କରୁଥିଲେ ? ୧ । ସଞ୍ଜୟ କହିଲେ, ମହାରାଜ ! ସିଂହ ଯେଉଁପରି ବନ୍ୟ ମତ୍ତ ଗଜକୁ ହତ କରେ, ତଦ୍‌ବତ୍ ଭୀମ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କୁ ନିଧନ କରିବାରୁ ପାଣ୍ଡବ, ପାଞ୍ଚାଳ ଓ ସୃଞ୍ଜୟ ସୈନ୍ୟଗଣ କୃଷ୍ଣଙ୍କ ସହିତ ହୃଷ୍ଟଚିତ୍ତରେ କାଳଯାପନ କଲେ । ୩ । ସେତେବେଳେ ସମସ୍ତେ ଉତ୍ତରୀୟ ବସ୍ତ୍ରକୁ ବୁଲାଇ ଉଚ୍ଚୈଃସ୍ୱରରେ ସିଂହନାଦ କଲେ, ସେତେବେଳେ ସେମାନେ ଏତାଦୃଶ ହର୍ଷାବିଷ୍ଟ ହୋଇଥିଲେ ଯେ ଏହି ଭୂମଣ୍ଡଳ ସେହି ହର୍ଷଯୁକ୍ତ ବୀରମାନଙ୍କର ଭାର ଧାରଣ କରିବାକୁ ଅସମର୍ଥ ହେଲା । ୪ । ସେତେବେଳେ କେହି କେହି ବୀର ଶରାସନ ଆକର୍ଷଣ କଲେ । କେହି ବୀର ଗୁଣ ନିକ୍ଷେପ କଲେ । କେଉଁ କେଉଁମାନେ ଶଙ୍ଖ ଦୁନ୍ଦୁଭି ନିନାଦ କଲେ । ୫ । ତଦ୍‌ଭିନ୍ନ ଆପଣଙ୍କର ଅନ୍ୟାନ୍ୟ ଅମିତ୍ରଗଣ କେହି ରଣକ୍ରୀଡା କଲେ ।

ସେତେବେଳେ ବୀରଗଣ ଭୀମସେନଙ୍କୁ କହିଲେ, ହେ ବୀର ! ଆପଣ ଅଦ୍ୟ ରଣ ମଧ୍ୟରେ ଗଦାଯୁଦ୍ଧରେ କୌରବପତିଙ୍କୁ ନିହତ କରି ଅତି ଦୁଷ୍କର କାର୍ଯ୍ୟ ସମ୍ପାଦନ କଲେ । ୭ । ପୂର୍ବେ ଦେବରାଜ ଇନ୍ଦ୍ର ଯେଉଁପରି ମହାଯୁଦ୍ଧରେ ବୃତ୍ରାସୁରକୁ ବିନାଶ କରିଥିଲେ, ଏତେବେଳେ ଆପଣ ଦୁର୍ଯ୍ୟୋଧନଙ୍କୁ ତଦ୍‌ବତ୍ ସଂହାର କରିଅଛନ୍ତି ବୋଲି ଲୋକମାନେ ଜାଣୁଅଛନ୍ତି । ୮ । ଯେଉଁ ଦୁର୍ଯ୍ୟୋଧନ ରଣସ୍ଥଳରେ ବିବିଧ ମଣ୍ଡଳାକାର ମାର୍ଗରେ ବିଚରଣ କରି ବିବିଧ କୌଶଳ ପ୍ରକାଶ କରନ୍ତି, ସେହି ବୀର-ବରଙ୍କୁ ଭୀମଙ୍କ ବ୍ୟତିରେକେ ଅନ୍ୟ କେଉଁ ବ୍ୟକ୍ତି ସଂହାର କରି ପାରନ୍ତି ? ୯ । ଏତେବେଳେ ଆପଣ ଅନ୍ୟର ଅଗମ୍ୟ ଯେଉଁ ବୈର-ସମୁଦ୍ର ପାର ହେଲେ, ଅନ୍ୟ କୌଣସି ବୀର ଏତାଦୃଶ କାର୍ଯ୍ୟ କଦାପି ସମ୍ପାଦନ କରିବାକୁ ସମର୍ଥ ହୁଅନ୍ତେ ନାହିଁ । ୧୦ ।

ହେ ବୀରପ୍ରବର ! ଆପଣ ମତ୍ତଗଜ ପରି ଚରଣଦ୍ୱାରା ଅନାୟାସରେ ଦୁର୍ଯ୍ୟୋଧନଙ୍କ ମସ୍ତକମର୍ଦ୍ଦନ କରିବା ହେଲେ । ସିଂହ ଯେଉଁପରି ମହିଷ ସହିତ ସଂଗ୍ରାମ କରି ତାହାର ରକ୍ତପାନରେ ତୃପ୍ତ ହୁଏ, ଆପଣ ସେହିପରି ରଣସ୍ଥଳରେ ଦୁଃଶାସନର ବକ୍ଷସ୍ଥଳର ରୁଧିରପାନରେ ପରିତୃପ୍ତ

ହେଲେ ।୧୨। ଯେଉଁ ଦୁରାତ୍ମାଗଣ ଧର୍ମାତ୍ମା ରାଜା ଯୁଧିଷ୍ଠିରଙ୍କ ଅବମାନନା କରିଥିଲେ, ଆପଣ ଭାଗ୍ୟକ୍ରମରେ ସ୍ୱକୀୟ ଭୁଜବୀର୍ଯ୍ୟ-ବଳରେ ସେହି ସମସ୍ତଙ୍କ ମସ୍ତକରେ ପଦାର୍ପଣ କଲେ ।୧୩। ହେ ଭୀମ ! ଶତ୍ରୁକୁଳ ମଧ୍ୟରେ ଉପସ୍ଥିତ ଦୁର୍ଯ୍ୟୋଧନଙ୍କ ବଧ ହେତୁରୁ ଆପଣଙ୍କର ଅତି ଉତ୍କୃଷ୍ଟ ଯଶରାଶି ପୃଥିବୀ ମଧ୍ୟରେ ଚିରକାଳ ପର୍ଯ୍ୟନ୍ତ ପ୍ରକାଶିତ ହେବ ।୧୪। ହେ ଭାରତ ! ବୃତ୍ରାସୁର ନିହତ ହେବା ସମୟରେ ବନ୍ଦୀଗଣ ଯେଉଁପରି ଦେବରାଜଙ୍କୁ ଆନନ୍ଦିତ କରିଥିଲେ, ସମ୍ପ୍ରତି ଆପଣ ଶତ୍ରୁକୁଳକୁ ନିର୍ମୂଳ କରିଅଛନ୍ତି ବୋଲି ଆମ୍ଭେମାନେ ସମସ୍ତେ ଆପଣଙ୍କୁ ସେହିପରି ଆନନ୍ଦିତ କରୁଅଛୁ ।୧୫। ହେ ଭାରତ ! ଆପଣ ଜାଣିବା ହେଉନ୍ତୁ, ଦୁର୍ଯ୍ୟୋଧନଙ୍କ ବଧ ସମୟରେ ଆମ୍ଭମାନଙ୍କର ଯେଉଁ ରୋମସବୁ ପୁଲକିତ ହୋଇଥିଲେ, ସେମାନେ ଏତେବେଳ ଯାଏ ହୁଦ୍ଧା ନିବୃତ୍ତ ହୋଇନାହାନ୍ତି ।୧୬।

ହେ ମହାରାଜ ! ସେହି ସ୍ଥାନରେ ସମାଗତ ବାତିକଗଣ ଭୀମଙ୍କୁ ଏହିପରି ପ୍ରଶଂସା କରନ୍ତେ ମଧୁସୂଦନ ତେତେବେଳେ ପାଣ୍ଡବମାନଙ୍କ ସହିତ ସେହି ସମସ୍ତ ପାଞ୍ଚାଳମାନଙ୍କ ମୁଖରେ ତାଦୃଶ ଅସଙ୍ଗତ ପ୍ରଶଂସା ବାକ୍ୟ ଶ୍ରବଣ କରି କହିଲେ, ହେ ନୃପଗଣ ! ନିହତ ଶତ୍ରୁକୁ କର୍କଶ ବାକ୍ୟଦ୍ୱାରା ପୁନଶ୍ଚ ଜର୍ଜରିତ ଓ ହତଜ୍ଞାନ କରିବାର ନ୍ୟାୟସଙ୍ଗତ କାର୍ଯ୍ୟ ନୁହେଁ । ପାପସହାୟ ପାପାତ୍ମା ଲୁବ୍‌ଧ ଦୁର୍ଯ୍ୟୋଧନ ଯେତେବେଳେ ନିର୍ଲ୍ଲଜ ହୋଇ ସୁହୃଜ୍ଜନମାନଙ୍କ ଶାସନ ଲଙ୍ଘନ କରିଥିଲା, ତେତେବେଳେ ସେହି ଦୁର୍ବୁଦ୍ଧି ହତ ହେବ ବୋଲି ଆମ୍ଭେ ଉତ୍ତମ ରୂପେ ବିବେଚନା କରିଥିଲୁ । ମହାନୁଭବ ବିଦୁର, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ସଞ୍ଜୟ ଓ ଭୀଷ୍ମଦେବ ପାଣ୍ଡବମାନଙ୍କର ପୈତୃକ ଅଂଶ ବାରମ୍ବାର ପ୍ରାର୍ଥନା କଲାରୁ ଯେଉଁ ନରାଧମ ସେମାନଙ୍କୁ ତାହା ପ୍ରଦାନ ନ କଲା, ସେହି ପୁରୁଷାଧମ ଏତେ-ବେଳେ ଶତ୍ରୁ ଅଥବା ମିତ୍ର ହେବାକୁ ଉପଯୁକ୍ତ ନୁହେଁ ।୨୧। ହେ ନରପାଳଗଣ ! ସେହି କାଷ୍ଠସଦୃଶ ନରାଧମକୁ ବାକ୍ୟଦ୍ୱାରା ବ୍ୟଥାଯୁକ୍ତ କଲେ କେଉଁ ଫଳ ଲାଭ ହେବ ? ଚାଲ, ସମସ୍ତେ ନିଜ ନିଜ ରଥରେ ଆରୋହଣ କରି ସ୍ୱସ୍ଥାନକୁ ଯିବା । ଆମ୍ଭମାନଙ୍କର ଅଦୃଷ୍ଟକ୍ରମରେ ଏହି ପାପାତ୍ମା ନିଜ ଅମାତ୍ୟ ଓ ଜ୍ଞାତିବାନ୍ଧବ ସହିତ ନିହତ ହୋଇ-ଅଛନ୍ତି ।

ହେ ମହାରାଜ ! ରାଜା ଦୁର୍ଯ୍ୟୋଧନ କୃଷ୍ଣଙ୍କ ମୁଖରୁ ଏହି ତିରସ୍କାର ଓ ଅହଂକାରଯୁକ୍ତ ବାକ୍ୟ ଶୁଣି ଅମର୍ଷ ହେତୁରୁ ବାହୁଦ୍ୱୟ-ଦ୍ୱାରା ଧରାତଳ ଧାରଣ କରି କଟିଦେଶରେ ଭର ପ୍ରଦାନ ପୂର୍ବକ ଉଠି-ବସିଲେ ଏବଂ ବାସୁଦେବଙ୍କ ଉପରେ ଭ୍ରୂକୁଟୀଯୁକ୍ତ ଦୃଷ୍ଟି ନିକ୍ଷେପ କଲେ । ଉରୁଦ୍ୱୟ ଭଗ୍ନ ହୋଇଥିବାରୁ ଯେତେବେଳେ ଅର୍ଦ୍ଧୋନ୍ନତ ଶରୀରରେ ଉପବେଶନ କଲେ, ସେତେବେଳେ ସେ ପୁଚ୍ଛଶୂନ୍ୟ ଗର୍ଜନ-କାରକ ସର୍ପ ସଦୃଶ ଦିଶୁଥିଲେ । ଦୁର୍ଯ୍ୟୋଧନ ପ୍ରାଣାନ୍ତକାରିଣୀ ଘୋର-ଯନ୍ତ୍ରଣା ସହ୍ୟକରି ବାସୁଦେବଙ୍କୁ କଟୁବାକ୍ୟଦ୍ୱାରା ଯନ୍ତ୍ରଣା ଦେଇ କହିଲେ, ହେ କଂସଦାସପୁତ୍ର ! ଆମ୍ଭଙ୍କୁ ଅଧର୍ମରେ ଗଦାଯୁଦ୍ଧରେ ଯାହା ନିପାତିତ କଲ, ଏହି ବିଷୟରେ ତୁମ୍ଭଙ୍କୁ ଲଜ୍ଜା ବୋଧ ହେଉନାହିଁ ? ଆମ୍ଭ ଉରୁ-ଯୁଗଳରେ ଗଦାପ୍ରହାର କରିବା ବିଷୟରେ ଭୀମଙ୍କୁ ସ୍ମରଣ କରାଇବା ନିମିତ୍ତ ଯେ ଅର୍ଜ୍ଜୁନଙ୍କୁ ସଙ୍କେତ କରିଥିଲ, ତାହା ଆମ୍ଭେ କି ଜାଣିନାହୁଁ ? ଯେଉଁ ସହସ୍ର ସହସ୍ର ନରପାଳଗଣ ସରଳ ଭାବରେ ନ୍ୟାୟାନୁଗତ ସଂଗ୍ରାମ କରନ୍ତି, ତୁମ୍ଭେ ପାଣ୍ଡବମାନଙ୍କୁ କୁମନ୍ତ୍ରଣା ଦେଇ କେତେ ପ୍ରକାର ଛଳରେ ସେହି ସମସ୍ତଙ୍କୁ ଯେ ବିନାଶ କରିଅଛ, ତାହା ସ୍ମରଣ କରି ତୁମ୍ଭ ମନରେ ଘୃଣା କି ଲଜ୍ଜା ହେଉନାହିଁ ?

ତୁମ୍ଭେ ପ୍ରତିଦିନ ଶୂରମାନଙ୍କୁ ବିଶେଷ ପୀଡ଼ା ଦେଇ ପରିଶେଷରେ ଶିଖଣ୍ଡୀଙ୍କୁ ପୁରସ୍କୃତ କରି ପିତାମହ ଭୀଷ୍ମଦେବଙ୍କୁ ଶରଶଯ୍ୟାରେ ରଖିଲ । ହେ ଦୁର୍ମତେ ! ଅଶ୍ୱତ୍ଥାମା ନାମକ ହସ୍ତୀକୁ ହନନ କରି ମିଥ୍ୟା ବାକ୍ୟରେ ଦ୍ରୋଣାଚାର୍ଯ୍ୟଙ୍କୁ ଅସ୍ତ୍ରବିହୀନ କରି ଯେ ତାହାଙ୍କୁ ପାତିତ କଲ, ତାହା କି ଆମ୍ଭେ ଜାଣିନାହୁଁ ? ଘାତକ ଧୃଷ୍ଟଦ୍ୟୁମ୍ନ ଅନାୟାସରେ ସେହି ବୀର୍ଯ୍ୟଶାଳୀ ଆଚାର୍ଯ୍ୟଙ୍କୁ ସଂହାର କଲା । ତୁମ୍ଭେ ପ୍ରତ୍ୟକ୍ଷରେ ନିରୀକ୍ଷଣ କରି ସୁଦ୍ଧା ଥରେ ମାତ୍ର ତାହାଙ୍କୁ ନିବାରଣ କଲ । ପାଣ୍ଡୁପୁତ୍ରଙ୍କ ବଧ ନିମିତ୍ତ ଯାଚିତ ଶକ୍ତିକୁ ତୁମ୍ଭେ ଯେ ଘଟୋତ୍କଚଙ୍କ ଶରୀରରେ ସମର୍ପଣ କରାଇଲ, ତହିଁରୁ ବୋଧହୁଏ ତୁମ୍ଭ ଅପେକ୍ଷା ଅଧିକ ପାପକାରୀ ମନୁଷ୍ୟ କେହି ନାହାନ୍ତି । ବଳବାନ ଭୂରିଶ୍ରବା ଯେତେବେଳେ ଛିନ୍ନହସ୍ତ ହୋଇ ଗତପ୍ରାୟ ହେଲେ, ସେତେବେଳେ ତାହାଙ୍କ ବଧ ନିମିତ୍ତ ମଧ୍ୟ ତୁମ୍ଭେ ମହାତ୍ମା ସାତ୍ୟକିଙ୍କୁ ପ୍ରେରଣ କଲ । ମହାବୀର କର୍ଣ୍ଣ ଅର୍ଜ୍ଜୁନଙ୍କ ଜୟ ନିମିତ୍ତ ନ୍ୟାୟାନୁଗତ ଯୁଦ୍ଧରେ ଯେତେବେଳେ ଅଶ୍ୱସେନଙ୍କ ଶୋକରେ ଅତିଶୟ ବିହ୍ୱଳ ହେଲେ

ଏବଂ ଯେତେବେଳେ ତାହାଙ୍କ ରଥଚକ୍ର ଧରଣୀତଳରେ ନିମଗ୍ନ ହେଲା, ଏବଂ ସେ ଯେତେବେଳେ ବିପଦଗ୍ରସ୍ତ ଓ ପରାଜିତ ପରି ହେଲେ, ତେତେବେଳେ ତୁମ୍ଭେ ମଧ୍ୟ ସେହି ନରବର କର୍ଣ୍ଣଙ୍କୁ ଅର୍ଜ୍ଜୁନଙ୍କ ଦ୍ୱାରା ପାତିତ କଲ ! ଯଦି ତୁମ୍ଭେ ଆମ୍ଭ ସହିତ ଏବଂ କର୍ଣ୍ଣ ଭୀଷ୍ମ ଦ୍ରୋଣଙ୍କ ସହିତ ନ୍ୟାୟାନୁସାରେ ପ୍ରତିଯୁଦ୍ଧ କରିଥାଆନ୍ତ, ତେବେ ତୁମ୍ଭର କଦାପି ଜୟ ହୋଇ ନ ଥାନ୍ତା । ଆମ୍ଭେମାନେ ଓ ଅନ୍ୟାନ୍ୟ ଭୂପାଳଗଣ ସ୍ୱଧର୍ମାନୁସାରେ ସଂଗ୍ରାମ କରିବାକୁ ପ୍ରବୃତ୍ତ ଥିଲୁଁ । ତୁମ୍ଭେ କପଟ ଯୁଦ୍ଧରେ ସମସ୍ତଙ୍କୁ ନିହତ କଲ । କି ନିମିତ୍ତ ପୌରୁଷ ଦେଖାଉଅଛ ?

ବାସୁଦେବ କହିଲେ, ହେ ଗାନ୍ଧାରୀନନ୍ଦନ ! ତୁମ୍ଭେ ପାପକର୍ମର ଅନୁଷ୍ଠାନ କରି ଭ୍ରାତା, ପୁତ୍ର, ସୁହୃତ୍ ଓ ବାନ୍ଧବଗଣଙ୍କ ସହିତ ହତ ହେଲ । ତୁମ୍ଭର ଦୁଷ୍କୃତ ଦ୍ୱାରା ବୀରବର ଭୀଷ୍ମ ଦ୍ରୋଣ ଦୁହେଁ ଯୁଦ୍ଧରେ ନିପତିତ ହେଲେ । ୪୦ । ମହାବୀର କର୍ଣ୍ଣ ମଧ୍ୟ ତୁମ୍ଭ ଚରିତ୍ର ଅନୁବର୍ତ୍ତନ କରି ସମରଭୂମିରେ ଶୟନ କଲେ । ହେ ମୂଢ଼ ! ଆମ୍ଭେ ତୁମ୍ଭ ନିକଟରେ ଯେତେ ପ୍ରକାର ବିନୟ କରି ପାଣ୍ଡବମାନଙ୍କର ପୈତୃକ ଅଂଶ ପ୍ରାର୍ଥନା କଲୁଁ, ତୁମ୍ଭେ ଶକୁନଙ୍କର ସହାୟତାରେ ଓ ସାହସ ଉପରେ ନିର୍ଭର କରି ପାଣ୍ଡୁପୁତ୍ରମାନଙ୍କୁ ରାଜ୍ୟର ଅଂଶ ପ୍ରଦାନ କଲ ନାହିଁ । ତୁମ୍ଭେ ଭୀମସେନଙ୍କୁ ବିଷ ଦେଇଥିଲ ଏବଂ ସମସ୍ତ ପାଣ୍ଡବ ଓ ସେମାନଙ୍କ ମାତାଙ୍କୁ ଜତୁ ଗୃହରେ ଦଗ୍ଧ କରିବାକୁ ଚେଷ୍ଟା କଲ । ହେ ଦୁର୍ବୁଦ୍ଧେ ! ଯେତେବେଳେ ପଶା ଖେଳ ସମୟରେ ସଭା ମଧ୍ୟରେ ରଜସ୍ୱଳା ଦ୍ରୌପଦୀଙ୍କୁ ବହୁତର କ୍ଳେଶ ଦେଇଥିଲ, ତେତେବେଳେ ତୁମ୍ଭେ ବଧର ଯୋଗ୍ୟ ହୋଇଥିଲ ।

ତୁମ୍ଭେ ଅକ୍ଷକ୍ରୀଡ଼ାରେ ଅନଭିଜ୍ଞ ଧର୍ମଶୀଳ ଯୁଧିଷ୍ଠିରଙ୍କୁ କ୍ରୀଡ଼ାକୁଶଳ ଶକୁନଙ୍କ ଦ୍ୱାରା ଯେ ପରାସ୍ତ କରିଥିଲ, ସେହି ପାପରେ ଏତେବେଳେ ପରାସ୍ତ ଓ ଯୁଦ୍ଧରେ ହତ ହେଲ । ଅରଣ୍ୟ ମଧ୍ୟରେ ପାଣ୍ଡବଗଣ ମୃଗୟା ନିମିତ୍ତ ତୃଣବିନ୍ଦୁ ଋଷିଙ୍କ ଆଶ୍ରମକୁ ଗମନ କଲାରୁ ତୁମ୍ଭେ ପାପାତ୍ମା ଜୟଦ୍ରଥ ଦ୍ୱାରା ଏକାକିନୀ ସହାୟହୀନା କୃଷ୍ଣାଙ୍କୁ ଯେ ଅପରିମିତ କ୍ଳେଶରାଶି ଭୋଗ କରାଇଥିଲ, ଏବଂ ଏକାକୀ ବାଳକ ଅଭିମନ୍ୟୁ ରଣସ୍ଥଳରେ ସଂଗ୍ରାମ କରିବାରୁ ସପ୍ତରଥୀମାନଙ୍କ ଦ୍ୱାରା ଯେ ତାହାଙ୍କୁ ନିହତ କରାଇଥିଲ, ସେହି ସମସ୍ତ ଦୋଷରେ ତୁମ୍ଭେ ସ୍ୱୟଂ ନିହତ ହେଲ । ଆମ୍ଭେମାନେ ଯେଉଁ ସବୁ ଅକାର୍ଯ୍ୟ କରିଅଛୁ ବୋଲି ତୁମ୍ଭେ କହୁଅଛ, ତାହାସବୁ କେବଳ ତୁମ୍ଭର

ଗ୍ରହବୈଗୁଣ୍ୟ ଓ ଅତ୍ୟାଗ୍ରହ ହେତୁରୁ ଆମ୍ଭଦ୍ୱାରା ଅନୁଷ୍ଠିତ ହୋଇଅଛୁ । ବୃହସ୍ପତି ଅବା ଅସୁରଗୁରୁ ଶୁକ୍ରାଚାର୍ଯ୍ୟଙ୍କର ଉପଦେଶକୁ କଦାପି ତୁମ୍ଭେ ଶୁଣିନାହିଁ ଏବଂ ବୃଦ୍ଧଗଣଙ୍କୁ ସେବା କରି ତୁମ୍ଭେ କଦାପି ହିତବାକ୍ୟ ଶ୍ରବଣ କରି ନାହିଁ । ତୁମ୍ଭେ ବଳ, ବିକ୍ରମ, ଲୋଭ ଓ ତୃଷ୍ଣାର ବଶୀଭୂତ ହୋଇ ଯେଉଁ ଅସତ୍କାର୍ଯ୍ୟ ସବୁ କରିଅଛ, ଏତେବେଳେ ପରିଣାମ ସମୟରେ ସେହି ସମୁଦାୟର ବିପରୀତ ଫଳ ଭୋଗ କର ।

ଦୁର୍ଯ୍ୟୋଧନ କହିଲେ, ହେ ବାସୁଦେବ ! ଆମ୍ଭେ ବିଧି ଅନୁସାରେ ବେଦାଧ୍ୟୟନ ଓ ଧନଦାନ କରିଅଛୁ ଏବଂ ସସାଗରା ଧରାରେ ନିଜର ଆଧିପତ୍ୟ ବିସ୍ତାର କରି ବିପକ୍ଷକୁଳର ମସ୍ତକ ଉପରେ ପଦାର୍ପଣ କରିଅଛୁ । ଅତଏବ ଅନ୍ୟ କେଉଁ ବ୍ୟକ୍ତି ଆମ୍ଭ ଅପେକ୍ଷା ଅଧିକ ଶ୍ରେଷ୍ଠ ହୋଇପାରେ ? ସ୍ୱଧର୍ମନିରତ କ୍ଷତ୍ରିୟକୁଳର ଯେଉଁ ଧର୍ମ ଅଭିଲଷିତ, ଆମ୍ଭେ ସେହି ଧର୍ମ ଅନୁସାରେ ଯଦି ନିଧନ ଲାଭ କଲୁ, ତେବେ ଆମ୍ଭ ଅପେକ୍ଷା ଅନ୍ୟ କେଉଁ ବ୍ୟକ୍ତି ଅଧିକ ଶ୍ରେଷ୍ଠ ହେବ ? ଅନେକ ଅନେକ ଭୂପାଳମାନେ ଯେଉଁ ସମସ୍ତ ଐଶ୍ୱର୍ଯ୍ୟକୁ ସହଜରେ ପ୍ରାପ୍ତ ହୁଅନ୍ତି ନାହିଁ, ଆମ୍ଭେ ଯଦି ସେହି ଦେବାର୍ହ ଐଶ୍ୱର୍ଯ୍ୟସବୁ ଭୋଗ କଲୁ, ତେବେ ଆମ୍ଭ ଅପେକ୍ଷା ଅନ୍ୟ କେଉଁ ବ୍ୟକ୍ତି ଉତ୍କୃଷ୍ଟ ହୋଇପାରିବ ? ହେ ଅଚ୍ୟୁତ ! ଆମ୍ଭେ ସୁହୃଜ୍ଜନ ଓ ସହୋଦରମାନଙ୍କ ସହିତ ସ୍ୱର୍ଗଗାମୀ ହେଉଅଛୁ । ତୁମ୍ଭେମାନେ ହତ-ମନୋରଥ ହୋଇ ଶୋକ ପ୍ରକାଶ ପୂର୍ବକ କାଳଯାପନ କର ।

ସଞ୍ଜୟ କହିଲେ, ମହାରାଜ ! ବୁଦ୍ଧିମାନ କୁରୁରାଜଙ୍କର ଏହି ସମସ୍ତ ବାକ୍ୟାବସାନ ସମୟରେ ପବିତ୍ର ଗନ୍ଧଯୁକ୍ତ ଅତି ଉତ୍କୃଷ୍ଟ ପୁଷ୍ପବୃଷ୍ଟି ହେଲା । ଗନ୍ଧର୍ବଗଣ ଅତି ମନୋହର ବାଦ୍ୟଧ୍ୱନି କଲେ । ୫୫ । ଅପ୍ସରୋ-ଗଣ ନରପତିଙ୍କର ଯଶୋବର୍ଣ୍ଣନ ସମ୍ବଳିତ ଗୀତ ଗାନ କଲେ । ସିଦ୍ଧମାନେ ଧନ୍ୟ ଧନ୍ୟ ବୋଲି ପ୍ରଶଂସା କଲେ । ୫୬ । ହେ ଭାରତ ! ସୁଖସ୍ପର୍ଶ ସୁଗନ୍ଧଯୁକ୍ତ ସମୀରଣ ମନ୍ଦ ମନ୍ଦ ହୋଇ ବହିଲା । ଦିଙ୍ମଣ୍ଡଳ ଓ ଆକାଶମଣ୍ଡଳ ବୈଦୁର୍ଯ୍ୟମଣି ସଦୃଶ ଅତି ନିର୍ମଳ ହେଲା । ୫୭ ।

ବାସୁଦେବ ପ୍ରଭୃତି ପାଣ୍ଡବମାନଙ୍କର ବାନ୍ଧବଗଣ ଏହିସବୁ ଅଦ୍ଭୁତ ଘଟନା ଏବଂ ଦୁର୍ଯ୍ୟୋଧନଙ୍କର ସମ୍ମାନ ଅବଲୋକନ କରି ଅତିଶୟ ଲଜ୍ଜିତ

ହେଲେ । ୫୮ । ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଭୂରିଶ୍ରବା ଅଧର୍ମ ଯୁଦ୍ଧରେ ନିହତ ହୋଇଥିବାର ଶ୍ରବଣ କରି ସେମାନେ ଶୋକାର୍ତ୍ତ ହୋଇ ଶୋକ କଲେ । ୫୯ । ତପୂରେ ଦୁଃଖିତମନା ପାଣ୍ଡବଗଣ ଅତିଶୟ ଚିନ୍ତା କରନ୍ତେ କୃଷ୍ଣ ସେମାନଙ୍କର ତାଦୃଶ ଭାବ ନିରୀକ୍ଷଣ କରି ମେଘ ଓ ଦୁନ୍ଦୁଭି ସମାନ ଗମ୍ଭୀର ସ୍ୱରରେ କହିଲେ (୬୦), ହେ ପାଣ୍ଡବଗଣ ! ଅତି ଶୀଘ୍ରାସ୍ତ୍ର ରଜା ଦୂର୍ଯ୍ୟୋଧନ ଓ ପ୍ରବଳ ପରାକ୍ରାନ୍ତ ଭୀଷ୍ମ ପ୍ରଭୃତି ସମସ୍ତ ମହାରଥମାନଙ୍କୁ ଋଜୁ ଯୁଦ୍ଧଦ୍ୱାରା ତୁମ୍ଭେମାନେ ସଂହାର କରିବାକୁ କଦାପି କ୍ଷମ ହୋଇ ନ ଥାନ୍ତ । ୬୧ । ଏହି ଦୂର୍ଯ୍ୟୋଧନଙ୍କୁ ଓ ମହାଧନୁର୍ଦ୍ଧର ଭୀଷ୍ମ ପ୍ରଭୃତି ମହାରଥମାନଙ୍କୁ ଧର୍ମଯୁଦ୍ଧରେ ସଂହାର କରିବାକୁ କୌଣସି ବୀରର ଶକ୍ତି ନାହିଁ । ୬୨ । ସେହି ହେତୁରୁ ଆମ୍ଭେ ତୁମ୍ଭମାନଙ୍କର ହିତକାମନାରେ ନାନା ପ୍ରକାର ଉପାୟ ଓ ନାନା ପ୍ରକାର ମାୟାଦ୍ୱାରା ସେ ସମସ୍ତଙ୍କୁ ଯୁଦ୍ଧରେ ସଂହାର କରାଇଲୁ । ୬୩ ।

ସେହି ଚାରିଜଣ ମହାନୁଭବ ଭୂମଣ୍ଡଳରେ ଅତିରଥ ବୋଲି ବିଖ୍ୟାତ ଅଟନ୍ତି । ଲୋକପାଳଗଣ ସ୍ୱୟଂ ଧର୍ମାନୁସାରେ ଯୁଦ୍ଧ କଲେ ସେମାନଙ୍କୁ ହତ କରିବାକୁ କଦାପି ସମର୍ଥ ନୁହନ୍ତି । ଅତଏବ ଆମ୍ଭେ ଯଦି ରଣସ୍ଥଳରେ ତାଦୃଶ କୁଟିଳ ଆଚରଣ କରି ନ ଥାନ୍ତୁ, ତେବେ ତୁମ୍ଭ-ମାନଙ୍କର କେଉଁପରି ଜୟ ହୋଇଥାଆନ୍ତା ଏବଂ ରାଜ୍ୟ ଓ ଧନ ଅବା କେଉଁପରି ହସ୍ତଗତ ହୋଇ ପାରିଥାଆନ୍ତା ? ୬୫ । ସେହିପରି ମହାବୀର ଗଦାପାଣି ଧୃତରାଷ୍ଟ୍ରନନ୍ଦନ ଏହି ଦୂର୍ଯ୍ୟୋଧନଙ୍କୁ ଦଣ୍ଡଧର ଯମଦେବ ସୁଦ୍ଧା ଧର୍ମଯୁଦ୍ଧରେ ସଂହାର କରିବାକୁ କଦାପି ସମର୍ଥ ନୁହନ୍ତି । ୬୬ । ଆମ୍ଭେ କେବଳ ମିଥ୍ୟା ପ୍ରବଞ୍ଚନା ଦ୍ୱାରା ଏହି ଶତ୍ରୁଙ୍କୁ ବିନାଶ କରିଅଛୁ ବୋଲି ତୁମ୍ଭେମାନେ ହୃଦୟରେ ଏତାଦୃଶ ବିଚାର କରନା । କେବଳ କପଟାଚରଣରେ ଶତ୍ରୁକୁଳ ନିର୍ମୂଳ ହୁଅନ୍ତି । ଯେତେ-ବେଳେ ଅମରଗଣ ଅସୁରକୁଳକୁ ଦଳନ କରନ୍ତି, ତେତେବେଳେ ସେମାନେ ଏହିପରି କପଟମାର୍ଗ ବିସ୍ତାର କରିଥାଆନ୍ତି । ସମସ୍ତେ ସାଧୁଗଣଙ୍କ ଅନୁଷ୍ଠିତ ମାର୍ଗକୁ ଆଶ୍ରୟ କରନ୍ତି । ଆମ୍ଭେମାନେ ସେହି ସାଧୁଗଣଙ୍କ ବିହିତ ଆଚରଣ କରି କୃତକୃତ୍ୟ ହୋଇଥାଉଁ । ହେ ନୃପଗଣ ! ଏତେବେଳେ ଆମ୍ଭେମାନେ ସମସ୍ତେ ଏହି ସାୟାହ୍ନ ସମୟରେ ଅଶ୍ୱଗଜରଥ ସହିତ ନିବାସକୁ ଯିବା ଓ ସେଠାରେ ବିଶ୍ରାମ କରିବା । ୬୯ ।

ହେ ମହାରାଜ ! ପାଣ୍ଡବ ଓ ପାଞ୍ଚାଳଗଣ ସେତେବେଳେ ବାସୁଦେବଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ଅତିଶୟ ହୃଷ୍ଟ ହେଲେ ଓ ସିଂହକୁଳ ସଦୃଶ ଉଚ୍ଚୈଃସ୍ୱରରେ ନାଦ କଲେ । ୭୦ । ତତ୍ପରେ ସମସ୍ତେ ନିହତ ପୁରୁଷସିଂହ ଦୁର୍ଯ୍ୟୋଧନଙ୍କୁ ଦେଖି ହୃଷ୍ଟ ଚିତ୍ତରେ ଶଙ୍ଖ ଧ୍ୱନି କଲେ । ଏବଂ କୃଷ୍ଣ ମଧ୍ୟ ପାଞ୍ଚଜନ୍ୟ ଶଙ୍ଖ ନାଦ କଲେ । ୭୧ ।

---

# ଅଧ୍ୟାୟ—୭୨

ସଞ୍ଜୟ କହିଲେ—ମହାରାଜ ! ତତ୍ପରେ ପରିଘ ସଦୃଶ ବାହୁ-ବିଶିଷ୍ଟ ସେହି ନରପାଳକୁଳ ଅତିଶୟ ହୃଷ୍ଟ ହୋଇ ଶଙ୍ଖ ଧ୍ୱନି କରି ବିଶ୍ରାମ ନିମିତ୍ତ ଶିବିରକୁ ଗଲେ । ୧ । ସେତେବେଳେ ପାଣ୍ଡବଗଣ ଆମ୍ଭମାନଙ୍କ ଶିବିରକୁ ଗମନ କରନ୍ତେ, ମହାବୀର ସାତ୍ୟକି, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ ଓ ଦ୍ରୌପଦୀଙ୍କର ପଞ୍ଚପୁତ୍ର ସେମାନଙ୍କର ପଶ୍ଚାତ୍ ଗମନ କଲେ । ୩ । ତତ୍ପରେ ପାଣ୍ଡବଗଣ ଦୁର୍ଯ୍ୟୋଧନଙ୍କର ଜନଶୂନ୍ୟ, ରଙ୍ଗସ୍ଥଳ ସଦୃଶ, ପ୍ରଭାହୀନ ଓ ପ୍ରଭୁଶୂନ୍ୟ ଶିବିରରେ ପ୍ରବିଷ୍ଟ ହେଲେ । ସେତେବେଳେ ସେହି ଶିବିର ନାଗହୀନ ହ୍ରଦ ଓ ଉତ୍ସବଶୂନ୍ୟ ନଗରର ସାଦୃଶ୍ୟ ଧାରଣ କରିଥିଲା । ତହିଁରେ ବୃଦ୍ଧ ଅମାତ୍ୟ, ବହୁତର ନପୁଂସକ ଓ ସ୍ତ୍ରୀଗଣ ବାସ କରୁଥିଲେ । ଦୁର୍ଯ୍ୟୋଧନଙ୍କର ମଳିନ ବସ୍ତ୍ରଧାରୀ ପରିଚାରକଗଣ କୃତାଞ୍ଜଳିପୁଟରେ ସେତେବେଳେ ସେମାନଙ୍କର ଶୁଶ୍ରୂଷା କଲେ । ୬ । ହେ ମହାରାଜ ! ପାଣ୍ଡବଗଣ କୁରୁରାଜାଙ୍କ ଶିବିରର ନିକଟବର୍ତ୍ତୀ ହୋଇ ନିଜ ନିଜ ରଥରୁ ଅବତରଣ କଲେ । ୭ । ତତ୍ପରେ ପାଣ୍ଡବମାନଙ୍କର ସର୍ବଦା ହିତକାରକ ଓ ପ୍ରିୟ ବାସୁଦେବ ଗାଣ୍ଡୀବଧାରୀ ଧନୁର୍ଦ୍ଧରଙ୍କୁ ସମ୍ବୋଧନ କରି କହିଲେ (୮), ହେ ଭାରତଶ୍ରେଷ୍ଠ ! ତୁମ୍ଭେ ଆଗେ ଗାଣ୍ଡୀବ ଶରାସନ ଓ ଅକ୍ଷୟ ତୂଣଦ୍ୱୟ ଅବତରଣପୂର୍ବକ ସ୍ୱୟଂ ରଥରୁ ଅବତୀର୍ଣ୍ଣ ହୁଅ । ଆମ୍ଭେ ପଶ୍ଚାତ୍ ରଥରୁ ଅବତରଣ କରିବୁ । ଏ ପ୍ରକାର କଲେ ତୁମ୍ଭର ମଙ୍ଗଳ ହେବ ।

ପାଣ୍ଡୁନନ୍ଦନ ବୀରବର ଧନଞ୍ଜୟ କୃଷ୍ଣଙ୍କ ବାକ୍ୟାନୁସାରେ କର୍ମ କଲା ଉତ୍ତାରେ ବାସୁଦେବ ଅଶ୍ୱବୃନ୍ଦର ରଜ୍ଜୁମୋଚନ କରି ସ୍ୱୟଂ ଅର୍ଜ୍ଜୁନଙ୍କ

ରଥରୁ ଓହ୍ଲାଇଲେ । ୧୧ । ସର୍ବଭୂତେଶ୍ୱର ମହାତ୍ମା କୃଷ୍ଣ ଅର୍ଜ୍ଜୁନଙ୍କ ରଥରୁ ଅବତରଣ କଲାରୁ ତାହାଙ୍କର ରଥର ଧ୍ୱଜସ୍ଥିତ ଦିବ୍ୟକପି ମଧ୍ୟ ଅନ୍ତର୍ହିତ ହେଲେ । ୧୨ । ହେ ମହାରାଜ ! ଧନଞ୍ଜୟଙ୍କର ସେହି ଅତି ବିଶାଳ ରଥ ପୂର୍ବେ ଦ୍ରୋଣ ଓ କର୍ଣ୍ଣଙ୍କ ଦିବ୍ୟାସ୍ତ୍ରବୃନ୍ଦଦ୍ୱାରା ଦଗ୍ଧ ହୋଇ-ଥିଲେ ସୁଦ୍ଧା ପ୍ରଜ୍ୱଳିତ ହୋଇ ପାରି ନ ଥିଲା । ଏତେବେଳେ କୃଷ୍ଣଙ୍କ ଅବତରଣ ଓ କପିବରଙ୍କ ଅନ୍ତର୍ଦ୍ଧାନ ହେତୁରୁ ଚକ୍ରଯୁଗ, ବନ୍ଧୁର ଓ ରଶ୍ମି ମଧ୍ୟ ଅଶ୍ୱଗଣଙ୍କ ସହିତ ଏକାବେଳକେ ପ୍ରଜ୍ୱଳିତ ହେଲା ଓ ଭସ୍ମୀଭୂତ ହୋଇ ଭୂମିସାତ୍ ହେଲା । ୧୪ । ହେ ପ୍ରଭୋ ! ପାଣ୍ଡବମାନେ ସହସା ସେହି ରଥକୁ ଭସ୍ମୀଭୂତ ହେବାର ଅବଲୋକନ କରି ଅତିଶୟ ବିସ୍ମିତ ହେଲେ ! ତତ୍ପରେ ଅର୍ଜ୍ଜୁନ ପ୍ରଣୟ ସହିତ ପ୍ରଣତି କରି କୃତାଞ୍ଜଳି-ପୁଟରେ କୃଷ୍ଣଙ୍କୁ କହିଲେ, ହେ ଗୋବିନ୍ଦ ! ଆମ୍ଭର ଏହି ରଥ କେଉଁ କାରଣରୁ ଅକସ୍ମାତ୍ ଦଗ୍ଧୀଭୂତ ହେଲା ? ହେ ଭଗବନ୍ ଯଦୁନନ୍ଦନ ! ମହାବାହୋ ! ଏହି ମହତ୍ ଆଶ୍ଚର୍ଯ୍ୟ ଘଟନା କେଉଁ ହେତୁରୁ ଘଟିଲା ? ଏହି ବିଷୟ ଯଦି ଆମ୍ଭର ଶୁଣିବାର ଯୋଗ୍ୟ ଅଟେ, ତେବେ କହନ୍ତୁ । ୧୭ ।

ବାସୁଦେବ କହିଲେ, ହେ ପରନ୍ତପ ଅର୍ଜ୍ଜୁନ ! ପୂର୍ବେ ଏହି ରଥ ବହୁବିଧ ଅସ୍ତ୍ରଦ୍ୱାରା ଦଗ୍ଧ ହୋଇଥିଲା । କେବଳ ଆମ୍ଭର ଅଧିଷ୍ଠାନବଶରୁ ସମର ମଧ୍ୟରେ ପ୍ରଜ୍ୱଳିତ ହୋଇ ନ ଥିଲା । ୧୮ । ଅଦ୍ୟ ତୁମ୍ଭେ କୃତକାର୍ଯ୍ୟ ହେବାରୁ ଆମ୍ଭେ ରଥକୁ ପରିତ୍ୟାଗ କଲୁଁ । ସୁତରାଂ ବ୍ରହ୍ମାସ୍ତ୍ରମାନଙ୍କ ତେଜରେ ଏହା ପ୍ରଜ୍ୱଳିତ ଓ ଭସ୍ମୀଭୂତ ହେଲା । ୧୯ । ଶତ୍ରୁହନ୍ତା ଭଗବାନ୍ ବାସୁଦେବ ଅର୍ଜ୍ଜୁନଙ୍କୁ ଏହି କଥା କହି ହାସ୍ୟଯୁକ୍ତ ବଦନରେ ଯୁଧିଷ୍ଠିରଙ୍କୁ ଆଲିଙ୍ଗନ କରି କହିଲେ (୨୦), ହେ ମହାରାଜ ! ଆପଣ ଭାଗ୍ୟବଳରେ ଜୟଲାଭ କଲେ । ଆପଣଙ୍କ ଭାଗ୍ୟବଳରେ ଶତ୍ରୁବୃନ୍ଦ ହତ ହେଲେ । ଭାଗ୍ୟବଳରେ ଗାଣ୍ଡୀବ ଧନୁର୍ଦ୍ଧାରୀ ଅର୍ଜ୍ଜୁନ, ଭୀମ, ନକୁଳ, ସହଦେବ ଓ ଆପଣ କୁଶଳରେ ରହିଲେ ଓ ଭାଗ୍ୟବଳରେ ଆପଣମାନେ ଶତ୍ରୁସଂହାର ପୂର୍ବକ ବୀରକ୍ଷୟକାରକ ଏହି ଯୁଦ୍ଧରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ୨୨ । ହେ ଭାରତ ! ଏତେବେଳେ ଉତ୍ତର କାଳର କର୍ତ୍ତବ୍ୟ କାର୍ଯ୍ୟମାନ ସମ୍ପାଦନ କରିବା ହେଉନ୍ତୁ । ପୂର୍ବେ ଆମ୍ଭେ ବିରାଟ ନଗରୀରେ ଅର୍ଜ୍ଜୁନଙ୍କ ସହିତ ଉପପ୍ଳବ୍ୟରେ ଆପଣଙ୍କ ନିକଟରେ ଉପସ୍ଥିତ ହେବା ସମୟରେ ଆପଣ ମଧୁପର୍କ ଆନୟନ କରି ଆମ୍ଭଙ୍କୁ କହିଲେ ଯେ ହେ କୃଷ୍ଣ ! ଏହି ଧନଞ୍ଜୟ ତୁମ୍ଭର ଭ୍ରାତା ଏବଂ ସଖା; ଏହାଙ୍କୁ ସର୍ବଦା

ସର୍ବ ପ୍ରକାର ଆପଦରୁ ରକ୍ଷା କରିବ । ଆପଣ ଏହି ପ୍ରକାର କହିବାରୁ ଆମ୍ଭେ ସ୍ୱୀକାର କରିଥିଲୁ । ୨୫ । ହେ ଜନେଶ୍ୱର ! ଆମ୍ଭେ ଆପଣଙ୍କର ସେହି କଥା ସ୍ୱୀକାର କରିଥିଲୁଁ ବୋଲି ସବ୍ୟସାଚୀଙ୍କୁ ସର୍ବଦା ରକ୍ଷଣାବେକ୍ଷଣ କରିଅଛୁ ଏବଂ ସେହି ସତ୍ୟପରାକ୍ରମ ଶୂରବର ଭ୍ରାତୃଗଣଙ୍କ ସହିତ ଜୟଲାଭ କରି ଲୋମହର୍ଷଣ ଘୋରକ୍ଷୟକାରକ ଏହି ଯୁଦ୍ଧରୁ ମୁକ୍ତ ହୋଇଅଛନ୍ତି ।

ହେ ମହାରାଜ ! କୃଷ୍ଣ ଧର୍ମରାଜ ଯୁଧିଷ୍ଠିରଙ୍କୁ ଏହିପରି କହିବାରୁ ତାହାଙ୍କ ଶରୀର ପୁଲକରେ ପରିପୂର୍ଣ୍ଣ ହେଲା । ତତ୍ପରେ ସେ ଜନାର୍ଦ୍ଦନଙ୍କୁ ସମ୍ବୋଧନ କରି କହିଲେ, ହେ ଶତ୍ରୁମର୍ଦ୍ଦନ ! ଦ୍ରୋଣ ଓ କର୍ଣ୍ଣଙ୍କଦ୍ୱାରା ନିକ୍ଷିପ୍ତ ବ୍ରହ୍ମାସ୍ତ୍ରକୁ ତୁମ୍ଭ ବ୍ୟତିରେକେ ଅନ୍ୟ କେଉଁ ଲୋକ ସହ୍ୟ କରିପାରେ ? ସାକ୍ଷାତ୍ ବଜ୍ରଧର ଇନ୍ଦ୍ର ସୁଦ୍ଧା ତାହା ସହ୍ୟ କରିବାକୁ କଦାପି ସମର୍ଥ ନୁହନ୍ତି । ତୁମ୍ଭ ପ୍ରସାଦରେ ସଂଶପ୍ତକ ସୈନ୍ୟଗଣ ପରାଜିତ ହୋଇଅଛନ୍ତି ଏବଂ ଧନଞ୍ଜୟ ମହାସଂଗ୍ରାମରେ ପ୍ରବେଶ କରି କୌଣସି ଥର ପରାଙ୍ମୁଖ ହୋଇନାହାନ୍ତି । ହେ ମହାବାହୋ ! ଆମ୍ଭେ ତୁମ୍ଭ ଅନୁଗ୍ରହରେ କେବଳ ପର୍ଯ୍ୟାୟକ୍ରମେ କର୍ମସମୂହର ବିସ୍ତାର ଏବଂ ତେଜୋରାଶିର ଶୁଭଗତି ପ୍ରାପ୍ତ ହେଲୁଁ । ଉପପ୍ଲବ୍ୟ ନଗରରେ ମହର୍ଷି କୃଷ୍ଣ ଦ୍ୱୈପାୟନ ଆମ୍ଭଙ୍କୁ କହିଥିଲେ ଯେ (୩୧), ଯେଉଁ ସ୍ଥାନରେ ଧର୍ମ, ସେହି ସ୍ଥାନରେ କୃଷ୍ଣ ଏବଂ ଯେଉଁ ସ୍ଥାନରେ କୃଷ୍ଣ, ସେହି ସ୍ଥାନରେ ଜୟ ।

ମହାରାଜ ! ଯୁଧିଷ୍ଠିର ଏହିପରି କହିବାରୁ ବୀରଗଣ ଆପଣଙ୍କ ଶିବିରରେ ପ୍ରବେଶ କରି କୋଷସ୍ଥିତ ରତ୍ନସମୂହ, ରଜତ, ସୁବର୍ଣ୍ଣ, ମଣିମୁକ୍ତା, ନାନା ପ୍ରକାର ଉତ୍ତମ ଉତ୍ତମ ଅଳଙ୍କାର, ଅଜିନ, କମ୍ବଳ, ଅସଂଖ୍ୟ ଦାସଦାସୀ ଏବଂ ବହୁବିଧ ରାଜ୍ୟର ଉପକରଣ ଆହରଣ କଲେ । ୩୪ । ହେ ଭରତଶ୍ରେଷ୍ଠ ! ନରେନ୍ଦ୍ର ! ସେହି ଶତ୍ରୁଜିତ୍ ମହାରଥମାନେ ଆପଣଙ୍କର ଅକ୍ଷୟ ଧନ ପ୍ରାପ୍ତ ହୋଇ ଆନନ୍ଦ ଧ୍ୱନି କଲେ । ୩୫ ।

ତତ୍ପରେ ସେହି ସମସ୍ତ ପାଣ୍ଡବ ଓ ବୀର ପୁରୁଷମାନେ ବାହନଗଣଙ୍କୁ ଆଶ୍ୱାସିତ ଓ ମୁକ୍ତ କରି ସାତ୍ୟକିଙ୍କ ସହିତ ଏକ ସ୍ଥାନରେ ଉପବେଶନ କଲେ । ୩୬ । ଏଥି ଉତ୍ତାରେ ମହାଯଶା ବାସୁଦେବ କହିଲେ, ମଙ୍ଗଳଲାଭ ନିମିତ୍ତ ଆମ୍ଭେମାନେ ଅଦ୍ୟ ଶିବିରର ବହିର୍ଭାଗରେ ବାସ କରିବା । ୩୭ । ପାଣ୍ଡବ-

ଗଣ ଓ ସାତ୍ୟକି ସମସ୍ତେ ସେହି ରଥପୃଷ୍ଠରେ ସମ୍ମତ ହୋଇ ମଙ୍ଗଳାର୍ଥେ କୃଷ୍ଣଙ୍କ ସହିତ ବହ୍ନିଗର୍ଭଙ୍କୁ ଗମନ କଲେ । ୩୮ । ସେହି ଶତ୍ରୁହନ୍ତା ପାଣ୍ଡବମାନେ ଓଘବତୀନାମ୍ନୀ ପବିତ୍ର ନଦୀର ନିକଟବର୍ତ୍ତୀ ହୋଇ ତଦୀୟ ତୀରରେ ସେହି ରାତି ଯାପନ କଲେ । ୩୯ । ସେହି ରାତିରେ ରାଜା ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ପରାମର୍ଶ କରି ହତପୁତ୍ରା ଗାନ୍ଧାରୀଙ୍କ ପ୍ରଦୀପ୍ତ କ୍ରୋଧାନଳ ଶାନ୍ତି ନିମିତ୍ତ ଯୁକ୍ତି ଓ କାରଣସଂଯୁକ୍ତ ବାକ୍ୟାବଳୀ ଦ୍ୱାରା କୃଷ୍ଣଙ୍କୁ କହିଲେ, ହେ ମାଧବ ! ଆପଣ ହସ୍ତିନାନଗରୀକୁ ଗମନ କରି ଦେବୀ ଗାନ୍ଧାରୀଙ୍କୁ ସାନ୍ତ୍ୱନା କରନ୍ତୁ । ହେ ମହାଭାଗ ! ସେଠାକୁ ଗମନ କରିବା ବିଷୟରେ ଯଦି ଇଚ୍ଛା ହୁଏ, ତେବେ ଅତି ଶୀଘ୍ର ଗମନ କରନ୍ତୁ । ଅପିଚ ଭଗବାନ ପିତାମହ ବ୍ୟାସଦେବ ମଧ୍ୟ ସେଠାରେ ଅଛନ୍ତି । ୪୨ ।

ତତ୍ପରେ ସମସ୍ତେ ଏକବାକ୍ୟ ହୋଇ ବାସୁଦେବଙ୍କୁ ହସ୍ତିନାପୁରକୁ ପ୍ରେରଣ କଲେ । ପ୍ରତାପଶାଳୀ ବାସୁଦେବ ଦାରୁକଙ୍କୁ ରଥରେ ବସାଇ ସତ୍ୱର ଭାବରେ ହସ୍ତିନାକୁ ଯିବା ନିମିତ୍ତ ଉଦ୍ୟତ ହେବାରୁ ତେତେବେଳେ ପାଣ୍ଡବମାନେ ତାହାଙ୍କୁ କହିଲେ, ହେ ମାଧବ ! ଯଶସ୍ୱିନୀ ଗାନ୍ଧାରୀ ପୁତ୍ରହୀନା ହୋଇଅଛନ୍ତି । ଅତଏବ ତୁମ୍ଭେ ସେଠାକୁ ଯାଇ ତାହାଙ୍କୁ ଆଶ୍ୱାସ ପ୍ରଦାନ କର । ସାତ୍ୱତଶ୍ରେଷ୍ଠ କୃଷ୍ଣ ପାଣ୍ଡବଗଣଙ୍କର ସେହି ବାକ୍ୟ ଶ୍ରବଣ କରି ତତ୍‌କ୍ଷଣାତ୍ ହତପୁତ୍ରା ଗାନ୍ଧାରୀଙ୍କ ନିକଟକୁ ଗମନ କଲେ ।୪୬।

---

## ଅଧ୍ୟାୟ—୭୩

ଜନ୍ମେଜୟ କହିଲେ—ହେ ଦ୍ୱିଜଶ୍ରେଷ୍ଠ ! ଧର୍ମରାଜ ଯୁଧିଷ୍ଠିର ବାସୁଦେବଙ୍କୁ କେଉଁ କାରଣରେ ଗାନ୍ଧାରୀଙ୍କ ନିକଟକୁ ପ୍ରେରଣ କରିଥିଲେ ? ପୂର୍ବେ ଯେତେବେଳେ କୃଷ୍ଣ ଶାନ୍ତି ସ୍ଥାପନ ନିମିତ୍ତ କୌରବମାନଙ୍କ ନିକଟକୁ ଗମନ କରିଥିଲେ, ତେତେବେଳେ ସେମାନେ ତାହାଙ୍କ କଥା ଗ୍ରାହ୍ୟ କରି ନ ଥିଲେ ବୋଲି ଏହି ସୁମହାନ୍ ଯୁଦ୍ଧ ଉପସ୍ଥିତ ହେଲା । ତହିଁରେ ଯୋଦ୍ଧାମାନେ ନିହତ ଓ ଦୁର୍ଯ୍ୟୋଧନ ହତ ହେଲେ । ପାଣ୍ଡବଗଣ ଭୂମଣ୍ଡଳକୁ ନିଷ୍କଣ୍ଟକ କଲେ । ଶିବିରବୃନ୍ଦ ନିର୍ଜନ ହେଲା ଓ ପାଣ୍ଡବଗଣ

ଉତ୍ତମ ଯଶ ପ୍ରାପ୍ତ ହେଲେ । ତଥାପି କୃଷ୍ଣ ଯେ ପୁନଶ୍ଚ ହସ୍ତିନାପୁରକୁ ଗମନ କଲେ, ତାହାଁର କାରଣ କି ? କୃଷ୍ଣ ଅଳ୍ପ କାରଣରେ କୌରବମାନଙ୍କ ନିକଟକୁ ଗମନ କରିଥିଲେ ବୋଲି ଆମ୍ଭଙ୍କୁ ଜଣାଯାଉ ନାହିଁ । ହେ ଯାଜ୍ଞିକଶ୍ରେଷ୍ଠ ବ୍ରାହ୍ମଣ୍ ! ଯେଉଁ କାର୍ଯ୍ୟ ନିଶ୍ଚୟ କରିବା ବିଷୟରେ ସ୍ୱୟଂ ଜନାର୍ଦ୍ଦନ ଆତ୍ମଗମନ କରିଥିଲେ, ତାହାର ଯଥାର୍ଥ କାରଣ ଆମ୍ଭଙ୍କୁ କହିବା ହେଉନ୍ତୁ ।

ବୈଶମ୍ପାୟନ କହିଲେ, ହେ ଭରତକୁଳପ୍ରଦୀପ ପାର୍ଥିବ ! ଆପଣ ଆମ୍ଭଙ୍କୁ ଯୁକ୍ତିସଙ୍ଗତ ପ୍ରଶ୍ନ କରିଅଛନ୍ତି । ଅତଏବ ଆମ୍ଭେ ଆପଣଙ୍କୁ ତାହା ଯଥାର୍ଥ ରୂପେ କହୁଅଛୁ, ଶ୍ରବଣ କରିବା ହେଉନ୍ତୁ । ୭ । ମହାରାଜ ! ଭୀମସେନ ସଂଗ୍ରାମରେ ଗଦାଯୁଦ୍ଧର ନିୟମ ଲଙ୍ଘନ ପୂର୍ବକ ଅନ୍ୟାୟରେ ଗଦାପ୍ରହାର ଦ୍ୱାରା ମହାବୀର ଦୁର୍ଯ୍ୟୋଧନଙ୍କୁ ନିହତ କରିବାର ଦେଖି ଯୁଧିଷ୍ଠିରଙ୍କ ଅନ୍ତଃକରଣରେ ମହାନ ଭୟ ଜାତ ହେଲା । ୯ । ତେତେବେଳେ ସେ ଭାବନା କଲେ—ମହାଭାଗା ଗାନ୍ଧାରୀ ଘୋରତର ତପସ୍ୱିନୀ ଅଟନ୍ତି । ତାହାଙ୍କ ପ୍ରଭାବରେ ତ୍ରିଭୁବନ ଦଗ୍ଧ ହୋଇପାରେ । ସେ ପୁତ୍ରବଧ ବୃତ୍ତାନ୍ତ ଶୁଣି କ୍ରୋଧରେ ଆମ୍ଭମାନଙ୍କୁ ଭସ୍ମସାତ୍ କରିବେ । ଏହି ବିଷୟର ଉପସ୍ଥିତ ହେବାରୁ ସେ କ୍ରୋଧପ୍ରଦୀପ୍ତ ଗାନ୍ଧାରୀଙ୍କୁ ସାନ୍ତ୍ୱନା ଦେବା ବିଷୟରେ ଯତ୍ନଶୀଳ ହେଲେ । ୧୨ । ସରଳ ଭାବରେ ସମରକାରୀ ପୁତ୍ର କପଟ ଯୁଦ୍ଧରେ ନିହତ ହୋଇଅଛନ୍ତି; ଗାନ୍ଧାରୀ ଏହି କଥା ଶ୍ରବଣ କରି କେଉଁ ପ୍ରକାରରେ ଏହି ତୀବ୍ର ଦୁଃଖକୁ ସହ୍ୟ କରିବେ ?

ଧର୍ମରାଜ ଏହିପରି ବହୁଳ ଚିନ୍ତା କରି ଭୟ ଓ ଶୋକଯୁକ୍ତ ଚିତ୍ତରେ ବାସୁଦେବଙ୍କୁ ସମ୍ବୋଧନ କରି କହିଲେ, ହେ ଗୋବିନ୍ଦ ! ତୁମ୍ଭ ପ୍ରସାଦରେ ରାଜ୍ୟ ନିଷ୍କଣ୍ଟକ ହେଲା । ଯେଉଁ ରାଜ୍ୟ ପାଇବା ନିମିତ୍ତ ମନରେ ଆମ୍ଭମାନଙ୍କର କିଛି ମାତ୍ର ଭରସା ନ ଥିଲା, ଏତେବେଳେ ତାହା ପାଇଲୁ । ହେ ଯାଦବନନ୍ଦନ ! ମହାବାହୋ ! ଏହି ଲୋମହର୍ଷଣ ସଂଗ୍ରାମରେ ଆମ୍ଭ ପ୍ରତ୍ୟକ୍ଷରେ ତୁମ୍ଭେ ଅନେକ କ୍ଲେଶ ପାଇଅଛ । ୧୭ । ପୂର୍ବେ ସୁରାସୁର ଯୁଦ୍ଧରେ ଅସୁରକୁଳ ବିନାଶ ନିମିତ୍ତ ସହାୟ ହୋଇ ଯେଉଁପରି ଦେବଶତ୍ରୁମାନଙ୍କୁ ସଂହାର କରିଥିଲ, ଏହି ଯୁଦ୍ଧରେ ଆମ୍ଭମାନଙ୍କ ନିମିତ୍ତ ତୁମ୍ଭେ ସେହିପରି ସହାୟ ହୋଇ ସାରଥ୍ୟ ସ୍ୱୀକାର ପୂର୍ବକ ଆମ୍ଭମାନଙ୍କୁ ରକ୍ଷା କଲ । ୧୮ । ତୁମ୍ଭେ ଏହି ମହାରଣରେ ଯଦି ଅର୍ଜ୍ଜୁନଙ୍କର ସହାୟ ହୋଇ ନ

ଥାନ୍ତି, ତେବେ କି ଧନଞ୍ଜୟ ଏହି ସୈନ୍ୟବୃନ୍ଦଙ୍କୁ ସଂହାର କରିପାରି ଥାନ୍ତେ ? ତୁମ୍ଭେ ଆମ୍ଭମାନଙ୍କ ନିମିତ୍ତ ବିପୁଳ ଗଦାପ୍ରହାର, ଘୋରତର ପରିଘମାନଙ୍କ ଆଘାତ ଶକ୍ତି, ଭିନ୍ଦିପାଳ, ତୋମର ଓ ପରଶୁର ପ୍ରହାର କେତେବାର ସହ୍ୟ କରିଅଛ, କେତେ କଠିନ ବାକ୍ୟ ଶ୍ରବଣ କରିଅଛ ଓ କେତେ କେତେ ବଜ୍ର ସଦୃଶ ଶସ୍ତ୍ରଘାତ ସହ୍ୟ କରିଅଛ । ୨୧ ।। ହେ ଅଚ୍ୟୁତ ! ଏତେବେଳେ ଦୁର୍ଯ୍ୟୋଧନ ହତ ହେବାରୁ ତୁମ୍ଭର ସେହି ଗୁଣ ସବୁ ସଫଳ ହୋଇଅଛି । ସମ୍ପ୍ରତି ସେହି ଗୁଣ ସବୁ ପୁନଶ୍ଚ ଯେଉଁପରି ନଷ୍ଟ ନ ହେବ ତାହା କର । ୨୨ ।

ହେ କୃଷ୍ଣ ! ଏତେବେଳେ ଆମ୍ଭମାନଙ୍କର ଜୟ ହୋଇଅଛି ସତ୍ୟ, କିନ୍ତୁ ଆମ୍ଭ ମନ ସନ୍ଦେହ-ଦୋଳାରେ ଆନ୍ଦୋଳିତ ହେଉଅଛି । ହେ ମହାବାହୋ ! ମାଧବ ! ଗାନ୍ଧାରୀଙ୍କର କେତେ ପରିମାଣରେ କ୍ରୋଧ ତାହା ବୁଝ । ସେହି ମହାଭାଗା ସର୍ବଦା ଉଗ୍ର ତପସ୍ୟାରେ ଆସକ୍ତା ଥାଆନ୍ତି । ଆମ୍ଭମାନଙ୍କଦ୍ୱାରା ତାହାଙ୍କର ପୁତ୍ରପୌତ୍ରସମୂହ ନଷ୍ଟ ହୋଇଥିବାର ଶୁଣି ସେ ଆମ୍ଭମାନଙ୍କୁ ଏକାବେଳକେ ଦଗ୍ଧ କରିବେ । ୨୪ । ଅତଏବ ଏହି ସମୟରେ ତାହାଙ୍କୁ ସାନ୍ତ୍ୱନା ଦେବା ଉଚିତ ଏବଂ ସେହି ପୁତ୍ର-ଶୋକାର୍ତ୍ତା କ୍ରୋଧରେ ଆରକ୍ତନୟନା ଦେବୀଙ୍କୁ ସାନ୍ତ୍ୱନା କରିବା ନିମିତ୍ତ ତୁମ୍ଭ ବ୍ୟତିରେକେ ତାହାଙ୍କ ସମ୍ମୁଖକୁ ଅନ୍ୟ କୌଣସି ବ୍ୟକ୍ତି ଯାଇ ପାରିବ ନାହିଁ । ଏହି ହେତୁରୁ ଆମ୍ଭର ଅଭିପ୍ରାୟ ଯେ ତୁମ୍ଭେ ତାହାଙ୍କ କ୍ରୋଧ-ଶାନ୍ତି ନିମିତ୍ତ ତାଙ୍କ ସନ୍ନିଧିକି ଗମନ କର ।

ହେ ଅରିନ୍ଦମ ! ତୁମ୍ଭେ ଅବ୍ୟୟ ଏବଂ ସର୍ବଲୋକର କର୍ତ୍ତା ଏବଂ ସଂହାରକାରୀ ଅଟ ଏବଂ ସମୟର ଉଚିତ ଯୁକ୍ତି ଓ କାରଣସଂଯୁକ୍ତ ବାକ୍ୟ-ଦ୍ୱାରା ଶୀଘ୍ର ଗାନ୍ଧାରୀଙ୍କୁ ସାନ୍ତ୍ୱନା କରିବ । ୨୮ । ସେଠାରେ ଭଗବାନ ପିତାମହ କୃଷ୍ଣ ଦ୍ୱୈପାୟନ ଥିବେ, ଅତଏବ ହେ ମହାବାହେ ! ପାଣ୍ଡବ-ମାନଙ୍କ ହିତ ନିମିତ୍ତ ଗାନ୍ଧାରୀଙ୍କ କ୍ରୋଧ ଶାନ୍ତ କରିବାର ତୁମ୍ଭର ସର୍ବ ପ୍ରକାରରେ କର୍ତ୍ତବ୍ୟ । ଯଦୁକୁଳଚୂଡ଼ାମଣି ମାଧବ ଧର୍ମରାଜଙ୍କର ଏହି ବାକ୍ୟ ଶୁଣିଲାମାତ୍ରେ ଦାରୁକଙ୍କୁ ଆହ୍ୱାନ କରି ରଥସଜ୍ଜା କରିବାକୁ ଅନୁମତି ଦେଲେ । ଦାରୁକ ବାସୁଦେବଙ୍କ ଆଜ୍ଞା ଶୁଣି ତ୍ୱରାଯୁକ୍ତ ହୋଇ ତତ୍‌କ୍ଷଣାତ୍ ରଥକୁ ସୁସଜ୍ଜିତ କରି ତାଙ୍କ ନିକଟରେ ଜଣାଇଲେ । କୃଷ୍ଣ ସେହି ସଜ୍ଜୀଭୂତ ରଥରେ ବସି ଶୀଘ୍ର ହସ୍ତିନାପୁରକୁ ଗମନ କଲେ ।

ହେ ମହାରାଜ ! ତତ୍ପରେ ଭଗବାନ୍ ମାଧବ ରଥାରୋହଣପୂର୍ବକ କ୍ରମେ କ୍ରମେ ହସ୍ତିନା ନଗରରେ ପ୍ରବେଶ କଲେ । ତାହାଙ୍କର ରଥଚକ୍ରର ଶବ୍ଦଦ୍ୱାରା କୃଷ୍ଣ ଆଗମନ କରୁଅଛନ୍ତି ବୋଲି ଧୃତରାଷ୍ଟ୍ର ଜାଣିଲେ । ତଦନନ୍ତର କୃଷ୍ଣ ସେହି ମନୋହର ରଥରୁ ଅବତୀର୍ଣ୍ଣ ହୋଇ ଅତି ଦୁଃଖିତ ମନରେ ଧୃତରାଷ୍ଟ୍ରଙ୍କ ମନ୍ଦିରକୁ ଗମନ କଲେ । ସେ ଗମନ କରି ମାତ୍ରେ ପ୍ରଥମରେ ଋଷିବର କୃଷ୍ଣ ଦ୍ୱୈପାୟନଙ୍କୁ ଦେଖିଲେ । ଜନାର୍ଦ୍ଦନ ତାହାଙ୍କର ଓ ରାଜା ଧୃତରାଷ୍ଟ୍ରଙ୍କର ଚରଣ ବନ୍ଦନ କରି ଅତ୍ୟନ୍ତ ବ୍ୟଗ୍ର ଚିତ୍ତରେ ଗାନ୍ଧାରୀଙ୍କୁ ଅଭିବାଦନ କଲେ ।

ହେ ରାଜେନ୍ଦ୍ର ! ତତ୍ପରେ ଯଦୁକୁଳତିଳକ କେଶବ ଧୃତରାଷ୍ଟ୍ରଙ୍କ ହସ୍ତ ଧରି ଉଚ୍ଚୈଃସ୍ୱରରେ ରୋଦନ କଲେ । ସେ ମୁହୂର୍ତ୍ତକ ପର୍ଯ୍ୟନ୍ତ ଶୋକ-ଜନିତ ବାଷ୍ପବାରି ପରିତ୍ୟାଗ କରି ଜଳଦ୍ୱାରା ନୟନଯୁଗଳ ପ୍ରକ୍ଷାଳନ ଓ ଯଥାବିଧି ଆଚମନପୂର୍ବକ ରାଜାଙ୍କୁ ପ୍ରସ୍ତୁତ ବାକ୍ୟ କହିଲେ—ହେ ଭାରତ ! ଆପଣ ବୃଦ୍ଧ ଅଟନ୍ତି । କୌଣସି ବିଷୟ ଆପଣଙ୍କର ଅବିଦିତ ନାହିଁ । ଯେଉଁ ସମୟରେ ଯାହା ଘଟୁଅଛି, ତାହାସବୁ ଆପଣ ଉତ୍ତମରୂପେ ଅବଗତ ହୋଇଅଛନ୍ତି । ୪୦ । ପାଣ୍ଡବମାନେ ଆପଣଙ୍କ ମନ ଅନୁସାରେ ଯେଉଁପରି କୁଳକ୍ଷୟ ଓ କ୍ଷତ୍ରିୟଗଣର ବିନାଶ ନ ହେବ, ତାହାର ଉପାୟ କରିବା ନିମିତ୍ତ ଅତିଶୟ ଯତ୍ନଶୀଳ ହୋଇଥିଲେ । ତଥାପି ଏହି ସମସ୍ତ କ୍ଷତ୍ରିୟ-କୁଳ କ୍ଷୟପ୍ରାପ୍ତ ହେଲା । ୪୧ । ଧର୍ମବତ୍ସଳ ଯୁଧିଷ୍ଠିର ଭ୍ରାତୃଗଣଙ୍କ ସହିତ ପଣ କରି କ୍ଷାନ୍ତ ହୋଇଥିଲେ । ଆପଣଙ୍କର ପୁତ୍ରମାନେ ସେହି ଶୁଦ୍ଧଚିତ୍ତ ପାଣ୍ଡବମାନଙ୍କୁ ଦ୍ୟୁତକ୍ରୀଡ଼ା ଛଳରେ ପରାଜିତ କରି ବନବାସକୁ ପଠାଇଲେ । ୪୨ । ସେମାନେ ନାନାବିଧ ବେଶ ଧରି ନାନା ଦେଶ ଭ୍ରମଣ କରି ପରିଶେଷରେ ଏକ ବର୍ଷ ଅଜ୍ଞାତବାସ କଲେ । ତହିଁରେ ଯେ ସେମାନେ କେତେ କ୍ଳେଶ ସହ୍ୟ କରିଥିଲେ, ତାହା ବର୍ଣ୍ଣନ କରି ହେବ ନାହିଁ । ୪୩ ।

ତତ୍ପରେ ଯୁଦ୍ଧର ସମୟ ଉପସ୍ଥିତ ହେବାରୁ ଆମ୍ଭେମାନେ ସ୍ୱୟଂ ସନ୍ଧି ବନ୍ଧନ କରିବା ନିମିତ୍ତ ଆସି ସମସ୍ତଙ୍କ ସାକ୍ଷାତରେ ପାଞ୍ଚ ଗ୍ରାମ ପ୍ରାର୍ଥନା କଲୁ । କିନ୍ତୁ ହେ ମହାରାଜ ! ଆପଣ କାଳମୋହିତ ହୋଇ ଲୋଭବଶରେ ସେହି ପଞ୍ଚଗ୍ରାମ ପ୍ରଦାନ କଲେ ନାହିଁ । ଅତଏବ ଆପଣଙ୍କ ଅପରାଧରେ ଏହି ସମସ୍ତ କ୍ଷତ୍ରିୟକୁଳ ନଷ୍ଟପ୍ରାୟ ନିର୍ମୂଳ ହେଲା ବୋଲି ଜାଣିବା

ହେଉନ୍ତୁ । ୪୫ । ମହାତ୍ମା ଭୀଷ୍ମଦେବ, ସୋମଦତ୍ତ, ବାହ୍ଲୀକ, କୃପ, ଦ୍ରୋଣ, ଅଶ୍ୱତ୍ଥାମା ଓ ବୁଦ୍ଧିମାନ ବିଦୁର ଏହି ସମସ୍ତ ଆପଣଙ୍କ ନିକଟରେ ଶାନ୍ତି ପ୍ରାର୍ଥନା କଲେ, କିନ୍ତୁ ଆପଣ ସେମାନଙ୍କ ବାକ୍ୟ ଶୁଣିଲେ ନାହିଁ ।

ହେ ମହାରାଜ ! ମନୁଷ୍ୟମାନେ କାଳବଶରେ ହତବୁଦ୍ଧି ହେଲେ ସମସ୍ତ ବିଷୟରେ ମୋହିତ ହୋଇଥାଆନ୍ତି । ଆପଣ କେବଳ ଏହି ବିଷୟରେ ଉଦାହରଣ । ଆପଣ ପୂର୍ବେ ଏହି ସଂଗ୍ରାମ ନିମିତ୍ତ ଯେଉଁ ମୂଢ଼ତା ପ୍ରକାଶ କରିଥିଲେ, ତାହା ଏହାର ପ୍ରମାଣରୂପେ ଦେଦୀପ୍ୟମାନ ହୋଇ ରହିଅଛି । କାଳବଶରେ ଭାଗ୍ୟଦୋଷରେ ଏହି ଘଟନାସବୁ ଘଟିଅଛି । ଅତଏବ ହେ ମହାପ୍ରାଜ୍ଞ ! ଆପଣ ପାଣ୍ଡବମାନଙ୍କଠାରେ ସେହି ସମସ୍ତ ଦୋଷାରୋପ କରନ୍ତୁ ନାହିଁ । ମହାତ୍ମା ପାଣ୍ଡବମାନେ ଧର୍ମ ବିଷୟରେ, ନ୍ୟାୟ ବିଷୟରେ ଓ ସ୍ନେହ ବିଷୟରେ କିଞ୍ଚିତ୍ ପରିମାଣରେ ମଧ ସୀମାର ଅତିକ୍ରମ କରନ୍ତି ନାହିଁ । ଆପଣ ଏହି ଆତ୍ମଦୋଷକୃତ ଅନିଷ୍ଟ ବ୍ୟାପାରରେ ବିଶେଷ ବିମୁଗ୍ଧ ହୋଇ ଯଦି ପାଣ୍ଡବଗଣଙ୍କଠାରେ ହିଂସା ପ୍ରକାଶ କରିବେ, ତେବେ ଅନ୍ୟ ଉପାୟ କିଛି ନାହିଁ । ଫଳତଃ ସେମାନଙ୍କଠାରେ ଅସୂୟାଯୁକ୍ତ ବ୍ୟବହାର କରିବାର ଆପଣଙ୍କର କଦାପି ଉଚିତ ନୁହେଁ । କାରଣ ସଂପ୍ରତି ଯଶସ୍ୱିନୀ ଗାନ୍ଧାରୀ ଓ ଆପଣଙ୍କର ବଂଶରକ୍ଷା, କୁଳମର୍ଯ୍ୟାଦା ଓ ପିଣ୍ଡସଂସ୍ଥାନ ପ୍ରଭୃତି ଯେଉଁ ସବୁ କାର୍ଯ୍ୟ ପୁତ୍ରଦ୍ୱାରା ନିର୍ବାହିତ ହୁଏ, ତାହାସବୁ ପାଣ୍ଡବମାନଙ୍କଠାରେ ରହିଲା । ଅତଏବ ଆପଣ ଓ ଗାନ୍ଧାରୀ ଦୁହେଁ ଶୋକପ୍ରକାଶ କରନ୍ତୁ ନାହିଁ ।

ହେ ଭରତଶ୍ରେଷ୍ଠ ! ଆପଣ ଆମ୍ଭର ଏହି ସମସ୍ତ ବାକ୍ୟ ଏବଂ ନିଜର ବ୍ୟତିକ୍ରମ ବିଷୟକୁ ସ୍ଥିର ମନରେ ବିଚାର କରି ପାଣ୍ଡବମାନଙ୍କର ମଙ୍ଗଳକାମୀ ହେଉନ୍ତୁ । ଆପଣଙ୍କୁ ନମସ୍କାର କରୁଛୁଁ । ମହାରାଜ ଭରତଶ୍ରେଷ୍ଠ ! ଆପଣଙ୍କଠାରେ ଧର୍ମରାଜ ଯୁଧିଷ୍ଠିରଙ୍କ ଅଚଳା ଭକ୍ତି ଓ ସ୍ୱଭାବସିଦ୍ଧ ସ୍ନେହ ଅଛି । ସେ ଅପକାରୀ ଶତ୍ରୁମାନଙ୍କୁ ସଂହାର କରି ଅହୋରାତ୍ର କେବଳ ଶୋକରେ ଦଗ୍ଧ ହେଉଅଛନ୍ତି । ସେ କଦାପି ସୁଖ ସମୃଦ୍ଧି ଭୋଗକରି ପାରୁ ନାହାନ୍ତି । ହେ ନରଶାର୍ଦ୍ଦୂଳ ! ସେ ଆପଣଙ୍କ ଲାଗି ଓ ଗାନ୍ଧାରୀ ଦେବୀଙ୍କ ଲାଗି ଶୋକରେ ଆକୁଳ ହୋଇ ଶାନ୍ତି ଲାଭ କରି ପାରୁନାହାନ୍ତି । ୫୭ । ଆପଣ ପୁତ୍ରଶୋକରେ ଅତ୍ୟନ୍ତ ସନ୍ତପ୍ତ ଓ ବ୍ୟାକୁଳଚିତ୍ତ ଥିବାର ଜାଣି ସେ ଅତିଶୟ ଲଜ୍ଜାରେ ଆପଣଙ୍କ ନିକଟକୁ ଆସି ପାରିଲେ ନାହିଁ । ୫୮ ।

ହେ ମହାରାଜ ! ଯଦୁଶ୍ରେଷ୍ଠ କୃଷ୍ଣ ଧୃତରାଷ୍ଟ୍ରଙ୍କୁ ଏହିପରି କହି ଶୋକାକୁଳ ଗାନ୍ଧାରୀଙ୍କୁ ଉତ୍କୃଷ୍ଟ ବାକ୍ୟ କହିଲେ—ହେ ସୁବଳନନ୍ଦନ ! ଆମ୍ଭେ ଆପଣଙ୍କୁ ଯାହା କହୁଅଛୁଁ, ତାହା ଶୁଣିବା ହେଉନ୍ତୁ । ହେ ଶୁଭେ ! ଜାଣିବା ହେଉନ୍ତୁ; ସମ୍ପ୍ରତି ପୃଥିବୀ ମଧ୍ୟରେ ଆପଣଙ୍କ ସମାନ ତପୋବଳ-ସମ୍ପନ୍ନ ଅନ୍ୟ କୌଣସି ସ୍ତ୍ରୀ ନାହାନ୍ତି । ହେ ରାଜ୍ଞି ! ଆମ୍ଭ ନିକଟରେ ସର୍ବ ମଧ୍ୟରେ ଆପଣ ଉଭୟ ପକ୍ଷର ହିତକାରକ ଯେଉଁ ଧର୍ମାର୍ଥଯୁକ୍ତ ବାକ୍ୟସବୁ କହିଥିଲେ, ଆପଣଙ୍କ ପୁତ୍ରମାନେ ତାହା କଲେ ନାହିଁ । ଜୟାଭିଳାଷୀ ଦୁର୍ଯ୍ୟୋଧନଙ୍କୁ ଆପଣ ଯେଉଁ ନିଷ୍ଠୁର ବାକ୍ୟ କହିଥିଲେ, ତାହା ଆମ୍ଭ ମନରେ ଅଛି । ହେ ରାଜନନ୍ଦନି ! ଆପଣ ତେତେବେଳେ ନିଜ ପୁତ୍ରଙ୍କୁ ସମ୍ବୋଧନ କରି କହିଥିଲେ—ହେ ମୂଢ଼ ! ଆମ୍ଭ ବାକ୍ୟ ଶୁଣ । ଯେଉଁ ପକ୍ଷରେ ଧର୍ମ, ସେହି ପକ୍ଷରେ ଜୟ, ଏହି କଥା ନିଶ୍ଚୟ ରୂପେ ଜାଣିଥାଅ । ୭୨ । ଆପଣଙ୍କର ଦୁରାତ୍ମର ସନ୍ତାନ ସେହି ବାକ୍ୟରେ ଅଶ୍ରଦ୍ଧା କରି ଦୁର୍ଦ୍ଦଶାପ୍ରାପ୍ତ ହୋଇଅଛନ୍ତି । ଏହି କଥାକୁ ଜାଣି ଆପଣ ଆଉ ଶୋକ କରନ୍ତୁ ନାହିଁ ଏବଂ ପାଣ୍ଡବମାନଙ୍କୁ ବିନାଶ ନିମିତ୍ତ କଦାପି ଅଭିଳାଷ କରନ୍ତୁ ନାହିଁ । ହେ ମହାଭାଗେ ! ଆପଣ ତପସ୍ୟାବଳରେ କ୍ରୋଧଚକ୍ଷୁଦ୍ୱାରା ଅନାୟାସରେ ସଚରାଚର ମଣ୍ଡଳକୁ ନିଃଶେଷରେ ଦଗ୍ଧ କରି ପାରନ୍ତି । ୭୪ ।

ଦେବୀ ଗାନ୍ଧାରୀ ବାସୁଦେବଙ୍କର ସେହି ବାକ୍ୟକୁ ଶୁଣି କହିଲେ (୭୫), ହେ କେଶବ ! ତୁମ୍ଭେ ଯଥାର୍ଥ କଥା କହିଲ । ଏତେବେଳଯାଏ ଆମ୍ଭେମାନେ ଦୁଃଖରେ ଦଗ୍ଧ ହେଉଥିଲୁ ବୋଲି ଆମ୍ଭ ମନ ଅତ୍ୟନ୍ତ ଚଞ୍ଚଳ ହେଉଥିଲା । ହେ ଜନାର୍ଦ୍ଦନ ! ମହାବାହୋ ! ଏତେବେଳେ ତୁମ୍ଭ ବାକ୍ୟ ଶ୍ରବଣ କରି ଅନେକ ଶାନ୍ତ ଓ ସୁସ୍ଥ ହେଲୁଁ । ହେ ପୁରୁଷୋତ୍ତମ ! ପାଣ୍ଡବମାନଙ୍କ ସହିତ ତୁମ୍ଭେ ଏହି ପୁତ୍ରହୀନ ବୃଦ୍ଧ ଅନ୍ଧ ନରପାଳଙ୍କର ଗତି । ପୁତ୍ରଶୋକରେ ସନ୍ତପ୍ତା ଦେବୀ ଗାନ୍ଧାରୀ ଏହି କଥା କହି ବସ୍ତ୍ରଦ୍ୱାରା ମୁଖ ଆବରଣ ପୂର୍ବକ ଉଚ୍ଚୈଃସ୍ୱରରେ ରୋଦନ କଲେ । ତଦନନ୍ତର ମହାପ୍ରଭୁ ମାଧବ ସେହି ଶୋକବିହ୍ୱଳା ଦେବୀଙ୍କୁ ଯୁକ୍ତି ଓ କାରଣ ସଂଯୁକ୍ତ ବାକ୍ୟାବଳୀ ଦ୍ୱାରା ଆଶ୍ୱାସ ପ୍ରଦାନ କଲେ । ମାଧବ, ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କୁ ଆଶ୍ୱାସ ଦେଉଥିବା ସମୟରେ ସହସା ତାହାଙ୍କ ମନରେ ଅଶ୍ୱତ୍ଥାମାଙ୍କ ସଂକଳ୍ପିତ ଅଭିପ୍ରାୟ ଉଦ୍‌ବୁଦ୍ଧ ହେଲା । ସୁତରାଂ ସେ ସତ୍ୱର ଗାତ୍ରୋତ୍ଥାନ କରି ଦ୍ୱୈପାୟନଙ୍କ ଚରଣଦ୍ୱୟ ବନ୍ଦନ ପୂର୍ବକ କୁରୁରାଜଙ୍କୁ ସମ୍ବୋଧନ

କରି କହିଲେ, ହେ କୁରୁଶ୍ରେଷ୍ଠ ! ଆମ୍ଭେ କହୁଅଛୁ, ଆପଣ ଶୋକରେ ମନକୁ କଳୁଷିତ କରିବେ ନାହିଁ । ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କର ଗୋଟିଏ ପାପ ଅଭିପ୍ରାୟ ଅଛି । ଆମ୍ଭେ ସେହି ଅଭିଳାଷ ଜାଣି ଉଠିଥିଲୁ ହେଲୁ । ଏହି ରାତ୍ରରେ ସେ ପାଣ୍ଡବମାନଙ୍କୁ ନିପାତ କରିବେ ବୋଲି ମନେ ମନେ ମନ୍ତ୍ରଣା କରିଅଛନ୍ତି ।

ମହାରାଜ ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ସହିତ କେଶିନିସୂଦନ କେଶବଙ୍କ ମୁଖରୁ ଏହି ବାକ୍ୟ ଶୁଣି ବିପନ୍ନପ୍ରାପନ୍ନ ହୋଇ କହିଲେ, "ହେ କୃଷ୍ଣ ! ତୁମ୍ଭେ ଶୀଘ୍ର ଯାଇ ପାଣ୍ଡବମାନଙ୍କୁ ରକ୍ଷା କର । ହେ ଜନାର୍ଦ୍ଦନ ! ପୁନଶ୍ଚ ତୁମ୍ଭ ସହିତ ଆମ୍ଭର ସାକ୍ଷାତ ଓ କଥୋପକଥନ ହେବ । ୭୫ । ତତ୍ପରେ ଅଚ୍ୟୁତ ଭ୍ରାତୃଯୁକ୍ତ ହୋଇ ଦାରୁକ ସହିତ ସେଠାରୁ ପ୍ରସ୍ଥାନ କଲେ । ବାସୁଦେବ ଗମନ କଲା ଉତ୍ତାରେ ସର୍ବଲୋକପୂଜନୀୟ ବ୍ୟାସଦେବ ଜନେଶ୍ୱର ଧୃତରାଷ୍ଟ୍ରଙ୍କୁ ଆଶ୍ୱାସ ପ୍ରଦାନ କଲେ । ତତ୍ପରେ ଧର୍ମାତ୍ମା ବାସୁଦେବ କୃତକାର୍ଯ୍ୟ ହୋଇ ହସ୍ତିନାପୁରରୁ ପାଣ୍ଡବମାନଙ୍କୁ ଦର୍ଶନ କରିବା ଇଚ୍ଛାରେ ଶିବିରରେ ପ୍ରବିଷ୍ଟ ହେଲେ । ସେ ଶିବିରରେ ପ୍ରବେଶ କରି ସେହି ରାତିରେ ପାଣ୍ଡବମାନଙ୍କ ନିକଟକୁ ଯାଇ ହସ୍ତିନାର ବିବରଣସବୁ ବର୍ଣ୍ଣନା କଲେ । ୭୮ ।

---

## ଅଧ୍ୟାୟ—୭୪

ଧୃତରାଷ୍ଟ୍ର କହିଲେ—ହେ ସଞ୍ଜୟ ! ଆମ୍ଭ ପୁତ୍ର ଦୁର୍ଯ୍ୟୋଧନ ସର୍ବଦା ଶତ୍ରୁମାନଙ୍କ ମସ୍ତକ ଉପରେ ପଦାର୍ପଣପୂର୍ବକ ଅଧିଷ୍ଠିତ ଥିଲେ ଏବଂ ଆପଣଙ୍କୁ ସର୍ବୋତ୍କୃଷ୍ଟ ମାନୀ ବୋଲି ଜାଣନ୍ତି । ତାହାଙ୍କ ଉରୁ ଭଗ୍ନ ହେବାରୁ ସେ ପୃଥିବୀରେ ପଡ଼ି କଣ କରୁଥିଲେ ? ଅତିଶୟ କୋପନସ୍ୱଭାବ ରାଜା ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କଠାରେ ଶତ୍ରୁତା କରିଥିଲେ । ସେ ମହାଯୁଦ୍ଧରେ ବିଷମ ବିପଦ ପ୍ରାପ୍ତ ହେବାରେ କଣ କହିଲେ ? ସଞ୍ଜୟ କହିଲେ, ମହାରାଜ ! ବିପଦ ଉପସ୍ଥିତ ହେବାରୁ ଭଗ୍ନଜାନୁ ରାଜା ଦୁର୍ଯ୍ୟୋଧନ ଯାହା କହିଲେ ଆମ୍ଭେ କହିବୁଁ, ଆପଣ ଶୁଣିବା ହେଉନ୍ତୁ । ୩ । ହେ ରାଜନ୍ ! ରାଜା ଦୁର୍ଯ୍ୟୋଧନଙ୍କ ଉରୁ ଭଗ୍ନ ହେବାରୁ ସେ ଧୂଳିରେ ଅବଲୁଣ୍ଠିତ ହୋଇ

କରଦ୍ୱାରା କେଶକଳାପ ସଂଯତ କରି ଦଶଦିଗକୁ ଦୃଷ୍ଟିନିକ୍ଷେପ କଲେ । ତତ୍ପରେ ଅତି ଯତ୍ନରେ କେଶ ସଂଯମନପୂର୍ବକ କ୍ରୋଧପୂରିତ ଲୋଚନରେ ଆମ୍ଭଙ୍କୁ ବାରମ୍ବାର ନିରୀକ୍ଷଣ କଲେ ଏବଂ ଅତିଶୟ ଦୁଷ୍ଟ ମତ୍ତ ମାତଙ୍ଗ ସଦୃଶ ଧରାତଳରେ ବାହୁଦ୍ୱୟ ନିକ୍ଷେପଣ କରି ପୁନଶ୍ଚ ଆଲୁଳାୟିତ କେଶରେ ଦନ୍ତଦ୍ୱାରା ଦନ୍ତମର୍ଦ୍ଦନ କରି ଜ୍ୟେଷ୍ଠ ପାଣ୍ଡବଙ୍କୁ ନିନ୍ଦା କରି ଦୀର୍ଘ ନିଃଶ୍ୱାସ ପରିତ୍ୟାଗପୂର୍ବକ ଏହିପରି କହିଲେ—

ଶାନ୍ତନୁନନ୍ଦନ ଭୀଷ୍ମ, ଅସ୍ତ୍ରଧାରୀ ଶ୍ରେଷ୍ଠ କର୍ଣ୍ଣ, ଗୌତମ, ଦ୍ରୋଣ, ଶକୁନି, ଅଶ୍ୱତ୍ଥାମା, ଶୂରବର ଶଲ୍ୟ, କୃତବର୍ମା ପ୍ରଭୃତି ମହାବୀର ସମୂହ ବିଦ୍ୟମାନ ଥାଉଁ ଥାଉଁ ଆମ୍ଭର ଏତାଦୃଶ ଅବସ୍ଥା ହେଲା । ବାସ୍ତବିକ କାଳ ମହାତ୍ମାଙ୍କୁ କେହି ଅତିକ୍ରମ କରି ପାରନ୍ତି ନାହିଁ । ଏତେବେଳେ ଏହି ଯୁଦ୍ଧରେ ଆମ୍ଭ ପକ୍ଷରେ ଯେଉଁ ଶତ୍ରୁମାନେ ଜୀବିତ ଅଛନ୍ତି, ସେମାନଙ୍କୁ ଭୀମ ଗଦାଯୁଦ୍ଧରେ ନିୟମ ଲଙ୍ଘନପୂର୍ବକ ଯେଉଁପରି ଆମ୍ଭଙ୍କୁ ଆହତ କଲେ, ତାହା କହିବ । ନୃଶଂସ ପାଣ୍ଡବମାନେ ଏହିପରି ଅନେକ କାର୍ଯ୍ୟ କରି-ଅଛନ୍ତି । ସେମାନେ ଭୂରିଶ୍ରବା, କର୍ଣ୍ଣ, ଭୀଷ୍ମ ଓ ଶ୍ରୀମାନ ଦ୍ରୋଣଙ୍କଠାରେ ଏତାଦୃଶ ଅଯଶସ୍କର କର୍ମ କରିଅଛନ୍ତି । ଆମ୍ଭଙ୍କୁ ଜଣାଯାଏ, ଏହି କାରଣରୁ ସେମାନେ ନିଶ୍ଚୟ ନିର୍ବେଦ ପ୍ରାପ୍ତ ହେବେ । ସତ୍ତ୍ୱଗୁଣଶାଳୀ ବ୍ୟକ୍ତି ନିୟମ ଲଙ୍ଘନକାରୀ ବ୍ୟକ୍ତିଙ୍କୁ ପ୍ରଶଂସା କରନ୍ତି କି ? ପାପାତ୍ମା ପାଣ୍ଡବ ଭୀମ ଆମ୍ଭ ଊରୁ ଭଗ୍ନ କରି ଯେଉଁପରି ଆନନ୍ଦରେ ଅଭିଭୂତ ହୋଇଅଛନ୍ତି, କୌଣସି ପଣ୍ଡିତ ବ୍ୟକ୍ତି ଅଧର୍ମରେ ଜୟଲାଭ କରି ତାଦୃଶ ହୃଷ୍ଟ ହୁଅନ୍ତି କି ? ଆମ୍ଭର ଊରୁ ଭଗ୍ନ ହେଲେ ସୁଦ୍ଧା କ୍ରୋଧପରାୟଣ ଭୀମ ଯେ ପାଦଦ୍ୱାରା ଆମ୍ଭର ମସ୍ତକ ମର୍ଦ୍ଦନ କଲା, ତହିଁରୁ ବଳି ଅନ୍ୟ କେଉଁ ବିଷୟ ବିଚିତ୍ର ଅଛି !

ହେ ସଞ୍ଜୟ ! ଯେଉଁ ବ୍ୟକ୍ତି ବନ୍ଧୁଗଣରେ ବେଷ୍ଟିତ, ଶ୍ରୀସମ୍ପନ୍ନ ଓ ପ୍ରତାପଶାଳୀ, ତାହାଙ୍କ ମସ୍ତକରେ ଯଦି କୌଣସି ବ୍ୟକ୍ତି ପଦାଘାତ କରିପାରେ, ତେବେ ସେ ସମସ୍ତଙ୍କର ପୂଜନୀୟ ହୁଏ । (କିନ୍ତୁ ମୃତ ବ୍ୟକ୍ତିଙ୍କୁ ମାରିବାରେ ଗୌରବ କଣ ?) ହେ ସଞ୍ଜୟ ! ଆମ୍ଭେ ଯୁଦ୍ଧଧର୍ମରେ ଯେଉଁପରି ପାରଗ, ତାହା ମଦୀୟ ପିତାମାତା ବିଶେଷରୂପେ ଜାଣନ୍ତି । ଏତେବେଳେ ସେହି ଦୁହେଁ ଅତିଶୟ ଦୁଃଖାର୍ତ୍ତ ହୋଇଅଛନ୍ତି, ଅତଏବ ତୁମ୍ଭେ ଆମ୍ଭର ଏହି ବାକ୍ୟସବୁ ସେହି ଦୁହିଁଙ୍କୁ ଜଣାଇବ ଯେ ଆମ୍ଭେ ଇଚ୍ଛାନୁଯାୟୀ ଯଜ୍ଞ କରିଅଛୁଁ । ଭୃତ୍ୟମାନଙ୍କୁ ଉତ୍ତମ ରୂପେ ପ୍ରତିପାଳନ

କରିଅଛୁ । ଜୀବିତ ଶତ୍ରୁମାନଙ୍କ ମସ୍ତକରେ ପଦାର୍ପଣ କରିଅଛୁ । ଶକ୍ତି ଅନୁସାରେ ଦାନ କରିଅଛୁଁ । ମିତ୍ରବୃନ୍ଦର ପ୍ରିୟ କାର୍ଯ୍ୟସାଧନ ବିଷୟରେ କଅନୁତ୍ସାହ ବୃତି କରିନାହୁଁ । ଆମ୍ଭେ ସମୁଦାୟ ଶତ୍ରୁକୁଳକୁ କରଗତ କରି ରଖିଥିଲୁ । ଅତଏବ ଆମ୍ଭ ଅପେକ୍ଷା ଅଧିକ ଶ୍ରେଷ୍ଠ କିଏ ଅଛି ? ସମସ୍ତ ବାନ୍ଧବଗଣ ଆମ୍ଭନିକଟରେ ସମ୍ମାନିତ ହୋଇଅଛନ୍ତି । ପୂଜିତ ବ୍ୟକ୍ତିମାନେ ମଧ୍ୟ ଆମ୍ଭର ବଶୀଭୂତ ଥିଲେ । ଆମ୍ଭେ ଧର୍ମାର୍ଥ କାମକୁ ଉତ୍ତମ ସେବା କରିଅଛୁଁ । ଅତଏବ ଆମ୍ଭ ଅପେକ୍ଷା ଅଧିକ ଶ୍ରେଷ୍ଠ ବ୍ୟକ୍ତି କିଏ ଅଛି ?

ଆମ୍ଭେ ପ୍ରଧାନ ପ୍ରଧାନ ନରପାଳଙ୍କଠାରେ ଆଜ୍ଞା ପ୍ରଚାର କରିଅଛୁ । ସୁଦୁର୍ଲ୍ଲଭ ସମ୍ମାନ ପ୍ରାପ୍ତ ହୋଇଅଛୁ । ଅତି ଉତ୍କୃଷ୍ଟ ଆଜାନେୟ (ଆରବ୍ୟ) ଅଶ୍ୱବୃନ୍ଦରେ ଆରୋହଣ ପୂର୍ବକ ଗମନ କରିଅଛୁ । ଅତଏବ ଆମ୍ଭ ଅପେକ୍ଷା କେଉଁ ବ୍ୟକ୍ତି ଅଧିକ ଶ୍ରେଷ୍ଠ ଅଛି ? ଆମ୍ଭେ ପରରାଜ୍ୟ-ସମୂହ ଲାଭ କରିଅଛୁଁ । ମହୀପାଳଗଣ ଆମ୍ଭଙ୍କୁ ଦାସପରି ସେବା କରି-ଅଛନ୍ତି । ଆମ୍ଭେ ପ୍ରିୟଜନଠାରେ ସାଧୁ ଆଚରଣ କରିଅଛୁଁ । ଯଥା-ବିଧାନରେ ବିଦ୍ୟାଧ୍ୟୟନ କରିଅଛୁଁ । ଯାବଜ୍ଜୀବନ ନୀରୋଗ ହୋଇ କାଳଯାପନ କରିଅଛୁଁ ଏବଂ ସ୍ୱଧର୍ମ ବଳରେ ସମସ୍ତ ଲୋକ ଜୟ କରି-ଅଛୁ । ଅତଏବ କେଉଁ ବ୍ୟକ୍ତି ଆମ୍ଭ ଅପେକ୍ଷା ଅଧିକ ଶ୍ରେଷ୍ଠ ହୋଇ-ପାରେ ? ସମ୍ପ୍ରତି ଭାଗ୍ୟବଳରେ ଆମ୍ଭେ ଶତ୍ରୁମାନଙ୍କଦ୍ୱାରା ପରାଜିତ ହୋଇ ଦାସ ସଦୃଶ ସେମାନଙ୍କର ଆଶ୍ରିତ ହେଲୁ ନାହିଁ । ୨୪ ।

ଭାଗ୍ୟବଳର ବିନାଶ ସମୟରେ ଆମ୍ଭର ବିପୁଳ ଲକ୍ଷ୍ମୀ ଅନ୍ୟ ହସ୍ତରେ ସମର୍ପିତ ହେଲା; ଯାହାହେଉ ସ୍ୱଧର୍ମାବଲମ୍ବୀ କ୍ଷତ୍ରିୟ ବନ୍ଧୁଗଣ ଯେଉଁପରି ମୃତ୍ୟୁପ୍ରାର୍ଥୀ ହୋଇଥାଆନ୍ତି, ଆମ୍ଭେ ମଧ୍ୟ ଯୁଦ୍ଧରେ ଅନାୟାସରେ ତଦ୍ୱତ୍ ନିଧନ ଲାଭ କଲୁଁ । ଅତଏବ ଆମ୍ଭ ଅପେକ୍ଷା କେଉଁ ବ୍ୟକ୍ତି ଅଧିକ ଶ୍ରେଷ୍ଠ ହୋଇପାରେ ? ଆମ୍ଭେ ଭାଗ୍ୟବଳରେ ପ୍ରାକୃତ ଲୋକ ପରି ପରାଜିତ ହୋଇ ଶତ୍ରୁ ସମ୍ମୁଖରୁ ପ୍ରତ୍ୟାଗତ ହୋଇନାହୁଁ ଏବଂ କୌଣସି ବିରୁଦ୍ଧ ବୁଦ୍ଧି ଅବଲମ୍ବନ କରି ପରାଜିତ ହୋଇନାହୁଁ । ଲୋକମାନେ ଯେଉଁପରି ସୁପ୍ତ ବା ପ୍ରମତ୍ତ ବ୍ୟକ୍ତିକୁ ବିଷପାନ ପ୍ରଭୃତି ଦ୍ୱାରା ବିନଷ୍ଟ କରନ୍ତି, ସେହିପରି ଭୀମ ଗଦାଯୁଦ୍ଧର ନିୟମ ଲଙ୍ଘନ ପୂର୍ବକ ଆମ୍ଭଙ୍କୁ ନିହତ କଲା । ମହାଭାଗ ! ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟଙ୍କୁ ଆମ୍ଭର ଏହି କଥା କହିବ ଯେ, ହେ ମହାରଥବୃନ୍ଦ ! ଅନେକବାର ଅଧର୍ମ କର୍ମରେ ପ୍ରବୃତ୍ତ

ନିପୁମଗ୍ନ ପାଣ୍ଡବମାନଙ୍କଠାରେ ତୁମ୍ଭେମାନେ କଦାପି ବିଶ୍ୱାସ କରିବ ନାହିଁ ।

ହେ ମହାରାଜ ! ଆପଣଙ୍କ ପୁତ୍ର ସତ୍ୟବିକ୍ରମ ରାଜା ଦୁର୍ଯ୍ୟୋଧନ ତେତେବେଳେ ନିକଟସ୍ଥ ବାର୍ତ୍ତାବହଗଣଙ୍କୁ ଏହି କଥା କହିଲେ ଯେ, ହେ ଦୂତଗଣ ! ଭୀମ ଅଧର୍ମଯୁଦ୍ଧରେ ଆମ୍ଭଙ୍କୁ ନିହତ କଲା । ଆମ୍ଭେ ସ୍ୱର୍ଗଗତ ମହାତ୍ମା ଦ୍ରୋଣ, କର୍ଣ୍ଣ, ଶଲ୍ୟ, ମହାବୀର ବୃଷସେନ, ସୌବଳ ଶକୁନି, ମହାବୀର୍ଯ୍ୟ ଜଳସନ୍ଧ, ରାଜା ଭଗଦତ୍ତ, ମହାଧନୁର୍ଦ୍ଧର ସୋମଦତ୍ତ, ସିନ୍ଧୁରାଜ ଜୟଦ୍ରଥ ଓ ଦୁଃଶାସନ ପ୍ରଭୃତି ଆମ୍ଭର ଆତ୍ମସଦୃଶ ସହୋଦରବୃନ୍ଦ ଏବଂ ବିକ୍ରାନ୍ତ ଦୁଃଶାସନଙ୍କ ପୁତ୍ର ଓ ଲକ୍ଷ୍ମଣ ନାମକ ଆତ୍ମ ପୁତ୍ର, ତଦ୍‌ଭିନ୍ନ ଆମ୍ଭର ଯେଉଁ ବହୁ ସହସ୍ର ଆତ୍ମୀୟ ଥିଲେ, ସେମାନଙ୍କୁ ଅନୁଗମନ କରି ସହାୟହୀନ ପଥିକ ସଦୃଶ ସ୍ୱର୍ଗଗାମୀ ହେବୁ । ହା ! ଆମ୍ଭର ପ୍ରିୟ ଭଗିନୀ ଦୁଃଶଳା ଭ୍ରାତୃଗଣ ଓ ସ୍ୱାମୀଙ୍କ ନିଧନବାର୍ତ୍ତା ଶୁଣି ରୋଦନ କରି ଦୁଃଖାର୍ତ୍ତ ହେବେ ଓ କଷ୍ଟରେ କେଉଁପରି କାଳହରଣ କରିବେ ? ଆମ୍ଭର ବୃଦ୍ଧ ପିତା ରାଜା ଓ ଦେବୀ ଗାନ୍ଧାରୀ ପୁତ୍ରବଧୂ ଓ ପୌତ୍ରବଧୂମାନଙ୍କ ସହିତ କେଉଁ ଗତି ପ୍ରାପ୍ତ ହେବେ ? ପୃଥୁଳଲୋଚନା କଲ୍ୟାଣଦାୟିନୀ ଲକ୍ଷ୍ମଣଜନନୀ ପତିପୁତ୍ରହୀନା ହୋଇ ଅବିଳମ୍ବରେ ପ୍ରାଣ ପରିତ୍ୟାଗ କରିବେ । ବାକ୍ୟବିଶାରଦ ପରିବ୍ରାଟ୍ ଚାର୍ବାକ୍ ଯଦି ଆମ୍ଭର ଏହି ଅବସ୍ଥା ହୋଇଅଛୁ ବୋଲି ଜାଣିପାରିବେ, ତେବେ ସେ ନିଶ୍ଚୟ ଆମ୍ଭର ବୈର ନିର୍ଯ୍ୟାତନ କରିବେ । ତ୍ରିଲୋକ-ବିଖ୍ୟାତ ପବିତ୍ର ତୀର୍ଥ ସମନ୍ତପଞ୍ଚକରେ ଆମ୍ଭେ ନିଧନ ପ୍ରାପ୍ତ ହେଲୁଁ । ଅତଏବ ନିଶ୍ଚୟ ଶାଶ୍ୱତ ଲୋକରେ ପ୍ରବେଶ କରିବୁ ।

ହେ ମହାରାଜ ! ସହସ୍ର ସହସ୍ର ଲୋକ ଭୂପାଳଙ୍କର ଏତାଦୃଶ ବିଳାପ ବାକ୍ୟ ଶୁଣି ବାଷ୍ପାକୁଳଲୋଚନ ହୋଇ ଦଶଦିଗକୁ ଧାବମାନ ହେଲେ । ସଚରାଚର ଭୂମଣ୍ଡଳ ସାଗର ଓ ବନନିକର ସହିତ ଭୟଙ୍କର ରୂପେ ବିଚଳିତ ହେଲା । ଦିଗସମୂହ ନିର୍ଘାତ ଦ୍ୱାରା ଆବିଳ ହେଲା । ତେତେବେଳେ ସମସ୍ତେ ଦ୍ରୋଣପୁତ୍ରଙ୍କ ନିକଟକୁ ଯାଇ ରାଜା ଗଦାଯୁଦ୍ଧରେ ଯେଉଁପରି ପାତିତ ହେଲେ, ସେହି ବୃତ୍ତାନ୍ତ ନିବେଦନ କଲେ ଏବଂ ଅଶ୍ୱତ୍ଥାମାଙ୍କ ସନ୍ନିଧାନରେ ସମସ୍ତ ବିବରଣ ନିବେଦନ ପୂର୍ବକ ବହୁକ୍ଷଣ ଚିନ୍ତା କରି ପରିଶେଷରେ ସେମାନେ ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ ।୪୩।

---

# ଅଧ୍ୟାୟ—୭୫

ସଞ୍ଜୟ କହିଲେ—ମହାରାଜ ! କୌରବମାନଙ୍କର ଅବଶିଷ୍ଟ ତିନିଜଣ ମହାରଥ ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ—ଏହିମାନେ ଯୁଦ୍ଧରେ ଶତ୍ରୁଙ୍କର ଓ ଗଦାଶକ୍ତି ତୋମରଦ୍ୱାରା କ୍ଷତବିକ୍ଷତାଙ୍ଗ ହୋଇଥିଲେ ସୁଦ୍ଧା ବାର୍ତ୍ତାବହମାନଙ୍କ ମୁଖରୁ 'ଦୁର୍ଯ୍ୟୋଧନ ହତ ହୋଇଅଛନ୍ତି' ଏହି ବାର୍ତ୍ତା ଶ୍ରବଣ କରି ସତ୍ୱର ବେଗଗାମୀ ଅଶ୍ୱ ଉପରେ ଆରୋହଣପୂର୍ବକ ଯୁଦ୍ଧସ୍ଥଳରେ ଉପସ୍ଥିତ ହେଲେ । ସେମାନେ ସେଠାରେ ଉପସ୍ଥିତ ହୋଇ ରୁଧିରାକ୍ତକଳେବର, ନିଶ୍ଚେଷ୍ଟ, ଧରାତଳରେ ନିପତିତ ଦୁର୍ଯ୍ୟୋଧନଙ୍କୁ ଦେଖିଲେ । ଅରଣ୍ୟ ମଧ୍ୟରେ ମହାଶାଳ ବୃକ୍ଷ ବାୟୁବେଗରେ ଭଗ୍ନ ହୋଇ ଯେଉଁପରି ପଡ଼ିଥାଏ, ମହାରଣ୍ୟ ମଧ୍ୟରେ ବ୍ୟାଧଦ୍ୱାରା ନିପାତିତ ମହାଗଜ ଯେଉଁପରି ରୁଧିରସମୂହରେ ପରିପ୍ଲୁତ ହୋଇ ପଡ଼ିଥାଏ, ମହାତ୍ମା ଦୁର୍ଯ୍ୟୋଧନ ସେହିପରି ରକ୍ତାକ୍ତକଳେବର ହୋଇ ଧରାତଳରେ ଲୋଟୁଥିଲେ । ଦୈବବଶରେ ଭୂତଳରେ ପତିତ ଆଦିତ୍ୟମଣ୍ଡଳ ପରି ମହାବାତର ଉତ୍‌ଥାନଦ୍ୱାରା ପରିଶୁଷ୍କ ସାଗର ପରି, ଆକାଶରେ ସ୍ଥିତ ତୁଷାରାବୃତ ଚନ୍ଦ୍ରମଣ୍ଡଳ ପରି, ମାତଙ୍ଗ ସଦୃଶ ବିକ୍ରମଯୁକ୍ତ ଦୀର୍ଘବାହୁ ଦୁର୍ଯ୍ୟୋଧନ ସର୍ବାଙ୍ଗରେ ଧୂଳିଧୂସରିତ ହୋଇ ଧରଣୀତଳରେ ପଡ଼ିଥିଲେ । ପୂର୍ବେ ଧନଲୋଭୀ ଭୃତ୍ୟଗଣ ଯେଉଁପରି ସେହି ନୃପମଣିଙ୍କ ଚତୁର୍ଦ୍ଦିଗ ବେଷ୍ଟନ କରି ଉପବିଷ୍ଟ ଥିଲେ, ସେହିପରି ତେତେବେଳେ ଭୂତଗଣ ଓ ରାକ୍ଷସଗଣ ମଧ୍ୟ ତାହାଙ୍କ ଚତୁର୍ଦ୍ଦିଗ ବେଷ୍ଟନପୂର୍ବକ ଉପବିଷ୍ଟ ଥିବାରୁ ସେ କ୍ରୋଧରେ ଉଦ୍‌ବୃତ୍ତଲୋଚନ ହୋଇ ଭ୍ରୂଭଙ୍ଗୀ ପ୍ରକାଶ କରୁଥିଲେ ।

କୃପାଚାର୍ଯ୍ୟ ପ୍ରଭୃତି ମହାଧନୁର୍ଦ୍ଧର ମହାରଥମାନେ ତେତେବେଳେ ବ୍ୟାଘ୍ର ସଦୃଶ ନିପତିତ ଅମର୍ଷପରିପୂର୍ଣ୍ଣ ନରବ୍ୟାଘ୍ର ରାଜାଙ୍କୁ ଦେଖି ମୋହଗ୍ରସ୍ତ ହେଲେ । ସେମାନେ ମୁହୂର୍ତ୍ତକ ଉତ୍ତାରେ ସଚେତନ ହୋଇ ରଥରୁ ଅବତରଣପୂର୍ବକ ରାଜାଙ୍କ ନିକଟକୁ ଗଲେ ଏବଂ ସମସ୍ତେ ଦୁର୍ଯ୍ୟୋଧନଙ୍କୁ ଚାହିଁ ଭୂମିତଳରେ ବସିଲେ । ୧୦ । ହେ ମହାରାଜ ! ତତ୍ପରେ ଅଶ୍ୱତ୍ଥାମା ଅଶ୍ରୁପୂର୍ଣ୍ଣଲୋଚନ ହୋଇ ନିଃଶ୍ୱାସ ପରିତ୍ୟାଗ କରି ସର୍ବଲୋକେଶ୍ୱର ଭରତଶ୍ରେଷ୍ଠ ଦୁର୍ଯ୍ୟୋଧନଙ୍କୁ ସମ୍ବୋଧନପୂର୍ବକ କହିଲେ, ହେ ରାଜେନ୍ଦ୍ର ! ଆମ୍ଭେ ଜାଣୁଅଛୁଁ, ମନୁଷ୍ୟଲୋକରେ କିଛିମାତ୍ର ସତ୍ୟ

ଚିରସ୍ଥାୟୀ ରୂପେ ରହେ ନାହିଁ । କାରଣ ଆପଣ ପୁରୁଷସିଂହ ହୋଇ ସମ୍ପ୍ରତି ଧୂଳିମୟ ଶଯ୍ୟାରେ ଶୟନ କରିଅଛନ୍ତି । ପୂର୍ବେ ଆପଣ ଆସମୁଦ୍ର ମହୀମଣ୍ଡଳରେ ରାଜା ହୋଇ ସମସ୍ତଙ୍କଠାରେ ଆଜ୍ଞା ପ୍ରଚାର କରୁଥିଲେ । ଏତେବେଳେ ଏକାକୀ ହୋଇ ନିର୍ଜନ ବନରେ କିପରି ପଡ଼ିରହି ଅଛନ୍ତି ?

ଆମ୍ଭେ ଅଦ୍ୟ ମହାରଥ କର୍ଣ୍ଣ, ଦୁଃଶାସନ, କି ଅନ୍ୟାନ୍ୟ ସୁହୃଜ୍ଜନମାନଙ୍କ ମଧ୍ୟରୁ କାହାକୁ ସୁଦ୍ଧା ଦେଖୁନାହୁଁ । ଏ କି ଆଶ୍ଚର୍ଯ୍ୟ ! କୃତାନ୍ତ ଅତି ଦୁର୍ଜ୍ଞେୟ ! ଆପଣ ରାଜେଶ୍ୱର ହୋଇ ଧୂଳିଧୂସରିତ କଳେବରରେ ଶୟନ କରିଥିବାରୁ ଲୋକମାନଙ୍କ ମନ ମଧ୍ୟରେ ଅସାମାନ୍ୟ ଦୁଃଖ ଉପସ୍ଥିତ ହୋଇଅଛି । ଯେଉଁ ଶତ୍ରୁତାପନ ମହାତ୍ମା ମୂର୍ଦ୍ଧାଭିଷିକ୍ତ ଭୂପତିମାନଙ୍କର ଅଗ୍ରଣୀ ଥିଲେ, ସେ ଏତେବେଳେ ନିରନ୍ତର ତୃଣ ଧୂଳି ଗ୍ରାସ କରୁଅଛନ୍ତି । ଅତଏବ କାଳର ବିପର୍ଯ୍ୟୟ ବିଚାରକୁ ଦେଖ । ୧୭ । ହେ ମହାରାଜ ! ଆପଣଙ୍କର ସେହି ନିର୍ମଳ ଛତ୍ର, ବ୍ୟଜନ ଏବଂ ସେହି ମହତୀ ସେନା କେଉଁ ସ୍ଥାନକୁ ଗଲେ ? ଆପଣ ଲୋକଗୁରୁ ହୋଇ ଈଦୃଶ ଦଶା ପ୍ରାପ୍ତ ହେଲେ । ଅତଏବ କେଉଁ କେଉଁ କାରଣରୁ କେଉଁ କେଉଁ କାର୍ଯ୍ୟର ଉତ୍ପତ୍ତି ହୁଏ, ତାହା ସହଜରେ ଜଣାଯାଏ ନାହିଁ । ଶତ୍ରୁଙ୍କ ସହିତ ସ୍ପର୍ଦ୍ଧାକାରୀ ଭବାଦୃଶ ଏତାଦୃଶ ବିପଦ ଅବଲୋକନ କରି ଆମ୍ଭେ ନିଶ୍ଚୟ ଜାଣୁଅଛୁଁ, ମନୁଷ୍ୟମାନଙ୍କଠାରେ ଶ୍ରୀଦେବୀ କଦାପି ନିଶ୍ଚଳ ଭାବରେ ଅବସ୍ଥାନ କରନ୍ତି ନାହିଁ ।

ହେ ମହାରାଜ ! ଆପଣଙ୍କ ପୁତ୍ର ନରାଧିପ ଦୁର୍ଯ୍ୟୋଧନ ସେତେବେଳେ ଦୁଃଖିତ ଅଶ୍ୱତ୍ଥାମାଙ୍କର ଏହି ବାକ୍ୟସବୁ ଶ୍ରବଣ କରି ପାଣିଦ୍ୱୟରେ ନେତ୍ରଦ୍ୱୟ ମାର୍ଜନାପୂର୍ବକ ବାରମ୍ବାର ଶୋକଜନିତ ଲୋତକଧାରା ବର୍ଷଣ କରି କୃପ ପ୍ରଭୃତି ସମସ୍ତ ବୀରଙ୍କୁ ସମ୍ବୋଧନ କରି ସମୟର ଉଚିତ ବାକ୍ୟସମୂହ କହିଲେ—ହେ ମହାନୁଭବବୃନ୍ଦ ! ବିଧାତା ମର୍ତ୍ତ୍ୟବାସୀମାନଙ୍କ ଧର୍ମକୁ ଏହିପରି ନିର୍ଦ୍ଦିଷ୍ଟ କରିଅଛନ୍ତି ଯେ କାଳପର୍ଯ୍ୟାୟ ଆଗତ ହେଲେ ସର୍ବଭୂତର ବିନାଶ ହୁଏ । ଏତେବେଳେ ଆପଣମାନଙ୍କ ସମକ୍ଷରେ ଆମ୍ଭେ ସେହି କାଳ କବଳରେ ନିପତିତ ହେଉଁଛୁ । ପୂର୍ବେ ପୃଥିବୀପାଳନ କରି ସମ୍ପ୍ରତି ବିନାଶ ପ୍ରାପ୍ତ ହେଲୁଁ । ଯାହାହେଉ, ଆମ୍ଭେ ଭାଗ୍ୟବଳରେ କଦାପି କାହା ସଙ୍ଗରେ ଯୁଦ୍ଧକରି ଆପଦଗ୍ରସ୍ତ ହୋଇ ପଳାୟନ କରିନାହୁଁ । ପାପାତ୍ମା ପାଣ୍ଡବମାନେ ଛଳରେ ଆମ୍ଭଙ୍କୁ ବିନାଶ କଲେ । ଏଥିରେ ଆଉ କିଛି ଉପାୟ ନାହିଁ । ଆମ୍ଭେ ଯୁଦ୍ଧ ସମୟରେ ସର୍ବଦା ଉତ୍ସାହ ପ୍ରକାଶ କରିଥିଲୁ,

କିନ୍ତୁ ଭାଗ୍ୟଦୋଷରେ ବାନ୍ଧବମାନଙ୍କ ସହିତ ଏକାବେଳକେ ନିହତ ହେଲୁଁ । ଯାହାହେଉ, ଆମ୍ଭେ ଭାଗ୍ୟବଳରେ ଆପଣମାନଙ୍କୁ ଏହି ଦାରୁଣ ଜନକ୍ଷୟରୁ ମୁକ୍ତ ଏବଂ ମଙ୍ଗଳଯୁକ୍ତ ହୋଇଥିବାର ଅବଲୋକନ କରୁଅଛୁଁ । ଏହା ଆମ୍ଭର ପରମପ୍ରିୟ ପରି ଜଣାଯାଉଅଛି । ୨୭ ।

ଆପଣମାନେ ଆମ୍ଭଙ୍କୁ ଅତିଶୟ ସ୍ନେହ କରନ୍ତି । ଅତଏବ ଆମ୍ଭ ନିଧନରେ ଆପଣମାନଙ୍କର ଅବଶ୍ୟ ସନ୍ତାପ ହୋଇପାରେ, କିନ୍ତୁ ଆପଣମାନେ ତାହା ପରିତ୍ୟାଗ କରନ୍ତୁ । ଯଦି ବେଦସମୂହକୁ ଆପଣମାନେ ପ୍ରମାଣ ବୋଲି ଜାଣନ୍ତି, ତେବେ ଆମ୍ଭେ ଅକ୍ଷୟ ଲୋକମାନଙ୍କୁ ଜୟ କଲୁଁ । ୨୮ । ଆମ୍ଭେ ଅମିତତେଜା କୃଷ୍ଣଙ୍କ ମାହାତ୍ମ୍ୟ ଜାଣିଅଛୁ । ଅତଏବ ସୁନ୍ଦର ରୂପେ ଅନୁଷ୍ଠିତ କ୍ଷତ୍ରିୟଧର୍ମରୁ କଦାପି ବିଚ୍ୟୁତ ହୋଇନାହୁଁ । ସଂପ୍ରତି ଆମ୍ଭେ ସେହି ଧର୍ମର ଫଳ ପ୍ରାପ୍ତ ହେଲୁଁ । ଅତଏବ ଆପଣମାନେ ଆମ୍ଭ ନିମିତ୍ତ ଶୋକ ପ୍ରକାଶ କରନ୍ତୁ ନାହିଁ । ସମସ୍ତେ ନିଜ ନିଜ ଅନୁରୂପ ଚେଷ୍ଟା କରି ଥାଆନ୍ତି, ବିଜୟ ନିମିତ୍ତ ମଧ୍ୟ ଯତ୍ନ କରିବା ବିଷୟରେ ଆସକ୍ତ ଥାଆନ୍ତି । କିନ୍ତୁ ଦୈବ ଅତି ଦୁରତିକ୍ରମ ! ହେ ରାଜେନ୍ଦ୍ର ! ଦୁର୍ଯ୍ୟୋଧନ ବାଷ୍ପାକୁଳ ଲୋଚନରେ ଏତିକି ମାତ୍ର କଥା କହି ବିହ୍ୱଳ ହୋଇ ମୌନାବ-ଲମ୍ବନ କଲେ ।

ତେତେବେଳେ ଦ୍ରୋଣନନ୍ଦନ ନୃପତିଙ୍କୁ ଶୋକବାଷ୍ପଯୁକ୍ତ ଦେଖି ପ୍ରଳୟକାଳୀନ ଅଗ୍ନି ସଦୃଶ ପ୍ରଜ୍ୱଳିତ ହେଲେ । ସେ କ୍ରୋଧାବିଷ୍ଟ ହୋଇ ପାଣିରେ ପାଣି ନିପୀଡ଼ନ କରି ବାଷ୍ପବିହ୍ୱଳ ବଚନରେ ରାଜାଙ୍କୁ ସମ୍ବୋଧନ କରି ଏହି ବାକ୍ୟ କହିଲେ,"ହେ ମହାରାଜ ! କ୍ଷୁଦ୍ରାଶୟ ପାଣ୍ଡବମାନେ ନୃଶଂସ କର୍ମଦ୍ୱାରା ଆମ୍ଭ ପିତାଙ୍କୁ ନିହତ କରିବାରୁ ତେତେବେଳେ ଆମ୍ଭ ଅନ୍ତଃ-କରଣରେ ଯେତେ ଦୁଃଖ ହୋଇଥିଲା, ଅଦ୍ୟ ଆପଣଙ୍କର ଏତାଦୃଶ ଦଶା ଅବଲୋକନ କରି ଆମ୍ଭ ଅନ୍ତଃକରଣ ତତୋଽଧିକ ସନ୍ତାପରେ ସନ୍ତାପିତ ହେଉଅଛି । ହେ ପ୍ରଭୋ ! ଆମ୍ଭର ଏହି ବାକ୍ୟ ଶ୍ରବଣ କରିବା ହୁଅନ୍ତୁ । ଆମ୍ଭେ ଇଷ୍ଟାପୂର୍ତ୍ତି, ଦାନ, ଧର୍ମ ଓ ସୁକୃତ ପ୍ରଭୃତି ସମସ୍ତ ସତ୍ୟ ଦ୍ୱାରା ଶପଥ କରି କହୁ-ଅଛୁଁ, ଆମ୍ଭେ ଅଦ୍ୟ ବାସୁଦେବଙ୍କ ସାକ୍ଷାତରେ ସମସ୍ତ ପାଞ୍ଚାଳଗଣଙ୍କୁ ସର୍ବୋପାୟ ଦ୍ୱାରା ଯମାଳୟକୁ ପ୍ରେରଣ କରିବୁ । ଅତଏବ ହେ ମହାରାଜ ! ଆପଣ ଆମ୍ଭଙ୍କୁ ଅନୁଜ୍ଞା ପ୍ରଦାନ କରିବା ହୁଅନ୍ତୁ । ୩୭ । କୁରୁରାଜ ଦ୍ରୋଣପୁତ୍ରଙ୍କର ଏହିପରି ଚିତ୍ତପ୍ରୀତିଜନକ ବଚନ ଶୁଣି କୃପାଚାର୍ଯ୍ୟଙ୍କୁ

ସମ୍ବୋଧନ କରି କହିଲେ(୩୮), ଆଚାର୍ଯ୍ୟ ! ଆପଣ ଅନୁଗ୍ରହ ପ୍ରକାଶ ପୂର୍ବକ ଗୋଟିଏ ଜଳପୂର୍ଣ୍ଣ 'କଳଶ ଅବିଳମ୍ବରେ ଆନୟନ କରନ୍ତୁ । ଦ୍ୱିଜସତ୍ତମ କୃପାଚାର୍ଯ୍ୟ ରାଜାଙ୍କର ଏହି ଆଜ୍ଞା ପାଇଲାମାତ୍ରେ ତତ୍‌କ୍ଷଣାତ୍ ଜଳପୂର୍ଣ୍ଣ କଳଶ ଆନୟନ କରି ଭୂପତିଙ୍କ ନିକଟରେ ଉପସ୍ଥିତ ହେଲେ ।

ତେତେବେଳେ ଭୂପାଳ ତାହାଙ୍କୁ ସମ୍ବୋଧନ କରି କହିଲେ, ହେ ଦ୍ୱିଜବର ! ଆପଣ ଯଦି ଆମ୍ଭର ମଙ୍ଗଳ ଇଚ୍ଛା କରନ୍ତି, ତେବେ ଅସ୍ମଦୀୟ ଆଦେଶାନୁସାରେ ଅଶ୍ୱତ୍ଥାମାଙ୍କୁ ସେନାପତି ପଦରେ ଅଭିଷିକ୍ତ କରନ୍ତୁ । ୪୧ । ଧର୍ମବେତ୍ତାମାନେ କହିଅଛନ୍ତି ଯେ, ରାଜାଙ୍କ ନିଯୋଗ ଅନୁସାରେ ବ୍ରାହ୍ମଣ କ୍ଷତ୍ରିୟ ଧର୍ମରେ ନିଯୁକ୍ତ ହୋଇ ଯୁଦ୍ଧ କରିବେ; ଅତଏବ ଆପଣ ଆମ୍ଭର ଏହି ବାକ୍ୟ ପ୍ରତିପାଳନ କରନ୍ତୁ । ୪୨ ।

ହେ ମହାରାଜ ! ଶାରଦ୍ୱତ କୃପାଚାର୍ଯ୍ୟ ରାଜାଙ୍କର ଏହି ବାକ୍ୟ ଶୁଣି ତଦୀୟ ଆଦେଶାନୁସାରେ ଦ୍ରୋଣପୁତ୍ରଙ୍କୁ ସେନାପତି ପଦରେ ଅଭିଷିକ୍ତ କଲେ । ୪୩ । ଅଶ୍ୱତ୍ଥାମା ଅଭିଷିକ୍ତ ହୋଇ ନୃପବରଙ୍କୁ ଆଲିଙ୍ଗନ ପୂର୍ବକ ସିଂହନାଦରେ ଦିଗମାନଙ୍କୁ ନିନାଦିତ କରି ସେଠାରୁ ଗମନ କଲେ । ଦୁର୍ଯ୍ୟୋଧନ ମଧ୍ୟ ରକ୍ତାକ୍ତ କଳେବରରେ ସର୍ବଭୂତର ଭୟାବହ ରଜନୀ ଯାପନ କଲେ । ଅଶ୍ୱତ୍ଥାମା ପ୍ରଭୃତି ମହାରଥୀମାନେ ରଣସ୍ଥଳରୁ ଶୀଘ୍ର ନିର୍ଗତ ହୋଇ ଶୋକସଂବିଗ୍ନ ଚିତ୍ତରେ ଚିନ୍ତା କଲେ ।

# ପରିଶିଷ୍ଟ

## [ସପ୍ତବିଂଶ ଅଧ୍ୟାୟର ପ୍ରଥମାଂଶ]

ସଞ୍ଜୟ କହିଲେ—ମହାରାଜ ! ସେତେବେଳେ ଆପଣଙ୍କ ଦୁଇ-ପୁତ୍ର ଦୁର୍ଯୋଧନ ଓ ସୁଦର୍ଶନ କେବଳ ଜୀବିତ ରହିଥିଲେ ଏବଂ ଅଶ୍ୱ-ସୈନ୍ୟମଧ୍ୟରେ ଅବସ୍ଥିତ ଥିଲେ । ୧ । ତଦନନ୍ତର ଦୁର୍ଯୋଧନଙ୍କୁ ଅଶ୍ୱସୈନ୍ୟ ମଧ୍ୟରେ ଦଣ୍ଡାୟମାନ ଥିବାର ଦେଖି ଭଗବାନ ଶ୍ରୀକୃଷ୍ଣ କୁନ୍ତୀସୁତ ଅର୍ଜ୍ଜୁନଙ୍କୁ ଏହିପରି କହିଲେ—(୨) ହେ ଭରତନନ୍ଦନ ! ଶତ୍ରୁ-ପକ୍ଷର ଅଧିକାଂଶ ଯୋଦ୍ଧା ମୃତ୍ୟୁମୁଖରେ ପଡ଼ିଅଛନ୍ତି, କେବଳ ମାତ୍ର ସେମାନଙ୍କ ଜ୍ଞାତିମାନେ ଜୀବିତ ଅଛନ୍ତି । ତେଣେ ଦେଖ, ଶିନିପ୍ରବର ସାତ୍ୟକି ସଞ୍ଜୟଙ୍କୁ ବନ୍ଦୀ କରି ତାହାଙ୍କୁ ସଙ୍ଗରେ ନେଇ ଫେରୁଅଛନ୍ତି । ···

---

ପ୍ରକାଶକ

ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

ପ୍ରଥମ ମୁଦ୍ରଣ— ୧୯୭୮

ମୁଦ୍ରାକର

ପଣ୍ଡିତ ଅନସୂୟାପ୍ରସାଦ ପାଠକ

ସ୍ୱତ୍ୱରକ୍ଷା ସମବାୟ ପ୍ରେସ, କଟକ

# ସୂଚୀ

# ମହାଭାରତ

## ସୌପ୍ତିକ ପର୍ବ

---

### ପ୍ରଥମ ଅଧ୍ୟାୟ

ଶ୍ରୀଗଣେଶାୟ ନମଃ, ନାରାୟଣ, ନରୋତ୍ତମ ନର ଓ ସରସ୍ୱତୀ ଦେବୀଙ୍କୁ ନମସ୍କାର କରି ପୁରାଣ ଇତିହାସ ପ୍ରଭୃତି କୀର୍ତ୍ତନ କରିବ।

ସଞ୍ଜୟ କହିଲେ, ରାଜା ଦୁର୍ଯ୍ୟୋଧନଙ୍କ ଆଦେଶାନୁସାରେ କୃପାଚାର୍ଯ୍ୟଙ୍କ ଦ୍ୱାରା ଅଶ୍ୱତ୍ଥାମା ସେନାପତିପଦରେ ଅଭିଷିକ୍ତ ହେବାପରେ କୃତବର୍ମା, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ଏହି ବୀରତ୍ରୟ ଦକ୍ଷିଣାଭିମୁଖକୁ ପ୍ରସ୍ଥାନ କରି ସୂର୍ଯ୍ୟାସ୍ତ ସମୟରେ ଶିବିର ନିକଟରେ ସମାଗତ ହେଲେ। ୧। ସେମାନେ ଡେରିବେଳେ ଭୀତ ହୋଇ ବାହନସମୂହ ପରିତ୍ୟାଗପୂର୍ବକ ଯାତ ହେଲେ। ସୁତରାଂ ଗହନ ପ୍ରଦେଶରେ ପ୍ରବିଷ୍ଟ ହୋଇ, ଗୁପ୍ତଭାବରେ ଶିବିରର ଅନତିଦୂରରେ ଅବସ୍ଥିତି କଲେ। ସେହି ବୀରତ୍ରୟ ଶାଣିତଶସ୍ତ୍ର ସମୂହରେ କ୍ଷତବିକ୍ଷତ ଓ ଛିନ୍ନ ଶରୀର ହୋଇଥିଲେ। ସମସ୍ତେ ଦୀର୍ଘ ଓ ଉଷ୍ଣ ନିଃଶ୍ୱାସ ପରିତ୍ୟାଗ କରି ପାଣ୍ଡବମାନଙ୍କର ବିଷୟ ଚିନ୍ତା କଲେ।

ବିଜୟାଭିଳାଷୀ ପାଣ୍ଡବଙ୍କର ଘୋରତର ହର୍ଷଧ୍ୱନି ଶ୍ରବଣ କରି, ସେମାନେ ଜାଣିଲେ ପଶ୍ଚାତ୍ ଅନୁସରଣ କରିବେ, ଏହି ଭୟରେ ପୁନଶ୍ଚ ପୂର୍ବାଭିମୁଖରେ ଧାବମାନ ହେଲେ। କ୍ରୋଧ ଓ ଅମର୍ଷପରାୟଣ ସେହି ମହାଧନୁର୍ଦ୍ଧରମାନେ ମୁହୂର୍ତ୍ତକ ମାତ୍ର କିଛିଦୂର ଗମନ କରି, ସେମାନଙ୍କୁ

ବାହନସମୂହ ଶ୍ରାନ୍ତ ଓ ସ୍ୱୟଂ ପିପାସିତ ହେବାରୁ, କିଛି ବିବେଚନା କରି-ପାରିଲେ ନାହିଁ । ରାଜାଙ୍କ ବଧ ହେତୁ ସନ୍ତପ୍ତ ହୋଇ ଅଳ୍ପକ୍ଷଣ ଅବସ୍ଥିତ ହେଲେ । ୬ ।

ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଅୟୁତ ହସ୍ତୀସଦୃଶ ବଳଶାଳୀ ଆମ୍ଭ ପୁତ୍ରଙ୍କୁ ଭୀମ ନିପାତିତ କରିଅଛି । ଭୀମ-କୃତ ଏହି କର୍ମ ଅତି ଅଶ୍ରଦ୍ଧେୟ ।୭। ହେ ସଞ୍ଜୟ ! ସର୍ବଭୂତର ଅବଧ୍ୟ, ଅଶନିତୁଲ୍ୟ କଳେବର, ଆମ୍ଭର ଯୁବାପୁତ୍ର ଯୁଦ୍ଧରେ ପାଣ୍ଡବମାନଙ୍କଦ୍ୱାରା ନିହତ ହେଲେ ।୮। ହେ ସଞ୍ଜୟ ! ମନୁଷ୍ୟମାନେ ଦୈବକୁ କଦାପି ଅତିକ୍ରମ କରିପାରନ୍ତି ନାହିଁ; କାରଣ ଆମ୍ଭ ପୁତ୍ର ଯୁଦ୍ଧରେ ସମବେତ ପାଣ୍ଡବମାନଙ୍କ କର୍ତ୍ତୃକ ନିପାତିତ ହେଲେ । ୯ । ହେ ସଞ୍ଜୟ ! ଆମ୍ଭର ହୃଦୟ ନିଶ୍ଚୟ ପ୍ରସ୍ତର-ସାରମୟ; ଅନ୍ୟଥା ଶତପୁତ୍ର ହତ ହେବାର ଶ୍ରବଣ କରି, କେଉଁ କାରଣରୁ ତାହା ସହସ୍ର ଖଣ୍ଡରେ ବିଦୀର୍ଣ୍ଣ ନ ହେଲା । ୧୦ । ଏହି ହତପୁତ୍ର ବୃଦ୍ଧ ଦମ୍ପତି କିପରି ରହିବେ ? ଆମ୍ଭେ ପାଣ୍ଡବଙ୍କ ରାଜ୍ୟରେ ବାସ କରିବାକୁ କଦାପି ଉତ୍ସାହିତ ହେବୁ ନାହିଁ । ୧୧ । ହେ ସଞ୍ଜୟ ! ଆମ୍ଭେ ରାଜାଙ୍କର ପିତା ଓ ନିଜେ ରାଜା ହୋଇ, କେଉଁ ପ୍ରକାରରେ ପାଣ୍ଡବଙ୍କ ଶାସନରେ ଦାସ ସଦୃଶ ଅବସ୍ଥାନ କରିବୁ ? ହେ ସଞ୍ଜୟ ! ଯେଉଁ ଭୀମ ଏକାକୀ ଆମ୍ଭର ଶତ ପୁତ୍ରଙ୍କୁ ନିହତ କରିଅଛନ୍ତି, ଆମ୍ଭେ କେଉଁ ପ୍ରକାରରେ ତାହାଙ୍କର ବାକ୍ୟ ସବୁ ଶୁଣିବୁ ? ଆମ୍ଭ ପୁତ୍ର ସମସ୍ତ ପୃଥିବୀରେ ଆଜ୍ଞା ପ୍ରଚାର କରି ରାଜାମାନଙ୍କ ମସ୍ତକରେ ପଦାର୍ପଣ କରି, ମହାତ୍ମା ବିଦୁରଙ୍କ ବାକ୍ୟ ପ୍ରତିପାଳନ ନ କରିବାରୁ, ସେ ଯାହା କହିଥିଲେ, ତାହା ସତ୍ୟ ହେଲା ।

ହେ ତାତ ସଞ୍ଜୟ ! ଆମ୍ଭ ପୁତ୍ର ଦୁର୍ଯ୍ୟୋଧନ ଅଧର୍ମରେ ହତ ହେବାରୁ କୃତବର୍ମା, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା କଣ କଲେ ? ୧୬ ।

ସଞ୍ଜୟ କହିଲେ, ମହାରାଜ ! ଉକ୍ତ ତିନି ବୀର କିଛିଦୂର ଯାଇ ଅନତିଦୂରରେ ଅବସ୍ଥାନ କରି, ନାନାବିଧ ତରୁଲତାବେଷ୍ଟିତ ଗୋଟିଏ ଘୋରତର ବନ ଦର୍ଶନ କଲେ । ୧୭ । ସେମାନେ ମୁହୂର୍ତ୍ତକ ସମୟ ବିଶ୍ରାମ କରି, ଅଶ୍ୱଗଣଙ୍କୁ ଜଳପାନ କରାଇ, ସୂର୍ଯ୍ୟଙ୍କ ଅସ୍ତଗମନକାଳରେ ସେହି ମହାବନରେ ପ୍ରବେଶ କଲେ । ଉକ୍ତ ବନ ନାନା ମୃଗଗଣରେ ସେବିତ, ବହୁବିଧ ବିହଙ୍ଗଗଣରେ ଆବୃତ, ବିବିଧ ଲତା ଓ ବୃକ୍ଷଦ୍ୱାରା ସମାଚ୍ଛନ୍ନ ।

ନାନାବିଧ ହିଂସ୍ରଜନ୍ତୁ ନିସେବିତ, ନାନାବିଧ ଜଳାଶୟରେ ପରିବ୍ୟାପ୍ତ, ନାନାବିଧ ପୁଷ୍ପରେ ସୁଶୋଭିତ, ଶତ ଶତ ପଦ୍ମମାଳାଦ୍ୱାରା ସଂଛନ୍ନ ନେଇଁ ମାଳୋପୂଳ ନିକରରେ ସମାବୃତ ଥିଲା । ୨୦ । କୃପ ପ୍ରଭୃତି ବୀରଗଣ ସେହି ଘୋରତର କାନନରେ ପ୍ରବିଷ୍ଟ ହୋଇ ଚତୁର୍ଦ୍ଦିଗ ଅବଲୋକନ କରି, ସହସ୍ରଶାଖାରେ ଆଚ୍ଛନ୍ନ ଗୋଟିଏ ବଟବୃକ୍ଷ ଦର୍ଶନ କଲେ । ୨୧ ।

ହେ ମହାରାଜ ! ସେହି ମହାରଥୀମାନେ ବଟବୃକ୍ଷର ନିକଟକୁ ଯାଇ ସେହି ସର୍ବଶ୍ରେଷ୍ଠ ବନସ୍ପତିକୁ ବିଶେଷରୂପେ ବିଲୋକନ କଲେ । ୨୨ । ତତ୍ପରେ ସେମାନେ ରଥରୁ ଅବତୀର୍ଣ୍ଣ ହୋଇ, ଅଶ୍ୱଗଣଙ୍କୁ ବିମୁକ୍ତ କରି ଜଳସ୍ପର୍ଶପୂର୍ବକ ଯଥାବିଧାନରେ ସନ୍ଧ୍ୟା-ବନ୍ଦନାଦି କଲେ । ୨୩ । ତଦନନ୍ତର ସୂର୍ଯ୍ୟ ଅସ୍ତାଚଳରେ ଆରୋହଣ କଲାରୁ ସର୍ବଭୁବନର ବିଶ୍ରାମଦାୟିନୀ ରଜନୀଦେବୀ ସମାଗତ ହେଲେ । ଗ୍ରହ, ନକ୍ଷତ୍ର ଓ ତାରାଗଣଦ୍ୱାରା ଅଳଂକୃତ ସୁଦୃଶ୍ୟ ଗଗନମଣ୍ଡଳ ଚତୁର୍ଦ୍ଦିଗରେ ତାହାଙ୍କର ବସ୍ତ୍ରପରି ଶୋଭା ପାଇଲା । ୨୫ । ନିଶାଚର ଜୀବଗଣ ସ୍ୱେଚ୍ଛାନୁସାରେ ବିଚରଣ କଲେ । ଦିବସଚର ପ୍ରାଣୀ ସମୂହ ନିଦ୍ରାଦେବୀଙ୍କର ବଶୀଭୂତ ହେଲେ । ୨୬ । ରାତ୍ରିଚର ଜନ୍ତୁଗଣର ଅତି ଦାରୁଣ ନିନାଦ ପ୍ରାଦୁର୍ଭୂତ ହେଲା । ଘୋରତର ହିଂସ୍ର ବ୍ୟାଘ୍ରଗଣ ପ୍ରମୁଦିତ ହେଲେ । କ୍ରମେ କ୍ରମେ ରଜନୀ ସମାଗତ ହେଲା । ୨୭ ।

ସେହି ଘୋରତର ରଜନୀର ପ୍ରାରମ୍ଭରେ ଶୋକ-ଦୁଃଖଯୁକ୍ତ କୃତବର୍ମା, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା ପରସ୍ପର ନିକଟରେ ଉପବେଶନ କଲେ । ୨୮ । ସେମାନେ ସେହି ବଟବୃକ୍ଷ ନିକଟରେ ଉପବିଷ୍ଟ ହୋଇ କୁରୁ-ପାଣ୍ଡବଗଣର ସେହି ଅତିକ୍ରାନ୍ତ ପରିକ୍ଷୟ ବିଷୟକୁ ଚିନ୍ତା କରି ନିଦ୍ରାକ୍ରାନ୍ତ କଳେବର ହୋଇ, ଧରଣୀତଳରେ ଶୟନ କଲେ । ସେମାନେ ନିତାନ୍ତ ପରିଶ୍ରାନ୍ତ ଓ ବିବିଧ ଶରଦ୍ୱାରା ବିକ୍ଷତ ହୋଇଥିଲେ । ସୁତରାଂ ମହାରଥୀ କୃପ ଓ କୃତବର୍ମା ନିଦ୍ରାଗତ ହେଲେ । ସେ ଦୁହେଁ କଦାପି ଦୁଃଖଭୋଗ କରି ନ ଥିଲେ । ସୁଖଭୋଗର ଅତିଶୟ ଉପଯୁକ୍ତ ଏବଂ ପୂର୍ବେ ମହାମୂଲ୍ୟ ଶଯ୍ୟାରେ ଶୟନ କରୁଥିଲେ । କିନ୍ତୁ ସେତେବେଳେ ଶ୍ରମ-ଶୋକରେ ସଂଯୁକ୍ତ ହେବାରୁ ଅନାଥସଦୃଶ ଧରାତଳରେ ନିଦ୍ରିତ ହେଲେ । ୩୨ ।

ହେ ମହାରାଜା ଭରତ ! ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଅମର୍ଷପରବଶ ହୋଇ ଗର୍ଜନକାରୀ ସର୍ପସଦୃଶ ନିଦ୍ରାଗତ ହେଲେ ନାହିଁ । ସେ କ୍ରୋଧରେ ଦହ୍ୟମାନ ହେବାରୁ ନିଦ୍ରାଭିଭୂତ କରିପାରିଲେ ନାହିଁ । କେବଳ ଘୋରଦର୍ଶନ ସେହି ବନକୁ ଚାହିଁଥିଲେ । ସେହି ମହାବାହୁ ନାନା ଜୀବଜନ୍ତୁସେବିତ ବନସ୍ଥଳକୁ ଅବଲୋକନ କରୁ କରୁ, ବହୁ ବାୟସରେ ପରିବୃତ ସେହି ବଟବୃକ୍ଷକୁ ବିଲୋକନ କଲେ । ୩୫ । ସେହି ବୃକ୍ଷରେ ସହସ୍ର ସହସ୍ର କାକ ରାତିଯାପନ କରୁଥିଲେ ଏବଂ ସେମାନେ ଭିନ୍ନ ଭିନ୍ନ ଆଶ୍ରୟ ଅବଲମ୍ବନ-ପୂର୍ବକ ଅନାୟାସରେ ନିଦ୍ରାସୁଖ ଅନୁଭବ କରୁଥିଲେ ।୩୬। ବାୟସମାନେ ବିଶ୍ୱସ୍ତଭାବରେ ଚତୁର୍ଦ୍ଦିଗରେ ନିଦ୍ରିତ ଥିଲେ ।

ଏହି ସମୟରେ ଅଶ୍ୱତ୍ଥାମା ସେଠାରେ ସହସା ଆଗମନକାରୀ ଗୋଟିଏ ଘୋରଦର୍ଶନ ପେଚକକୁ ଅବଲୋକନ କଲେ । ୩୭ । ସେହି ପେଚକର ଶବ୍ଦ ଅତି ଭୟଙ୍କର, କଳେବର ବୃହତ୍ । ଚକ୍ଷୁ ହରିଦ୍‌ବର୍ଣ୍ଣ ମଣିସଦୃଶ, ଦେହ ନକୁଳସଦୃଶ ପିଙ୍ଗଳ, ନାସିକା ସୁଦୀର୍ଘ, ନଖ ସବୁ ପ୍ରଖର ଏବଂ ତାହାର ଗରୁଡ଼ ସଦୃଶ ବେଗ । ୩୮ । ତଦନନ୍ତର ସେ ମୃଦୁମାନ ଅଣ୍ଡଜ ସଦୃଶ ମୃଦୁଧ୍ୱନି କରି, ବଟବୃକ୍ଷର ଶାଖାକୁ ଆଗତ ହେଲା । ୩୯ । କ୍ରମେ କ୍ରମେ ସେହି ବାୟସାନ୍ତକ ପକ୍ଷୀ ବଟବୃକ୍ଷର ଶାଖାରେ ନିପତିତ ହୋଇ ବହୁସଂଖ୍ୟକ ସୁପ୍ତ ବାୟସମାନଙ୍କୁ ନିହତ କଲା । ୪୦ । ସେ କତିପୟ ବାୟସମାନଙ୍କର ପକ୍ଷ ଓ କତିପୟ ବାୟସର ମସ୍ତକ ଛେଦନ କଲା ଏବଂ କତିପୟର ପାଦଭଗ୍ନ କଲା । ୪୧ । ସେହି ବଳବାନ ବିହଙ୍ଗମ, ଯେଉଁ ଯେଉଁମାନେ ତାହାର ଦୃଷ୍ଟିପଥରେ ପତିତ ହେଲେ, ସେମାନଙ୍କୁ କ୍ଷଣକ ମଧ୍ୟରେ ବିନଷ୍ଟ କଲା । ହେ ମହାରାଜ ! କାକଗଣର କଳେବର ଓ ଶରୀରର ଅବୟବ ଦ୍ୱାରା ବଟବୃକ୍ଷର ତଳଭୂମି ଆଚ୍ଛନ୍ନ ହେଲା । ଶତ୍ରୁନିସୂଦନ ଉଲୂକ ଇଚ୍ଛାନୁସାରେ ଶତ୍ରୁକୁଳର ପ୍ରତିକାରପୂର୍ବକ କାକମାନଙ୍କୁ ନିହତ କରି ଅତିଶୟ ଆନନ୍ଦିତ ହେଲା ।

ଦ୍ରୋଣପୁତ୍ର ନିଶାକାଳରେ ପେଚକକୃତ ସେହି କପଟ କାର୍ଯ୍ୟ ଦେଖି, ସେହି ଅନୁସାରେ କାର୍ଯ୍ୟ କରିବାକୁ କୃତସଂକଳ୍ପ ହୋଇ ଏକାକୀ ଚିନ୍ତା କଲେ ଯେ, ଏହି ପକ୍ଷୀ ସଂଗ୍ରାମ ବିଷୟରେ ଆମ୍ଭଙ୍କୁ ଉପଦେଶ ଦେଲା । ଆମ୍ଭର ବୈରିକ୍ଷୟ ସମୟ ଉପସ୍ଥିତ । ଜୟଶାଳୀ-

ପ୍ରକାଶକ, ବଳବାନ୍, ଉତ୍ସାହଶାଳୀ, ଲବ୍ଧ ଲକ୍ଷ୍ୟ ଏବଂ ସମରକାଙ୍କ୍ଷୀ ପାଣ୍ଡବଗଣଙ୍କୁ ନିହତ କରିବାକୁ ଆମ୍ଭର ଶକ୍ତି ନାହିଁ । ପତଙ୍ଗ ଅଗ୍ନିରେ ପଡ଼ିଲାପରି ଆମ୍ଭେ ଆତ୍ମବିନାଶିନୀ ବୃତ୍ତି ଅବଲମ୍ବନ କରି, ରାଜାଙ୍କ ନିକଟରେ ପାଣ୍ଡବମାନଙ୍କର ବଧ ପ୍ରତିଜ୍ଞା କରିଅଛୁଁ । ନ୍ୟାୟାନୁସାରେ ସଂଗ୍ରାମ କଲେ ଆମ୍ଭର ପ୍ରାଣ ବିନଷ୍ଟ ହେବ, ସଂଶୟ ନାହିଁ । ୪୮ । କପଟ ବ୍ୟବହାରଦ୍ୱାରା କାର୍ଯ୍ୟ ସିଦ୍ଧ ହେବ ଏବଂ ଶତ୍ରୁମାନଙ୍କର ସୁମହାନ୍ କ୍ଷୟ ହୋଇପାରିବ । ସଂଶୟଯୁକ୍ତ ବିଷୟ ଅପେକ୍ଷା ଯାହା ନିଃସଂଶୟ ଅଟେ, ଶାସ୍ତ୍ରବିଶାରଦ ବ୍ୟକ୍ତିମାନେ ତାହାକୁ ବହୁମାନ୍ୟ କରନ୍ତି । ଏହି ବିଷୟରେ ବରଂ ଲୋକନିନ୍ଦିତ ଗର୍ହିତ ବାକ୍ୟ ଶୁଣାଯାଉ; କିନ୍ତୁ କ୍ଷତ୍ରିୟ-ଧର୍ମାବଲମ୍ବୀ ବ୍ୟକ୍ତିଙ୍କର ତାହା କର୍ତ୍ତବ୍ୟ । ଅକୃତାତ୍ମା ପାଣ୍ଡବମାନେ ସର୍ବପ୍ରକାରରେ ନିନ୍ଦିତ ଓ ପଦେ ପଦେ କୁତ୍ସିତ କାର୍ଯ୍ୟ ସବୁ କରିଅଛନ୍ତି । ଶୁଣାଅଛୁ, ପୂର୍ବକାଳରେ ନ୍ୟାୟ ଓ ତତ୍ତ୍ୱଦର୍ଶୀ ଧର୍ମଚିନ୍ତକ ବ୍ୟକ୍ତିମାନେ ଏହି ସକଳ ତତ୍ତ୍ୱର ଅର୍ଥଯୁକ୍ତ ଶ୍ଳୋକ ଗାନ କରିଥିଲେ, ଯେ ଶତ୍ରୁଗଣ ପରିଶ୍ରାନ୍ତ, ପଳାୟିତ, ଭୁଞ୍ଜାନ, ପ୍ରସ୍ଥାନ ପ୍ରବୃତ୍ତ ବା ପ୍ରବେଶୋନ୍ମୁଖ ଶତ୍ରୁ-ସୈନ୍ୟଙ୍କୁ ପ୍ରହାର କରିବେ ଓ ଅର୍ଦ୍ଧରାତ୍ର ସମୟରେ ନିଦ୍ରାର୍ତ୍ତ, ହତନାୟକ ଭିନ୍ନ ଯୋଦ୍ଧା ଏବଂ ଯେଉଁ ସୈନ୍ୟସମୁହର ବୁଦ୍ଧି ଦ୍ୱିବିଧ, ସେମାନଙ୍କୁ ମଧ୍ୟ ପ୍ରହାର କରିବାର କର୍ତ୍ତବ୍ୟ ।

ପ୍ରତାପଶାଳୀ ଅଶ୍ୱତ୍ଥାମା ଏହିପରି ରାତ୍ର ସମୟରେ ପାଞ୍ଚାଳମାନଙ୍କ ସହିତ ନିଦ୍ରାଗତ ପାଣ୍ଡବମାନଙ୍କୁ ମାରିବା ନିମିତ୍ତ ନିଶ୍ଚୟ କଲେ । ସେ କ୍ରୂର ବୁଦ୍ଧି ଅବଲମ୍ବନପୂର୍ବକ ବାରମ୍ବାର ବିଶେଷରୂପେ ନିଶ୍ଚୟ କରି ନିଦ୍ରିତ କୃତବର୍ମା ଓ କୃପାଚାର୍ଯ୍ୟଙ୍କୁ ଜାଗରିତ କଲେ ।

ମହାବଳ ମହାତ୍ମା କୃପ ଓ କୃତବର୍ମା ଜାଗରିତ ହୋଇ ଅଶ୍ୱତ୍ଥାମାଙ୍କ ଅଭିପ୍ରେତ ବିଷୟ ଶୁଣିବାରୁ ଲଜ୍ଜିତ ହୋଇ, ତଦ୍‌ବିଷୟରେ କୌଣସି ଉଚିତ ଉତ୍ତର ପ୍ରଦାନ କଲେ ନାହିଁ । ତତ୍ପରେ ଅଶ୍ୱତ୍ଥାମା ମୁହୂର୍ତ୍ତକାଳ ଚିନ୍ତା କରି ବାଷ୍ପବିହ୍ୱଳ ହୋଇ କହିଲେ ।୫୮।

ଯାହାଙ୍କ ନିମିତ୍ତ ଆମ୍ଭେମାନେ ପାଣ୍ଡବମାନଙ୍କ ସହିତ ଶତ୍ରୁତାରେ ଆସକ୍ତ ହୋଇଥାଇ, ସେହି ଅଦ୍ୱିତୀୟ ବୀର ମହାବଳ ରାଜା ଦୁର୍ଯ୍ୟୋଧନ

ହତ ହେଲେ । ୬୯ । ଏକାଦଶ ଅକ୍ଷୌହିଣୀର ପତି ସେହି ପରାକ୍ରମ ନରପତି ଏକାକୀ ଯୁଦ୍ଧରେ ବହୁ କ୍ଷୁଦ୍ର ଜନଦ୍ୱାରା ଆକ୍ରାନ୍ତ ହୋଇ ଶ୍ରୀମନ୍ତକ୍ତିକ ପାତିତ ହେଲେ । ୭୦ । କ୍ଷୁଦ୍ରାଶୟ ବୃକୋଦର ସେହି ମୂର୍ଦ୍ଧାଭିଷିକ୍ତ ରାଜାଙ୍କର ମସ୍ତକକୁ ପଦଦ୍ୱାରା ମର୍ଦ୍ଦନପୂର୍ବକ ଅତି ନୃଶଂସ କାର୍ଯ୍ୟ କରିଅଛି । ୭୧ । ପାଞ୍ଚାଳମାନେ ହୃଷ୍ଟ ହୋଇ ସିଂହନାଦ, ବାହୁ-ଆସ୍ଫୋଟ ଓ ହାସ୍ୟ କରୁଅଛନ୍ତି । କେହି କେହି ଶଙ୍ଖଧ୍ୱନି କେହି କେହି ଅବା ଦୁନ୍ଦୁଭି ଧ୍ୱନି କରୁଅଛନ୍ତି । ୭୨ । ଶଙ୍ଖଧ୍ୱନି-ମିଶ୍ରିତ ତୁମୁଳ ବାଦ୍ୟଧ୍ୱନି ପବନଦ୍ୱାରା ଚାଳିତ ହୋଇ ଦିଗସମୂହକୁ ପରିପୂର୍ଣ୍ଣ କଲାପରି ଜଣାଯାଉଅଛି । ୭୩ । ଅଶ୍ୱମାନଙ୍କର ହ୍ରେଷା, ଗଜ-ଯୂଥର ବୃଂହିତ, ଶୂରମାନଙ୍କର ସୁମହାନ୍ ସିଂହନାଦ, ଶ୍ରୁତିଗୋଚର ହେଉଅଛି । ୭୪ । ପାଣ୍ଡବମାନେ ପୂର୍ବାଭିମୁଖରେ ହୃଷ୍ଟ ହୋଇ ଗମନ କରୁଅଛନ୍ତି । ସେମାନଙ୍କର ରଥଚକ୍ରର ଲୋମହର୍ଷଣ ଶବ୍ଦ କର୍ଣ୍ଣଗୋଚର ହେଉଅଛି । ୭୫ ।

ପାଣ୍ଡବଗଣ ଧୃତରାଷ୍ଟ୍ର-ପୁତ୍ରମାନଙ୍କର ଯେଉଁ ବିମର୍ଦ୍ଦନ କରିଅଛନ୍ତି, ତହିଁରେ ଏହି ମହାଯୁଦ୍ଧରେ ଆମ୍ଭେମାନେ ତିନିଜଣ ମାତ୍ର ଅବଶିଷ୍ଟ ହୋଇ ରହିଅଛୁଁ । ୭୬ । ସେହି ବୀରମାନଙ୍କ ମଧ୍ୟରୁ କେହି କେହି ଶତହସ୍ତୀସଦୃଶ ବଳଶାଳୀ ଏବଂ କେହି କେହି ସର୍ବାସ୍ତ୍ରରେ ସୁପଣ୍ଡିତ ହୋଇ ସୁଦ୍ଧା ପାଣ୍ଡବମାନଙ୍କଦ୍ୱାରା ନିହତ ହେଲେ । ଅତଏବ ଜଣାଯାଏ ଯେ, ଉକ୍ତ ବିଷୟରେ କାଳବିପର୍ଯ୍ୟୟ କେବଳ କାରଣ ଅଟେ । ୭୭ ।

ଏହି କାର୍ଯ୍ୟଦ୍ୱାରା ନିଶ୍ଚୟ ଏହିପରି ହେବ, ଦୁଷ୍କର କାର୍ଯ୍ୟ କୃତ ହେଲେ ସୁଦ୍ଧା ଯାହାଦ୍ୱାରା ଏହି କାର୍ଯ୍ୟର ଏହିପରି ନିଷ୍ପତ୍ତି ହୁଏ ତାହା କରିବାର କର୍ତ୍ତବ୍ୟ । ୭୮ । ଆପଣମାନଙ୍କର ବୁଦ୍ଧି ଯଦି ମୋହବଶରେ ଅପହୃତ ନ ହୁଏ, ତେବେ ଉପସ୍ଥିତ ଏହି ଉତ୍କୃଷ୍ଟ ବିଷୟରେ ଆମ୍ଭମାନଙ୍କର ଯାହା ଶ୍ରେୟ, ତାହା କହିବା ହେଉନ୍ତୁ । ୭୯ ।

---

# ଦ୍ୱିତୀୟ ଅଧ୍ୟାୟ

କୃପାଚାର୍ଯ୍ୟ କହିଲେ, ହେ ମହାବାହୋ ! ତୁମ୍ଭେ ଯେଉଁ ଯେଉଁ ବାକ୍ୟ କହିଲ, ତାହାସବୁ ଶୁଣିଲୁ । ଏତେବେଳେ ଆମ୍ଭର କଂଶକୁ କଥା ଶୁଣ । ୧ । ମାନବଗଣ ଦେହଧାରଣ କରିବା ଦିନଠାରୁ ଦୈବ ଓ ପୁରୁଷକାର, ଏ ଦ୍ୱିବିଧ କର୍ମରେ ନିବଦ୍ଧ ହୋଇ ରହିଥାଆନ୍ତି । ଏହି ଦ୍ୱିବିଧ କର୍ମ ଅପେକ୍ଷା ଆଉ କିଛି ଶ୍ରେଷ୍ଠ କର୍ମ ନାହିଁ ।୨। ହେ ସଜ୍ଜନବର ! ଏକମାତ୍ର ଦୈବ ଅଥବା ପୁରୁଷକାରଦ୍ୱାରା କାର୍ଯ୍ୟ ସମସ୍ତ ସିଦ୍ଧ ହୁଏ ନାହିଁ; ଉଭୟର ଯୋଗରେ କାର୍ଯ୍ୟ ସିଦ୍ଧ ହୁଏ । ୩ । ଉତ୍ତମ ଅଧମ ସମୁଦାୟ ବିଷୟ ଉକ୍ତ ଉଭୟ କର୍ମଦ୍ୱାରା ନିବଦ୍ଧ ହୋଇ ରହିଅଛି । ଅତଏବ ଦୈବ ଏବଂ ପୁରୁଷକାରଦ୍ୱାରା ଅନେକ କାର୍ଯ୍ୟ ହେଉଅଛି ଓ ଅନେକ କାର୍ଯ୍ୟ ମଧ୍ୟ ହେଉ ନ ଥିବାର ଦେଖାଯାଉଅଛି । ୪। ପର୍ଜନ୍ୟ, ଅର୍ଥାତ୍ ବର୍ଷଣଶୀଳ ମେଘ ପର୍ବତରେ ଜଳବର୍ଷଣ କଲେ ବନଚର ଜୀବଗଣଙ୍କ ପ୍ରାଣଧାରଣ ବ୍ୟତିରେକ ଉକ୍ତ ଜଳବୃଷ୍ଟିଦ୍ୱାରା ଅନ୍ୟମାନଙ୍କରେ କୌଣସି ହିତ ସାଧନ ହୁଏ ନାହିଁ । ଉକ୍ତ ମେଘ ଉତ୍କୃଷ୍ଟ କ୍ଷେତ୍ରରେ ଜଳବୃଷ୍ଟି କରି ସମସ୍ତଙ୍କର ଫଳସାଧନ କରେ । ୫ । ଦୈବ ବ୍ୟତିରେକେ ପୁରୁଷକାର ଯେଉଁପରି ବ୍ୟର୍ଥ ହୁଏ, ପୁରୁଷକାର ବ୍ୟତିରେକେ ଦୈବ ମଧ୍ୟ ସେହିପରି ବ୍ୟର୍ଥ ହୁଏ । କିନ୍ତୁ ଦେଖାଯାଏ ଯେ ପୁରୁଷକାର ବିନା ଦୈବଦ୍ୱାରା କେବଳ କାର୍ଯ୍ୟ ସିଦ୍ଧ ହେଉଅଛି । ଦୈବ ସୁନ୍ଦରରୂପେ ବର୍ଷଣ କଲେ ଏବଂ କ୍ଷେତ୍ର ଉତ୍ତମରୂପେ କର୍ଷିତ ହେଲେ ବୀଜ ଯେଉଁପରି ମହାଗୁଣଶାଳୀ ହୁଏ, ମାନୁଷୀସିଦ୍ଧି ମଧ୍ୟ ସେହିପରି ହୋଇଥାଏ । କାର୍ଯ୍ୟଦକ୍ଷ ପ୍ରାଜ୍ଞ ପୁରୁଷମାନେ ସ୍ୱୟଂ ଦୈବବଳକୁ ନିଶ୍ଚୟ ନ କରି ପୁରୁଷକାରରେ ପ୍ରବୃତ୍ତ ହୁଅନ୍ତି ।

ହେ ନରବର ! ମନୁଷ୍ୟମାନଙ୍କମଧ୍ୟରେ ସମସ୍ତେ କାର୍ଯ୍ୟାର୍ଥୀ ହୋଇ ଦୈବ ଓ ପୁରୁଷାର୍ଥଦ୍ୱାରା କାର୍ଯ୍ୟରେ ପ୍ରବୃତ୍ତ ହେବାର ଓ ତହିଁରୁ ନିବୃତ୍ତ ହୋଇଥିବାର ମଧ୍ୟ ଦେଖାଯାଆନ୍ତି । ୯ । କୃତ ପୁରୁଷାର୍ଥ ମଧ୍ୟ ଦୈବଦ୍ୱାରା ସିଦ୍ଧ ହୁଏ । ସେହି କାରଣରୁ କାର୍ଯ୍ୟକର୍ତ୍ତାଙ୍କର ଫଳ ନିର୍ବାହିତ ହୋଇ-ଥାଏ । ସମର୍ଥ ମନୁଷ୍ୟମାନଙ୍କର ଦୈବବର୍ଜିତ ପ୍ରଯତ୍ନ ସମ୍ୟକ୍‌ରୂପେ ସଫଳ

ହେଲେ ସୁଦ୍ଧା ତାହା ବିଫଳ ହୋଇଥିବାର ଦେଖାଯାଏ । ୧୧ । ମନୁଷ୍ୟ ମଧ୍ୟରେ ଅସ୍ଥିରଚିତ୍ତ ଓ ଅଳସ ପୁରୁଷମାନେ ପୁରୁଷକାରକୁ ନିନ୍ଦା କରନ୍ତି । ବୁଦ୍ଧିମାନ ମନୁଷ୍ୟମାନେ ତାହା ଗ୍ରାହ୍ୟ କରନ୍ତି ନାହିଁ । ୧୨ । ଲୋକ ମଧ୍ୟରେ କୃତକର୍ମ ବ୍ୟକ୍ତିମାନେ ପ୍ରାୟ ବିଫଳ ନ ହେବାର ଦେଖା-ଯାଆନ୍ତି ଏବଂ କେତେକ ବ୍ୟକ୍ତି ଦୁଃଖକର୍ମ ନ କରି ସୁଦ୍ଧା ମହାଫଳ ଭୋଗ କରନ୍ତି । ୧୩ ।

ଯେଉଁ ବ୍ୟକ୍ତି କୌଣସି ଚେଷ୍ଟା ନ କରି ଦୈବବଶରେ କିଂଚିତ୍ ଫଳଲାଭ କରନ୍ତି ଏବଂ ଯେଉଁ ବ୍ୟକ୍ତି ଚେଷ୍ଟା କରି ସୁଦ୍ଧା ଫଳଲାଭ କରନ୍ତି ନାହିଁ, ସେହି ଦୁହିଁଙ୍କର ଦୁର୍ଦ୍ଦଶାବସ୍ଥା ସମାନ । ୧୪ । କାର୍ଯ୍ୟଦକ୍ଷ ବ୍ୟକ୍ତି ସୁଖରେ ପ୍ରାଣଧାରଣ କରିବାକୁ ସମର୍ଥ ହୁଏ । ଦକ୍ଷ ବ୍ୟକ୍ତି ଏହି ଜୀବଲୋକ ମଧ୍ୟରେ ପ୍ରାୟ ହିତୈଷୀ ହୁଅନ୍ତି; କିନ୍ତୁ ଅଳସ ବ୍ୟକ୍ତି ସୁଖଲାଭ କରିବାକୁ ସମର୍ଥ ହୁଏ ନାହିଁ । ୧୫ । ଦକ୍ଷ ବ୍ୟକ୍ତି ଆରବ୍ଧ କାର୍ଯ୍ୟରୁ ଯଦି ଫଳଭୋଗ କରି ନ ପାରେ, ତେବେ ସେ ନିନ୍ଦନୀୟ ନୁହେଁ; ଅଥବା ସେ ଲବ୍ଧବ୍ୟ ବିଷୟ ପ୍ରାପ୍ତ ହୋଇପାରେ; କିନ୍ତୁ ଯେଉଁ ବ୍ୟକ୍ତି କର୍ମ ନ କରି ଫଳଲାଭ କରେ, ସେ ଲୋକସମାଜରେ ପ୍ରାୟ ନିନ୍ଦନୀୟ ଏବଂ ଦ୍ୱେଷ୍ୟ ହୁଏ । ୧୭ ।

ବୁଦ୍ଧିମାନ୍ ମାନବମାନଙ୍କର ମତ ଏହି ଯେ ଯେଉଁ ବ୍ୟକ୍ତି ଦୈବ ଓ ପୁରୁଷାର୍ଥକୁ ଅନାଦର କରି ଅନ୍ୟ ପ୍ରକାରରେ ପ୍ରବୃତ୍ତ ହୁଏ, ସେ ଆପେ ଆପଣାର ଅନିଷ୍ଟ କରେ । ୧୮ । ଦୈବ-କାରଣହୀନ ପ୍ରଯତ୍ନ ବା ପୁରୁଷାର୍ଥ କାରଣ ବର୍ଜିତ ପ୍ରଯତ୍ନ କିମ୍ବା ଉଭୟ କାରଣହୀନ ଯତ୍ନ ବିଫଳ ହୁଏ । ଇହଲୋକରେ ପୁରୁଷାର୍ଥବିହୀନ କର୍ମ ସିଦ୍ଧ ହୁଏ ନାହିଁ । ଯେଉଁ ବ୍ୟକ୍ତି ଦୈବକୁ ନମସ୍କାର କରି ଉତ୍ତମରୂପେ କାର୍ଯ୍ୟ ଚେଷ୍ଟା କରେ, ସେହି ଦାକ୍ଷିଣ୍ୟସମ୍ପନ୍ନ ଦକ୍ଷ ବ୍ୟକ୍ତି କେବେ ବିଫଳ ହୁଏ ନାହିଁ ।

ଯେ ବୃଦ୍ଧମାନଙ୍କ ନିକଟକୁ ଯାଇ ମଙ୍ଗଳର ବିଷୟ ପ୍ରଶ୍ନ କରେ ଏବଂ ଯେ ବୃଦ୍ଧମାନଙ୍କର ହିତବାକ୍ୟ ଶ୍ରବଣ କରେ, ତାହାର କାର୍ଯ୍ୟ ସିଦ୍ଧ ହୋଇଥାଏ । ଏଣୁ ପ୍ରତିଦିନ ପ୍ରତ୍ୟେକ ବିଷୟରେ ବୃଦ୍ଧ-ଗଣଙ୍କ ସମ୍ମତି ଗ୍ରହଣ କରିବା ଉଚିତ । ବୃଦ୍ଧମାନଙ୍କ ସମ୍ମତି, ଯୋଗ ଅର୍ଥାତ୍ ଅଲଭ୍ୟ ଲାଭ ବିଷୟରେ ଉତ୍କୃଷ୍ଟ ମୂଳ କାରଣ । କାର୍ଯ୍ୟସିଦ୍ଧି ମଧ୍ୟ ତନ୍ମୂଳା ଅଟେ । ଯେଉଁ ବ୍ୟକ୍ତି ବୃଦ୍ଧଗଣଙ୍କ ବଚନ ଶ୍ରବଣ କରି, ପୁରୁଷାର୍ଥ

ପ୍ରୟୋଗ କରନ୍ତି, ସେ ପୁରୁଷାର୍ଥର ଫଳକୁ ଅବଲମ୍ବରେ ଉତ୍ତମରୂପେ ଲାଭ କରେ । ୨୪ । ଯେଉଁ ନିର୍ବୋଧ କ୍ରୋଧ, ଲୋଭ, ଭୟ ଓ ଉଦ୍ବେଗବଶରେ ବିଷୟଲାଭର ଚେଷ୍ଟା କରେ, ସେ ଅସମର୍ଥ ଓ ଅବମାନୀ ହୋଇ ଶୀଘ୍ର ଶ୍ରୀଭ୍ରଷ୍ଟ ହୁଏ ।

ଅଦୂରଦର୍ଶୀ ଅଜିତଚିତ୍ତ ଲୁବ୍‌ଧ ଦୁର୍ଯ୍ୟୋଧନ ମୂଢ଼ତାବଶରେ ମନ୍ତ୍ରଣା ନ କରି ଏହି ଘୋରତର ସଂଗ୍ରାମ ଆରମ୍ଭ କରିଥିଲେ । ସେ କିଛି ମାତ୍ର ହିତାହିତ ବିଚାର କରନ୍ତି ନାହିଁ; ବରଂଚ ହିତବୁଦ୍ଧି ସୁହୃଜ୍ଜନମାନଙ୍କୁ ଅନାଦର କରି ଅସାଧୁଗଣଙ୍କ ସହିତ ମନ୍ତ୍ରଣାପୂର୍ବକ ଆତ୍ମୀୟମାନଙ୍କ ଦ୍ୱାରା ନିବାରିତ ହେଲେ ସୁଦ୍ଧା, ଅତିଶୟ ଗୁଣଶାଳୀ ପାଣ୍ଡବମାନଙ୍କ ସହିତ ଶତ୍ରୁତା କଲେ । ପୂର୍ବେ ଦୁର୍ଯ୍ୟୋଧନ ଅତି ଦୁଃଶୀଳ ଥିଲେ, ଏହି କାରଣରୁ ଧୈର୍ଯ୍ୟ ଧାରଣ କରିପାରିଲେ ନାହିଁ, ମିତ୍ରଗଣଙ୍କ ହିତବାକ୍ୟ ଶୁଣିଲେ ନାହିଁ । ଅତଏବ ରାଜ୍ୟଭ୍ରଷ୍ଟ ଓ ବିପଦଗ୍ରସ୍ତ ହୋଇ ପରିତାପ କରୁଅଛନ୍ତି ।

ଆମ୍ଭେମାନେ ମଧ୍ୟ ସେହି ପାପ-ପୁରୁଷର ଅନୁଗତ ହୋଇଥାଇଁ ବୋଲି ସୁଦାରୁଣା ମହତୀ ଦୁର୍ଗତି ଆମ୍ଭମାନଙ୍କୁ ସ୍ପର୍ଶ କରିଅଛି । ଏ ବିଷୟକୁ ଚିନ୍ତା କରୁ କରୁ ଆମ୍ଭ ବୁଦ୍ଧି, ଉପସ୍ଥିତ ବିପଦଦ୍ୱାରା ସନ୍ତପ୍ତ ହୋଇ କିଛି ମାତ୍ର ସ୍ୱକୀୟ ଶ୍ରେୟକୁ ବୁଝିପାରୁନାହିଁ । ମନୁଷ୍ୟକୁ କୌଣସି ବିଷୟରେ ମୋହ ଉପସ୍ଥିତ ହେଲେ ସୁହୃଜ୍ଜନମାନଙ୍କୁ ପ୍ରଶ୍ନ କରିବାର ଉଚିତ । ତାହାହେଲେ ତାହାର ବୁଦ୍ଧି ଓ ନୟ ରକ୍ଷା ପାଏ ଏବଂ ସେ କଲ୍ୟାଣର ପଥ ଦର୍ଶନ କରେ । ଅତଏବ ବୁଦ୍ଧିମାନ୍ ବ୍ୟକ୍ତି ବୁଦ୍ଧିଦ୍ୱାରା କାର୍ଯ୍ୟର ନିଦାନ ନିଶ୍ଚୟପୂର୍ବକ ବୃଦ୍ଧମାନଙ୍କୁ ପ୍ରଶ୍ନ କରିବେ । ସେମାନେ ପ୍ରଶ୍ନ ଶୁଣି ଯାହା କହିବେ, ତଦନୁସାରେ କର୍ମ କରିବା ଉଚିତ ।

ଏତେବେଳେ ଆମ୍ଭେ ତିନିଜଣ ଏକତ୍ର ହୋଇ ଧୃତରାଷ୍ଟ୍ର, ଗାନ୍ଧାରୀ ଓ ମହାମତି ବିଦୁରଙ୍କ ନିକଟକୁ ଯାଇ ପ୍ରଶ୍ନ କରିବା । ସେମାନେ ଆମ୍ଭ-ମାନଙ୍କ ପ୍ରଶ୍ନ ଶୁଣି ଯାହା କହିବେ, ତାହା କଲେ ନିଶ୍ଚୟ ଶ୍ରେୟ ହେବ ବୋଲି ଆମ୍ଭେ ବିବେଚନା କରୁଅଛୁଁ । କାର୍ଯ୍ୟସମୂହର ଆରମ୍ଭ ନ ହେଲେ କଦାପି ଅର୍ଥସଂପନ୍ନ ହୁଏ ନାହିଁ । ପୁରୁଷାର୍ଥ କରାଗଲା ଉତ୍ତାରେ ଯେଉଁମାନଙ୍କର କାର୍ଯ୍ୟ ସିଦ୍ଧ ହୁଏ ନାହିଁ, ସେମାନେ ଦୈବଦ୍ୱାରା ଉପହତ ହୋଇଥାଆନ୍ତି । ଏ ବିଷୟରେ ବିଚାର କରିବାର କର୍ତ୍ତବ୍ୟ ନୁହେ । ୩୬ ।

---

# ତୃତୀୟ ଅଧ୍ୟାୟ

ସଞ୍ଜୟ କହିଲେ, ମହାରାଜ ! ଦୁଃଖ-ଶୋକସଂଯୁକ୍ତ ଅଶ୍ୱତ୍ଥାମା କୃପାଚାର୍ଯ୍ୟଙ୍କର ଧର୍ମାର୍ଥଯୁକ୍ତ ଶୁଭବାକ୍ୟ ଶୁଣି, ପ୍ରଜ୍ୱଳିତ ଅନଳସଦୃଶ ଶୋକରେ ଦହ୍ୟମାନ ହୋଇ କ୍ରୂରଚିତ୍ତରେ ସେହି ଦୁହିଁଙ୍କୁ ପ୍ରତ୍ୟୁତ୍ତର ଦେଲେ । ୨ ।

ପ୍ରତି ପୁରୁଷଙ୍କଠାରେ ଯେଉଁ ଯେଉଁ ଶୋଭନ ବୁଦ୍ଧି ପୃଥକ୍‌ରୂପରେ ଅଛି, ସମସ୍ତେ ସେହି ନିଜ ବୁଦ୍ଧିଦ୍ୱାରା ସନ୍ତୁଷ୍ଟ ହୋଇଥାନ୍ତି । ୩ । ସମସ୍ତ ଲୋକ ଆପଣାକୁ ଅତି ବୁଦ୍ଧିମାନ ବୋଲି ଜାଣନ୍ତି । ସମସ୍ତଙ୍କ ଆତ୍ମା ବହୁମତ ଏବଂ ସମସ୍ତେ ଆପଣାକୁ ପ୍ରଶଂସା କରନ୍ତି । ୪ । ସମସ୍ତଙ୍କର ସ୍ୱୀୟ ବୁଦ୍ଧି ସାଧୁବାଦରେ ପ୍ରତିଷ୍ଠିତ । ସମସ୍ତେ ପରବୁଦ୍ଧିର ନିନ୍ଦା ଏବଂ ନିଜ ବୁଦ୍ଧିର ବାରମ୍ବାର ପ୍ରଶଂସା କରନ୍ତି । ୫ । ଭିନ୍ନ ଭିନ୍ନ କାରଣ-ସମୂହଦ୍ୱାରା ଯେଉଁମାନଙ୍କ ବୁଦ୍ଧି କାର୍ଯ୍ୟର ଉପାୟ ବିଷୟରେ ସମଭାବ ଧାରଣ କରିଅଛି, ଯେଉଁମାନେ ପରସ୍ପର ସନ୍ତୁଷ୍ଟ ହୁଅନ୍ତି ଓ ବାରମ୍ବାର ବହୁ ମାନ କରନ୍ତି, ସେହି ସମସ୍ତ ମନୁଷ୍ୟଙ୍କର ଚିତ୍ତର ସମୟରେ ସେହି ବୁଦ୍ଧି କାଳସହକାରରେ ବିପର୍ଯ୍ୟସ୍ତ ହୋଇ ବିପଦଗ୍ରସ୍ତ ହୁଏ । ବିଶେଷରେ ମନୁଷ୍ୟଗଣର ଚିତ୍ତ, ବୈଚିତ୍ର୍ୟବଶରୁ ବୈକ୍ଳବ୍ୟ ପ୍ରାପ୍ତ ହୋଇ ବିକଳ-ଭାବରେ ଉତ୍ପନ୍ନ ହୁଏ । ଯେଉଁପରି କୌଣସି ନିପୁଣ ବୈଦ୍ୟ ଯଥା-ବିଧାନରେ ବ୍ୟାଧିକ ଚିହ୍ନି, ତାହାର ଶାନ୍ତି ନିମିତ୍ତ ଔଷଧ ବିଧାନ କରନ୍ତି । ସେହିପରି ମାନବଗଣ କାର୍ଯ୍ୟସିଦ୍ଧିର ଉପାୟ ନିମିତ୍ତ ବୁଦ୍ଧି ପ୍ରକାଶ କରିଥାଆନ୍ତି । ମନୁଷ୍ୟମାନେ ନିଜ ବୁଦ୍ଧିରେ ଯୁକ୍ତହୋଇ ତାହାକୁ ନିନ୍ଦା କରନ୍ତି । ମନୁଷ୍ୟ ଯୌବନକାଳରେ ଏକପ୍ରକାର ବୁଦ୍ଧିଦ୍ୱାରା ମୋହିତ ହୁଏ, ମଧ୍ୟାବସ୍ଥାରେ ଅନ୍ୟପ୍ରକାର ବୁଦ୍ଧିକି ଅବଲମ୍ବନ କରେ ଓ ବାର୍ଦ୍ଧକ୍ୟ ସମୟରେ ତାହାର ଅନ୍ୟ ଏକ ପ୍ରକାର ବୁଦ୍ଧି ହୋଇଥାଏ । ୧୧ ।

ହେ ଭୋଜ ! ପୁରୁଷ ମହାଘୋର ବିପଦ ବା ମହାସମୃଦ୍ଧିପ୍ରାପ୍ତ ହୋଇ ବୁଦ୍ଧିର ବିକୃତିକୁ ପ୍ରକାଶ କରେ । ୧୨ । ଅକୃତପ୍ରଜ୍ଞତା ହେତୁ

ପ୍ରତ୍ୟେକ ପୁରୁଷର ସମସ୍ତ-ସମୟରେ ଭିନ୍ନ ଭିନ୍ନ ବୁଦ୍ଧି ଉତ୍ପନ୍ନ ହୋଇଥାଏ ଏବଂ ସେହି ପୁରୁଷର ସେହି ସେହି ବୁଦ୍ଧିରେ ଅନ୍ତୁଚି ଜନ୍ମେ। ପ୍ରଜ୍ଞାନୁସାରେ ନିଶ୍ଚୟ କରି ଯେଉଁ ବୁଦ୍ଧିକୁ ସାଧୁ ବୋଲି ବିବେଚିତ କରାଯାଏ, ସେହି ବୁଦ୍ଧି ଅନୁସାରେ କାର୍ଯ୍ୟ କରିବା ଉଚିତ; କାରଣ ସେହି ବୁଦ୍ଧି ପୁରୁଷର ଉଦ୍‌ଯୋଗକାରିଣୀ ଅଟେ । ୧୪ ।

ହେ ଭୋଜ ! ସମସ୍ତ ଲୋକ, ଏହା ଉଚିତ ଏହିପରି ନିଶ୍ଚୟ କରି ପ୍ରୀତିଯୁକ୍ତ ହୋଇ ମାରଣ ପ୍ରଭୃତି କର୍ମାରମ୍ଭ କରନ୍ତି । ୧୫ । ସମସ୍ତ ଲୋକ ଯୁକ୍ତ ଓ ସ୍ୱକୀୟ ବୁଦ୍ଧି ଅବଲମ୍ବନ କରି ବିବିଧ ଚେଷ୍ଟା କରନ୍ତି ଏବଂ ସେମାନେ ତାହାକୁ ହିତ ବୋଲି ଜାଣନ୍ତି । ୧୬ । ଅଦ୍ୟ ଆମ୍ଭର ଏହି ବ୍ୟସନସମ୍ଭବା ଯେଉଁ ବୁଦ୍ଧି ଉତ୍ପନ୍ନ ହୋଇଅଛି, ସେ ଆମ୍ଭର ଶୋକ ବିନଷ୍ଟ କରିବ, ଅତଏବ ସେହି ବୁଦ୍ଧିର ବିଷୟ ଆପଣ ଦୁହିଁଙ୍କ ନିକଟରେ ପ୍ରକାଶ କରିବୁଁ । ୧୭ ।

ଗୁଣସଂପନ୍ନ ପ୍ରଜାପତି ପ୍ରଜାମାନଙ୍କୁ ସର୍ଜନ କରି ସେମାନଙ୍କର କର୍ମ-ବିଧାନପୂର୍ବକ ପ୍ରତିବର୍ଣ୍ଣରେ ଗୋଟିଏ ଗୋଟିଏ ଗୁଣ ସମାଧାନ କରିଅଛନ୍ତି ୧୮ । ବ୍ରାହ୍ମଣଙ୍କଠାରେ ଉତ୍କୃଷ୍ଟ ଦମଗୁଣ, କ୍ଷତ୍ରିୟମାନଙ୍କଠାରେ ଉତ୍ତମ ତେଜୋଗୁଣ, ବୈଶ୍ୟଠାରେ ଦକ୍ଷତା ଏବଂ ଶୂଦ୍ରଠାରେ ସର୍ବବର୍ଣ୍ଣର ଅନୁକୂଳତା ବିଧାନ କରିଅଛନ୍ତି । ୧୯ । ଅଦାନ୍ତ ବ୍ରାହ୍ମଣ ଅସାଧୁ, ନିସ୍ତେଜା କ୍ଷତ୍ରିୟ ଅଧମ, ଅଦକ୍ଷ ବୈଶ୍ୟ ଏବଂ ପ୍ରତିକୂଳ ଶୂଦ୍ର ନିନ୍ଦନୀୟ ଅଟନ୍ତି । ୨୦ । ଆମ୍ଭେ ବ୍ରାହ୍ମଣଗଣର ପୂଜିତ ଶ୍ରେଷ୍ଠକୁଳରେ ଜନ୍ମଗ୍ରହଣ କରିଅଛୁଁ । ମନ୍ଦଭାଗ୍ୟବଶତଃ କ୍ଷତ୍ରିୟଧର୍ମକୁ ଆଶ୍ରୟ କରି ଆମ୍ଭେ ଯଦି ବ୍ରାହ୍ମଣ୍ୟର ଆଶ୍ରୟ ଗ୍ରହଣପୂର୍ବକ ଶମ ପ୍ରଭୃତି ସୁମହତ୍ କାର୍ଯ୍ୟ କରିବୁଁ, ତାହା ଆମ୍ଭପକ୍ଷରେ କିଛି ସାଧୁସମ୍ମତ ନୁହେ । ୨୨ । ଆମ୍ଭେ ଯୁଦ୍ଧରେ ଦିବ୍ୟଶରାସନ ଓ ଦିବ୍ୟାସ୍ତ୍ର ସମୂହ ଧାରଣ କରି, ପିତାଙ୍କୁ ନିହତ ହେବାର ଦେଖି ସଭା ମଧ୍ୟରେ କଣ କହିବୁ ? ଅତଏବ ଆମ୍ଭେ ଅଦ୍ୟ ଅଭିଳାଷାନୁସାରେ କ୍ଷତ୍ରିୟ-ଧର୍ମର ଉପାସକଗଣଙ୍କର ରାଜା ଦୁର୍ଯ୍ୟୋଧନଙ୍କ ଏବଂ ମହାତ୍ମା ପିତାଙ୍କର ପଦବୀକୁ ଗମନ କରିବୁଁ; ଅର୍ଥାତ୍ ଋଣ ପରିଶୋଧ କରିବୁଁ । ୨୪ ।

ଏତେବେଳେ ଜୟଲକ୍ଷଣଧାରୀ ପାଞ୍ଚାଳଗଣ ହର୍ଷଯୁକ୍ତ ହୋଇ ବାହନ ଓ କବଚ ପରିତ୍ୟାଗପୂର୍ବକ ବିଶ୍ୱସ୍ତଭାବରେ ନିଦ୍ରିତ ହୋଇଅଛନ୍ତି । ୨୫ । ସେମାନେ ଆପଣାକୁ ବିଜୟୀ ବିବେଚନା କରି ପରିଶ୍ରମକ୍ଲାନ୍ତ ହୋଇ ଶ୍ରାନ୍ତ ଅଛନ୍ତି । ଅଦ୍ୟ ରଜନୀରେ ସ୍ୱୀୟ ଶିବିରରେ ସୁସ୍ଥ ହୋଇ ପ୍ରସୁପ୍ତ ହୋଇଥିବା ସେହି ପାଞ୍ଚାଳଗଣଙ୍କର ସୈନ୍ୟଶିବିରକୁ ପ୍ରବେଶ କରି ବିନାଶ କରିବୁଁ । ଶିବିରରେ ପ୍ରେତ ସଦୃଶ ଅଚେତନ ଅବସ୍ଥାପ୍ରାପ୍ତ ସେହି ସମସ୍ତଙ୍କୁ ଖଣ୍ଡନ କରି, ଇନ୍ଦ୍ର ଯେଉଁପରି ଦାନବଗଣଙ୍କୁ ନିସୂଦନ କରିଥିଲେ, ତଦ୍‌ବତ୍ ଆମ୍ଭେ ସେହିମାନଙ୍କୁ ବିନଷ୍ଟ କରିବୁ । ପ୍ରଦୀପ୍ତ ଅନଳ ଯେଉଁପରି ତୃଣକାଷ୍ଠ ପ୍ରଭୃତି ଧ୍ୱଂସ କରେ, ଆମ୍ଭେ ସେହିପରି ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ସମସ୍ତ ପାଞ୍ଚାଳଗଣଙ୍କୁ ଏକାବେଳକେ ସଂହାର କରିବୁଁ । ହେ ସାଧୁ-ଶ୍ରେଷ୍ଠ ! ଆମ୍ଭେ ସମସ୍ତ ପାଞ୍ଚାଳଗଣଙ୍କୁ ସଂହାର କରି ଶାନ୍ତିଲାଭ କରିବୁଁ । ୨୯ । ପିନାକପାଣି ରୁଦ୍ର ସ୍ୱୟଂ ସମ୍ୟକ୍ କ୍ରୋଧଯୁକ୍ତ ହୋଇ ପଶୁମଣ୍ଡଳୀ ମଧ୍ୟରେ ଯେଉଁପରି ବିଚରଣ କରନ୍ତି, ଆମ୍ଭେ ସେହିପରି ଯୁଦ୍ଧରେ ପାଞ୍ଚାଳଗଣଙ୍କୁ ସଂହାର କରି ସେମାନଙ୍କ ମଧ୍ୟରେ ସଞ୍ଚାର କରିବୁଁ । ୩୦ । ଅଦ୍ୟ ଆମ୍ଭେ ପାଞ୍ଚାଳମାନଙ୍କୁ ବିଚ୍ଛିନ୍ନ ଓ ନିହତ କରି ହୃଷ୍ଟ ହୋଇ ଯୁଦ୍ଧରେ ପାଣ୍ଡବମାନଙ୍କୁ ପୀଡ଼ିତ କରିବୁଁ । ୩୧ । ଆମ୍ଭେ ଅଦ୍ୟ ସମସ୍ତ ପାଞ୍ଚାଳଗଣଦ୍ୱାରା ସମର-ଭୂମିକୁ ମୂର୍ତ୍ତିମତୀ କରି ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ସଂହାରପୂର୍ବକ ପିତାଙ୍କ ଋଣ ପରିଶୋଧ କରିବୁଁ । ୩୨ । ଅଦ୍ୟ ଆମ୍ଭେ ପାଞ୍ଚାଳଗଣଙ୍କୁ ଦୁର୍ଯ୍ୟୋଧନ, କର୍ଣ୍ଣ, ଭୀଷ୍ମ ଓ ଜୟଦ୍ରଥଙ୍କ ଦୁର୍ଗମ ପଥକୁ ପ୍ରେରଣ କରାଇବୁଁ । ୩୩ । ଆମ୍ଭେ ଅଦ୍ୟ ରାତ୍ରିରେ ବଳପୂର୍ବକ ପଶୁମସ୍ତକ ସଦୃଶ ପାଞ୍ଚାଳରାଜ ଧୃଷ୍ଟଦ୍ୟୁମ୍ନଙ୍କ ଅବଲମ୍ବରେ ପ୍ରମଥନ କରିବୁଁ । ୩୪ । ହେ ଗୌତମ ! ଆମ୍ଭେ ଅଦ୍ୟ ରଜନୀରେ ଯୁଦ୍ଧଭୂମିରେ ଶାୟିତ ପାଣ୍ଡବ ଓ ପାଞ୍ଚାଳ ସନ୍ତାନମାନଙ୍କୁ ଶାଣିତ ଖଡ୍‌ଗଦ୍ୱାରା ପ୍ରମଥିତ କରିବୁଁ । ୩୫ । ହେ ମହାମତେ ! ଅଦ୍ୟ ରଜନୀରେ ସେହି ପାଞ୍ଚାଳ ସେନାର ସୌପ୍ତିକ ଅବସ୍ଥାରେ ଆମ୍ଭେ ସୈନ୍ୟମାନଙ୍କୁ ନିହତ କରି କୃତକୃତ୍ୟ ଏବଂ ସୁଖୀ ହେବୁଁ ।୩୬।

# ଚତୁର୍ଥ ଅଧ୍ୟାୟ

କୃପାଚାର୍ଯ୍ୟ କହିଲେ, ହେ ଅଚ୍ୟୁତ ! ଭାଗ୍ୟକ୍ରମରେ ପ୍ରତିକାର ବିଷୟରେ ତୁମ୍ଭର ଏହିପରି ବୁଦ୍ଧି ହୋଇଅଛି । ସ୍ୱୟଂ ବଜ୍ରପାଣି ଇନ୍ଦ୍ରଦେବ ସୁଦ୍ଧା ତୁମ୍ଭଙ୍କୁ ଏହି ବିଷୟରୁ ନିବାରଣ କରିପାରିବେ ନାହିଁ । ୧ । ପ୍ରଭାତ ସମୟରେ ଆମ୍ଭେ ଦୁହେଁ ଏକତ୍ରିତ ହୋଇ ତୁମ୍ଭର ଅନୁଗମନ କରିବୁଁ । ତୁମ୍ଭେ ଆଦ୍ୟ ରାତ୍ରରେ ଧ୍ୱଜ ଓ କବଚ ପରିତ୍ୟାଗ ପୂର୍ବକ ବିଶ୍ରାମ କର । ୨ । ତୁମ୍ଭେ ଯେତେବେଳେ ଶତ୍ରୁଗଣଙ୍କ ଅଭିମୁଖକୁ ଗମନ କରିବ, ତତ୍ସମୟରେ ଆମ୍ଭେ ଓ ସାତ୍ୱତ କୃତବର୍ମା କବଚ ଧାରଣ କରି ରଥାରୋହଣପୂର୍ବକ ତୁମ୍ଭର ଅନୁଗମନ କରିବୁ । ୩ ।

ହେ ରଥିବର ! ତୁମ୍ଭେ କାଲି ଆମ୍ଭ ଦୁହିଁଙ୍କ ସହିତ ମିଳିତ ହୋଇ ଅନୁଚରଯୁକ୍ତ ପାଞ୍ଚାଳ ଶତ୍ରୁମାନଙ୍କୁ ବିକ୍ରମପୂର୍ବକ ସଂହାର କରିବ । ୪ । ତୁମ୍ଭେ ବିକ୍ରମ ପ୍ରକାଶ କରିବାକୁ ସମର୍ଥ ଅଟ । ଏତେବେଳେ ଏହି ରାତ୍ରିରେ ବିଶ୍ରାମ କର । ହେ ତାତ ! ତୁମ୍ଭେ ବହୁକାଳ ଜାଗରଣ କରିଅଛ । ଅଦ୍ୟ ରାତ୍ରିରେ ସଂପୂର୍ଣ୍ଣଭାବରେ ଶୟନ କର । ୫ । ହେ ମାନଦ ! ତୁମ୍ଭେ ବିଶ୍ରାନ୍ତ, ବିନିଦ୍ର ଓ ସୁସ୍ଥ ଚିତ୍ତ ହୋଇ ଯୁଦ୍ଧରେ ଶତ୍ରୁବୃନ୍ଦ ସହିତ ସମର କରି ସେମାନଙ୍କୁ ସଂହାର କରିବ, ଏଥିରେ ସଂଶୟ ନାହିଁ । ୬ । ତୁମ୍ଭେ ରଥିଗଣ ମଧ୍ୟରେ ଶ୍ରେଷ୍ଠ । ତୁମ୍ଭେ ଯଦି ଉତ୍କୃଷ୍ଟ ଅସ୍ତ୍ର ଗ୍ରହଣ କରିବ, ତେବେ ଦେବରାଜ ଇନ୍ଦ୍ର ହେଲେ ସୁଦ୍ଧା ତୁମ୍ଭଙ୍କୁ ଜୟ କରିବାକୁ ଉତ୍ସାହିତ ହେବେ ନାହିଁ । ସଂଗ୍ରାମରେ ସଂରବ୍ଧ ଦ୍ରୋଣପୁତ୍ର କୃତବର୍ମାଙ୍କଦ୍ୱାରା ରକ୍ଷିତ ଓ କୃପଙ୍କ ସହିତ ମିଳିତ ହୋଇ ଯୁଦ୍ଧଯାତ୍ରା କଲେ ଅନ୍ୟ ଅବା କିଏ, ଦେବରାଜ ସୁଦ୍ଧା ତାହାଙ୍କ ସହିତ ଯୁଦ୍ଧ କରିପାରିବେ ନାହିଁ । ୮ । ଅତଏବ ଅଦ୍ୟ ରାତ୍ରିରେ ଆମ୍ଭେମାନେ ବିନିଦ୍ର, ବିଶ୍ରାନ୍ତ ଓ ବିଗତଜ୍ୱର ହୋଇ ପ୍ରଭାତ ସମୟରେ ଶତ୍ରୁଗଣଙ୍କୁ ସଂହାର କରିବା । ୯ ।

ତୁମ୍ଭର ଅସ୍ତ୍ରସମୂହ ଦିବ୍ୟ ଓ ଆମ୍ଭର ମଧ୍ୟ ଅସ୍ତ୍ରସମୂହ ଦିବ୍ୟ ସଂଶୟ ନାହିଁ । କୃତବର୍ମା ମଧ୍ୟ ମହାଧନୁର୍ଦ୍ଧର ଏବଂ ଅତିଶୟ ରଣପଣ୍ଡିତ,

ଅତଏବ ହେ ତାତ ! ଆମ୍ଭେମାନେ ସମସ୍ତେ ମିଳିତ ହୋଇ ଯୁଦ୍ଧରେ ସମାଗତ ଶତ୍ରୁମାନଙ୍କୁ ବଳପୂର୍ବକ ସଂହାର କରି, ପ୍ରଚୁର ପ୍ରୀତିପ୍ରାପ୍ତ ହେବା ।୧୧। ଏତେବେଳେ ତୁମ୍ଭେ ବ୍ୟଗ୍ର ନ ହୋଇ ବିଶ୍ରାମ କର ଏବଂ ଏହି ରାତ୍ରିରେ ସୁଖରେ ନିଦ୍ରା ଲାଭକର । ତୁମ୍ଭେ ରଥୀ ହୋଇ ସଙ୍ଗର ଗମନ କଲେ ଶତ୍ରୁତାପନ ଧନୁର୍ଦ୍ଧର କୃତବର୍ମା ଓ ଆମ୍ଭେ ବଦ୍ଧକବଚ ହୋଇ ରଥରେ ଆରୋହଣପୂର୍ବକ ତୁମ୍ଭର ଅନୁଗାମୀ ହେବୁଁ ।୧୩। ତୁମ୍ଭେ ଶତ୍ରୁ ଶିବିରକୁ ଗମନ କରି, ନିଜ ନାମ ଶ୍ରବଣ କରାଇ ଯୁଦ୍ଧରେ ପ୍ରବୃତ୍ତ ବୈରିଗଣଙ୍କୁ ବିନଷ୍ଟ କରିବ ।୧୪। ପ୍ରଭାତରେ ନିର୍ମଳ ଦିବସରେ ବିପକ୍ଷଗଣଙ୍କୁ ବିମର୍ଦ୍ଦନ କରି ମହାସୁରବୃନ୍ଦର ନିସୂଦନକାରୀ ଇନ୍ଦ୍ରଙ୍କ ସଦୃଶ ବିହାର କର ।୧୫। ସର୍ବଦାନବନିସୂଦନ ଇନ୍ଦ୍ର ଯେଉଁପରି ଦାନବସେନା ଜୟ କରିବାକୁ ସମର୍ଥ, ସେହିପରି ତୁମ୍ଭେ କ୍ରୋଧଯୁକ୍ତ ହେଲେ ପାଞ୍ଚାଳସେନା ଜୟ କରିବାକୁ ସମର୍ଥ ଅଛ ।୧୬। ତୁମ୍ଭେ କୃତବର୍ମାଙ୍କଦ୍ୱାରା ରକ୍ଷିତ ଓ ଆମ୍ଭ ସହିତ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ବଜ୍ରପାଣି ପୁରନ୍ଦର ସୁଦ୍ଧା ତୁମ୍ଭ ପ୍ରତାପ ସହ୍ୟ କରିପାରିବେ ନାହିଁ ।୧୭।

ହେ ତାତ ! କୃତବର୍ମା ଓ ଆମ୍ଭେ ସଂଗ୍ରାମରେ ପାଣ୍ଡବମାନଙ୍କୁ ଜୟ ନ କରି କଦାପି କୌଣସି ସ୍ଥାନକୁ ଯିବୁ ନାହିଁ ।୧୮। ପାଣ୍ଡବମାନଙ୍କ ସହିତ କ୍ରୋଧଯୁକ୍ତ ପାଞ୍ଚାଳମାନଙ୍କୁ ସଂଗ୍ରାମରେ ହତ କରି, ସମସ୍ତେ ଯୁଦ୍ଧରୁ ନିବୃତ୍ତ ହେବା ଅଥବା ଆମ୍ଭେମାନେ ହତ ହୋଇ ସୁରଲୋକକୁ ଗମନ କରିବା ।୧୯। ହେ ଅନଘ ! ହେ ମହାବାହୋ ! ଆମ୍ଭେମାନେ ପ୍ରଭାତରେ ସମସ୍ତ ଉପାୟଦ୍ୱାରା ଯୁଦ୍ଧରେ ତୁମ୍ଭର ସହାୟ ହେବୁଁ, ଏହା ସତ୍ୟ କହୁଅଛୁଁ ।୨୦।

ହେ ମହାରାଜ ! ତତ୍ପରେ ଅଶ୍ୱତ୍ଥାମା ମାତୁଳଙ୍କର ଏତାଦୃଶ ହିତବାକ୍ୟ ଶୁଣି କ୍ରୋଧସଂରକ୍ତ ଲୋଚନରେ ତାହାଙ୍କୁ କହିଲେ, ହେ ମାତୁଳ ! ଆତୁର, ଅମର୍ଷଯୁକ୍ତ, ଅର୍ଥଚିନ୍ତାପରାୟଣ ଏବଂ କାମିନୀକାମୁକ ବ୍ୟକ୍ତିର ନିଦ୍ରା ହୁଏ ନାହିଁ । ଏହି ଚତୁଷ୍ଟୟ ମଧ୍ୟରେ ଅନ୍ୟତର ଅମର୍ଷ ଆମ୍ଭର ନିଦ୍ରାନାଶ କରୁଅଛି । ଏହାଠାରୁ ଇହଲୋକରେ ଆଉ ଅଧିକ ଦୁଃଖର ବିଷୟ କଣ ଅଛି ? ପିତାଙ୍କ ବଧ ବିଷୟ ସ୍ମରଣ କରି ଦିବାରାତ୍ର

ଆମ୍ଭର ହୃଦୟ ଦଗ୍ଧ ହେଉଅଛି, କଦାପି ଶାନ୍ତ ହେଉନାହିଁ । ପାପାତ୍ମା ପାଞ୍ଚାଳ ଆମ୍ଭ ପିତାଙ୍କୁ ଯେଉଁପରି ନିହତ କରିଅଛି, ତାହା ଆପଣ ସାକ୍ଷାତ୍‌ରେ ଦେଖିଅଛନ୍ତି । ସେହି ସମସ୍ତ ବିଷୟ ଆମ୍ଭର ମର୍ମକୁ ଛେଦନ କରୁଅଛି । ମାଦୃଶ ବ୍ୟକ୍ତି ଏତାଦୃଶ ପିତୃବଧବୃତ୍ତାନ୍ତ ଶ୍ରବଣ କରି ମୁହୂର୍ତ୍ତକାଳ ପର୍ଯ୍ୟନ୍ତ କ'ଣ ପ୍ରାଣ ଧାରଣ କରି ରହିପାରେ ?

ଦ୍ରୋଣ ହତ ହୋଇଅଛନ୍ତି—ଏହି ବାକ୍ୟ ପାଞ୍ଚାଳଗଣଙ୍କ ମୁଖରୁ ଯେତେବେଳେ ଆମ୍ଭେ ଶୁଣିଲୁଁ, ସେତେବେଳରୁ ଯୁଦ୍ଧରେ ଧୃଷ୍ଟଦ୍ୟୁମ୍ନଙ୍କୁ ନିହତ ନ କରି ଜୀବନଧାରଣ କରିବାକୁ ଉତ୍ସାହିତ ହେଉନାହୁଁ । ୨୭ । ଆମ୍ଭର ପିତାଙ୍କୁ ନିହତ କରିଥିବାରୁ ସେ ଆମ୍ଭଦ୍ୱାରା ବଧ ହେବାର ଉପଯୁକ୍ତ ଅଟନ୍ତି ଏବଂ ଯେଉଁ ସମସ୍ତ ପାଞ୍ଚାଳଗଣ ତାହାଙ୍କ ସହଗାମୀ ହୋଇଥିଲେ, ସେମାନେ ମଧ୍ୟ ଆମ୍ଭର ବଧ୍ୟ ଅଟନ୍ତି ।

ଭଗ୍ନଉରୁ ନରପାଳଙ୍କର ଯେଉଁ ବିଳାପବାକ୍ୟ ଆମ୍ଭେ ଶ୍ରବଣ କରିଅଛୁଁ, ତାହା କେଉଁ କ୍ରୂରବ୍ୟକ୍ତିର ହୃଦୟକୁ ଦଗ୍ଧ ନ କରିବ । ସେହି ଭଗ୍ନୋରୁ ରାଜାଙ୍କ ତାଦୃଶ ବାକ୍ୟ ଶୁଣି କେଉଁ ନିର୍ଦ୍ଦୟ ବ୍ୟକ୍ତିର ମଧ୍ୟ ନୟନଯୁଗଳରୁ ଅନର୍ଗଳ ନେତ୍ରଜଳ ବିଗଳିତ ନ ହେବ ? ସେ ଆମ୍ଭର ମିତ୍ରପକ୍ଷ, ଆମ୍ଭେ ଜୀବିତ ଥାଉଁ ଥାଉଁ ସେ ପରାଜିତ ହେଲେ । ଅତଏବ ଜଳବେଗ ଯେଉଁପରି ସାଗରକୁ ବର୍ଦ୍ଧିତ କରେ, ସେହିପରି ରାଜା ଦୁର୍ଯ୍ୟୋଧନ ଆମ୍ଭର ଶୋକସାଗରକୁ ବର୍ଦ୍ଧିତ କରୁଅଛନ୍ତି । ଏତେବେଳେ ଆମ୍ଭେ ଏକାଗ୍ରଚିତ୍ତ ହୋଇଅଛୁଁ; ଅତଏବ ଆମ୍ଭର ନିଦ୍ରା କେଉଁଠାରେ ଅଛି, ସୁଖ ଅବା କେଉଁଠାରେ ଅଛି ?

ହେ ମାତୁଳ ! ବାସୁଦେବ ଓ ଅର୍ଜ୍ଜୁନଙ୍କ ଦ୍ୱାରା ପରିରକ୍ଷିତ ସେହି ପଞ୍ଚାଳମାନଙ୍କୁ ଆମ୍ଭେ ମହେନ୍ଦ୍ରଙ୍କଦ୍ୱାରା ଅପରାଜିତ ବୋଲି ଜ୍ଞାନ କରୁଅଛୁଁ ।୩୧। ଏବଂ ଆମ୍ଭେ ଏହି ସମୁତ୍‌ଥିତ କ୍ରୋଧକୁ କଦାପି ସଂଯତ କରିପାରିବୁ ନାହିଁ । ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ଏହି କ୍ରୋଧରୁ ନିବୃତ୍ତ କରାଇବ, ତାଦୃଶ ଲୋକକୁ ଆମ୍ଭେ ଏହି ପୃଥିବୀ ମଧ୍ୟରେ ଦେଖୁନାହୁଁ । ଆମ୍ଭ ବୁଦ୍ଧିରେ ଏହି କଥା ନିଶ୍ଚିତ ହୋଇଅଛି, ଏହା ସାଧୁସମ୍ମତ ବୋଲି ଆମ୍ଭଙ୍କୁ ଜଣାଯାଏ । ବାର୍ତ୍ତାବହଗଣ ଆମ୍ଭର ମିତ୍ରମାନଙ୍କ ପରାଭବବାର୍ତ୍ତା

ପ୍ରକାଶ କରୁଅଛନ୍ତି । ସେହି ମିତ୍ରପରାଭବ ଓ ପାଣ୍ଡବଗଣଙ୍କ ବିଜୟ ଆମ୍ଭ ହୃଦୟକୁ ଦଗ୍ଧ କଲାପରି ଜଣାଯାଉଅଛି । ଅତଏବ ଆମ୍ଭେ ଅଦ୍ୟ ରାତିରେ ସୁପ୍ତ ଶତ୍ରୁଗଣଙ୍କୁ ବିମର୍ଦ୍ଦନ କରି ବିଶ୍ରାମ କରିବୁଁ ଓ ବ୍ୟାଧିଶୂନ୍ୟ ହୋଇ ନିଦ୍ରାର ସୁଖାନୁଭବ କରିବୁଁ । ୩୪ ।

---

## ପଞ୍ଚମ ଅଧ୍ୟାୟ

କୃପାଚାର୍ଯ୍ୟ କହିଲେ—ଆମ୍ଭର ବିବେଚନା ହୁଏ, ଅଜିତେନ୍ଦ୍ରିୟ ଦୁର୍ବୁଦ୍ଧି ବ୍ୟକ୍ତି ସେବା କଲେ ସୁଦ୍ଧା ତାହାକୁ ସମସ୍ତ ଧର୍ମାର୍ଥ ତତ୍ତ୍ୱ ଜଣାଇବାର ଉଚିତ ନୁହେଁ । ୧ । ସେହିପରି ଯେଉଁ ବ୍ୟକ୍ତି ମେଧାବୀ ହୋଇ ବିନୟ ଶିକ୍ଷା କରି ନ ଥାଏ, ସେ ମଧ୍ୟ ଧର୍ମାର୍ଥର ତତ୍ତ୍ୱ କିଛି ଜାଣେ ନାହିଁ । ୨ । ଦର୍ବୀ ଅର୍ଥାତ୍ ଚାଟୁ ଯେଉଁପରି ସୂପରସର ଆସ୍ୱାଦନ ଜାଣିପାରେ ନାହିଁ, ତଦ୍‌ବତ୍ ଜଡ଼ବୁଦ୍ଧିଶୂର ପୁରୁଷ ଚିରକାଳ ପର୍ଯ୍ୟନ୍ତ ପଣ୍ଡିତର ଉପାସନା କଲେ ସୁଦ୍ଧା ଧର୍ମଜ୍ଞ ହୋଇପାରେ ନାହିଁ ଏବଂ ରସନା ଯେଉଁପରି ସୂପରସର ସ୍ୱାଦ ଗ୍ରହଣ କରେ, ସେହିପରି ପ୍ରାଜ୍ଞବ୍ୟକ୍ତି ମୁହୂର୍ତ୍ତିକ ସମୟ ମାତ୍ର ପଣ୍ଡିତର ଉପାସନା କରି, ବିନା ବିଳମ୍ବରେ ଧର୍ମ-ତତ୍ତ୍ୱ ସବୁ ଅବଗତ ହେବାକୁ ସମର୍ଥ ହୁଏ । ୪ ।

ସଂଯତେନ୍ଦ୍ରିୟ ସେବକ ମେଧାବୀ ପୁରୁଷ ସମସ୍ତ ଆଗମାର୍ଥ ଜାଣନ୍ତି ଏବଂ ଗ୍ରାହ୍ୟ ବିଷୟରେ ବିରୋଧ କରନ୍ତି ନାହିଁ । ୩ । କୁମନ୍ତ୍ରସମ୍ପନ୍ନ ଅଭିମାନୀ ଦୁରାତ୍ମା ପାପ-ପୁରୁଷ ଦୈବକଲ୍ୟାଣ କରି ଉପଦିଷ୍ଟ ବାକ୍ୟକୁ ପରିତ୍ୟାଗ କରି ବହୁ ପାପକର୍ମ କରେ । ସହାୟସମ୍ପନ୍ନ ସୁହୃଦ ସମୂହ ପାପକର୍ମରୁ ନିଷେଧ କରନ୍ତି । ଲକ୍ଷ୍ମୀବାନ ପୁରୁଷ ପାପରୁ ନିବୃତ୍ତ ହୁଅନ୍ତି । ଲକ୍ଷ୍ମୀହୀନ ପୁରୁଷ କଦାପି ନିବୃତ୍ତ ହୁଅନ୍ତି ନାହିଁ । ୭ । କ୍ଷିପ୍ତଚିତ୍ତ ବ୍ୟକ୍ତି ଯେଉଁପରି ବହୁବିଧ ନ୍ୟୂନାଧିକ ବାକ୍ୟଦ୍ୱାରା ନିୟମିତ ହୁଏ, ସେହିପରି ସେ ସୁହୃଦ କର୍ତ୍ତୃକ ଶାନ୍ତ ହୋଇଥାଏ । ସୁହୃଦର ଅଶକ୍ୟ ହେଲେ ସେ ଅବସନ୍ନ ହୁଏ । ୮ । ପ୍ରାଜ୍ଞଗଣ କୌଣସି ବୁଦ୍ଧିମାନ୍ ବନ୍ଧୁକୁ ପାପକର୍ମ କରିବାର ଦେଖିଲେ ଶକ୍ତି ଅନୁସାରେ ତାହାକୁ ବାରମ୍ବାର ନିଷେଧ କରନ୍ତି । ୯ ।

ଅତଏବ ହେ ବତ୍ସ ! ତୁମ୍ଭେ ମଙ୍ଗଳ ବିଷୟରେ ଚିତ୍ତ ସମାଧାନ-ପୂର୍ବକ ଆପେ ଆପଣାଙ୍କୁ ନିୟମିତ କରି, ଆମ୍ଭ ବାକ୍ୟ ରକ୍ଷା କର; ତାହାହେଲେ ପରେ ଅନୁତାପ କରିବ ନାହିଁ । ସୁପ୍ତ ବ୍ୟକ୍ତିମାନଙ୍କୁ ବଧ କରିବାର ଲୋକ ମଧ୍ୟରେ ଧର୍ମାନୁସାରେ ପ୍ରଶଂସ୍ୟ ନୁହେଁ । ସେହିପରି ଯେଉଁମାନେ ଅସ୍ତ୍ରତ୍ୟାଗ କରିଥାଆନ୍ତି, ରଥ ଓ ଅଶ୍ୱ ପରିତ୍ୟାଗ କରିଥାନ୍ତି । 'ଆମ୍ଭେ ତୁମ୍ଭର', ଏହି କଥା କହି ଯେଉଁମାନେ ଶରଣାଗତ ହୁଅନ୍ତି; ଯେଉଁମାନଙ୍କର କେଶପାଶ ବିମୁକ୍ତ ହୋଇଥାଏ ଏବଂ ଯେଉଁମାନଙ୍କର ବାହନ ହତ ହୋଇଥାଏ, ସେମାନଙ୍କୁ ବଧ କରିବାର ମଧ୍ୟ ପ୍ରଶଂସନୀୟ ନୁହେଁ । ୧୨ ।

ଅଦ୍ୟ ରାତ୍ରିରେ ସମସ୍ତ ପାଞ୍ଚାଳଗଣ କବଚ ବିମୋଚନ କରି ପ୍ରେତ-ସଦୃଶ ଅଚେତନ ହୋଇ ବିଶ୍ୱସ୍ତଭାବରେ ନିଦ୍ରାର ସୁଖ ଅନୁଭବ କରୁଅଛନ୍ତି । ୧୩ । ଯେଉଁ କ୍ରୂର ପୁରୁଷ ସେମାନଙ୍କର ସେହିପରି ଅବସ୍ଥାରେ ଦ୍ରୋହ କରିବେ, ସେ ନିଶ୍ଚୟ ଦୁସ୍ତର ଅଗାଧ ନରକସାଗରରେ ନିମଗ୍ନ ହେବେ । ୧୪ । ତୁମ୍ଭେ ଲୋକ ମଧ୍ୟରେ ସମସ୍ତ ଅସ୍ତ୍ରବିଶାରଦ ଶ୍ରେଷ୍ଠ ବୋଲି ବିଖ୍ୟାତ ହୋଇଅଛ; ଅତଏବ ଜନ-ସମାଜରେ କଦାପି ତୁମ୍ଭର ଅଣୁମାତ୍ର ପାପ ସଂଚୟ ନୋହୁ । ୧୫ । କାଲି ସୂର୍ଯ୍ୟ ଉଦିତ ହେଲାପରେ ତୁମ୍ଭେ ମଧ୍ୟ ପ୍ରଭାକର ସଦୃଶ ତେଜସ୍ୱୀ ହେବ । ସେତେବେଳେ ସମସ୍ତଙ୍କ ସାକ୍ଷାତରେ ତୁମ୍ଭେ ଯୁଦ୍ଧରେ ଶତ୍ରୁଗଣଙ୍କୁ ଜୟ କରିବ । ୧୬ । ଶୁକ୍ଳ-ବସ୍ତ୍ରରେ ରକ୍ତବର୍ଣ୍ଣର ଉପନ୍ୟାସ ପରି ତୁମ୍ଭଠାରେ ବିଗର୍ହିତ କର୍ମ ଅସମ୍ଭାବିତ ଅଟେ ବୋଲି ଆମ୍ଭେ ବିବେଚନା କରୁଅଛୁ । ୧୭ ।

ଅଶ୍ୱତ୍ଥାମା କହିଲେ, ହେ ମାତୁଳ ! ଆପଣ ଉଚିତ କଥା କହିଲେ, ସଂଶୟ ନାହିଁ; କିନ୍ତୁ ପାଣ୍ଡବମାନେ ଏହି ଧର୍ମ-ସେତୁକୁ ଶତ ପ୍ରକାରରେ ବିଦଳିତ କରିଅଛନ୍ତି । ୧୮ । ମହୀପାଳଗଣଙ୍କ ପ୍ରତ୍ୟକ୍ଷରେ ଏବଂ ଆପଣମାନଙ୍କ ନିକଟରେ ଆମ୍ଭ ପିତା ଶସ୍ତ୍ର ପରିତ୍ୟାଗ କଲାରୁ ଧୃଷ୍ଟଦ୍ୟୁମ୍ନଙ୍କଦ୍ୱାରା ନିପାତିତ ହେଲେ । ୧୯ । ରଥୀବର କର୍ଣ୍ଣଙ୍କ ରଥଚକ୍ର ପତିତ ହେବାରୁ ସେ ଯେତେବେଳେ ପରମବିପଦରେ ନିମଗ୍ନ ହେଲେ, ତେତେବେଳେ ଗାଣ୍ଡୀବଧାରୀ ଧନଞ୍ଜୟ ତାହାଙ୍କୁ ନିହତ କଲେ । ୨୦ । ସେହିପରି ଶାନ୍ତନୁପୁତ୍ର ଭୀଷ୍ମ ନ୍ୟସ୍ତଶସ୍ତ୍ର ଓ ନିରାୟୁଧ ହେବାରୁ ଅର୍ଜ୍ଜୁନ

ଶିଖଣ୍ଡୀଙ୍କୁ ଅଗ୍ରରେ ରଖି ତାହାଙ୍କୁ ନିହତ କଲେ । ୨୧ । ମହାଧନୁର୍ଦ୍ଧର ଭୂରିଶ୍ରବା ଯୁଦ୍ଧରେ ପ୍ରାୟୋପବେଶନ କଲାନ୍ତେ ଭୂପାଳଗଣଙ୍କ ନିଷେଧ ବାକ୍ୟକୁ ଅନାଦର କରି ସାତ୍ୟକି ତାହାଙ୍କୁ ନିପାତ କଲେ । ଭୀମ ଦୁଃଶାସନଙ୍କ ସହିତ ଗଦାଯୁଦ୍ଧରେ ପ୍ରବୃତ୍ତ ହୋଇ ମହୀପାଳଗଣଙ୍କ ସାକ୍ଷାତରେ ନିପାତିତ କଲେ । ୨୩ । ନରବର ଦୁର୍ଯ୍ୟୋଧନ ଏକାକୀ ବହୁ ବହୁ ମହାରଥିକର୍ତ୍ତୃକ ପରିବେଷ୍ଟିତ ହୋଇ ଭୀମହାରା ଅଧର୍ମାନୁସାରେ ପାତିତ ହେଲେ । ୨୪ । ରାଜା ଦୁର୍ଯ୍ୟୋଧନଙ୍କ ଊରୁଦେଶ ଭଗ୍ନ ହେବାରୁ ବାର୍ତ୍ତାବହଗଣଙ୍କ କଥୋପକଥନରେ ତାହାଙ୍କର ଯେଉଁପରି ବିଳାପ ଶୁଣିଅଛୁଁ, ତାହା ଆମ୍ଭର ମର୍ମଚ୍ଛେଦନ କରୁଅଛି ।୨୫।

ଅଧାର୍ମିକ ପଞ୍ଚାଳମାନେ ଏହିପରି ଧର୍ମ-ସେତୁ ଭଗ୍ନ କରୁଅଛନ୍ତି; ଅତଏବ ସେହି ମର୍ଯ୍ୟାଦାଶୂନ୍ୟ ପାପାତ୍ମାମାନଙ୍କୁ ଆପଣ କେଉଁ କାରଣରୁ ନିନ୍ଦା ନ କରିବେ ? ରାତ୍ରିରେ ନିଦ୍ରାଗତ ପିତୃହନ୍ତା ପଞ୍ଚାଳଗଣଙ୍କୁ ନିହତ କରି, ଆମ୍ଭେ ଜନ୍ମାନ୍ତରରେ କୀଟ ଅବା ପତଙ୍ଗଯୋନି ପ୍ରାପ୍ତ ହେବୁଁ; ତାହା ମଧ୍ୟ ଆମ୍ଭର ଶ୍ରେୟ । ୨୭ । ଅଦ୍ୟ ଆମ୍ଭର ଯାହା କରିବାକୁ ଅଭିଳାଷ ହୋଇଅଛି, ଆମ୍ଭେ ସେହି ବିଷୟରେ ସତ୍ୱର ହୋଇଅଛୁଁ । ଆମ୍ଭେ କର୍ତ୍ତବ୍ୟ ବିଷୟ ସମ୍ପନ୍ନ କରିବାକୁ ସତ୍ୱର ହୋଇଥିବାରୁ ଆମ୍ଭର ନିଦ୍ରା ନାହିଁ ଏବଂ ସୁଖ ମଧ୍ୟ ନାହିଁ । ପଞ୍ଚାଳଗଣଙ୍କର ବଧ ବିଷୟରେ ଆମ୍ଭର ଯେଉଁ ବୁଦ୍ଧି ନିଶ୍ଚିତ ହୋଇଅଛି, ତାହାକୁ ଅନ୍ୟଥା କରିବାକୁ କୌଣସି ପୁରୁଷ ଜଗତରେ ଜନ୍ମଗ୍ରହଣ କରିନାହିଁ ଓ କରିବ ନାହିଁ । ୨୯ ।

ସଞ୍ଜୟ କହିଲେ, ମହାରାଜ ! ପ୍ରତାପବାନ୍ ଦ୍ରୋଣପୁତ୍ର ଏହିପରି କହି ଏକାନ୍ତରେ ଅଶ୍ୱ-ଯୋଜନାପୂର୍ବକ ବିପକ୍ଷ ପକ୍ଷର ଅଭିମୁଖକୁ ପ୍ରସ୍ଥାନ କଲେ । ୩୦ ।

ମହାତ୍ମା କୃତବର୍ମା ଓ କୃପାଚାର୍ଯ୍ୟ ଦୁହେଁ ତାହାଙ୍କୁ କହିଲେ, ହେ ନରବର ! ତୁମ୍ଭେ କେଉଁ କାରଣରେ ରଥ ଯୋଜନା କଲ ଏବଂ କେଉଁ ଅଭିଲଷିତ କାର୍ଯ୍ୟ କରିବ ? ଆମ୍ଭେ ଦୁହେଁ ତୁମ୍ଭ ସହିତ ଏକ ଉଦ୍ଦେଶ୍ୟରେ ପ୍ରସ୍ଥାନ କରିଅଛୁଁ, ଆମ୍ଭେ ଦୁହେଁ ତୁମ୍ଭର ସୁଖଦୁଃଖର ସମଭାଗୀ ଅଟୁ । ଅତଏବ ଆମ୍ଭ ଦୁହିଁଙ୍କଠାରେ ଶଙ୍କା କରିବାର ତୁମ୍ଭର ଉଚିତ ନୁହେ ।୩୨।

ଅଶ୍ୱତ୍ଥାମା ପିତୃବଧ ବିଷୟ ସ୍ମରଣ କରି ଅତିଶୟ କ୍ରୋଧାକ୍ରାନ୍ତ ହୋଇ ତେତେବେଳେ ସେହି ଦୁହିଁଙ୍କୁ ଆପଣାର କର୍ତ୍ତବ୍ୟ ବିଷୟ ସତ୍ୟ କରି କହିଲେ, ଯେ ଆମ୍ଭ ପିତା ଶାଣିତ ଶରସମୂହଦ୍ୱାରା ଶତ ସହସ୍ର ଯୋଦ୍ଧାଙ୍କୁ ନିହତ କରି, ଅସ୍ତ୍ର ପରିତ୍ୟାଗ କଲାରୁ ଧୃଷ୍ଟଦ୍ୟୁମ୍ନ ତାହାଙ୍କୁ ନିପାତ କରିଅଛନ୍ତି । ଆମ୍ଭେ ଅଦ୍ୟ ସେହି ବିମୁକ୍ତକବଚ ପାପାତ୍ମା ପାଞ୍ଚାଳ ରାଜପୁତ୍ରଙ୍କୁ ପାପକର୍ମଦ୍ୱାରା ସେହିପରି ନିହତ କରିବୁଁ । ପାପାତ୍ମା ପାଞ୍ଚାଳ ରାଜପୁତ୍ର ଆମ୍ଭଦ୍ୱାରା ପଶୁବତ ନିହତ ହୋଇ, ଶସ୍ତ୍ରଜିତ ଲୋକ ସମୂହକୁ ପ୍ରାପ୍ତ ନୁହନ୍ତୁ ବୋଲି ଆମ୍ଭେ ଇଚ୍ଛା କରୁଅଛୁଁ ।୩୬ । ହେ ଶତ୍ରୁତାପନ ରଥିଶ୍ରେଷ୍ଠଦ୍ୱୟ ! ଆପଣ ଦୁହେଁ ଅବିଳମ୍ବରେ ବଦ୍ଧକବଚ ହୋଇ ଖଡ୍ଗ ଓ ଶରାସନ ଧାରଣପୂର୍ବକ ଆମ୍ଭର ରକ୍ଷା ବିଷୟରେ ଦୃଷ୍ଟିପାତ କରନ୍ତୁ ।୩୭। ଅଶ୍ୱତ୍ଥାମା ଏହି କଥା କହି ରଥାରୋହଣପୂର୍ବକ ଶତ୍ରୁଗଣଙ୍କ ଅଭିମୁଖକୁ ପ୍ରସ୍ଥାନ କଲେ ।

ହେ ମହାରାଜ ! କୃପାଚାର୍ଯ୍ୟ ଓ ସାତ୍ୱତ କୃତବର୍ମା ତାହାଙ୍କ ଅନୁଗାମୀ ହେଲେ ।୩୮ । ସେହି ତିନିଜଣ ବିପକ୍ଷଗଣର ଅଭିମୁଖକୁ ପ୍ରସ୍ଥାନ କରି ଯଜ୍ଞସ୍ଥଳରେ ହୂୟମାନ ପ୍ରଜ୍ୱଳିତ ଅଗ୍ନି ସଦୃଶ ବିରାଜିତ ହେଲେ ।୩୯। ମହାରାଜ ! ପାଣ୍ଡବଗଣଙ୍କ ଶିବିରରେ ସମସ୍ତ ଲୋକ ନିଦ୍ରିତ ଥିବା ସମୟରେ ସେମାନେ ସେଠାକୁ ଗମନ କଲେ । ମହାରଥୀ ଅଶ୍ୱତ୍ଥାମା ଶିବିରର ଦ୍ୱାରଦେଶରେ ଉପନୀତ ହୋଇ ସେଠାରେ ଅବସ୍ଥିତ କଲେ ।

---

# ଷଷ୍ଠ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! କୃତବର୍ମା ଓ କୃପାଚାର୍ଯ୍ୟ ଅଶ୍ୱତ୍ଥାମାଙ୍କୁ ତାଦୃଶଭାବରେ ଦ୍ୱାରଦେଶରେ ଅବସ୍ଥିତ ହୋଇଥିବାର ଦେଖି କଣ କଲେ, ତାହା ଆମ୍ଭଙ୍କୁ କହ । ୧ ।

ସଞ୍ଜୟ କହିଲେ, କ୍ରୋଧାକ୍ରାନ୍ତଚିତ୍ତ ମହାରଥୀ ଦ୍ରୋଣପୁତ୍ର, କୃପ ଓ କୃତବର୍ମାଙ୍କୁ ଆମନ୍ତ୍ରଣପୂର୍ବକ ଶିବିରର ଦ୍ୱାରଦେଶରେ ପ୍ରବେଶ କଲେ ।୨। ସେ ସେଠାରେ ପହଞ୍ଚ ଦ୍ୱାରଦେଶକୁ ଆଶ୍ରୟପୂର୍ବକ ଅବସ୍ଥାନ କରିଥିବା

ଗୋଟିଏ ମହାକାୟ ଭୂତକୁ ଦେଖିଲେ । ସେହି ଭୂତ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ସଦୃଶ ଦ୍ୟୁତିଶାଳୀ । ତାହାକୁ ଦେଖିଲେ ରୋମାଞ୍ଚ ଜାତ ହୁଏ । ରକ୍ତଧାରାଯୁକ୍ତ ବ୍ୟାଘ୍ରଚର୍ମ ତାହାର ପରିଧାନ ବସ୍ତ୍ର । କୃଷ୍ଣାଜିନ ଉତ୍ତରୀୟ ଓ ସର୍ପ-ଯଜ୍ଞୋପବୀତ । ୪ । ତାହାର ପୀନ ଓ ଅତି ଆୟତ ବାହୁସମୂହ ଅସ୍ତ୍ର ନିକ୍ଷେପପାଇଁ ଉତ୍ତୋଳିତ ହୋଇଥିଲେ । ମହାସର୍ପମାନେ ଅଙ୍ଗଦଭୂଷଣ ରୂପରେ ହସ୍ତରେ ବଦ୍ଧ ହୋଇଥିଲେ । ସେ ଅତିଶୟ କ୍ରୋଧଯୁକ୍ତ ହୋଇ-ଥିବାରୁ, ତାହାର ମୁଖ ଅଗ୍ନିର ଜ୍ୱାଳାମାଳାରେ ବ୍ୟାପ୍ତ ହୋଇଥିଲା । ତାହାର ବଦନ କରାଳ ଦଂଷ୍ଟ୍ରାମାଳାରେ ପରିପୂର୍ଣ୍ଣ ଏବଂ ସର୍ବାଙ୍ଗ ବିଚିତ୍ର ସହସ୍ରନେତ୍ରରେ ଅଲୌକିକ ଶୋଭା ଧାରଣ କରିଥିଲା ଏବଂ ଆସ୍ୟ ବିସ୍ତାର କରିଥିବାରୁ ସେ ଅତିଶୟ ଭୟଙ୍କର ଦିଶୁଥିଲା । ୭ । ତଦୀୟ ଶରୀର ଓ ବେଶର ବର୍ଣ୍ଣନା ଦୁଃସାଧ୍ୟ । ପର୍ବତମାନେ ତାହାକୁ ଦେଖିଲେ ସର୍ବ-ପ୍ରକାରରେ ସ୍ଫୁଟିତ ହେବେ । ତାହାର ମୁଖ, ନାସିକା, କର୍ଣ୍ଣ ଓ ନୟନ ସହସ୍ରରୁ ମହାଜ୍ୟୋତିରାଶି ପ୍ରାଦୁର୍ଭୂତ ହେଉଥିଲା ଏବଂ ତେଜଃ ସମୂହରୁ ଶଙ୍ଖ-ଚକ୍ର-ଗଦାଧର ଶତ ସହସ୍ର ହୃଷୀକେଶ ଉତ୍ପନ୍ନ ହେଉଥିଲେ । ୮ ।

ଅଶ୍ୱତ୍ଥାମା ଲୋକଭୟଙ୍କର ଅତି ଅଦ୍ଭୁତ ସେହି ଭୂତକୁ ଦେଖି ବ୍ୟଥିତ ନ ହୋଇ ଦିବ୍ୟ ଅସ୍ତ୍ର ସମୂହ ବର୍ଷଣଦ୍ୱାରା ତାହାକୁ ଆଚ୍ଛନ୍ନ କଲେ । ୧୦ । ବଡ଼ବାନଳ ଯେଉଁପରି ସମୁଦ୍ରର ଜଳପ୍ରବାହ ପାନ କରେ, ତଦ୍ୱତ୍ ସେହି ମହାଭୂତ ଦ୍ରୋଣନନ୍ଦନଙ୍କଦ୍ୱାରା ବିମୁକ୍ତ ଶରସମୂହକୁ ଗ୍ରାସ କଲା । ଅଶ୍ୱତ୍ଥାମା ସେହି ଶରବୃନ୍ଦକୁ ବ୍ୟର୍ଥ ହେବାର ଦେଖି, ତାହାକୁ ପ୍ରଦୀପ୍ତ ଅଗ୍ନିଶିଖା ସଦୃଶ ଏକ ରଥଶକ୍ତି ଅର୍ଥାତ୍ ଚକ୍ର ନିକ୍ଷେପ କଲେ । ଆକାଶମଣ୍ଡଳରୁ ବିଚ୍ୟୁତ ମହାଉଲ୍କା ଯେଉଁପରି ପ୍ରଳୟକାଳୀନ ସୂର୍ଯ୍ୟଙ୍କୁ ଆଘାତ କରି ବିଦୀର୍ଣ୍ଣ ହୁଏ, ସେହିପରି ସେହି ଦୀପ୍ତାସ୍ତ୍ର ଚକ୍ର ତାହାକୁ ଆହତ କରି ବିଦୀର୍ଣ୍ଣ ହେଲା । ତତ୍ପରେ ଗର୍ତ୍ତମଧ୍ୟରୁ ସର୍ପକୁ ଯେଉଁପରି ନିର୍ଗତ କରାଯାଏ, ସେହିପରି ଅଶ୍ୱତ୍ଥାମା କୋଷ ମଧ୍ୟରୁ ଅବିଳମ୍ବେ ସୁବର୍ଣ୍ଣ ମୁଷ୍ଟିଯୁକ୍ତ ଆକାଶବର୍ଣ୍ଣ ଦିବ୍ୟ ଖଡ୍ଗ ନିଷ୍କାସିତ କଲେ । ତତ୍ପରେ ବୁଦ୍ଧିମାନ୍ ଦ୍ରୋଣପୁତ୍ର ତତ୍କ୍ଷଣାତ୍ ଭୂତକୁ ସେହି ଉତ୍କୃଷ୍ଟ ଖଡ୍ଗ ପ୍ରେରଣ କଲେ । ୧୫ । ସେହି ଖଡ୍ଗ ତାହା ଉପରେ ପତିତ ହୋଇ ଗର୍ତ୍ତପ୍ରବେଶକାରୀ ନକୁଳ ସଦୃଶ ତାହାର ଶରୀର ମଧ୍ୟରେ ପ୍ରବିଷ୍ଟ

ହେଲା । ତଦନନ୍ତର ଅଶ୍ୱତ୍ଥାମା କୋପଯୁକ୍ତ ହୋଇ ଇନ୍ଦ୍ରକେତୁ ସଦୃଶ ପ୍ରଜ୍ୱଳିତ ଗଦା ଗ୍ରହଣ କରି ଭୂତଶରୀରକୁ ପ୍ରେରଣ କଲେ । ସେ ତାହାକୁ ମଧ୍ୟ ଗ୍ରାସ କଲା ।

ପରିଶେଷରେ ଅଶ୍ୱତ୍ଥାମା ସମସ୍ତ ଅସ୍ତ୍ର ଅଭାବରେ ଇତସ୍ତତଃ ନିରୀକ୍ଷଣ କରି ଶୂନ୍ୟ ଦୃଷ୍ଟିରେ ଆକାଶକୁ ନିରବକାଶ ଅବଲୋକନ କଲେ । ଅସ୍ତ୍ରହୀନ ଦ୍ରୋଣପୁତ୍ର ସେହି ଅଦ୍‌ଭୁତ ଘଟନା ଦେଖି, କୃପଙ୍କ ବାକ୍ୟ ସ୍ମରଣ ପୂର୍ବକ ଅତି ସନ୍ତପ୍ତ ହୋଇ କହିଲେ, ଯେଉଁ ବ୍ୟକ୍ତି ଅପ୍ରିୟ ଅଥଚ ହିତକର ସୁହୃଜ୍ଜନମାନଙ୍କ ବାକ୍ୟ ଶ୍ରବଣ ନ କରେ, ଆମ୍ଭେ ଯେଉଁପରି କୃପ ଓ କୃତବର୍ମାଙ୍କ ବାକ୍ୟ ଲଙ୍ଘନ କରି, ଆପଦପ୍ରାପ୍ତ ହୋଇଅଛୁ,ସେ ବ୍ୟକ୍ତି ମଧ୍ୟ ସେହିପରି ବିପଦରେ ପଡ଼ି ଶୋକ ପ୍ରକାଶ କରେ । ଯେଉଁ ମୂଢ଼ବ୍ୟକ୍ତି ଶାସ୍ତ୍ରଦୃଷ୍ଟ ଶିଷ୍ଟାଚାରକୁ ଲଙ୍ଘନ କରି, ଜିଘାଂସାରେ ପ୍ରବୃତ୍ତ ହୁଏ, ସେ ଧର୍ମପଥରୁ ସ୍ଖଳିତ ହୋଇ କୁପଥରେ ପ୍ରତିହତ ହୁଏ । ଗୋ, ବ୍ରାହ୍ମଣ, ରାଜା, ସ୍ତ୍ରୀ, ସଖା, ମାତା, ଗୁରୁ, ଦୁର୍ବଳ, ଜଡ଼, ଅନ୍ଧ, ସୁପ୍ତ, ଭୀତ, ନିଦ୍ରାରୁ ଉତ୍‌ଥିତ, ମତ୍ତ, ଉନ୍ମତ୍ତ ଓ ପ୍ରମାଦଗ୍ରସ୍ତ ଜନମାନଙ୍କୁ ଶସ୍ତ୍ରାଘାତ କରିବ ନାହିଁ । ୨୨ । ପୂର୍ବେ ଗୁରୁସମ ଲୋକମାନେ ମନୁଷ୍ୟମାନଙ୍କୁ ସର୍ବଦା ଏହିପରି ଉପଦେଶ ପ୍ରଦାନ କରୁଥିଲେ । କିନ୍ତୁ ଆମ୍ଭେ ସେହି ଶାସ୍ତ୍ରଦୃଷ୍ଟ ସନାତନ ପଥ ଅତିକ୍ରମ କରି କୁପଥରେ ପଦାର୍ପଣପୂର୍ବକ କାର୍ଯ୍ୟାରମ୍ଭ କରି ଘୋରତର ଆପଦରେ ନିପତିତ ହେଲୁଁ ।

ଉତ୍କୃଷ୍ଟ କାର୍ଯ୍ୟରେ ଉଦ୍ୟତ ପୁରୁଷର ଭୟବଶରୁ ତହିଁରୁ ନିବର୍ତ୍ତନକୁ ପଣ୍ଡିତମାନେ ଘୋର ଆପଦ ବୋଲି କହନ୍ତି । ଇହଲୋକରେ ଶକ୍ତିବଳରେ କର୍ମ କରିବାର ଦୁଃସାଧ୍ୟ ଦୈବ ଅପେକ୍ଷା ମାନୁଷ କର୍ମ ଗୁରୁତର ବୋଲି ଉକ୍ତ ହୁଏ ନାହିଁ । କୌଣସି ବ୍ୟକ୍ତି ଯଦି ମାନୁଷ କର୍ମ କରିବାକୁ ପ୍ରବୃତ୍ତ ହୋଇ, ଦୈବବଶରୁ ଯଦି ସିଦ୍ଧିଲାଭ ନ କରେ, ତେବେ ସେ ଧର୍ମପଥରୁ ସ୍ଖଳିତ ହୋଇ ବିପଥପ୍ରାପ୍ତ ହୁଏ । ପ୍ରତିଜ୍ଞାସହକାରେ କୌଣସି କାର୍ଯ୍ୟ ଆରମ୍ଭ କରି, ଭୟବଶରୁ ତହିଁରୁ ନିବର୍ତ୍ତିଲେ ପଣ୍ଡିତମାନେ ତାହାକୁ ମୂର୍ଖଲୋକ ବୋଲି ନିର୍ଦ୍ଦେଶ କରିଅଛନ୍ତି । ସଂପ୍ରତି ଆମ୍ଭେ ଏହି କୁକର୍ମରେ ପ୍ରବୃତ୍ତ ହେଲାରୁ ଭୟଗ୍ରସ୍ତ ହେଲୁଁ; କିନ୍ତୁ ଦ୍ରୋଣପୁତ୍ର କଦାପି ଯୁଦ୍ଧ ବିଷୟରେ ନିବୃତ୍ତ ହୁଅନ୍ତି ନାହିଁ । ଏହି

ମହାଭୂତ ଦୈବଦଣ୍ଡ ସଦୃଶ ଉଦ୍ୟତ ହୋଇଅଛୁ । ଆମ୍ଭେ ସର୍ବପ୍ରକାରରେ ଚିନ୍ତା କରି ଏହାକୁ ଜାଣିପାରିଲୁ ନାହିଁ । ଆମ୍ଭର ଯେଉଁ ଏହି କଳୁଷିତ ବୁଦ୍ଧି ଅଧର୍ମରେ ପ୍ରବୃତ୍ତ ହୋଇଅଛୁ, ତାହାର ପ୍ରତିଘାତ ନିମିତ୍ତ ଏହି ଉପଦ୍ରବର ଫଳ ଉପସ୍ଥିତ ହେଲା, ସନ୍ଦେହ ନାହିଁ । ଅତଏବ ଆମ୍ଭର ଏହି ଯୁଦ୍ଧରୁ ନିବୃତ୍ତ ହେବାର ଘଟନା ଦୈବବିହିତ ଅଟେ ।

ଏହି ସଂସାର ମଧ୍ୟରେ ଦୈବାନୁକୂଲ୍ୟ ବ୍ୟତିରେକେ କୌଣସି ବିଷୟରେ ଉଦ୍ୟତ ହେବାକୁ କାହାର ସୁଦ୍ଧା ଶକ୍ତି ନାହିଁ, ସୁତରାଂ ଆମ୍ଭେ ଏତେବେଳେ ସର୍ବେଶ୍ୱରଶଙ୍କରଙ୍କୁ ଶରଣାପନ୍ନ ହେଲୁଁ । ସେ ଆମ୍ଭର ଏହି ଘୋରତର ଦୈବଦଣ୍ଡକୁ ବିନାଶ କରିବେ । ସେହି କପର୍ଦ୍ଦୀ, ଦେବଦେବ ଉମାପତି, ଅନାମୟ, କପାଳମାଳୀ ରୁଦ୍ର, ଭଗନେତ୍ର, ହର, ତପସ୍ୟା ଓ ବିକ୍ରମ ପ୍ରଭାବରେ ସମସ୍ତ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଅତଏବ ଆମ୍ଭେ ସେହି ଶୂଳପାଣି ଗିରିଶଙ୍କର ଶରଣାଗତ ହେଲୁ । ୩୪ ।

---

## ସପ୍ତମ ଅଧ୍ୟାୟ

ସଞ୍ଜୟ କହିଲେ, ମହାରାଜ ! ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଏହିପରି ଚିନ୍ତା କରି ରଥରୁ ଅବତରଣପୂର୍ବକ ଦେବେଶ୍ୱର ମହାଦେବଙ୍କୁ ପ୍ରଣତି କରିବସିଲେ । ୧ । ଅଶ୍ୱତ୍ଥାମା କହିଲେ—ସେହି ଉଗ୍ର, ସ୍ଥାଣୁ, ଶିବ, ରୁଦ୍ର, ସର୍ବତା, ଈଶାନ, ଈଶ୍ୱର, ଗିରିଶ, ବରଦ, ଦେବ, ଭବଭାବନ, ଈଶ୍ୱର, ଶିତିକଣ୍ଠ, ଅଜ, ଶୁକ୍ର, ଦକ୍ଷଯଜ୍ଞହର, ହର ବିଶ୍ୱରୂପ, ବିରୂପାକ୍ଷ, ବହୁରୂପ, ଉମାପତି, ଶ୍ମଶାନବାସୀ, ଦୃପ୍ତ, ମହାଗଣପତି, ବିଭୁ, ଖଟ୍ୱାଙ୍ଗଧାରୀ, ରୁଦ୍ର, ଜଟିଳ, ବ୍ରହ୍ମଚାରୀ, ତ୍ରିପୁରାରିଙ୍କୁ ଆମ୍ଭେ ଅତି ବିଶୁଦ୍ଧ ଚିତ୍ତ ଓ ଅଳ୍ପତେଜଃସମ୍ପନ୍ନ ଆତ୍ମା, ଉପହାରଦ୍ୱାରା ପୂଜା କରିବୁଁ । ୬ । ସ୍ତୁତ, ସ୍ତୁତ୍ୟ, ସ୍ତୂୟମାନ, ଅମୋଘ, କୃତ୍ତିବାସା, ବିଲୋହିତ ନୀଳକଣ୍ଠ, ଅସହ୍ୟ, ଦୁର୍ନିବାରଣ, ଶୁକ୍ର, ବ୍ରହ୍ମସ୍ରଷ୍ଟା, ବ୍ରହ୍ମ, ବ୍ରହ୍ମଚାରୀ, ବ୍ରତବାନ୍, ତପୋନିଷ୍ଠ, ଅନନ୍ତ, ତାପସଗତି, ବହୁରୂପ, ଗଣାଧ୍ୟକ୍ଷ, ତ୍ରିଲୋଚନ,

ପାରିଷଦପ୍ରିୟ, କୁବେର ନସ୍ଵଷିତବଦନ, ଗୌରୀହୃଦୟବଲ୍ଲଭ, କୁମାରପିତା, ପିଙ୍ଗ, ବୃଷୋତ୍ତମବାହନ, ତନୁବାସା, ଅତ୍ୟୁଗ୍ର, ଉମାଭୂଷଣ-ତତ୍ପର, ଶ୍ରେଷ୍ଠ ଅପେକ୍ଷା ଶ୍ରେଷ୍ଠ, ଯାହାଙ୍କଠାରୁ କେହି ଶ୍ରେଷ୍ଠ ନାହାଁନ୍ତି, ଉତ୍ତମବାଣାସ୍ତ୍ରଧାରୀ, ଜଗତ୍ ଓ ଦେଶରକ୍ଷାକାରୀ, ହିରଣ୍ୟବର୍ମ, ଚନ୍ଦ୍ରମୌଳି ଦେବଙ୍କୁ ଆମ୍ଭେ ପରମସମାଧିଦ୍ୱାରା ଶରଣରୂପେ ଆଶ୍ରୟ କଲୁଁ । ୧୧ । ଅଦ୍ୟ ଯଦି ଏହି ଘୋରତର ସୁଦୁସ୍ତର ଆପଦରୁ ଉତ୍ତୀର୍ଣ୍ଣ ହେବୁଁ, ତେବେ ଶରୀରସ୍ଥିତ ପବିତ୍ର ସର୍ବଭୂତ ଉପହାରଦ୍ୱାରା ଶିବୋଦ୍ଦେଶ୍ୟରେ ଅଗ୍ନିଙ୍କୁ ପୂଜା କରିବୁ । ୧୨ ।

ସ୍ୱୀୟ କାର୍ଯ୍ୟର ଉଦ୍‌ଯୋଗ ହେଉଥିବା ଅଶ୍ୱତ୍‌ଥାମାଙ୍କର ଏହିପରି ଚେଷ୍ଟା ଜାଣି, ସେହି ମହାତ୍ମାଙ୍କ ଅଗ୍ରରେ କାଞ୍ଚନମୟୀ ବେଦୀ ପ୍ରାଦୁର୍ଭୂତ ହେଲା । ୧୩ । ହେ ମହାରାଜ ! ତେତେବେଳେ ସେହି ବେଦୀରେ ଚିତ୍ରଭାନୁ-ଅଗ୍ନି ଉତ୍ପନ୍ନ ହେଲେ । ସେହି ଅଗ୍ନିଶିଖାସମୂହଦ୍ୱାରା ଦିଗ୍‌ବିଦିଗ ଓ ଆକାଶମଣ୍ଡଳକୁ ପରିପୂର୍ଣ୍ଣ କଲା । ୧୪ । ତହିଁରେ ଦୀପ୍ତବଦନ, ଦୀପ୍ତନୟନ, ବହୁଚରଣ, ବହୁମସ୍ତକ, ବହୁବାହୁ, ରତ୍ନମୟ ବିଚିତ୍ର କବଚଧାରୀ ସମୁଦାୟକର, ଗଜ ଓ ଗିରିସଦୃଶ ମହାଗଣ ସମୂହ ପ୍ରାଦୁର୍ଭୂତ ହେଲେ । ସେମାନଙ୍କ ମଧ୍ୟରେ କେହି କୁକୁରବଦନ, କେହି କେହି ବରାହମୁଖ, କେହି ଉଷ୍ଟ୍ରମୁଖ, କେହି ଅଶ୍ୱମୁଖ, କେହି ଗୋମାୟୁବଦନ, କେହି ଗୋମୁଖ, କେହି ଭଲ୍ଲୁକବଦନ, କେହି ମାର୍ଜାରମୁଖ, କେହି ବ୍ୟାଘ୍ରମୁଖ ସଦୃଶ ଆନନ, କେହି ଚକ୍ରବାକବଦନ, କେହି ଭେକବଦନ, କେହି କେହି ଶୁକାନନ, କେହି କେହି ମହାଅଜଗର ବଦନ, କେହି ହଂସମୁଖ, କେହି ଶୁକ୍ଳସ୍ୱରସମ୍ପନ୍ନ, କେହି ସାରସପକ୍ଷୀ-ମୁଖ, କେହି ରାସମୁଖ, କେହି କୂର୍ମମୁଖ, କେହି ନକ୍ରମୁଖ, କେହି ଶିଶୁମାରମୁଖ, କେହି ମହାମକରମୁଖ, କେହି ତିମିବଦନ । ୧୯ । କେହି ନକୁଳବଦନ, କେହି କ୍ରୌଞ୍ଚବଦନ, କେହି କପୋତବଦନ, କେହି ଗଜବଦନ, କେହି ଚିତ୍ରପାରାବତମୁଖ, କେହି ମଦ୍‌ଗୁରବକ୍ତ୍ର । ୨୦ ।

ହେ ମହାରାଜ ! କାହାର ହସ୍ତପରିମିତ କର୍ଣ୍ଣ, କେହି ସହସ୍ରାକ୍ଷ, କେହି କେହି ମହୋଦର, କେହି ମାଂସଶୂନ୍ୟ, କେହି କାକବଦନ, କେହି ଶ୍ୟେନମୁଖ । ୨୧ । ହେ ମହାରାଜ ! ତଦ୍‌ଭିନ୍ନ କେହି କେହି ମସ୍ତକଶୂନ୍ୟ,

କେହି ଋକ୍ଷମୁଖ, କାହାର କାହାର ଉଦର ଏବଂ ନୟନ ପ୍ରଶସ୍ତ, କେଉଁ କେଉଁମାନଙ୍କ ବର୍ଣ୍ଣ ଜ୍ୱାଳାସଦୃଶ । ୨୨ । ହେ ରାଜେନ୍ଦ୍ର ! କାହାର କେଶ ସମୂହ ଅଗ୍ନିଶିଖାସଦୃଶ, କାହାର ଚତୁର୍ବାହୁ ପ୍ରଜ୍ୱଳିତ ରୋମପୂର୍ଣ୍ଣ, କେହି କେହି ମେଷମୁଖ, କେହି କେହି ଛାଗମୁଖ, କାହାର ଆଖି ଶଙ୍ଖସଦୃଶ, କାହାର ମୁଖ ଶଙ୍ଖ ସମାନ, କାହାର କର୍ଣ୍ଣ ଶଙ୍ଖସଦୃଶ, କେହି କେହି ଶଙ୍ଖମାଳାରେ ପରିବୃତ, କେହି ଶଙ୍ଖଧ୍ୱନି ସମସ୍ୱରବିଶିଷ୍ଟ, କେହି ଜଟାଧର, କେହି କେହି ପଞ୍ଚଶିଖାଯୁକ୍ତ, କେହି ମୁଣ୍ଡିତମୁଣ୍ଡ, କେହି କୃଶୋଦର, କେହି ଚତୁର୍ଦନ୍ତ, କାହାର ଚାରିଗୋଟି ଜିହ୍ୱା, କେହି ଶଙ୍କୁକର୍ଣ୍ଣ, କେହି କେହି କିରୀଟଧାରୀ । ୨୫ ।

ହେ ମହାରାଜ ! କେହି ମୌଞ୍ଜୀଧର, କେହି କୁଞ୍ଚିତକୁନ୍ତଳ, କେହି ଉଷ୍ଣୀଷଧାରୀ, କେହି ମୁକୁଟଧାରୀ, କେହି ସୁନ୍ଦରମୁଖ, କେହି କେହି ଅତି ସୁନ୍ଦର ଅଳଂକୃତ, କେହି କେହି ପଦ୍ମଉତ୍ପଳ ଓ ମୁକୁଟଧାରୀ, ଏହିପରି ମାହାତ୍ମ୍ୟଯୁକ୍ତ ଶତସହସ୍ରଗଣ ପ୍ରାଦୁର୍ଭୂତ ହେଲେ । ୨୭ । ସେମାନଙ୍କ ମଧ୍ୟରେ କାହା ହସ୍ତରେ ଶତଘ୍ନୀଶକ୍ତି, କାହାହସ୍ତରେ ବଜ୍ର, କାହା ହସ୍ତରେ ମୁଷଳ, କାହା ହସ୍ତରେ ପାଶ, କାହା ହସ୍ତରେ ଗଦା, କେହି ଭୁଷଣ୍ଡୀଧାରୀ, କାହାର ପୃଷ୍ଠଦେଶରେ ତୂଣବନ୍ଧ, କୌଣସି ରଣମତ୍ତଗଣ ବିଚିତ୍ରବାଣଧାରୀ । ସେମାନେ ସମସ୍ତେ ଧ୍ୱଜା ପତାକା, ଘଣ୍ଟା ଓ ପରଶୁଯୁକ୍ତ, ମହାପାଶହସ୍ତ ଓ ଲଗୁଡ଼ପାଣି, କେହି ସ୍ଥୂଣାହସ୍ତ, କେହି ଖଡ଼୍ଗପାଣି, କେହି କେହି ସର୍ପମସ୍ତ କିରୀଟଧାରୀ, କେହି ମହାସର୍ପର କବଚଧାରୀ, କେହି କେହି ବିଚିତ୍ର ଆଭରଣଧାରୀ, କେହି କେହି ଧୂଳି-ଧ୍ୱସ୍ତ, କେହି ପଙ୍କସିକ୍ତ, ସମସ୍ତେ ଶୁକ୍ଳବସ୍ତ୍ର ଓ ଶୁକ୍ଳମାଳାଧାରୀ, କେହି କେହି ନୀଳବର୍ଣ୍ଣ, କେହି କେହି କପିଳବର୍ଣ୍ଣ, କେହି କେହି ମୁଣ୍ଡିତମସ୍ତକ ।

ସେହି ସମସ୍ତ କନକପ୍ରଭ ପାରିଷଦଗଣ ଅତିଶୟ ହୃଷ୍ଟ ହୋଇ ଭେରୀ, ଶଙ୍ଖ, ମୃଦଙ୍ଗ, ଝର୍ଝର, ଆନକ ଓ ଗୋମୁଖବାଦ୍ୟ ଧ୍ୱନି କଲେ । ସେମାନଙ୍କ ମଧ୍ୟରେ କେହି କେହି ଗାନ କଲେ, କେହି କେହି ନୃତ୍ୟ କଲେ, କେହି କେହି ଉଚ୍ଚନାଦପୂର୍ବକ ପ୍ଲବଗତି କଲେ । କେହି କେହି ନିନାଦକାରୀ ମତ୍ତଗଜଯୂଥସଦୃଶ ମହାନିନାଦ କରି ପ୍ରଚଣ୍ଡ ବେଗରେ ଧାବମାନ ହେବାରୁ ସେମାନଙ୍କ କେଶସମୂହ

ପ୍ରବଳବେଗରେ କମ୍ପିତ ହେଉଥିଲା । ସେହି ସମସ୍ତ ଅତି ଭୟଙ୍କର ଘୋର ରୂପ ଶୂଳ-ପଟ୍ଟିଶଧାରୀ ପାରିଷଦମାନେ ନାନାବିଧ ବସ୍ତ୍ର, ଶ୍ୱେତ ମାଲ୍ୟ ଓ ଅନୁଲେପନ ଧାରଣ କରିଥିଲେ । ସେମାନଙ୍କ କଳେବର ରତ୍ନମୟ ବିଚିତ୍ର ଅଙ୍ଗଦଦ୍ୱାରା ଆବୃତ, ବାହୁ ସମସ୍ତ ଉତ୍କ୍ଷେଳିତ, ସେହି ସମସ୍ତ ଅସହ୍ୟ ବିକ୍ରମ ଶୂରଗଣ ଶତ୍ରୁବୃନ୍ଦର ନିହନ୍ତା । ସେମାନେ ରକ୍ତ ବସା ପ୍ରଭୃତି ପାନ କରନ୍ତି, ମାଂସ ଓ ଅନ୍ତ୍ର ପ୍ରଭୃତି ଭୋଜନ କରନ୍ତି । ସେମାନେ ସମସ୍ତେ ଚୂଡ଼ା ଓ କର୍ଣ୍ଣଭୂଷଣଧାରୀ, ସମସ୍ତେ ଆହ୍ଲାଦିତ, ସମସ୍ତଙ୍କ ଉଦର ପିଠର ସଦୃଶ, ସେମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତି ଅତି ହ୍ରସ୍ୱ କଳେବର ଏବଂ ଅନେକ ବ୍ୟକ୍ତିଙ୍କ ଦେହ ଅତି ଦୀର୍ଘ ଥିଲା । ଅନେକ ବ୍ୟକ୍ତି ଅତି ଲମ୍ବମାନ, ଅନେକଙ୍କର ମୂର୍ତ୍ତି ଅତି ଭୟଙ୍କର, ଅନେକ ବ୍ୟକ୍ତି ବିକଟାକାର, ଅନେକ ବ୍ୟକ୍ତିଙ୍କ ଓଷ୍ଠ ଲମ୍ବ ଓ କୃଷ୍ଣବର୍ଣ୍ଣ, ଅନେକଙ୍କ ମୁଷ୍କ ଲିଙ୍ଗ ଏବଂ ପଶ୍ଚାଦ୍‌ଭାଗ ଅତି ବୃହତ୍ । ଅନେକ ବ୍ୟକ୍ତି ମହାମୂଲ୍ୟ ବିବିଧ ମୁକୁଟଦ୍ୱାରା ସୁଶୋଭିତ, ଅନେକ ବ୍ୟକ୍ତି ମୁଣ୍ଡିତମୁଣ୍ଡ; ଅପର କତିପୟ ବ୍ୟକ୍ତି ଜଟାଧାରୀ ।

ସେମାନଙ୍କଦ୍ୱାରା ଭୂମଣ୍ଡଳରେ ଚନ୍ଦ୍ର-ସୂର୍ଯ୍ୟ, ଗ୍ରହ-ନକ୍ଷତ୍ରଯୁକ୍ତ ଆକାଶ-ମଣ୍ଡଳ ଆବିର୍ଭୂତ ହେଲାପରି ଜଣାଗଲା । ଯେଉଁମାନେ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ, ଏହି ଚତୁର୍ବିଧ ଭୂତଗଣଙ୍କୁ ସଂହାର କରିବା ନିମିତ୍ତ ଉତ୍ସାହଯୁକ୍ତ, ଯେଉଁମାନେ ନିର୍ଭୟ ହୋଇ ସର୍ବଦା ମହେଶ୍ୱରଙ୍କ ଭ୍ରୂଭଙ୍ଗୀ ସହ୍ୟ କରନ୍ତି, ଯେଉଁମାନେ ସର୍ବଦା ସ୍ୱକୀୟ ଇଚ୍ଛାନୁସାରେ କାର୍ଯ୍ୟ କରନ୍ତି, ଯେଉଁମାନଙ୍କର ତ୍ରୈଲୋକ୍ୟେଶ୍ୱର ଈଶ୍ୱର, ଯେଉଁମାନେ ସର୍ବଦା ନିତ୍ୟାନନ୍ଦରେ ପ୍ରମୁଦିତ, ବାଗୀଶ ଓ ମାତ୍ସର୍ଯ୍ୟଶୂନ୍ୟ, ଯେଉଁମାନେ ଅଷ୍ଟ-ଐଶ୍ବର୍ଯ୍ୟ ପ୍ରାପ୍ତ ହୋଇ ସୁଦ୍ଧା ବିସ୍ମୟ ପ୍ରାପ୍ତ ହୁଅନ୍ତି ନାହିଁ, ଭଗବାନ ଶଙ୍କର ଯେଉଁମାନଙ୍କ କର୍ମଦ୍ୱାରା ସର୍ବଦା ବିସ୍ମିତ ହୁଅନ୍ତି, ଯେଉଁମାନେ ଭକ୍ତିହେତୁ ବାକ୍ୟ, ମନ ଓ କର୍ମଦ୍ୱାରା ଶିବଙ୍କୁ ଆରାଧନା କରନ୍ତି ସେ ସେହି ଭକ୍ତଗଣଙ୍କୁ ବାକ୍ୟ, ମନ ଓ କର୍ମଦ୍ୱାରା ଔରସପୁତ୍ର ସଦୃଶ ପ୍ରତିପାଳନ କରନ୍ତି, ଯେଉଁମାନେ ବସା ଓ ରକ୍ତପାନ କରନ୍ତି ଏବଂ ବ୍ରାହ୍ମଣଦ୍ୱେଷୀ ମାନଙ୍କଠାରେ ସର୍ବଦା କ୍ରୋଧଯୁକ୍ତ ଥାଆନ୍ତି, ଯେଉଁମାନେ ଚତୁର୍ବିଂଶତି ତତ୍ତ୍ୱସ୍ୱରୂପ ସୋମରସ ସର୍ବଦା ପାନ କରନ୍ତି, ଯେଉଁମାନେ ବେଦାଧ୍ୟୟନ,

ବ୍ରହ୍ମଚର୍ଯ୍ୟ, ତପସ୍ୟା ଓ ଇନ୍ଦ୍ରିୟନିଗ୍ରହଦ୍ୱାରା ଶିବଙ୍କୁ ଉତ୍ତମରୂପେ ଆରାଧନା କରି ଶିବ-ସାୟୁଜ୍ୟପ୍ରାପ୍ତ ହୋଇଅଛନ୍ତି, ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ପ୍ରଭୁ ହରପାର୍ବତୀଙ୍କ ସହିତ ଆତ୍ମସ୍ୱରୂପ ଯେଉଁ ମହାଭୂତ-ମାନଙ୍କଦ୍ୱାରା ଭୋଗ୍ୟବସ୍ତୁ ସମୂହ ଭୋଗ କରନ୍ତି, ସେହିମାନେ ନାନାବିଧ ବାଦ୍ୟ, ହାସ୍ୟ, ବାହୁ-ଆସ୍ଫୋଟ, ଆକ୍ରୋଶ ଓ ଗର୍ଜନଦ୍ୱାରା ଜଗନ୍ମଣ୍ଡଳକୁ ନିନାଦିତ କରି, ଅଶ୍ୱତ୍ଥାମାଙ୍କ ଅଭିମୁଖକୁ ଆଗମନ କଲେ । ସେମାନେ ମହାତ୍ମା ଅଶ୍ୱତ୍ଥାମାଙ୍କ ମହିମା ବୃଦ୍ଧି କରିବାକୁ ଇଚ୍ଛୁକ ହୋଇ ସୌପ୍ତିକ ଦର୍ଶନ ଓ ତାହାଙ୍କ ତେଜଃ ପ୍ରଭାବ ଅବଗତ ହେବା ଅଭିଳାଷରେ ନିଜ ନିଜ ପ୍ରଭାବକୁ ପ୍ରଖର କରି ମହାଦେବଙ୍କୁ ସ୍ତୁତି କରି ଉପସ୍ଥିତ ହେଲେ ।୪୯।

ସେହି ଭୂତସମୂହ ଭୟଙ୍କର, ଅତି ଉଗ୍ର ଶୂଳ, ପଟ୍ଟିଶ, ପରିଘ ଓ ଅଗଣିତ ଅସ୍ତ୍ରଧାରଣପୂର୍ବକ ଚତୁର୍ଦ୍ଦିଗରୁ ସମାଗତ ହେଲେ । ଯେଉଁମାନଙ୍କୁ ଦର୍ଶନ କରି ତ୍ରିଲୋକଲୋକର ଅନ୍ତଃକରଣରେ ଭୟର ସଞ୍ଚାର ହୁଏ, ମହାବଳ ଅଶ୍ୱତ୍ଥାମା ସେହିମାନଙ୍କୁ ଦର୍ଶନ କରି, କିଞ୍ଚିତ୍‌ମାତ୍ର ବ୍ୟଥିତ ହେଲେ ନାହିଁ । ତଦନନ୍ତର ଧନୁର୍ଦ୍ଧର ଦ୍ରୋଣପୁତ୍ର ଗୋଧା ଓ ଅଙ୍ଗୁଳିତ୍ର ବନ୍ଧନପୂର୍ବକ ଆପେ ସ୍ୱକୀୟ ଆତ୍ମାକୁ ଉପହାର ପ୍ରଦାନ କଲେ । ୫୨ ।

ହେ ଭରତ ! ସେହି କର୍ମରେ ଶରାସନସମୂହ ସମିଧ, ଶାଣିତ ଶରବୃନ୍ଦ ଅଗ୍ନି ଏବଂ ସେହି ବୁଦ୍ଧିମାନ ଅଶ୍ୱତ୍ଥାମାଙ୍କ ଆତ୍ମା ଆଜ୍ୟ (ଘୃତ) ହେଲା ।୫୩। ପରିଶେଷରେ ମହାମନ୍ୟୁ ପ୍ରତାପଶାଳୀ ଅଶ୍ୱତ୍ଥାମା ସୋମଦୈବତ ମନ୍ତ୍ରଦ୍ୱାରା ଆତ୍ମାକୁ ଉପହାର ପ୍ରଦାନ କଲେ । ୫୪ । ଶୌର୍ଯ୍ୟଶାଳୀ ଅଶ୍ୱତ୍ଥାମା କୃତାଞ୍ଜଳିପୁଟରେ ରୌଦ୍ରକର୍ମା ମହାତ୍ମା ରୁଦ୍ରଦେବଙ୍କୁ ସ୍ତୁତି କରି ଏହି ବାକ୍ୟ କହିଲେ । ୫୫ ।

ଅଶ୍ୱତ୍ଥାମା କହିଲେ, ହେ ଭଗବାନ ! ଆଙ୍ଗିରସକୁଳରେ ଉତ୍ପନ୍ନ ଏହି ଆତ୍ମାକୁ ମୁଁ ଅଦ୍ୟ ଅଗ୍ନିରେ ହୋମ କରୁଅଛି । ତୁମ୍ଭେ ମତେ ବଳିରୂପେ ଗ୍ରହଣ କର । ୫୬ । ହେ ବିଶ୍ୱାତ୍ମନ୍ ! ମହାଦେବ ! ମୁଁ ପରମସମାଧିଦ୍ୱାରା ଭକ୍ତିରେ ତୁମ୍ଭ ଆଗରେ ତୁମ୍ଭଙ୍କୁ ଆତ୍ମ ପ୍ରଦାନ କରୁଛି । ତୁମ୍ଭଠାରେ ସମସ୍ତ ଭୂତ ଅବସ୍ଥାନ କରିଅଛନ୍ତି । ତୁମ୍ଭେ ମଧ୍ୟ ସର୍ବଭୂତରେ ଅବସ୍ଥାନ କରିଅଛ । ତୁମ୍ଭଠାରେ ଉତ୍କୃଷ୍ଟ ଉତ୍କୃଷ୍ଟ ଗୁଣସମୂହ ପ୍ରତିଷ୍ଠିତ

ହୋଇଅଛନ୍ତି । ୫୮ । ହେ ସର୍ବଭୂତାଶ୍ରୟ ବରେଣ୍ୟ ! ଯଦି ଶତ୍ରୁଗଣ ଆମ୍ଭର ଅଜେୟ ହୁଅନ୍ତି, ତେବେ ଆମ୍ଭେ ତୁମ୍ଭ ନିକଟରେ ପଶୁସଦୃଶ ଅଛୁଁ । ତୁମ୍ଭେ ଆମ୍ଭଙ୍କୁ ଗ୍ରହଣ କର । ୫୯ ।

ଅଶ୍ୱତ୍ଥାମା ସେହି ପ୍ରଦୀପ୍ତ ଦହନର ଅଧିଷ୍ଠାତ୍ରୀ ଦେବୀଙ୍କୁ ଆଶ୍ରୟ କରି, ଏହିପରି କହି ଆତ୍ମପରିତ୍ୟାଗ କରିବାକୁ କୃତସଂକଳ୍ପ ହୋଇ ଅନଳରେ ଆରୋହଣ କରି ବସିଲେ । ୬୦ । ଭଗବାନ ମହାଦେବ ସ୍ୱୟଂ ସେହି ଊର୍ଦ୍ଧ୍ୱବାହୁ ନିଶ୍ଚେଷ୍ଟ ଦ୍ରୋଣନନ୍ଦନଙ୍କୁ ଆଜ୍ୟ-ସ୍ୱରୂପେ ଉପସ୍ଥିତ ହେବାର ଅବଲୋକନ କରି, ହାସ କରି କହିଲେ ଯେ, ଅକ୍ଳିଷ୍ଟକର୍ମା କୃଷ୍ଣ ସତ୍ୟ, ଶୌଚ, ସରଳତା, ଦାନ, ତପସ୍ୟା, ନିୟମ, କ୍ଷମା, ଭକ୍ତି, ଧୃତି, ବୁଦ୍ଧି ଓ ବଚନଦ୍ୱାରା ଯଥାବିଧାନରେ ଆମ୍ଭଙ୍କୁ ଆରାଧନା କରିଅଛନ୍ତି । ଅତଏବ କୃଷ୍ଣ ଅପେକ୍ଷା ଅନ୍ୟ ବ୍ୟକ୍ତି କେହି ଆମ୍ଭର ପ୍ରିୟତମ ନାହିଁ । ୬୩ । ଆମ୍ଭେ ତାହାଙ୍କୁ ସମ୍ମାନ କରି ତୁମ୍ଭଙ୍କୁ ଜଣାଇ ସହସା ପାଞ୍ଚାଳଗଣଙ୍କୁ ରକ୍ଷା କରିଅଛୁଁ ଏବଂ ବାରମ୍ବାର ବହୁତ ମାୟା ପ୍ରକାଶ କରିଅଛୁଁ । ୬୪ । ପାଞ୍ଚାଳଗଣଙ୍କୁ ରକ୍ଷା କରିବାରୁ ଆମ୍ଭେ କୃଷ୍ଣଙ୍କ ସମ୍ମାନ ରଖିଅଛୁଁ । ଏତେବେଳେ ଏମାନେ କାଳକର୍ତ୍ତୃକ ଅଭିଭୂତ ହୋଇଅଛନ୍ତି । ଅତଏବ ଏମାନଙ୍କର ଜୀବନ ନାହିଁ । ୬୫ । ଭଗବନ୍ ମହାତ୍ମା ମହାଦେବ ଅଶ୍ୱତ୍ଥାମାଙ୍କୁ ଏହିପରି କହି ତାହାଙ୍କୁ ଉତ୍କୃଷ୍ଟ ନିର୍ମଳ ଖଡ୍‌ଗ ପ୍ରଦାନପୂର୍ବକ ତଦୀୟ ଶରୀରରେ ଆବିଷ୍ଟ ହେଲେ । ୬୬ ।

ଅଶ୍ୱତ୍ଥାମା ଭଗବାନ ଶିବଙ୍କ ଆବେଶବଶରୁ ତେଜଦ୍ୱାରା ଅଧିକତର ପ୍ରଜ୍ୱଳିତ ହେଲେ ଏବଂ ଦୈବସୃଷ୍ଟ ତେଜଦ୍ୱାରା ସଂଗ୍ରାମରେ ଅତିଶୟ ବଳବାନ୍ ହେଲେ । ୬୭ । ସେ ସାକ୍ଷାତ୍ ଈଶ୍ୱରଙ୍କ ପରି ଶତ୍ରୁ ଶିବିରରେ ପ୍ରବେଶ କଲାରୁ ଅଦୃଶ୍ୟ ଭୂତଗଣ ଓ ରାକ୍ଷସଗଣ ଚତୁର୍ଦ୍ଦିଗରୁ ତାହାଙ୍କ ପଶ୍ଚାତ୍ ଧାବିତ ହେଲେ । ୬୮ ।

---

# ଅଷ୍ଟମ ଅଧ୍ୟାୟ

ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଆମ୍ଭେ ପଚାରୁଅଛୁଁ, ମହାରଥ ଅଶ୍ୱତ୍‌ଥାମା ସେରୂପେ ଶିବିରରେ ପ୍ରବେଶ କଲାରୁ, କୃତବର୍ମା ଓ କୃପାଚାର୍ଯ୍ୟ ଭୟାର୍ତ୍ତ ହୋଇ ନିବର୍ତ୍ତି ନାହାନ୍ତି ତ ? ସେହି ଦୁହେଁ ସାମାନ୍ୟ ରକ୍ଷକଗଣକର୍ତ୍ତୃକ ନିବାରିତ ଓ ବନ୍ଦୀକୃତ ହୋଇନାହାନ୍ତି ତ ? ସେହି ମହାରଥ ଦୁହେଁ ଏହି କାର୍ଯ୍ୟକୁ ଅସହ୍ୟ ଜ୍ଞାନ କରି ନିବୃତ୍ତ ହେଲେ ନାହିଁ ତ ? ଆମ୍ଭେ ପଚାରୁଅଛୁଁ, ସୋମକ ଓ ପାଣ୍ଡବଗଣଙ୍କୁ ନିହତ ଏବଂ ଶିବିରକୁ ମନ୍ଥନ କରି, ସଂଗ୍ରାମରେ ଦୁର୍ଯ୍ୟୋଧନଙ୍କ ପରି ପରମଗତି ପ୍ରାପ୍ତ ହୋଇନାହାନ୍ତି ତ ? ୩ । ଆମ୍ଭେ ପଚାରୁଅଛୁଁ, ସେହି ବୀର ଦୁହେଁ ପାଞ୍ଚାଳ-ଗଣଙ୍କ ଦ୍ୱାରା ନିହତ ହୋଇ କ୍ଷିତିତଳରେ ଶୟନ କରିନାହାନ୍ତି ତ ? ଯାହାହେଉ ତେତେବେଳେ ସେହି ଦୁହେଁ ଯାହା କରିଥିଲେ, ତାହା ତୁମ୍ଭେ ଆମ୍ଭଙ୍କୁ କହ । ୪ ।

ସଞ୍ଜୟ କହିଲେ, ମହାରାଜ ! ସେହି ମହାତ୍ମା ଦ୍ରୋଣପୁତ୍ର ଶିବିରକୁ ଗଲାରୁ କୃପାଚାର୍ଯ୍ୟ ଓ କୃତବର୍ମା ଶିବିରର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ରହିଲେ । ୫ । ଅଶ୍ୱତ୍‌ଥାମା ସେହି ଯତ୍ନଶୀଳ ଦୁଇ ମହାରଥଙ୍କୁ ଦେଖି ଅତିଶୟ ହୃଷ୍ଟ ହୋଇ, ମୃଦୁସ୍ୱରରେ ଏହି ବାକ୍ୟ କହିଲେ ଯେ, ଆପଣ ଦୁହେ ଯତ୍ନଶୀଳ ହେଲେ ସମସ୍ତ କ୍ଷତ୍ରକୁଳ ନାଶ କରିବାକୁ ସମର୍ଥ ହେବେ । ଏହି ହତାବଶିଷ୍ଟ ବିଶେଷତଃ ପ୍ରସୁପ୍ତ ପାଞ୍ଚାଳମାନଙ୍କ କଥା ଅଧିକ ନୁହେଁ, ଆମେ ଶିବିର ମଧ୍ୟରେ ପ୍ରବିଷ୍ଟ ହୋଇ ଯମଦେବ ସଦୃଶ ବିଚରଣ କରିବୁଁ । କୌଣସି ବ୍ୟକ୍ତି ଜୀବିତ ରହି ଆପଣ ଦୁହିଁଙ୍କ ନିକଟରୁ ଯେଉଁପରି ବିମୁକ୍ତ ନ ହେବ, ସେହିପରି କରିବାହେବେ ବୋଲି ଆମ୍ଭେ ମନରେ ନିଶ୍ଚୟ କରିଅଛୁଁ ।

ଅଶ୍ୱତ୍‌ଥାମା ଏହିପରି କହି ଆତ୍ମଭୟ ପରିତ୍ୟାଗପୂର୍ବକ ପ୍ଲୁତଗତି କରି ଅଦ୍ୱାରଦ୍ୱାରା ପାଣ୍ଡବମାନଙ୍କ ମହା-ଶିବିରରେ ପ୍ରବେଶ କଲେ । ସେହି ମହାବାହୁ ଶିବିର ମଧ୍ୟରେ ପ୍ରବିଷ୍ଟ ହୋଇ, ଧୃଷ୍ଟଦ୍ୟୁମ୍ନଙ୍କ ଉଦ୍ଦେଶ୍ୟରେ ଧୀରେ ଧୀରେ ତାହାଙ୍କ ବସତି ସ୍ଥାନର ନିକଟବର୍ତ୍ତୀ ହେଲେ । ସେମାନେ

ସଂଗ୍ରାମରେ ଅତି ମହତ୍ କାର୍ଯ୍ୟ ସମ୍ପାଦନ କରି ଅତ୍ୟନ୍ତ ପରିଶ୍ରାନ୍ତ ହୋଇଥିବାରୁ ସମସ୍ତେ ଏକତ୍ର ମିଳିତ ହୋଇ ବିଶ୍ୱସ୍ତଚିତ୍ତରେ ଶୟନ କରିଥିଲେ । ହେ ମହାରାଜ ! ତତ୍ପରେ ଅଶ୍ୱତ୍ଥାମା ଧୃଷ୍ଟଦ୍ୟୁମ୍ନଙ୍କ ବାସରେ ପ୍ରବେଶପୂର୍ବକ ତାହାଙ୍କୁ ଶଯ୍ୟାରେ ଶୟନ କରିଥିବାର ନିକଟରେ ଦେଖିଲେ । ସେ ସେହି ମହାତ୍ମାଙ୍କୁ ପଟ୍ଟବସ୍ତ୍ରଧବଳିତ ମହାମୂଲ୍ୟ ଆସ୍ତରଣସଂବୃତ ଉତ୍କୃଷ୍ଟ ମାଲ୍ୟଯୁକ୍ତ ଧୂପ ଓ ସୁଗନ୍ଧ ଚୂର୍ଣ୍ଣଦ୍ୱାରା ସୁବାସିତ ଶୟନରେ ବିଶ୍ୱସ୍ତ ଓ ଅକୁତୋଭୟରେ ନିଦ୍ରିତ ହୋଇଥିବାର ନିରୀକ୍ଷଣ କରି ପଦାଘାତଦ୍ୱାରା ପ୍ରବୋଧିତ କଲେ । ଅସୀମ ବୁଦ୍ଧି, ସମର-ଦୁର୍ମଦ, ଧୃଷ୍ଟଦ୍ୟୁମ୍ନ ପାଦସ୍ପର୍ଶ ମାତ୍ରେ ଉତ୍ଥିତ ହୋଇ ଅମେୟାତ୍ମା ମହାରଥ ଦ୍ରୋଣପୁତ୍ରଙ୍କୁ ଜାଣିପାରିଲେ । ମହାବଳ ଅଶ୍ୱତ୍ଥାମା ତାହାଙ୍କୁ ଶଯ୍ୟାରୁ ଉଠିବାର ଦେଖି କରଦ୍ୱୟଦ୍ୱାରା କେଶ ଧାରଣ କରି ଭୂତଳରେ ନିକ୍ଷେପଣ କଲେ । ହେ ମହାରାଜ ! ପାଞ୍ଚାଳ-ରାଜପୁତ୍ର ତେତେବେଳେ ଅଶ୍ୱତ୍ଥାମାକର୍ତ୍ତୃକ ବଳପୂର୍ବକ ନିଷ୍ପିଷ୍ଟ ହୋଇ ଭୟ ଓ ନିଦ୍ରାବଶରୁ କୌଣସି ଚେଷ୍ଟା କରିପାରିଲେ ନାହିଁ । ଅଶ୍ୱତ୍ଥାମା ସେହିପରି କମ୍ପମାନ ଧୃଷ୍ଟଦ୍ୟୁମ୍ନଙ୍କୁ କଣ୍ଠ ଓ ବକ୍ଷସ୍ଥଳରେ ପଦଦ୍ୱାରା ଆକ୍ରମଣ କରି ପଶୁବଧ କଲେ ।

ଧୃଷ୍ଟଦ୍ୟୁମ୍ନ ତେତେବେଳେ ଅଶ୍ୱତ୍ଥାମାଙ୍କୁ ନଖଦ୍ୱାରା ଖଣ୍ଡିତ କରି ଅପରିସ୍ଫୁଟରୂପେ କହିଲେ, "ହେ ଆଚାର୍ଯ୍ୟପୁତ୍ର ! ଆମ୍ଭଙ୍କୁ ଶସ୍ତ୍ରଦ୍ୱାରା ବିନଷ୍ଟ କର । ବିଳମ୍ବ ନ କର, ହେ ନରଶ୍ରେଷ୍ଠ ! ତୁମ୍ଭ ହେତୁରୁ ଆମ୍ଭେ ସୁକୃତଲୋକକୁ ଗମନ କରିବୁଁ । ୨୦ । ଅଶ୍ୱତ୍ଥମାଙ୍କଦ୍ୱାରା ନିତାନ୍ତ ଆକ୍ରାନ୍ତ ଶତ୍ରୁତାପନ ବଳବାନ୍ ଧୃଷ୍ଟଦ୍ୟୁମ୍ନ ଏହି ବାକ୍ୟ କହି ବିରତ ହେଲେ । ୨୧ । ଅଶ୍ୱତ୍ଥାମା ତାହାଙ୍କ ସେହି ଅବ୍ୟକ୍ତ ବାକ୍ୟ ଶ୍ରବଣ କରି କହିଲେ, ହେ କୁଳପାଂସନ ! ଆଚାର୍ଯ୍ୟଘାତୀମାନଙ୍କ ନିମିତ୍ତ କୌଣସି ଲୋକ ନାହିଁ, ଅତଏବ ହେ ଦୁର୍ବୁଦ୍ଧେ ! ତୁମ୍ଭେ ଶସ୍ତ୍ରଦ୍ୱାରା ନିହତ ହେବାର ଉପଯୁକ୍ତ ନୁହ । ଅଶ୍ୱତ୍ଥାମା ଏହିପରି କହି ସିଂହ ଯେଉଁପରି ମତ୍ତଗଜକୁ ପ୍ରହାର କରେ, ତଦ୍ବତ୍ ସେହି ବୀରର ମର୍ମସ୍ଥାନକୁ ଅତି ଦାରୁଣ ପାଦପ୍ରହାରଦ୍ୱାରା ଆଘାତ କଲେ । ହେ ମହାରାଜା ! ଗୃହ ମଧ୍ୟରେ ଯେହି ବୀରଙ୍କୁ ଏହିପରି ପ୍ରହାର କଲାରୁ, ତତ୍ରସ୍ଥ ଉଚ୍ଚନାଦରେ ସ୍ତ୍ରୀଗଣ ଓ ରକ୍ଷୀ ପୁରୁଷଗଣ ଜାଗରିତ ହେଲେ । ସେହିମାନେ ଅତିମାନୁଷ ବିକ୍ରମ, ଅତି

ତେଜସ୍ୱୀ ଅଶ୍ୱତ୍ଥାମାଙ୍କୁ ଅବଲୋକନ କରି ଭୂତ-ବିବେଚନାରେ ଭୟ ଜନ୍ମିଲାରୁ କୌଣସି କଥା କହିପାରିଲେ ନାହିଁ । ତେଜସ୍ୱୀ ଦ୍ରୋଣପୁତ୍ର, ତାହାଙ୍କୁ ଉକ୍ତ ଉପାୟଦ୍ୱାରା ଯମାଳୟକୁ ପ୍ରେରଣପୂର୍ବକ ଗୋଟିଏ ସ୍ୱଚ୍ଛନ୍ଦ ରଥରେ ଅଧିଷ୍ଠାନ କଲେ । ହେ ମହାରାଜ ! ସେ ଧୃଷ୍ଟଦ୍ୟୁମ୍ନଙ୍କ ଗୃହରୁ ନିଷ୍କ୍ରାନ୍ତ ହୋଇ ବିଗସମୂହକୁ ନିନାଦରେ ପୂର୍ଣ୍ଣ କରି ବିପକ୍ଷ-ମାନଙ୍କ ଜିଘାଂସା ନିମିତ୍ତ ରଥଦ୍ୱାରା ଶିବିରକୁ ଗମନ କଲେ । ତତ୍ପରେ ମହାରଥ ଦ୍ରୋଣପୁତ୍ର ସେଠାରୁ ନିର୍ଗତ ହେବାରୁ ସ୍ତ୍ରୀବୃନ୍ଦ ରକ୍ଷକମାନଙ୍କ ସହିତ ଆର୍ତ୍ତନାଦ କଲେ । ସେମାନେ ରାଜାଙ୍କୁ ନିହତ ହେବାର ଦେଖି ଅତିଶୟ ଆକୁଳ ହୋଇ ରୋଦନ କଲେ । ହେ ମହାରାଜ ! ନିକଟସ୍ଥିତ କ୍ଷତ୍ରିୟ ଶ୍ରେଷ୍ଠଗଣ ସେମାନଙ୍କର ରୋଦନଧ୍ୱନି ଶୁଣି ଜାଗରିତ ହୋଇ ଅବିଳମ୍ବରେ କବଚ ପରିଧାନ କଲେ ଏବଂ ଏ କି ଘଟନା ବୋଲି ବିସ୍ମିତ ହେଲେ । ହେ ମହାରାଜ ! ସେହି ସମସ୍ତ ବିଶେଷତଃ ସ୍ତ୍ରୀବୃନ୍ଦ ଅଶ୍ୱତ୍ଥାମାଙ୍କୁ ନିରୀକ୍ଷଣ କରି କରୁଣ ସ୍ୱରରେ କ୍ଷତ୍ରିୟମାନଙ୍କୁ କହିଲେ, ତୁମ୍ଭେମାନେ ଶୀଘ୍ର ଧାବିତ ହୁଅ । ଏ ବ୍ୟକ୍ତି ମନୁଷ୍ୟ କିମ୍ବା ରାକ୍ଷସ, ତାହା ଆମ୍ଭେମାନେ ଜାଣିପାରିଲୁ ନାହିଁ । ଏ ସହସା ପାଞ୍ଚାଳ ନରପତିଙ୍କୁ ନିହତ କରି, ରଥରେ ଆରୋହଣପୂର୍ବକ ଅବସ୍ଥାନ କରିଅଛି ।

ଅନନ୍ତର ସେହି ସମସ୍ତ ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ସହସା ଅଶ୍ୱତ୍ଥାମାଙ୍କୁ ଚତୁର୍ଦ୍ଦିଗରେ ପରିବେଷ୍ଟନ କଲେ । ୩୩ । ସେମାନଙ୍କ ଆଗମନ ମାତ୍ରେ ସେ ରୁଦ୍ରାସ୍ତ୍ରଦ୍ୱାରା ସେମାନଙ୍କୁ ନିପାତିତ କଲେ । ଅଶ୍ୱତ୍ଥାମା, ଧୃଷ୍ଟଦ୍ୟୁମ୍ନ ଓ ତଦୀୟ ଅନୁଚରବର୍ଗଙ୍କୁ ନିହତ କରି ଅନତିଦୂରରେ ଉତ୍ତମୌଜାଙ୍କୁ ଶଯ୍ୟାତଳରେ ଶୟନ କରିଥିବାର ଦେଖିଲେ ଏବଂ ଦେଖିଲାମାତ୍ରେ ସେହି ଶତ୍ରୁଦମନଙ୍କ କଣ୍ଠ ଓ ବକ୍ଷସ୍ଥଳକୁ ପାଦଦ୍ୱାରା ଆକ୍ରମଣପୂର୍ବକ ବିମର୍ଦ୍ଦନ କରି ବିନାଶ କଲେ । ଯୁଧାମନ୍ୟୁ ତାହାଙ୍କୁ ନିଶାଚରକର୍ତ୍ତୃକ ନିହତ ହେବାର ଜାଣି ଅତିଶୀଘ୍ର ଗଦା ଉତ୍ତୋଳନପୂର୍ବକ ଅଶ୍ୱତ୍ଥାମାଙ୍କ ହୃଦୟରେ ପ୍ରହାର କଲେ । ଦ୍ରୋଣପୁତ୍ର ଧାବିତ ହୋଇ ତାହାଙ୍କୁ ଧାରଣ କଲେ । ଏବଂ ଭୂମିରେ ପାତିତପୂର୍ବକ ତାଡ଼ନ କରି ପଶୁସଦୃଶ ବଧ କଲେ । ହେ ରାଜେନ୍ଦ୍ର ! ବୀର ଅଶ୍ୱତ୍ଥାମା ଏହିପରି ତାହାଙ୍କୁ ହତ କରି, ଅନ୍ୟାନ୍ୟ ସଂସୁପ୍ତ

ମହାରଥଗଣଙ୍କ ନିକଟକୁ ଧାବିତ ହେଲେ । ଯଜ୍ଞ ସ୍ଥଳରେ ଘାତକ ଯେଉଁପରି ପଶୁମାନଙ୍କୁ ନିହତ କରେ, ଅଶ୍ୱତ୍ଥାମା ସେହିପରି ସେହି ସମସ୍ତ କ୍ରମମାନ ଶତ୍ରୁଗଣଙ୍କୁ ଆହତ କଲେ । ଅସିଯୁଦ୍ଧବିଶାରଦ ସେହି ଅଶ୍ୱତ୍ଥାମା ବିବିଧ ମାର୍ଗରେ ବିଚରଣ କରି କକ୍ଷ ମଧ୍ୟରେ ଶୟିତ ଏବଂ ତନ୍ଦ୍ରାଧିଷ୍ଟିତ ଶ୍ରାନ୍ତ ଓ ନ୍ୟସ୍ତ ଶସ୍ତ୍ରରକ୍ଷୀଗଣଙ୍କୁ ନିସ୍ପେଷଣପୂର୍ବକ କ୍ଷଣକ ମଧ୍ୟରେ ବିନଷ୍ଟ କଲେ । ୪୧ । ଏହାପରେ ଦ୍ରୋଣପୁତ୍ର କାଳପ୍ରେରିତ କୃତାନ୍ତ ସଦୃଶ ସର୍ବାଙ୍ଗରେ ରକ୍ତାକ୍ତ ହୋଇ ଉତ୍କୃଷ୍ଟ ଅସିପତ୍ରଦ୍ୱାରା ଅଶ୍ୱ,ଗଜ ଓ ଯୋଦ୍ଧାମାନଙ୍କୁ ଛେଦନ କଲେ । ୪୨ । ମରୁଥିବା ଯୋଦ୍ଧାମାନଙ୍କର ହସ୍ତ-ପାଦର ସଂଗ୍ଚଳନ, ତାଙ୍କୁ ମାରିବାପାଇଁ ଖଡ୍‌ଗର ଉତ୍ତୋଳନ ଓ ସେହି ଖଡ୍‌ଗଦ୍ୱାରା ପ୍ରହାର କରିବା, ଏହି ତିନୋଟି କାରଣରୁ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ରକ୍ତ-ରଞ୍ଜିତ ହୋଇଥିଲେ । ୪୩ । ରକ୍ତସିକ୍ତ ଓ ଦୀପ୍ତ ଖଡ୍‌ଗ ଗ୍ରହଣପୂର୍ବକ ଯୁଦ୍ଧମାନ ଅଶ୍ୱତ୍ଥାମାଙ୍କ ଅମାନୁଷ ଆକୃତି, ସେତେବେଳେ ପରମ ଭୀଷଣଭାବରେ ପ୍ରକାଶିତ ହେଲା । ୪୪ ।

ହେ କୁରୁରାଜ ! ସେତେବେଳେ ଯେଉଁମାନେ ଜାଗ୍ରତ ହେଲେ ସେମାନେ ମଧ୍ୟ ଘୋରତର ନାଦରେ ମୋହିତ ହୋଇ, ପରସ୍ପର ଅବଲୋକନ କରି ଦ୍ରୋଣପୁତ୍ରଙ୍କୁ ଦର୍ଶନ କରିମାତ୍ରେ ବ୍ୟଥିତ ହେଲେ । ୪୫ । ଶତ୍ରୁକର୍ଷଣ କ୍ଷତ୍ରିୟଗଣ ଅଶ୍ୱତ୍ଥାମାଙ୍କ ତାଦୃଶରୂପ ଦର୍ଶନ କରି ତାହାଙ୍କୁ ରାକ୍ଷସ ବୋଲି ଜାଣି ଲୋଚନ ନିମୀଳନ କଲେ । ୪୬ । ସେ ଶିବିର ମଧ୍ୟରେ କୃତାନ୍ତ ସଦୃଶ ବିଚରଣ କରି ଦ୍ରୌପଦୀଙ୍କ ପଞ୍ଚପୁତ୍ର ଓ ଅବଶିଷ୍ଟ ସୋମକମାନଙ୍କୁ ଅବଲୋକନ କଲେ । ୪୭ । ହେ ମହାରାଜ ! ଧନୁର୍ହସ୍ତ ମହାରଥ ଦ୍ରୌପଦୀପୁତ୍ରମାନେ ସେହି ଶବ୍ଦରେ ତ୍ରସ୍ତ ହୋଇ ଏବଂ ଧୃଷ୍ଟଦ୍ୟୁମ୍ନ ନିହତ ହୋଇଥିବାର ଶୁଣି ଅଶ୍ୱତ୍ଥାମାଙ୍କୁ ନିର୍ଭୟରେ ଶରସମୂହରେ ଆଚ୍ଛାଦନ କଲେ । ତତ୍ପରେ ଶିଖଣ୍ଡୀ ଓ ପ୍ରଭଦ୍ରକଗଣ ସେହି ଶବ୍ଦରେ ଜାଗରିତ ହୋଇ, ଶିଳୀମୁଖ ଅସ୍ତ୍ରସମୂହଦ୍ୱାରା ଅଶ୍ୱତ୍ଥାମାଙ୍କୁ ପୀଡ଼ିତ କଲେ । ଅଶ୍ୱତ୍ଥାମା ଶରବର୍ଷଣକାରୀ ସେହି ସମସ୍ତ ମହାରଥମାନଙ୍କୁ ଦେଖି ସେମାନଙ୍କ ଜିଘାଂସା ନିମିତ୍ତ ଘୋରତର ନାଦ କଲେ । ତତ୍ପରେ ସେ ପିତାଙ୍କ ବଧ ବୃତ୍ତାନ୍ତ ସ୍ମରଣ କରି, ଅତିଶୟ କ୍ରୋଧଯୁକ୍ତ ହୋଇ ରଥରୁ ଅବତରଣପୂର୍ବକ ସତ୍ୱର ଧାବମାନ ହେଲେ ।

ସେହି ବଳବାନ୍ ଅଶ୍ୱତ୍ଥାମା ସହସ୍ର ଚନ୍ଦ୍ରସଂଯୁକ୍ତ ବିମଳ କବଚ ଏବଂ ସୁବର୍ଣ୍ଣ ପରିଷ୍କୃତ ଦିବ୍ୟ ବିପୁଳ ଖଡ୍ଗ ଧାରଣପୂର୍ବକ ସଂଗ୍ରାମରେ ଦ୍ରୌପଦୀ-ପୁତ୍ରଗଣଙ୍କ ସମ୍ମୁଖକୁ ଧାବିତ ହୋଇ ଖଡ୍ଗଦ୍ୱାରା ସେମାନଙ୍କୁ ତାଡ଼ନା କଲେ । ୫୩ ।

ହେ ମହାରାଜ ! ତତ୍ପରେ ସେହି ନରଶ୍ରେଷ୍ଠ ମହାଯୁଦ୍ଧରେ ପ୍ରତିବିନ୍ଧ୍ୟଙ୍କ କୁକ୍ଷିଦେଶରେ ଆଘାତ କଲେ । ସେହି ଆଘାତରେ ସେ ହତ ହୋଇ ଧରିତଳରେ ନିପତିତ ହେଲେ । ୫୪ । ପ୍ରତାପଶାଳୀ ସୁତସୋମ ଅଶ୍ୱତ୍ଥାମାଙ୍କୁ ପ୍ରାସ-ଅସ୍ତ୍ରଦ୍ୱାରା ବିଦ୍ଧ କରି ପୁନଶ୍ଚ ଅସି ଉତ୍ତୋଳନପୂର୍ବକ ତାହାଙ୍କ ନିକଟକୁ ଧାବିତ ହେଲେ । ୫୫ । ହେ ନରଶ୍ରେଷ୍ଠ ! ଅଶ୍ୱତ୍ଥାମା ସୁତସୋମଙ୍କର ସେହି ଅସିଯୁକ୍ତ ବାହୁକୁ ଛେଦନ କରି ପୁନଶ୍ଚ ତାହାଙ୍କ ପାର୍ଶ୍ୱଦେଶରେ ଆଘାତ କଲେ । ସେହି ଆଘାତରେ ସେ ଭିନ୍ନ ହୃଦୟ ହୋଇ ନିପତିତ ହେଲେ । ୫୬ । ନକୁଳ-ପୁତ୍ର ବୀର୍ଯ୍ୟବାନ ଶତାନୀକ ବାହୁଦ୍ୱୟଦ୍ୱାରା ରଥଚକ୍ର ଉତ୍କ୍ଷେପଣ କରି ତାହାଦ୍ୱାରା ଅଶ୍ୱତ୍ଥାମାଙ୍କ ବକ୍ଷସ୍ଥଳରେ ତାଡ଼ନା କଲେ । ୫୭ । ଶତାନୀକ ଚକ୍ର ପରିତ୍ୟାଗ କଲାକ୍ଷଣି ଦ୍ୱିଜବର ଅଶ୍ୱତ୍ଥାମା ତାହାଙ୍କୁ ପ୍ରହାର କଲେ । ସେ ସେହି ପ୍ରହାରରେ ବିହ୍ୱଳ ହୋଇ ଭୂତଳରେ ନିପତିତ ହେଲେ । ସେ ପତିତ ହେବାମାତ୍ରେ ଅଶ୍ୱତ୍ଥାମା ତାହାର ମସ୍ତକ ହରଣ କଲେ । ୫୮ । ତଦନନ୍ତର ଶ୍ରୁତକର୍ମା ପରିଘ ଗ୍ରହଣ କରି ଦ୍ରୋଣପୁତ୍ରଙ୍କ ଅଭିମୁଖକୁ ଗମନ-ପୂର୍ବକ ତାହାଙ୍କ ବାମଭାଗରେ ଫଳକଦ୍ୱାରା ତାଡ଼ନା କଲେ । ୫୯ । ପରିଶେଷରେ ଅଶ୍ୱତ୍ଥାମା ଉତ୍ତମ ଅସିଦ୍ୱାରା ଶ୍ରୁତକର୍ମାଙ୍କ ଆସ୍ୟଦେଶରେ ଆଘାତ କଲେ । ତାହାଦ୍ୱାରା ସେ ବିମୂଢ଼ ଓ ବିକୃତବଦନ ହୋଇ ହତ ଓ ଭୂମିତଳରେ ନିପତିତ ହେଲେ । ୬୦ । ବୀର ମହାରଥ ଶ୍ରୁତକୀର୍ତ୍ତି ସେହି ଶବ୍ଦରେ ଅଶ୍ୱତ୍ଥାମାଙ୍କ ନିକଟକୁ ଆଗତ ହୋଇ, ତାହାଙ୍କୁ ଶର-ବୃଷ୍ଟିଦ୍ୱାରା ଆକ୍ରାନ୍ତ କଲେ । ୫ । ଦ୍ରୋଣପୁତ୍ର ଚର୍ମଦ୍ୱାରା ତାହାର ଶରବର୍ଷଣ ନିବାରଣ କରି ତାହାଙ୍କ କଳେବରରୁ ଶୋଭମାନ କୁଣ୍ଡଳଯୁକ୍ତ ମସ୍ତକ ହରଣ କଲେ । ୬୨ । ତତ୍ପରେ ବଳବାନ୍ ପ୍ରଭଦ୍ରକଗଣଯୁକ୍ତ ଅଶ୍ୱତ୍ଥାମା ଭୀଷ୍ମହନ୍ତା ଶିଖଣ୍ଡୀଙ୍କୁ ନାନାବିଧ ଆୟୁଧଦ୍ୱାରା ଆଘାତ କଲେ ଏବଂ ତାହାଙ୍କ ଭ୍ରୂଲତାଦ୍ୱୟର ମଧ୍ୟଦେଶକୁ ବାଣଦ୍ୱାରା ବିଦ୍ଧ କଲେ ।

ପରିଶେଷରେ ମହାବଳ ଦ୍ରୋଣପୁତ୍ର କ୍ରୋଧାନ୍ୱିତ ହୋଇ ଶିଖଣ୍ଡିଙ୍କୁ ଅସି-ଦ୍ୱାରା ଦ୍ୱିଖଣ୍ଡ କଲେ । ତତ୍ପରେ କ୍ରୋଧାବିଷ୍ଟ ଶତ୍ରୁତାପନ ଦ୍ରୋଣପୁତ୍ର ଶିଖଣ୍ଡିଙ୍କୁ ନିହତ କରି, ଅତିଶୀଘ୍ର ସମସ୍ତ ପ୍ରଭଦ୍ରକଗଣ ଏବଂ ବିରାଟ ରାଜାଙ୍କର ଯେଉଁସବୁ ସୈନ୍ୟ ଅବଶିଷ୍ଟ ଥିଲେ, ସେମାନଙ୍କ ନିକଟକୁ ଧାବିତ ହେଲେ । ୬୬ । ମହାବଳ ଅଶ୍ୱତ୍ଥାମା ଦ୍ରୁପଦ ରାଜାଙ୍କର ପୁତ୍ର-ପୌତ୍ର ସୁହୃଦ୍ ପ୍ରଭୃତିଙ୍କୁ ଦେଖି ଭୟଙ୍କରରୂପେ ନିଧନ କଲେ । ୬୭ । ଅସିମାର୍ଗ-ବିଶାରଦ ଦ୍ରୋଣପୁତ୍ର ଅନ୍ୟାନ୍ୟ ପୁରୁଷଗଣଙ୍କର ଅଭିମୁଖକୁ ଯାଇ ଅସିଦ୍ୱାରା ସେମାନଙ୍କୁ ଛେଦନ କଲେ । ୬୮ ।

ସେତେବେଳେ ସୈନିକମାନେ ସେହି ସ୍ଥାନରେ ରକ୍ତବଦନା, ରକ୍ତ-ନୟନା, ରକ୍ତମାଲ୍ୟାନୁଲେପନା, ରକ୍ତବସନା, ପାଶହସ୍ତା ଗୋଟିଏ କୃଷ୍ଣବର୍ଣ୍ଣା ଗାନକାରିଣୀ କାଳରାତ୍ରୀଙ୍କୁ ବସିଥିବାର ଅବଲୋକନ କଲେ । ୬୯ । ସେହି ନାରୀ ନର, ଅଶ୍ୱ ଓ ଗଜଯୂଥଙ୍କୁ ଘୋରତର ପାଶଦ୍ୱାରା ବନ୍ଧ କରି ଅବସ୍ଥିତ ହୋଇଥିଲେ ଏବଂ କେଶଶୂନ୍ୟ ବିବିଧ ପାଶବଦ୍ଧ ପ୍ରେତଗଣଙ୍କୁ ହରଣ କରୁଥିଲେ । ହେ ମହାରାଜ ! ଯେଉଁଦିନଠାରୁ କୁରୁ-ପାଣ୍ଡବ ସୈନ୍ୟମାନଙ୍କର ସଂଗ୍ରାମ ହୋଇଥିଲା, ତଦବଧି ଯୋଦ୍ଧାମାନେ ସେହି କନ୍ୟାଙ୍କୁ ଓ ଦ୍ରୋଣନନ୍ଦନଙ୍କୁ ଏହିପରି ସ୍ୱପ୍ନରେ ଦେଖୁଥିଲେ ଯେ, ସେହି ନାରୀ ନିଦ୍ରା ସମୟରେ ପ୍ରତିରାତ୍ରିରେ ନ୍ୟସ୍ତଶସ୍ତ୍ର ସୁପ୍ତ ମହାରଥ-ଗଣଙ୍କୁ ସ୍ଥାନାନ୍ତରିତ କରୁଅଛନ୍ତି ଏବଂ ଅଶ୍ୱତ୍ଥାମା ଯେଉଁପରି ସମସ୍ତଙ୍କୁ ନିହତ କରୁଅଛନ୍ତି । ପ୍ରଥମରେ ସେମାନେ ଦୈବକର୍ତ୍ତୃକ ହତ ହୋଇଥିଲେ । ଅଶ୍ୱତ୍ଥାମା ଭୈରବରବ କରି ସର୍ବଭୂତଙ୍କୁ ତ୍ରାସ ଦେଇ, ସେହି ସମସ୍ତ ବ୍ୟକ୍ତିଙ୍କୁ ପଶ୍ଚାତ୍ ନିପାତିତ କଲେ । ୭୪ । ଦୈବପୀଡ଼ିତ ବୀରମାନେ ସେହି ପୂର୍ବକାଳୀନ ସ୍ୱପ୍ନଦର୍ଶନକୁ ସ୍ମରଣ କରି ଏ ସେହି, ଏହିପରି ଜାଣିଲେ । ୭୫ ।

ତଦନନ୍ତର ପାଣ୍ଡବଗଣଙ୍କ ଶିବିରରେ ଶତସହସ୍ର ଧନୁର୍ଦ୍ଧାରୀଗଣ ସେହି ନିନାଦଦ୍ୱାରା ପ୍ରତିବୋଧିତ ହେଲେ ।୭୬। ଅଶ୍ୱତ୍ଥାମା କାଳପ୍ରେରିତ ଅନ୍ତକପରି ସେମାନଙ୍କ ମଧ୍ୟରୁ କାହାର ଚରଣଦ୍ୱୟ, କାହାର ମଧ୍ୟ-ଜଘନ ଛେଦନ କଲେ ଏବଂ କେଉଁ କେଉଁ ବ୍ୟକ୍ତିଙ୍କର ମଧ୍ୟ ପାର୍ଶ୍ୱଦେଶ ଭେଦ କଲେ । ୭୭ । ହେ ପ୍ରଭୋ ! ଅତି ଉଗ୍ରରୂପେ ପ୍ରତିପିଷ୍ଟ, ଶବ୍ଦାୟମାନ,

ଓ ଅତଶୟ୍ୟ ଆତୁର ଅଶ୍ୱଗଜଙ୍କଦ୍ୱାରା ମଥିତ ମନୁଷ୍ୟଗଣକର୍ତ୍ତୃକ ଭୂମଣ୍ଡଳ ଆଚ୍ଛନ୍ନ ହେଲା । ୭୮ । ଏ କଣ, ଏ କଏ, ଏ କ ଶବ୍ଦ ଶୁଭୁଅଛୁ ! ଏ କଣ କରୁଅଛୁ ! ଏହିପରି ଚିତନାଦକାରୀ ନରକୁଳ ପକ୍ଷରେ ଅଶ୍ୱତ୍ଥାମା ଅନ୍ତକସଦୃଶ ହୋଇଥିଲେ । ୭୯ । ଅସ୍ତ୍ରଧାରୀ ଶ୍ରେଷ୍ଠ ଅଶ୍ୱତ୍ଥାମା ଶସ୍ତ୍ର ଓ କବଚହୀନ ଏବଂ କବଚଯୁକ୍ତ ପାଣ୍ଡବ ଓ ସଞ୍ଜୟ ସୈନ୍ୟମାନଙ୍କୁ ମୃତ୍ୟୁ-ଲୋକକୁ ପ୍ରେରଣ କଲେ । ୮୦ । ତତ୍ପରେ ସେହି ଶବ୍ଦରେ ବିବସ୍ତ୍ର ଉତ୍ପୀଡ଼ିତ, ନିଦ୍ରାନ୍ଧ ନଷ୍ଟସଂଜ୍ଞ ଓ ଭୟାତୁର ମାନବଗଣ ଯେ ଯେଉଁ ସ୍ଥାନରେ ଥିଲେ, ସେ ସେହି ସ୍ଥାନରେ ବିଲୀନ ହେଲେ । ୮୧ । ଉରୁଦେଶ ଅବଶ ହେଲାରୁ କେହି କେହି ନିଗୃହୀତ ହେବା ଉପରେ ଅତିହତବୀର୍ଯ୍ୟ ଏବଂ ଅତିଶୟ୍ୟ ତ୍ରସ୍ତ ହୋଇ ନିନାଦ କରି ପରସ୍ପର ନିକଟବର୍ତ୍ତୀ ହେଲେ । ୮୨

ତତ୍ପରେ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ପୁନଃଶ୍ଚ ଭୟଙ୍କର ନିସ୍ୱନଯୁକ୍ତ ରଥରେ ଆରୋହଣପୂର୍ବକ ଧନୁର୍ଦ୍ଧାରଣ କରି ଶରସମୂହଦ୍ୱାରା ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ଶମନଗୃହକୁ ପ୍ରେରଣ କଲେ । ୮୩ । ଯେଉଁ ସମସ୍ତ ନରଶ୍ରେଷ୍ଠ ଶୂର ପୁରୁଷମାନେ ଉତ୍ପତିତ ଓ ସନ୍ନିହିତ ହେଲେ, ସେମାନଙ୍କୁ କାଳରାତ୍ରିଙ୍କ ନିକଟକୁ ପ୍ରେରଣ କଲେ । ୮୪ । ସେ ଏହିପରି ରଥାଗ୍ରଦ୍ୱାରା ଶତ୍ରୁକୁଳକୁ ପ୍ରମଥିତ କରି ଧାବିତ ହେଲେ ଏବଂ ବିବିଧ ବାଣବୃଷ୍ଟିରେ ସେମାନଙ୍କୁ ଆଚ୍ଛନ୍ନ କଲେ । ୮୫ । ପୁନଶ୍ଚ ସେ ସୁଚିତ୍ର ଶତଚନ୍ଦ୍ରଯୁକ୍ତ ବର୍ମ ଏବଂ ଆକାଶ ବର୍ଣ୍ଣ ସେହି ଅସି ଗ୍ରହଣପୂର୍ବକ ସେହି ସ୍ଥାନରେ ବିଚରଣ କଲେ । ୮୬ । ହେ ମହାରାଜ ! ମାତଙ୍ଗ ଯେଉଁପରି ମହାହ୍ରଦକୁ ଆଲୋଡ଼ନ କରେ, ସେହିପରି ରଣଦୁର୍ମଦ ଦ୍ରୋଣପୁତ୍ର ଏହିପ୍ରକାରରେ ପାଣ୍ଡବମାନଙ୍କ ଶିବିରକୁ ବିଶେଷ କ୍ଷୋଭଯୁକ୍ତ କଲେ । ୮୭ । ସେହି ନିନାଦଦ୍ୱାରା ଉତ୍ପତିତ ନିଦ୍ରାର୍ତ୍ତ ଓ ଭୟାର୍ତ୍ତ ଯୋଦ୍ଧା-ମାନେ ଯେଉଁ ଯେଉଁ ସ୍ଥାନରେ ଥିଲେ, ସେହି ସେହି ସ୍ଥାନରୁ ଧାବିତ ହେଲେ । ୮୮ । କେହି କେହି ବିକୃତ ସ୍ୱରରେ ନାଦ କଲେ, କେହି କେହି ବିବିଧ ଅସମ୍ବନ୍ଧ ବାକ୍ୟ କହିଲେ । କେହି କେହି ଶସ୍ତ୍ର ଓ ବସ୍ତ୍ର ଗ୍ରହଣ କରିବାକୁ ସମର୍ଥ ହେଲେ ନାହିଁ । ୮୯ । ଅନ୍ୟ କତିପୟ ମୁକ୍ତ-କେଶ ବ୍ୟକ୍ତି ପରସ୍ପରକୁ ଚିହ୍ନିପାରିଲେ ନାହିଁ । କେହି କେହି ଶ୍ରାନ୍ତ ଓ ଉତ୍ପତିତ ହୋଇ ସେଠାରେ ପଡ଼ିରହିଲେ । କେହି କେହି ଅବା ସେହି

ସ୍ଥାନରେ ପରିଭ୍ରମଣ କଲେ । କେହି କେହି ମଳତ୍ୟାଗ କଲେ, କେହି କେହି ଅବା ମୂତ୍ରତ୍ୟାଗ କଲେ । ୯୦ ।

ହେ ରାଜେନ୍ଦ୍ର ! ଅଶ୍ୱ ଓ ଗଜଯୂଥ ଏକାବେଳକେ ବନ୍ଧନ ଛେଦନପୂର୍ବକ ସର୍ବସ୍ଥଳକୁ ଆକୁଳ କରି ଚତୁର୍ଦ୍ଦିଗକୁ ପଳାୟନ କଲେ । ତତ୍ପରେ କୌଣସି କୌଣସି ମନୁଷ୍ୟ ଭୟଗ୍ରସ୍ତ ହୋଇ ଭୂତଳରେ ବିଲୀନ ହେଲେ । ଅଶ୍ୱଗଜଯୂଥ ସେହି ସମସ୍ତ ନିପାତିତ ବ୍ୟକ୍ତିମାନଙ୍କୁ ପେଷଣ କଲେ । ହେ ଭରତସତ୍ତମ ନରଶ୍ରେଷ୍ଠ ! ସେହି ସ୍ଥାନ ତଦ୍‌ବତ ହେବାରୁ ରାକ୍ଷସମାନେ ହୃଷ୍ଟ ହୋଇ ଆନନ୍ଦରେ ଉଚ୍ଚୈଃସ୍ୱରରେ ନାଦ କଲେ । ହେ ମହାରାଜ ! ସେହି ମହାଶବ୍ଦ ରକ୍ତମାଂସହାରୀ ପ୍ରାଣୀସମୂହର ଶବ୍ଦ ସହିତ ସମ୍ମିଳିତ ହୋଇ ଦିଗ୍‌ମଣ୍ଡଳ ଓ ଆକାଶମଣ୍ଡଳକୁ ପରିପୂର୍ଣ୍ଣ କଲା । ଅଶ୍ୱଗଜଯୂଥମାନଙ୍କ ଆର୍ତ୍ତନାଦ ଶୁଣି ବିବସ୍ତ୍ର ଓ ବିମୁକ୍ତ ହୋଇ ଶିବିର ମଧ୍ୟସ୍ଥିତ ଜନମାନଙ୍କୁ ବିମର୍ଦ୍ଦନ କରି ଚତୁର୍ଦ୍ଦିଗକୁ ଧାବିତ ହେଲେ । ସେହି ଧାବମାନ ଅଶ୍ୱଗଜଯୂଥର ଚରଣୋକ୍ଷିପ୍ତ ଧୂଳି ରାଶି ସମୟରେ ଶିବିର ମଧ୍ୟରେ ଦ୍ୱିଗୁଣିତର ଅନ୍ଧକାର କଲା । ତାଦୃଶ ଅନ୍ଧକାର ହେବାରୁ ଶିବିର ମଧ୍ୟରେ ଜନଗଣ ହତଜ୍ଞାନ ହେଲେ । ପିତାମାନେ ପୁତ୍ରଗଣଙ୍କୁ ଏବଂ ଭ୍ରାତାମାନେ ସୋଦରମାନଙ୍କୁ ଚିହ୍ନିପାରିଲେ ନାହିଁ । ଗଜଯୂଥ ଗଜଯୂଥଙ୍କୁ ଓ ନିର୍ମନୁଷ୍ୟ ଅଶ୍ୱଗଣ ଅଶ୍ୱଗଣଙ୍କୁ ଅତିକ୍ରମପୂର୍ବକ ତାଡ଼ିତ, ଭଗ୍ନ ଓ ମର୍ଦ୍ଦିତ କଲେ । ସେମାନେ ପରସ୍ପର ଆଘାତ କରି ଭଗ୍ନ ହୋଇପଡ଼ିଲେ । କେହି କେହି ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ପାତିତ କଲେ ଏବଂ ପାତିତ କରି ପେଷଣ କଲେ । କାଳପ୍ରେରିତ ନିଦ୍ରାନ୍ୱିତ ବିଚେତନ ଓ ଅନ୍ଧକାରାଚ୍ଛନ୍ନ ମନୁଷ୍ୟମାନେ ସେଠାରେ ଆତ୍ମୀୟଗଣଙ୍କୁ ଆଘାତ କଲେ । ଦ୍ୱାରପାଳମାନେ ଦ୍ୱାରକୁ ଓ କକ୍ଷ-ରକ୍ଷକମାନେ କକ୍ଷକୁ ପରିତ୍ୟାଗ କରି ବିଚେତନ ଓ ଭୟାର୍ତ୍ତ ହୋଇ ନିଜ ନିଜ ଶକ୍ତି ଅନୁସାରେ ଧାବିତ ହେଲେ ।

ହେ ମହାରାଜ ! ସେମାନେ ଅନୁଦ୍‌ବିଗ୍ନ ହୋଇ ପରସ୍ପର କେହି କାହାକୁ ଚିହ୍ନିପାରିଲେ ନାହିଁ । ସେମାନେ ଦୈବକର୍ତ୍ତୃକ ହତଚିତ୍ତ ହୋଇ ହା ତାତ ! ହେ ପୁତ୍ର ! ବୋଲି ଉଚ୍ଚନାଦ କଲେ । ବାନ୍ଧବମାନଙ୍କୁ ପରିତ୍ୟାଗପୂର୍ବକ ପ୍ରତିଦିଗକୁ ପଳାୟମାନ ସେହି ମନୁଷ୍ୟଗଣ ସମସ୍ତେ ଗୋତ୍ର ଓ ନାମଦ୍ୱାରା ପରସ୍ପରକୁ ଆହ୍ୱାନ କଲେ । କତିପୟ ବ୍ୟକ୍ତି

ହାହାକାର କରି ଭୂତଳରେ ଶୟନ କଲେ । ୧୦୪ । ଦ୍ରୋଣପୁତ୍ର ସେମାନଙ୍କୁ ଉଚ୍ଚନାଦଦ୍ୱାରା ସମର ମଧ୍ୟରେ ଥିବାର ଜାଣି ନିପାତିତ କଲେ, ଅପର କ୍ଷତ୍ରିୟଗଣ ଭୟ ଓ ପୀଡ଼ିତ ଓ ବାରମ୍ବାର ଅଚେତନ ଏବଂ କମ୍ପମାନ ହୋଇ ଶିବିରରୁ ନିଷ୍କ୍ରାନ୍ତ ହେଲେ । ସେହି ଜୀବିତାର୍ଥୀ ତ୍ରସ୍ତ କ୍ଷତ୍ରିୟମାନେ ଶିବିରରୁ ଦ୍ୱାରଦେଶକୁ ନିର୍ଗତ ହେବାମାତ୍ରେ କୃତବର୍ମା ଓ କୃପାଚାର୍ଯ୍ୟ ସେମାନଙ୍କୁ ନିହତ କଲେ । ଶସ୍ତ୍ର ଓ କବଚହୀନ, ମୁକ୍ତକେଶ, କମ୍ପମାନ କୃତାଞ୍ଜଳି ଭୟଗ୍ରସ୍ତ କ୍ଷତ୍ରିୟମାନଙ୍କ ମଧ୍ୟରୁ କୃପ ଓ କୃତବର୍ମା କାହାକୁ ମଧ୍ୟ ପରିତ୍ୟାଗ କଲେ ନାହିଁ । ହେ ମହାରାଜ ! ଶିବିରର ବହିର୍ଭାଗରେ ନିଷ୍କ୍ରାନ୍ତ କୌଣସି ବ୍ୟକ୍ତି ଦୁର୍ମତି କୃପ ଓ କୃତବର୍ମାଙ୍କ ନିକଟରୁ ବିମୁକ୍ତ ହେଲା ନାହିଁ । ସେହି ଦୁହେଁ ପୁନଶ୍ଚ ଅଶ୍ୱତ୍ଥାମାଙ୍କ ପ୍ରିୟ କାମନା କରି ଶିବିରର ତିନି ସ୍ଥାନରେ ଅଗ୍ନି ପ୍ରଦାନ କଲେ ।

ହେ ମହାରାଜ ! ତତ୍ପରେ ଶିବିରସ୍ଥଳ ପ୍ରକାଶମାନ ହେବାରୁ ପିତାର ଆନନ୍ଦବର୍ଦ୍ଧନ ଅଶ୍ୱତ୍ଥାମା ଖଡ୍ଗ ଗ୍ରହଣ କରି କୃତହସ୍ତ ବ୍ୟକ୍ତିସଦୃଶ ବିଚରଣ କଲେ । ଦ୍ୱିଜବର ଦ୍ରୋଣପୁତ୍ର ଖଡ୍ଗଦ୍ୱାରା କୌଣସି କୌଣସି ଆଗତ ଓ ଧାବମାନ ବୀରଗଣଙ୍କର ପ୍ରାଣବିୟୋଗ କଲେ । କ୍ରୋଧଯୁକ୍ତ ବୀର୍ଯ୍ୟଶାଳୀ ଦ୍ରୋଣନନ୍ଦନ କୌଣସି କୌଣସି ଯୋଦ୍ଧାଙ୍କୁ ଖଡ୍ଗଦ୍ୱାରା ମଧ୍ୟଦେଶରେ ଛେଦନ କରି ତିଳକାଣ୍ଡ ସଦୃଶ ପାତିତ କଲେ । ହେ ଭରତଶ୍ରେଷ୍ଠ ! ନିରନ୍ତର ଆର୍ତ୍ତସ୍ୱରରେ ନିନାଦକାରୀ ପତିତ ଅଶ୍ୱଗଣ ଓ ନରଶ୍ୱାଦଦ୍ୱାରା ଭୂମଣ୍ଡଳ ଆଚ୍ଛନ୍ନ ହେଲା । ସହସ୍ର ସହସ୍ର ମନୁଷ୍ୟହତ ହୋଇ ପତିତ ହେବାରୁ ଅନେକ ଅନେକ କବନ୍ଧ ଉତ୍ଥିତ ହେଲେ ଏବଂ ସେମାନେ ଉତ୍ଥିତ ହେବାମାତ୍ରେ ତତ୍କ୍ଷଣାତ୍ ପତିତ ହେଲେ । ହେ ଭାରତ ! ଅଶ୍ୱତ୍ଥାମା କାହାର ମଧ୍ୟମସ୍ତକ, କେଉଁ କେଉଁ ବ୍ୟକ୍ତିର ହସ୍ତିଶୁଣ୍ଢ ସଦୃଶ ହସ୍ତ ଏବଂ କତିପୟ ବ୍ୟକ୍ତିଙ୍କ ଚରଣ ଛେଦନ କଲେ । ଅପର ସମସ୍ତଙ୍କର ପୃଷ୍ଠ, ମସ୍ତକ ଓ ପାର୍ଶ୍ୱ ଛେଦନଦ୍ୱାରା ସେମାନଙ୍କୁ ପରାଙ୍ମୁଖ କଲେ । ଅନ୍ୟ କୌଣସି କୌଣସି ବ୍ୟକ୍ତିଙ୍କର ମଧ୍ୟଦେଶରେ, କାହାର କର୍ଣ୍ଣରେ, କାହାର ସ୍କନ୍ଧଦେଶରେ ଆଘାତ କରି ଅପର କୌଣସି ବ୍ୟକ୍ତିର ମସ୍ତକ ଶରୀର ମଧ୍ୟରେ ପ୍ରବିଷ୍ଟ କଲେ । ସେ ଏହିପରି ଅନେକ ଅନେକ ବ୍ୟକ୍ତିଙ୍କୁ ନିହତ କରି ବିଚରଣ କଲାରୁ ଦାରୁଣଦର୍ଶନା ଘୋର ରଜନୀ

ଅନ୍ଧକାରଦ୍ୱାରା ଶୋଭା ପାଇଲା । ଅତି ଦୃଢ଼ରୂପେ ସମାହତ ଓ ନିହତ ସହସ୍ର ସହସ୍ର ଯୁଦ୍ଧସ ଓ ଅଶ୍ୱଗଜଯୂଥଦ୍ୱାରା ଭୂତଳ ଅତି ଭୟଙ୍କର ଦିଶିଲା । ଯକ୍ଷ-ରାକ୍ଷସଗଣଦ୍ୱାରା ଆକୀର୍ଣ୍ଣ, ରଥଅଶ୍ୱଗଜ-ଯୂଥରେ ଦାରୁଣ ଶିବିରସ୍ଥଳରେ କ୍ରୋଧଯୁକ୍ତ ଦ୍ରୋଣପୁତ୍ରଙ୍କଦ୍ୱାରା ସଂଚ୍ଛିନ୍ନ ମାନବଗଣ ଧରାତଳରେ ପତିତ ହେଲେ ।

କେହି କେହି ପୁତ୍ରଗଣଙ୍କୁ ଆହ୍ୱାନ କଲେ । କୌଣସି କୌଣସି ବ୍ୟକ୍ତିମାନେ କହିଲେ, ଆମ୍ଭେମାନେ ସଂସୁପ୍ତ ହେଲାରୁ କ୍ରୂରକର୍ମା ରାକ୍ଷସଗଣ ଯେଉଁ କାର୍ଯ୍ୟ କଲେ, ଯୁଦ୍ଧରେ କ୍ରୋଧଯୁକ୍ତ ଧୃତରାଷ୍ଟ୍ରପୁତ୍ରମାନେ ତାହା କଦାପି କରି ପାରି ନ ଥିଲେ । ୧୦୬ । ପାଣ୍ଡବଗଣ ସନ୍ନିଧିରେ ନ ଥିବାରୁ ରାକ୍ଷସ ସେହି ଏପରି ବିଡ଼ମ୍ବନା କଲେ । ଜନାର୍ଦ୍ଦନ ଯାହାଙ୍କର ରକ୍ଷାକର୍ତ୍ତା, ସେହି ଧନଞ୍ଜୟଙ୍କୁ ସୁରାସୁର, ଗନ୍ଧର୍ବ, ଯକ୍ଷ, ରାକ୍ଷସମାନେ ମଧ୍ୟ ଜୟ କରିବାକୁ ସମର୍ଥ ହୋଇ ପାରନ୍ତି ନାହିଁ । ବ୍ରହ୍ମତେଜଃସଂପନ୍ନ ସତ୍ୟବାଦୀ ଦାନ୍ତ, ସର୍ବଭୂତରେ ଦୟାଳୁ, ସେହି କୁନ୍ତୀପୁତ୍ର ଅର୍ଜ୍ଜୁନ କଦାପି ସୁପ୍ତ, ପ୍ରମତ୍ତ, ନ୍ୟସ୍ତଶସ୍ତ୍ର, କୃତାଞ୍ଜଳି, ଧାବମାନ ଓ ମୁକ୍ତକେଶ ବ୍ୟକ୍ତିକୁ ନିହତ କରନ୍ତି ନାହିଁ । କ୍ରୂରକର୍ମା ରାକ୍ଷସମାନେ ଆମ୍ଭମାନଙ୍କ ପକ୍ଷରେ ଏତାଦୃଶ ଘୋରତର ଆଚରଣ କଲେ । ଅନେକ ବ୍ୟକ୍ତି ଏହିପରି ବିଳାପ କରି ମୃତ୍ୟୁଶଯ୍ୟାଶାୟୀ ହେଲେ । ଶବ୍ଦାୟମାନ ମାନବଗଣର ସେହି ସୁମହାନ୍ ତୁମୁଳ ଶବ୍ଦ ମୁହୂର୍ତ୍ତକ ଭିତରେ ପ୍ରଶାନ୍ତ ହେଲା । ୧୦୭ ।

ହେ ମହାରାଜ ! ବସୁଧା ଶୋଣିତସିକ୍ତ ହେବାରୁ ସେହି ଘୋରତର ଧୂଳିରାଶି କ୍ଷଣକ ମଧ୍ୟରେ ଅନ୍ତର୍ହିତ ହେଲା । ୧୦୮ । ପଶୁପତି ଯେଉଁପରି ଜୀବଗଣଙ୍କୁ ସଂହାର କରନ୍ତି, ସେହିପରି କ୍ରୋଧଯୁକ୍ତ ଅଶ୍ୱତ୍ଥାମା ଉତ୍ତମରୂପେ ଚେଷ୍ଟମାନ ଉଦ୍‌ବିଗ୍ନ ଓ ନିରୁତ୍ସାହ ସହସ୍ର ସହସ୍ର ନରଗଣଙ୍କୁ ନିପାତିତ କଲେ । ୧୦୯ । ପରସ୍ପର ଆଲିଙ୍ଗନପୂର୍ବକ ଶୟାନ, ଧାବମାନ, ବିଲୀନ ଓ ଯୁଧ୍ୟମାନ ସମସ୍ତ ଜନଗଣଙ୍କୁ ଦ୍ରୋଣପୁତ୍ର ବିମର୍ଦ୍ଦନ କଲେ ।୧୦୩। ସେ ଅଗ୍ନି କର୍ତ୍ତୃକ ଦହ୍ୟମାନ ଓ ତତ୍‌କର୍ତ୍ତୃକ ବଧ୍ୟମାନ ଯୋଦ୍ଧାମାନଙ୍କୁ ଶମନଭବନକୁ ପ୍ରେରଣ କଲେ । ୧୦୧ ।

ହେ ରାଜେନ୍ଦ୍ର ! ଦ୍ରୋଣପୁତ୍ର ସେହି ରଜନୀର ଅର୍ଦ୍ଧଭାଗରେ ପାଣ୍ଡବମାନଙ୍କ ମହତ୍ ବଳକୁ ଯମାଳୟକୁ ପ୍ରେରଣ କଲେ । ୧୦୩ ।

ମନୁଷ୍ୟ, ଗଜ ଓ ଅଶ୍ୱଗଣର କ୍ଷୟକାରିଣୀ ସେହି ଭୟଙ୍କର ରଜନୀ ନିଶାଚର ଜୀବଗଣର ଅତିଶୟ ହର୍ଷବର୍ଦ୍ଧିନୀ ହେଲା । ୧୩୩ । ସେହି ସ୍ଥାନରେ ସେତେବେଳେ ନରମାଂସଭକ୍ଷକ ଓ ରକ୍ତପାୟୀ ନାନାବିଧ ରାକ୍ଷସ ଓ ପିଶାଚଗଣ ଦୃଷ୍ଟିଗୋଚର ହେଲେ । ୧୩୪ । କରାଳ, ପିଙ୍ଗଳ, ରୌଦ୍ର, ଶୈଳଦନ୍ତ, ରଜସ୍ୱଳ, ଜଟିଳ, ଦୀର୍ଘ ସକ୍ଥ, ପଞ୍ଚପାଦ, ମହୋଦର, ପଶ୍ଚାତ୍ ଅଙ୍ଗୁଳିଯୁକ୍ତ, ରୁକ୍ଷ, ବିରୂପ, ଭୈରବସ୍ୱନ, ଘଣ୍ଟାଜାଲରେ ଆବଦ୍ଧ, ନୀଳକଣ୍ଠ, ବିଭୀଷଣ, କ୍ରୂର, ଦୁର୍ଦର୍ଶ ଘୃଣାଶୂନ୍ୟ ପ୍ରଭୃତି ସପୁତ୍ର ସସ୍ତ୍ରୀକ ରାକ୍ଷସଗଣର ଏତାଦୃଶ ବିବିଧରୂପ ଦୃଷ୍ଟିଗୋଚର ହେଲା । ୧୩୭ । ରାକ୍ଷସଗଣ ଶୋଣିତପାନରେ ହୃଷ୍ଟ ହୋଇ ଏହା ଉତ୍ତମ ଏହା ପବିତ୍ର ଓ ଏହା ସ୍ୱାଦୁ ଏହିପରି କହି ନୃତ୍ୟ କଲେ । ୧୩୮ । ମାଂସଜୀବୀ କ୍ରବ୍ୟାଦଗଣ ଶବମାଂସ ଭକ୍ଷଣ କରି ମେଦ, ମଜ୍ଜା, ଅସ୍ଥି, ରକ୍ତ ଓ ବସା ଦାନରେ ଅତିଶୟ ତୃପ୍ତ ହେଲେ । କୁକ୍ଷିହୀନ, ନାନାମୁଖ, ମାଂସାଶୀ ରୌଦ୍ରରାକ୍ଷସଗଣ ବସା ପାନ କରି ଆନନ୍ଦରେ ଧାବମାନ ହେଲେ । ୧୪୦ । ସେହି ସ୍ଥାନରେ ଅୟୁତ, ପ୍ରୟୁତ ଓ ଅର୍ବୁଦ ସଂଖ୍ୟକ ଘୋରରୂପ କ୍ରୂରକର୍ମା ରାକ୍ଷସଗଣ ଉପସ୍ଥିତ ହୋଇଥିଲେ । ୧୪୧ । ହେ ରାଜନ ! ସେହି ମହାଯୁଦ୍ଧରେ ପ୍ରମୁଦିତ ପରିତୃପ୍ତ ଏକତ୍ରିତ ବହୁଭୂତଗଣ ମଧ୍ୟ ଥିଲେ ।୧୪୨।

ତଦନନ୍ତର ଅଶ୍ୱତ୍ଥାମା ପ୍ରଭାତ ସମୟରେ ଶିବିରରୁ ପ୍ରତିଗମନ କରିବାକୁ ଇଚ୍ଛୁକ ହେଲେ । ନରଶୋଣିତ-ରଞ୍ଜିତ ଦ୍ରୋଣପୁତ୍ରଙ୍କ ଅସିଯୁକ୍ତ ମୁଷ୍ଟିହସ୍ତ ସହିତ ସଂଶ୍ଳିଷ୍ଟ ହେଲାପରି ଏକୀଭୂତ ହୋଇଥିଲା । ଯୁଗାନ୍ତ ସମୟରେ ଅଗ୍ନି ଯେଉଁପରି ସର୍ବପ୍ରାଣିଙ୍କୁ ବିନଷ୍ଟ କରି ବିରାଜିତ ହୁଅନ୍ତି, ସେହିପରି ସେ ଜନକ୍ଷୟ ବିଷୟରେ ଦୁର୍ଗମ ପଦବୀରେ ଗମନ କରି ବିରାଜମାନ ହୋଇଥିଲେ । ହେ ମହାରାଜ ! ଦ୍ରୋଣପୁତ୍ର ପ୍ରତିଜ୍ଞାନୁସାରେ ସେହି କର୍ମ କରି ଦୁର୍ଗମପଥରେ ଗମନପୂର୍ବକ ପିତାଙ୍କ ନିକଟରେ ଋଣଶୂନ୍ୟ ହେଲେ । ହେ ନରବର ! ନିଶାକାଳରେ ଶିବିର ମଧ୍ୟରେ ସମସ୍ତ ଲୋକ ନିଦ୍ରିତ ହେବାରୁ ସେ ଶିବିରରେ ପ୍ରବେଶପୂର୍ବକ ତାହାକୁ ଯେଉଁପରି ଶବ୍ଦଶୂନ୍ୟରୂପେ ନିରୀକ୍ଷଣ କରିଥିଲେ, ଏତେବେଳେ ତନ୍ନିତ୍ୟ ଯାବତୀୟ ଲୋକ ବିନଷ୍ଟ ହେବାରୁ ତାହାକୁ ତଦ୍‌ବତ ନିଃଶବ୍ଦ ହୋଇଥିବାର ଦେଖି ସେଠାରୁ ନିର୍ଗତ ହେଲେ ।

ଶାର୍ଯ୍ୟବାନ ଅଶ୍ୱତ୍ଥାମା ସେହି ଶିବିରରୁ ନିର୍ଗମନ କରି ହୃଷ୍ଟଚିତ୍ତରେ କୃତବର୍ମା ଓ କୃପାଚାର୍ଯ୍ୟଙ୍କ ସହିତ ମିଳିତ ହୋଇ ସେହି ଦୁହିଁଙ୍କୁ ନିଜକୃତ ସମସ୍ତ କାର୍ଯ୍ୟ ଜଣାଇଲେ । ସେହି ଦୁହେଁ ମଧ୍ୟ ତେତେବେଳେ ତାହାଙ୍କର ପ୍ରିୟକାଂକ୍ଷୀ ହୋଇ ତାହାଙ୍କୁ କହିଲେ, ସହସ୍ର ସହସ୍ର ପାଞ୍ଚାଳ ଓ ସଞ୍ଜୟଗଣ ବିଚ୍ଛିନ୍ନ ହୋଇଅଛନ୍ତି । ଅଶ୍ୱତ୍ଥାମା ତାହା ଶ୍ରବଣ କରି ପ୍ରୀତିସହକାରେ ଉଚ୍ଚୈଃସ୍ୱରରେ ନାଦ କଲେ ଏବଂ ବାରମ୍ବାର ବାହୁ-ଆସ୍ଫୋଟ ଓ ତାଳଧ୍ୱନି କଲେ । ୧୪୯ । ହେ ମହାରାଜ ! ପ୍ରସୁପ୍ତ ଓ ପ୍ରମତ୍ତ ସୋମକଗଣର ଜନକ୍ଷୟ ବିଷୟରେ ଏହିପରି ସେହି ରଜନୀ ଅତିଶୟ ଭୟାନକ ହୋଇଥିଲା । ୧୫୦ । ସେହି ବୀରମାନେ ଆମ୍ଭମାନଙ୍କର ଜନକ୍ଷୟ କରି ଯେତେବେଳେ ନିହତ ହେଲେ, ତେତେ-ବେଳେ ଜଣାଗଲା ଯେ କାଳର ଗତି ଦୁରତିକ୍ରମ, ସଂଶୟ ନାହିଁ । ୧୫୧ ।

ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଆମ୍ଭ ପୁତ୍ରଙ୍କ ବିଜୟ ବିଷୟରେ ରତ ମହାରଥ ଦ୍ରୋଣପୁତ୍ର ପୂର୍ବେ କି ହେତୁରୁ ଏତାଦୃଶ ସୁମହତ୍ କର୍ମ କରି ନ ଥିଲେ ? ପରିଶେଷରେ କ୍ଷତ୍ରିୟକୁଳ ନିର୍ମୂଳ ହେବାରୁ ମହାଧନୁର୍ଦ୍ଧର ଅଶ୍ୱତ୍ଥାମା କେଉଁ କାରଣରେ ଏହି କାର୍ଯ୍ୟ ସାଧନ କଲେ ? ତାହା ଆମ୍ଭ ନିକଟରେ ତୁମ୍ଭେ ପ୍ରକାଶ କର । ୧୫୩ ।

ସଞ୍ଜୟ କହିଲେ, ମହାରାଜ ! କୁରୁନନ୍ଦନ ! ଜଣାଯାଏ, ଅଶ୍ୱତ୍ଥାମା ପାଣ୍ଡବମାନଙ୍କ ଭୟରେ ପୂର୍ବେ ନିଶ୍ଚୟ ଏହି କାର୍ଯ୍ୟ କରି ନ ଥିଲେ । ବୁଦ୍ଧିମାନ୍ କେଶବ, ସାତ୍ୟକି ଓ ପାଣ୍ଡବମାନଙ୍କ ଅଗୋଚରରେ ଦ୍ରୋଣପୁତ୍ର ଏହି କାର୍ଯ୍ୟ ସାଧନ କରିଅଛନ୍ତି । ହେ ମହାରାଜ ! ପାଣ୍ଡବମାନଙ୍କ ସାକ୍ଷାତରେ ଅନ୍ୟ ଲୋକ ଅବା କ'ଣ କରିବେ, ସ୍ୱୟଂ ସାକ୍ଷାତ ଇନ୍ଦ୍ରଦେବ ମଧ୍ୟ ସେମାନଙ୍କୁ ନିହତ କରିବାକୁ ସମର୍ଥ ନୁହନ୍ତି । ସେହିଠାରେ ସେମାନେ ନ ଥିଲେ ବୋଲି ସୁପ୍ତଜନମାନଙ୍କୁ ଏତାଦୃଶ ଘଟନା ଘଟିଅଛି । ତତ୍ପରେ ସେହି ମହାରଥମାନେ ପାଣ୍ଡବମାନଙ୍କର ମହାଅନିଷ୍ଟକର ଜନକ୍ଷୟ କରି ପରସ୍ପର ମିଳିତ ହୋଇ, ଆମ୍ଭମାନଙ୍କର ଭାଗ୍ୟବଳରେ ଏତାଦୃଶ ଘଟନା ଘଟିଲା, ଏହିପରି କହିଲେ । ଅଶ୍ୱତ୍ଥାମା, କୃପ ଓ କୃତବର୍ମାଙ୍କ ଦ୍ୱାରା ପ୍ରତିନନ୍ଦିତ ହୋଇ ସେହି ଦୁହିଁଙ୍କୁ ଆଲିଙ୍ଗନ କଲେ ଏବଂ ହର୍ଷବଶରୁ ଏହି ଉତ୍ତମବାକ୍ୟ କହିଲେ ଯେ ଦ୍ରୌପଦୀଙ୍କ ପୁତ୍ରଗଣ, ପାଞ୍ଚାଳସମୂହ,

ସୋମକବୃନ୍ଦ ଓ ଅବଶିଷ୍ଟ ମତ୍ସ୍ୟ ଦେଶୀୟମାନେ ସମସ୍ତେ ଆମ୍ଭଦ୍ୱାରା ନିହତ ହୋଇଅଛନ୍ତି । ଏତେବେଳେ ଆମ୍ଭେମାନେ କୃତକାର୍ଯ୍ୟ ହୋଇଥାଉଁ ଅତଏବ କୁରୁରାଜ ଯେଉଁ ସ୍ଥାନରେ ଅବସ୍ଥାନ କରିଅଛନ୍ତି, ଶୀଘ୍ର ସେହି ସ୍ଥାନକୁ ଯିବା, ଯଦି ଆମ୍ଭମାନଙ୍କ ରାଜା ଜୀବିତ ଅଛନ୍ତି ତେବେ ତାହାଙ୍କୁ ଏହି ପ୍ରିୟ କଥା ଜଣାଇବା । ୪୯ ।

# ନବମ ଅଧ୍ୟାୟ

ସଞ୍ଜୟ କହିଲେ, ହେ ରାଜେନ୍ଦ୍ର ! ସେମାନେ ସୋମକ, ପାଞ୍ଚାଳ ଓ ଦ୍ରୌପଦୀ-ପୁତ୍ରମାନଙ୍କୁ ନିହତ କରି ଯେଉଁ ସ୍ଥାନରେ ହତ ଦୁର୍ଯ୍ୟୋଧନ ଥିଲେ, ସେହି ସ୍ଥାନକୁ ସମସ୍ତେ ଏକତ୍ରିତ ହୋଇ ଆଗମନ କଲେ । ୧ । ସେଠାକୁ ଯାଇ ଦେଖିଲେ ରାଜା ଦୁର୍ଯ୍ୟୋଧନଙ୍କ ପ୍ରାଣ ନିର୍ଗତ ହେବାକୁ କିଞ୍ଚିତ ମାତ୍ର ଅବଶିଷ୍ଟ ଅଛି । ତତ୍ପରେ ସେମାନେ ରଥରୁ ଓହ୍ଲାଇ ଆପଣଙ୍କ ପୁତ୍ରଙ୍କୁ ପରିବେଷ୍ଟନ କଲେ ଏବଂ ଭଗ୍ନୋରୁ କୃଚ୍ଛ୍ରପ୍ରାଣ ସେହି ଅଚେତନ ରାଜାଙ୍କୁ ଭୂତଳରେ ଶୟନ କରି ମୁଖରୁ ରକ୍ତବମନ କରୁଥିବାର ଦେଖିଲେ । ୩ । ତେତେବେଳେ ଘୋରଦର୍ଶନ ଶ୍ୱାପଦଗଣ ଚତୁର୍ଦ୍ଦିଗରେ ତାହାଙ୍କୁ ବେଷ୍ଟନ କରିଥିଲେ । ବୃକଗଣ ତାହାଙ୍କୁ ଭକ୍ଷଣ କରିବା ଆଶୟରେ ନିକଟରେ ଦଣ୍ଡାୟମାନ ହୋଇଥିଲେ । ସେ ବହୁକଷ୍ଟରେ ସେହି ଭକ୍ଷଣାଭିଳାଷୀ ଶ୍ୱାପଦଗଣଙ୍କୁ ନିବାରଣ କରୁଥିଲେ ଏବଂ ଗାଢ଼ ବେଦନାରେ ଅତିଶୟ ଅସ୍ଥିର ହୋଇ ଭୂତଳରେ ଲୁଣ୍ଠିତ ହେଉଥିଲେ ।୫। ହତାବଶିଷ୍ଟ ବୀର ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଏହି ତିନିଜଣ ତାହାଙ୍କୁ ସ୍ୱକୀୟ ରୁଧିରୋକ୍ଷିତ ହୋଇ ତାଦୃଶଭାବରେ ଭୂତଳରେ ଶୟନ କରିଥିବାର ଅବଲୋକନ କରି ଶୋକାର୍ତ୍ତ ହୋଇ ପରିବେଷ୍ଟନ କଲେ । ବେଦୀ ଯେଉଁପରି ଅଗ୍ନିତ୍ରୟଦ୍ୱାରା ଶୋଭାପାଏ, ରାଜା ଦୁର୍ଯ୍ୟୋଧନ ତଦ୍‌ବତ୍ ସେହି ରକ୍ତାକ୍ତ ଦୀର୍ଘନିଃଶ୍ୱାସଯୁକ୍ତ ମହାରଥ-ତ୍ରୟଦ୍ୱାରା ପରିବୃତ ହୋଇ ଶୋଭା ପାଇଲେ । ସେମାନେ ରାଜାଙ୍କୁ ଅଯଥୋଚିତରୂପେ ଶୟନ କରିଥିବାର ଦେଖି ଅତି ଅସହ୍ୟ ଦୁଃଖରେ

ରୋଦନ କଲେ । ତତ୍ପରେ ସେମାନେ ହସ୍ତଦ୍ୱାରା ସମରସ୍ଥଳରେ ଶୟାନ ରାଜା ଦୁର୍ଯ୍ୟୋଧନଙ୍କ ମୁଖମଣ୍ଡଳରୁ ରୁଧିର ମାର୍ଜନା କରି ଘୋରସ୍ୱରରେ ବିଳାପ କଲେ । ୯ ।

କୃପ କହିଲେ, ହା ! କୌଣସି କାର୍ଯ୍ୟ ଦୈବଙ୍କ ପକ୍ଷରେ ଅସାଧ୍ୟ ହୋଇ ନାହିଁ, କାରଣ ଏକାଦଶ ଅକ୍ଷୌହିଣୀର ଅଧିପତି ଦୁର୍ଯ୍ୟୋଧନ ହତ ଓ ରକ୍ତାକ୍ତ ହୋଇ ଶୟନ କରିଅଛନ୍ତି । ୧୦ । ଦେଖ, ଏହି ସୁବର୍ଣ୍ଣଭୂଷିତ ଗଦା, ସୁବର୍ଣ୍ଣପ୍ରଭ-ଗଦା-ପ୍ରିୟ ନରପାଳଙ୍କ ନିକଟରେ ଧରଣୀତଳରେ ପଡ଼ିଅଛି । ଏହି ଗଦା ପ୍ରତିଯୁଦ୍ଧରେ ଏହି ବୀରଙ୍କୁ କଦାପି ପରିତ୍ୟାଗ କରେ ନାହିଁ । ଏହି ଯଶସ୍ୱୀ ଏତେବେଳେ ସ୍ୱର୍ଗକୁ ଯିବା ନିମିତ୍ତ ଉଦ୍ୟତ ହୋଇଅଛନ୍ତି; ତଥାପି ଏହାକୁ ପରିତ୍ୟାଗ କରିନାହାନ୍ତି । ୧୨ । ପ୍ରୀତିଯୁକ୍ତା ଭାର୍ଯ୍ୟା ଯେଉଁପରି ପତିଙ୍କ ସହିତ ହର୍ମ୍ମ୍ୟଗୃହରେ ଶୟନ କରିଥାଏ, ତଦ୍‌ବତ୍ ଏହି ସୁବର୍ଣ୍ଣଭୂଷିତ ଗଦା ଏହି ବୀରଙ୍କ ସହିତ ଶଯ୍ୟାତଳରେ ଶୟନ କରିଥିବାର ଅବଲୋକନ କର ।୧୩। ଯେ ଶତ୍ରୁତାପନ, ମୂର୍ଦ୍ଧାଭିଷିକ୍ତ ରାଜାମାନଙ୍କର ଅଗ୍ରଣୀ, ସେ ହତ ହୋଇ ଧୂଳିରାଶି ଗ୍ରାସ କରୁଅଛନ୍ତି । ଅତଏବ କାଳର ବିପରୀତ ଗତିକୁ ଅବଲୋକନ କର । ୧୪ । ଶତ୍ରୁକୁଳ ଯାହାଙ୍କ ଦ୍ୱାରା ନିହତ ହୋଇ ଭୂମିରେ ଶୟନ କରିଥାଆନ୍ତି, ସେହି କୁରୁରାଜ ବିପକ୍ଷକର୍ତ୍ତୃକ ବିନଷ୍ଟ ହୋଇ ଭୂମିରେ ଶୋଇ ଅଛନ୍ତି । ୧୫ । ଯାହାଙ୍କର ଭୟରେ ଶତ ଶତ ରାଜା ଅବନତ ହୋଇଥିଲେ, ସେ ହିଂସ୍ରଜନ୍ତୁଗଣଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ବୀରଶଯ୍ୟାରେ ଶୟନ କରିଅଛନ୍ତି । ୧୬ । ପୂର୍ବେ ବ୍ରାହ୍ମଣଗଣ ଅର୍ଥ ନିମିତ୍ତ ଯେଉଁ ରାଜାଙ୍କୁ ଉପାସନା କରୁଥିଲେ, ଏତେବେଳେ ମାଂସାଶୀ ଜନ୍ତୁଗଣ ମାଂସଲାଭ ନିମିତ୍ତ ତାହାଙ୍କୁ ଉପାସନା କରୁଛନ୍ତି । ୧୭ ।

ସଞ୍ଜୟ କହିଲେ; ହେ ଭରତଶ୍ରେଷ୍ଠ ! ତତ୍ପରେ ଅଶ୍ୱତ୍ଥାମା ସେହି କୁରୁକୁଳତିଳକଙ୍କୁ ଶୟନ କରିଥିବାର ଦେଖି କରୁଣସ୍ୱରରେ ବିଳାପ କଲେ ।୧୮। ସେ କହିଲେ, ହେ ନୃପବର ! ସମସ୍ତେ ଆପଣଙ୍କୁ ସର୍ବଧନୁର୍ଦ୍ଧର-ଶ୍ରେଷ୍ଠ ବଳଦେବଙ୍କ ଶିଷ୍ୟ ଏବଂ ଯୁଦ୍ଧ ବିଷୟରେ ଧନାଧିପତି କୁବେରଙ୍କ ସମାନ ବୋଲି କହନ୍ତି । ଆପଣ ବଳବାନ ଓ ଯୁଦ୍ଧବିଶାରଦ ଅଟନ୍ତି । ଅତଏବ ପାପାତ୍ମା ଭୀମ କେଉଁପରି ଆପଣଙ୍କର ଛିଦ୍ର ଅବଲୋକନ କଲେ ?

ହେ ମହାରାଜ ! ସଂଗ୍ରାମ ମଧ୍ୟରେ ଆପଣ ଆମଙ୍କ ଦ୍ୱାରା ହତ ହୋଇ ଥିବାର ଦେଖି ଜାଣିପାରୁଅଛୁଁ ଯେ, ଇହଲୋକରେ କାଳ ଅତ୍ୟନ୍ତ ବଳବାନ ।୨୧। ଆପଣ ସର୍ବଧର୍ମଜ୍ଞ ହୋଇ ମନ୍ଦମତି, ପାପାତ୍ମା, କ୍ଷୁଦ୍ରାଶୟ, ବୃକୋଦରକର୍ତ୍ତୃକ ନିହତ ହେବାରୁ ଜଣାଯାଏ ଯେ କାଳଗତି ନିଶ୍ଚୟ ଦୁରତ୍ୟୟ ଅଟେ । ୨୨ । ବୃକୋଦର ଧର୍ମଯୁଦ୍ଧରେ ଆପଣଙ୍କୁ ବଳପୂର୍ବକ ଆହ୍ୱାନ କରି ଅଧର୍ମରେ ଗଦାଦ୍ୱାରା ଭବଦୀୟ ଉରୁଯୁଗଳ ଭଗ୍ନ କରିଅଛନ୍ତି ଏବଂ ଅଧର୍ମରେ ଆପଣଙ୍କୁ ହତକରି ଚରଣଦ୍ୱାରା ଆପଣଙ୍କ ମସ୍ତକକୁ ମର୍ଦ୍ଦନ କରିଅଛନ୍ତି । ଯେଉଁ ଯୁଧିଷ୍ଠିର ଏହି ଘଟନାକୁ ଦେଖି ତାହାଙ୍କୁ ନିଷେଧ କରିନାହାନ୍ତି, ସେହି କ୍ଷୁଦ୍ରବୁଦ୍ଧି ଯୁଧିଷ୍ଠିରଙ୍କୁ ଧିକ୍ । ଆପଣଙ୍କୁ ଅନ୍ୟାୟରେ ନିହତ କରିଅଛନ୍ତି, ସେହି କାରଣରୁ ଯାବତ୍ ପର୍ଯ୍ୟନ୍ତ ଜୀବବୃନ୍ଦ ଜୀବିତ ଥିବେ, ତାବତ୍‌କାଳ ପର୍ଯ୍ୟନ୍ତ ଯୋଦ୍ଧାମାନେ ସମର ବିଷୟରେ ଆମଙ୍କୁ ନିନ୍ଦା କରୁଥିବେ । ୨୫ ।

ହେ ମହାରାଜ ! ଯଦୁନନ୍ଦନ ବଳରାମ ସର୍ବଦା କହନ୍ତି ଯେ, ଗଦାଯୁଦ୍ଧରେ ବୀର୍ଯ୍ୟବାନ ବଳଦେବଙ୍କ ସମାନ ଅନ୍ୟ କେହି ନାହାନ୍ତି, କୁରୁରାଜ ଗଦାଯୁଦ୍ଧରେ ଆମ୍ଭର ସୁଶିଷ୍ୟ, ବୃଷ୍ଣିନନ୍ଦନ ସଭା ମଧ୍ୟରେ ସର୍ବଦା ଏହି ବାକ୍ୟ କହି ଆପଣଙ୍କୁ ପ୍ରଶଂସା କରୁଥାଆନ୍ତି । ୨୭ । ଯାହା ହେଉ, ମହର୍ଷିମାନେ କ୍ଷତ୍ରିୟର ଯେଉଁ ଗତିକୁ ପ୍ରଶସ୍ତ ଗତି ବୋଲି କହନ୍ତି, ଆପଣ ସମ୍ମୁଖଯୁଦ୍ଧରେ ନିହତ ହୋଇ ସେହି ଗତିକି ପ୍ରାପ୍ତ ହେଲେ । ୨୮ । ହେ ପୁରୁଷଶ୍ରେଷ୍ଠ ଦୁର୍ଯ୍ୟୋଧନ ! ଆମ୍ଭେ ଆପଣଙ୍କ ନିମିତ୍ତ ଶୋକ କରୁନାହୁଁ, ଆପଣଙ୍କ ହତପୁତ୍ରଜନକ ଏବଂ ଜନନୀ ଗାନ୍ଧାରୀ ଶୋକ ପ୍ରକାଶପୂର୍ବକ ଭିକ୍ଷୁକପରି ଏହି ପୃଥିବୀରେ ବିଚରଣ କରିବେ । ଯେଉଁ ଦୁହେଁ ଧର୍ମଜ୍ଞ ବୋଲି ଅଭିମାନ କରନ୍ତି ଏବଂ ଧର୍ମ ପରିତ୍ୟାଗପୂର୍ବକ ଆପଣଙ୍କୁ ବଧ କଲେ, ସେହି ବୃଷ୍ଣିବଂଶୀୟ କୃଷ୍ଣ ଓ ଦୁର୍ମତି ଅର୍ଜ୍ଜୁନଙ୍କୁ ଧିକ୍‌କାର କରୁ । ହେ ରାଜନ ! ଦୁର୍ଯ୍ୟୋଧନଙ୍କୁ ଆମ୍ଭେମାନେ କେଉଁ କାରଣରେ ନିହତ କଲୁଁ । ୩୧ । ଏହି ବିଷୟ ଭାବି ପାଣ୍ଡବଗଣ ଲଜ୍ଜିତ ହୋଇ କ'ଣ କହିବେ ?

ହେ ପୁରୁଷଶ୍ରେଷ୍ଠ, ଗାନ୍ଧାରୀପୁତ୍ର ! ଆପଣ ଧନ୍ୟ, କାରଣ ଆପଣ ଧର୍ମାନୁସାରେ ଶତ୍ରୁଗଣର ସମ୍ମୁଖରେ ରହି, ସଂଗ୍ରାମରେ ନିହତ

ହେଲେ । ଜ୍ଞାତିବାନ୍ଧବବର୍ଜିତା ହତପୁତ୍ରା ଗାନ୍ଧାରୀ ଏବଂ ପ୍ରଜ୍ଞାଚକ୍ଷୁ ଦୁର୍ଦ୍ଧର୍ଷ ରାଜା କେଉଁ ଗତିକୁ ପ୍ରାପ୍ତ ହେବେ ? ଆମ୍ଭେମାନେ ଯାହା ତୁମ୍ଭ ସଦ୍ଗୁଣ ରାଜାଙ୍କୁ ପୁରସ୍କୃତ କରି ସ୍ୱର୍ଗକୁ ନ ଗଲୁଁ, ସେହି କାରଣରୁ ଆମ୍ଭେ, ମହାରଥ କୃପାଚାର୍ଯ୍ୟ, କୃତବର୍ମା ଓ ଆପଣାକୁ ଧିକ୍କାର କରୁଅଛୁଁ । ଆପଣ ସର୍ବକାମନାର ଦାତା, ରକ୍ଷିତା ଏବଂ ପ୍ରଜାମାନଙ୍କର ହିତକାରକ, ନରାଧମ ଆମ୍ଭେମାନେ ଯାହା ଆପଣଙ୍କ ଅନୁଗମନ କରିପାରିଲୁଁ ନାହିଁ, ସେହି କାରଣରୁ ଆମ୍ଭମାନଙ୍କୁ ଧିକ୍କାର । ହେ ନରବର ! ଆପଣଙ୍କ ବୀର୍ଯ୍ୟ ପ୍ରଭାବରେ କୃପାଚାର୍ଯ୍ୟଙ୍କର, ଆମ୍ଭର ଓ ଆମ୍ଭ ପିତାଙ୍କର ଏବଂ ଅସ୍ମଦୀୟ ଭୃତ୍ୟଗଣର ଗୃହସମୂହ ରତ୍ନଯୁକ୍ତ ହୋଇଅଛି, ଆପଣଙ୍କ ପ୍ରସାଦରେ ଅସ୍ମଦୀୟ ମିତ୍ରଗଣ ବାନ୍ଧବଗଣ ଓ ଆମ୍ଭେମାନେ ଭୂରିଦକ୍ଷିଣ ଯଜ୍ଞଫଳ ପ୍ରାପ୍ତ ହୋଇଅଛୁଁ । ଆପଣ ସମସ୍ତ ନରପାଳଗଣଙ୍କୁ ପୁରସ୍କୃତ କରି ଯେଉଁ ପ୍ରକାରରେ ପରମଗତି ପ୍ରାପ୍ତ ହେଲେ, ଆମ୍ଭେ ପାପାତ୍ମାମାନେ ତାହା କପରି ପ୍ରାପ୍ତ ହେବୁଁ ? ।୩୮।

ମହାରାଜ ! ଆପଣ ପରମଗତି ପ୍ରାପ୍ତ ହେଲେ, ଆମ୍ଭେ ତିନି ଜଣ ଆପଣଙ୍କ ଅନୁଗମନ କରିପାରିଲୁଁ ନାହିଁ । ଏହି କାରଣରୁ ଆମ୍ଭେମାନେ ଦଗ୍ଧ ହେବୁ । ଆମ୍ଭେମାନେ ଯଦି ଆପଣଙ୍କ ଅନୁଗମନ କରି ନ ପାରିଲୁ, ତେବେ ଭବଦୀୟ ସଙ୍ଗହୀନ ଓ ଅର୍ଥହୀନ ହୋଇ ଆପଣଙ୍କ ସୁକୃତ ସ୍ମରଣ କଲେ ଅବା କଣ କରିବୁ । ଅତଏବ ହେ କୁରୁଶ୍ରେଷ୍ଠ ! ଆମ୍ଭେମାନେ ଏହି ପୃଥିବୀରେ ଦୁଃଖରେ ବିଚରଣ କରିବୁଁ, ଏଥିରେ ସଂଶୟ ନାହିଁ । ୪୧ । ହେ ମହାରାଜ ! ଆପଣଙ୍କୁ ଛାଡ଼ିଲା ଉତ୍ତରେ ଆମ୍ଭମାନଙ୍କର ସୁଖ ନାହିଁ ! କି ଶାନ୍ତି ଅବା ନାହିଁ । ମହାରାଜ ! ଆପଣ ଇହଲୋକରୁ ଯାଇ ମହାରଥମାନଙ୍କ ସହିତ ମିଳିତ ହୋଇ, ଆମ୍ଭ ବାକ୍ୟରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଅନୁସାରେ ସେମାନଙ୍କୁ ପୂଜା କରିବେ ।

ହେ ନରାଧିପ ! ସମସ୍ତ ଧନୁର୍ଦ୍ଧରକୁଳର କେତୁ ସ୍ୱରୂପ ଆଚାର୍ଯ୍ୟଙ୍କୁ ପୂଜା କରି କହିବେ ଯେ, ଅଦ୍ୟ ଆମ୍ଭେ ଧୃଷ୍ଟଦ୍ୟୁମ୍ନଙ୍କୁ ନିହତ କରିଅଛୁଁ । ଆପଣ ସୁମହାରଥ ବାହ୍ଲୀକରାଜ ସିନ୍ଧୁପତି ଜୟଦ୍ରଥ, ସୋମଦତ୍ତ ଏବଂ ଭୂରିଶ୍ରବାଙ୍କୁ ଆଲିଙ୍ଗନ କରିବେ । ଆଉ ଯେଉଁ ଅନ୍ୟାନ୍ୟ ନୃପବରମାନେ ପୂର୍ବେ ସ୍ୱର୍ଗକୁ ଗମନ କରିଅଛନ୍ତି, ସେମାନଙ୍କୁ ଆଲିଙ୍ଗନ କରି ଆମ୍ଭ ବାକ୍ୟାନୁସାରେ ଅନାମୟ ପ୍ରଶ୍ନ କରିବେ । ୪୨ ।

ସଞ୍ଜୟ କହିଲେ, ହେ ମହାରାଜ ! ଅଶ୍ୱତ୍ଥାମା ଭୟରୁ ଅଚେତନ ସଦୃଶ ରାଜାଙ୍କୁ ଏହା କହି ପୁନଶ୍ଚ ନିରୀକ୍ଷଣପୂର୍ବକ କହିଲେ, ମହାରାଜ ! ଆପଣ ଜୀବିତ ଅଛନ୍ତି । ତେବେ ଶ୍ରୁତିର ସୁଖକାରକ କଥିପଯ୍ ବାକ୍ୟ ଶ୍ରବଣ କରିବା ହେଉନ୍ତୁ । ପାଣ୍ଡବଙ୍କ ପକ୍ଷରୁ ସାତ ଜଣ ଏବଂ ଆପଣଙ୍କ ପକ୍ଷରୁ ଆମ୍ଭେମାନେ ତିନି ଜଣ ଅବଶିଷ୍ଟ ରହିଅଛୁଁ । ୪୮ । ପାଣ୍ଡବ ପଞ୍ଚଭ୍ରାତା, ବାସୁଦେବ ଓ ସାତ୍ୟକି, ଆମ୍ଭମାନଙ୍କ ମଧ୍ୟରୁ କୃତବର୍ମା, କୃପାଚାର୍ଯ୍ୟ ଓ ଆମ୍ଭେ ଜୀବିତ ଅଛୁଁ ।୪୯। ଦ୍ରୌପଦୀଙ୍କ ପୁତ୍ରଗଣ, ଧୃଷ୍ଟଦ୍ୟୁମ୍ନଙ୍କ ପୁତ୍ରବୃନ୍ଦ, ପାଞ୍ଚାଳ ସମୂହ ଏବଂ ଅବଶିଷ୍ଟ ମତ୍ସ୍ୟଦେଶୀୟମାନେ ସମସ୍ତେ ନିହତ ହୋଇଅଛନ୍ତି । ହେ ଭାରତ ! କୃତ କାର୍ଯ୍ୟର ପ୍ରତିକାରକୁ ଦେଖିବା ହେଉନ୍ତୁ । ପାଣ୍ଡବଗଣ ସମସ୍ତେ ହତପୁତ୍ର ହୋଇଅଛନ୍ତି । ସେମାନଙ୍କର ନରବାହନଯୁକ୍ତ ଶିବିର ସୁପ୍ତ ଅବସ୍ଥାରେ ହତ ହୋଇଅଛି । ୫୧ ।

ହେ ମହାରାଜ ! ଆମ୍ଭେ ରାତ୍ରିରେ ଶିବିରରେ ପ୍ରବେଶ କରି ପାପକର୍ମା ଧୃଷ୍ଟଦ୍ୟୁମ୍ନଙ୍କୁ ପଶୁ ସଦୃଶ ନିହତ କରିଅଛୁଁ । ୫୨ । ଦୁର୍ଯ୍ୟୋଧନ ଦ୍ରୋଣ-ପୁତ୍ରଙ୍କ ମୁଖରୁ ସେହି ମାନସ-ପ୍ରୀତିକର ବାକ୍ୟ ଶୁଣି, ପୁନଶ୍ଚ ସଚେତନ ହୋଇ ଏହି ବାକ୍ୟ କହିଲେ ଯେ, ହେ ଗୁରୁପୁତ୍ର ! କୃପାଚାର୍ଯ୍ୟ ଓ କୃତବର୍ମାଙ୍କ ସହିତ ଆପଣ ଅଦ୍ୟ ଆମ୍ଭର ଯେଉଁ ପ୍ରିୟ କାର୍ଯ୍ୟ କଲେ, ଗଙ୍ଗାଙ୍କ ପୁତ୍ର ଭୀଷ୍ମ, କର୍ଣ୍ଣ ଏବଂ ଆପଣଙ୍କ ପିତା ମଧ୍ୟ ତାହା କରି ନ ଥିଲେ । ୫୪ । ସେହି କ୍ଷୁଦ୍ରାଶୟ ପାଣ୍ଡବ ସେନାପତି ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ହତ ହୋଇଥିବାରୁ ଆମ୍ଭେ ଅଦ୍ୟ ଆପଣଙ୍କୁ ଇନ୍ଦ୍ରଙ୍କ ସମାନ ଜାଣୁଅଛୁଁ । ୫୫ । ଆପଣମାନେ କଲ୍ୟାଣ ଲାଭ କରନ୍ତୁ । ସ୍ୱର୍ଗରେ ପୁନଶ୍ଚ ଆମ୍ଭ ସହିତ ଆପଣ-ମାନଙ୍କର ସଙ୍ଗମ ହେବ । ସେହି ମହାମନା ବୀରବର କୁରୁରାଜ ଏହି ବାକ୍ୟ କହି ସୁହୃଦଗଣଙ୍କୁ ଦୁଃଖ ଦେଇ ପ୍ରାଣ ବିସର୍ଜନ କଲେ । ସେ ପବିତ୍ର ସ୍ୱର୍ଗଧାମକୁ ଆକ୍ରମଣ କଲାରୁ ତଦୀୟ କଳେବର କ୍ଷିତିତଳରେ ପ୍ରବେଶ କଲା । ୫୭ ।

ହେ ମହାରାଜ ! ଆପଣଙ୍କ ପୁତ୍ର ଦୁର୍ଯ୍ୟୋଧନ ସର୍ବାଗ୍ରେ ସମରକୁ ଗମନ କରି ସର୍ବଶେଷରେ ଶତ୍ରୁଦ୍ୱାରା ନିହତ ହୋଇ ଏହିପରି ନିଧନ ଲାଭ କଲେ । ୫୮ । କୃପ ପ୍ରଭୃତି ମହାରଥଗଣ ତାହାଙ୍କଦ୍ୱାରା ଆଲିଙ୍ଗିତ ହୋଇ ଏବଂ ତାହାଙ୍କୁ ଆଲିଙ୍ଗନ କରି ବାରମ୍ବାର ନିରୀକ୍ଷଣପୂର୍ବକ ସ୍ୱ ସ୍ୱ ରଥରେ

ଆସ୍ୱେଦନ କଲେ । ୬୯ । ଆମ୍ଭେ ଦ୍ରୋଣପୁତ୍ରଙ୍କର ଏତାଦୃଶ କରୁଣ ବାକ୍ୟ ଶୁଣି ଶୋକାର୍ତ୍ତ ହୋଇ ପ୍ରତ୍ୟୁଷ ସମୟରେ ନଗରକୁ ଆସିଲୁଁ । ୭୦ । ମହାରାଜ ! କେବଳ ଆପଣଙ୍କ କୁମନ୍ତ୍ରଣାରେ ଏହିପରି କୁରୁ-ପାଣ୍ଡବ ସେନାର ଘୋରତର କ୍ଷୟକାରକ ମହାଭୟଙ୍କର ଯୁଦ୍ଧ ହେଲା । ୭୧ । ଅଦ୍ୟ ଆପଣଙ୍କ ପୁତ୍ର ସ୍ୱର୍ଗଗାମୀ ହେବାରୁ ଆମ୍ଭେ ଅତିଶୟ ଶୋକାର୍ତ୍ତ ହେଲୁଁ । ତେତେବେଳେ ଆମ୍ଭର ସେହି ଋଷିଦତ୍ତ ଦିବ୍ୟଦୃଷ୍ଟି ବିନଷ୍ଟ ହେଲା । ୭୨ ।

ବୈଶମ୍ପାୟନ କହିଲେ, ରାଜା ଧୃତରାଷ୍ଟ୍ର ଏହିପରି ପ୍ରିୟପୁତ୍ରଙ୍କ ନିଧନ ବିବରଣ ଶୁଣି ତେତେବେଳେ ଦୀର୍ଘ ଓ ଉଷ୍ଣ ନିଶ୍ୱାସ ପରିତ୍ୟାଗ କରି ଚିନ୍ତାକୁଳ ହୋଇଥିଲେ । ୭୩ ।

---

# ଦଶମ ଅଧ୍ୟାୟ

ବୈଶମ୍ପାୟନ କହିଲେ—ସେହି ରାତ୍ରି ଅତୀତ ହେବାରୁ ଧୃଷ୍ଟଦ୍ୟୁମ୍ନଙ୍କ ସାରଥି ଧର୍ମରାଜଙ୍କ ନିକଟରେ ସୌପ୍ତିକ ସମୟରେ ଯେଉଁ ବିଧ୍ୱଂସ ଘଟିଥିଲା, ସେହି ବୃତ୍ତାନ୍ତ ନିବେଦନ କଲେ । ୧ । ସାରଥି କହିଲେ, ମହାରାଜ ! ରାତ୍ରିରେ ସ୍ୱକୀୟ ଶିବିରରେ ପ୍ରମତ୍ତ ଓ ବିଶ୍ୱସ୍ତରୂପରେ ନିଦ୍ରିତ ଦ୍ରୌପଦୀଙ୍କ ପୁତ୍ରଗଣ, ଦ୍ରୁପଦ ପୁତ୍ରଙ୍କ ସହିତ ନିହତ ହୋଇଅଛନ୍ତି । ୨ । ନୃଶଂସ କୃତବର୍ମା, ଗୌତମ କୃପାଚାର୍ଯ୍ୟ ଏବଂ ପାପାତ୍ମା ଅଶ୍ୱତ୍ଥାମା ରାତ୍ରିରେ ସୁପ୍ତପ୍ରାୟ ଶିବିରସ୍ଥିତ ସମସ୍ତ ସୈନ୍ୟଙ୍କୁ ନିହତ କରିଅଛନ୍ତି । ୩ । ଏମାନେ ପ୍ରାସ, ଶକ୍ତି ଓ ପରଶୁଦ୍ୱାରା ସହସ୍ର ସହସ୍ର ନର ଅଶ୍ୱ ଓ ଗଜମାନଙ୍କୁ ଛେଦନ କରି ଆପଣଙ୍କ ସୈନ୍ୟଙ୍କୁ ନିଃଶେଷ କରିଅଛନ୍ତି । ୪ ।

ହେ ମହାରାଜ ! ଭାରତ ! ପରଶୁଦ୍ୱାରା ଛିଦ୍ୟମାନ ମହାବନ ସଦୃଶ ଆପଣଙ୍କ ସୈନ୍ୟମାନଙ୍କର ମହାନ୍ ଶବ୍ଦ ଶୁଣାଯାଉଥିଲା । ୫ । ହେ ମହୀପତେ ! ସେହି ସମସ୍ତ ସୈନ୍ୟ ମଧ୍ୟରୁ ଆମ୍ଭେ କେବଳ ଅବଶିଷ୍ଟ ଅଛୁଁ ।

ହେ ଧର୍ମାତ୍ମନ୍ ! ବ୍ୟଗ୍ର ଅର୍ଥାତ୍ ଅନ୍ୟ ବ୍ୟକ୍ତିର ନିଗ୍ରହ ବିଷୟରେ ଆସକ୍ତ କୃତବର୍ମାଠାରୁ ଆମ୍ଭେ କଷ୍ଟେମଷ୍ଟେ ମୁକ୍ତ ହୋଇଅଛୁଁ । ୭ ।

କୁନ୍ତୀପୁତ୍ର ଯୁଧିଷ୍ଠିର ସେହି ଅମଙ୍ଗଳ ବାକ୍ୟ ଶ୍ରବଣ କରି ଧୈର୍ଯ୍ୟ ଓ ମର୍ଯ୍ୟାଦା ପରିତ୍ୟାଗପୂର୍ବକ ପୁତ୍ରଶୋକରେ ବ୍ୟାକୁଳ ହୋଇ ପୃଥିବୀରେ ପତିତ ହେଲେ । ସେ ପତିତ ହେବାମାତ୍ରେ ତାଙ୍କୁ ସାତ୍ୟକି, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଧାରଣ କଲେ । ୮ । କୁନ୍ତୀପୁତ୍ର କ୍ଷଣକ ଉତ୍ତାରେ ସଚେତନ ହୋଇ ଶୋକବିହ୍ୱଳ ବଚନରେ ଶତ୍ରୁମାନଙ୍କୁ ଜୟ କରି ପଶ୍ଚାତ୍ ପରାଜିତ ହେଲୁଁ ବୋଲି କହି, ଆର୍ତ୍ତବ୍ୟକ୍ତି ସଦୃଶ ବିଳାପ କଲେ । ୯ । ହା, ଦିବ୍ୟଚକ୍ଷୁ ବ୍ୟକ୍ତି ଅର୍ଥମାନଙ୍କର ଗତିକି ଜାଣିପାରନ୍ତି ନାହିଁ । କେହି କେହି ବ୍ୟକ୍ତି ବିପକ୍ଷଦ୍ୱାରା ପରାଜିତ ହୋଇ ସୁଦ୍ଧା ଶତ୍ରୁକୁ ଜୟ କରନ୍ତି । କିନ୍ତୁ କି ଆଶ୍ଚର୍ଯ୍ୟ, ଆମ୍ଭେମାନେ ଶତ୍ରୁଗଣଙ୍କୁ ଜୟ କରି ସୁଦ୍ଧା ପରାଜିତ ହେଲୁଁ । ୧୦ । ପିତା, ଭ୍ରାତା, ପୌତ୍ର, ବୟସ୍ୟ ସୁହୃଦ, ବନ୍ଧୁ ଓ ଅମାତ୍ୟଗଣଙ୍କୁ ହତ କରି ଜୟୀ ହୋଇ ସୁଦ୍ଧା ଆମ୍ଭେମାନେ ପରାଜିତ ହେଲୁଁ । ୧୧ । କେତେବେଳେ ଅନିଷ୍ଟ ଇଷ୍ଟ ସଦୃଶ, କେତେ-ବେଳେ ଅବା ଅନର୍ଥବିଷୟ ଇଷ୍ଟ ସଦୃଶ ଦୃଷ୍ଟ ହୁଏ ।

ଆମ୍ଭମାନଙ୍କର ଏହି ଜୟ, ଜୟ ନୁହେ, ଅଜୟ ସଦୃଶ ଅଟେ । ଏହାକୁ ପରାଜୟ ବୋଲି କୁହାଯାଇପାରେ । ଦୁର୍ମତି ଲୋକ ଆପଦଗ୍ରସ୍ତ ବ୍ୟକ୍ତିପରି ଯେଉଁ ବିଷୟ ଜିଣି ପଶ୍ଚାତ୍ତାପ କରେ, ଶତ୍ରୁକର୍ତ୍ତୃକ ବିଜିତ ସେହି ଜନ କେଉଁ ପ୍ରକାରରେ ଆପଣାର ବିଜୟ ବୋଲି ଜାଣିପାରେ ? ଯେଉଁମାନଙ୍କ ହେତୁରୁ ସୁହୃଦ୍‌ବୋଧଦ୍ୱାରା ବିଜୟ ସମ୍ବନ୍ଧରେ ପାପ ହୁଏ, ସେହି ନିର୍ଜିତ ଓ ଅପ୍ରମତ୍ତ ଶତ୍ରୁଗଣଦ୍ୱାରା ଜୟୋତ୍କୃଷ୍ଟଧାରୀ ପୁରୁଷମାନେ ବିଜିତ ହେଲେ ।୧୬। ଯୁଦ୍ଧରେ କର୍ଣ୍ଣୀ ଓ ନାଳୀକ ଅସ୍ତ୍ର ଯାହାଙ୍କର ଦନ୍ତ, ଖଡ୍‌ଗ ଯାହାଙ୍କ ଜିହ୍ୱା, ଧନୁ ଯାହାଙ୍କର ବିସ୍ତାରିତ ମୁଖ, ଜ୍ୟା ତଳଶବ୍ଦ ଯାହାଙ୍କର ନିନାଦ, ସଂଗ୍ରାମରେ ଯେ ଅପରାଙ୍ମୁଖ ଭୟଙ୍କର କ୍ରୋଧଯୁକ୍ତ ନରଶ୍ରେଷ୍ଠ ସେହି କର୍ଣ୍ଣଙ୍କ ନିକଟରୁ ଯେଉଁମାନେ ମୁକ୍ତ ହୋଇଥିଲେ, ଏତେବେଳେ ଆମ୍ଭର ଅସାନ୍ନିଧ୍ୟ ହେତୁରୁ ସେମାନେ ହତ ହେଲେ । ୧୭ । ରଥରୂପ ହ୍ରଦଯୁକ୍ତ, ଶରବର୍ଷଣରୂପ ତରଙ୍ଗମାଳା ବିରାଜିତ, ସରତ୍ନବାହନ ବାଜିଯୁକ୍ତ, ଶକ୍ତି ଓ ଋଷ୍ଟି ରୂପେ ମୀନ ସଂଯୁକ୍ତ, ଧ୍ୱଜଯୁକ୍ତ ହସ୍ତୀରୂପ, କୁମ୍ଭୀର

ଦ୍ୱାରା ଭୟଙ୍କର, ଶରାସନରୂପ ଆବର୍ତ୍ତ ବିଶିଷ୍ଟ, ମହାବାଣରୂପ ଫେନ-ସମ୍ବଳିତ ସଂଗ୍ରାମ ଚନ୍ଦ୍ରୋଦୟରେ ବେଗଧାରୀ ବେଳା ସଦୃଶ ଜ୍ୟାତଳ ଓ ନେମିଘୋଷଯୁକ୍ତ ଦ୍ରୋଣସ୍ୱରୂପ ସାଗରରେ ଯେଉଁ ସମସ୍ତ ରାଜପୁରୁଷମାନେ ବହୁବିଧ ଶସ୍ତ୍ରରୂପ ନୌକାଦ୍ୱାରା ଉତ୍ତୀର୍ଣ୍ଣ ହୋଇଥିଲେ, ସେମାନେ ଆମ୍ଭର ଅସାନ୍ନିଧ୍ୟବଶରୁ ନିହତ ହେଲେ ।

ଏହି ଜୀବଲୋକରେ ମାନବଗଣର ପ୍ରମାଦ ଅପେକ୍ଷା ଅଧିକ ଶ୍ରେଷ୍ଠ ବିଧ ଅନ୍ୟ କିଛି ନାହିଁ । ଅର୍ଥସମୂହ ପ୍ରମତ୍ତ ବ୍ୟକ୍ତିକୁ ପରିତ୍ୟାଗ କରେ ଓ ଅନର୍ଥବୃନ୍ଦ ତାଦୃଶ ବ୍ୟକ୍ତିକୁ ଅର୍ଥାତ୍ ପ୍ରମତ୍ତ ଲୋକକୁ ଆଶ୍ରୟ କରେ । ୧୯ । ଉତ୍କୃଷ୍ଟ ଧ୍ୱଜାଗ୍ରସମୂହ ଯାହାଙ୍କ ଧୂମକେତୁ ସମାନ, ଶର ସମୂହ ଯାହାଙ୍କ ଜ୍ୱାଳାସଦୃଶ, କ୍ରୋଧ ଯାହାଙ୍କର ମହାସମୀର ସମାନ, ମହାଧନୁ ଜ୍ୟାତଳ ଓ ନେମିନିନାଦ ସମନ୍ୱିତ କବଚ ଓ ବିବିଧ ଶସ୍ତ୍ର-ସମୂହ ଯହିଁରେ ପ୍ରକ୍ଷିପ୍ତ ହୋଇଥିଲା, ମହାସେନା ରୂପ ତୃଣକାଷ୍ଠ ସମୂହର ଦାବାନଳ କଳ୍ପଶ୍ରୀଷ୍ମମୟ ଅଗ୍ନିଦାହକୁ ଯେଉଁମାନେ ମହାଯୁଦ୍ଧରେ ସହ୍ୟ କରିଥିଲେ, ସେହି ସମସ୍ତ ରାଜପୁତ୍ରଗଣ ଆମ୍ଭର ଅସାନ୍ନିଧ୍ୟବଶରୁ ନିହତ ହେଲେ । ୨୧ ।

ପ୍ରମତ୍ତ ବ୍ୟକ୍ତି କଦାପି ବିଦ୍ୟା, ତପସ୍ୟା, ସମ୍ପତ୍ତି ଓ ବିପୁଳଯଶ ଲାଭ କରିବାକୁ ସମର୍ଥ ହୁଏ ନାହିଁ । ଦେଖ, ପ୍ରମାଦବିହୀନ ଇନ୍ଦ୍ର ସମସ୍ତ ଶତ୍ରୁ ନିହତ କରି ସୁଖସମୃଦ୍ଧି ବୃଦ୍ଧି କରୁଅଛନ୍ତି । ୨୨ । ଦେଖ, ସମୃଦ୍ଧିଶୀଳ ବେପାରୀଗଣ ଯେଉଁପରି ସମୁଦ୍ର ଉତ୍ତୀର୍ଣ୍ଣ ହୋଇ, ଅନାଦର କରି କୁନଦୀରେ ନିମଗ୍ନ ହୁଅନ୍ତି, ତଦ୍‌ବତ୍ ଇନ୍ଦ୍ର ସଦୃଶ ରାଜପୁତ୍ର ଓ ରାଜପୌତ୍ରଗଣ ପ୍ରମାଦ ହେତୁରୁ ଅବଶିଷ୍ଟ ଶତ୍ରୁ ଅଶ୍ୱତ୍ଥାମାଙ୍କ ଦ୍ୱାରା ନିହତ ହୋଇଅଛନ୍ତି । ୨୩ । ଯେଉଁ ସୁପ୍ତ ପୁରୁଷମାନେ ଅମର୍ଷିତ ଶତ୍ରୁହସ୍ତରେ ନିହତ ହୋଇଅଛନ୍ତି ସେମାନେ ସ୍ୱର୍ଗକୁ ଗମନ କରିଅଛନ୍ତି, ସଂଶୟ ନାହିଁ । ଏତେବେଳେ କୃଷ୍ଣାଙ୍କ ନିମିତ୍ତ ଏହି ଶୋକ ଉପସ୍ଥିତ ହୋଇଅଛି । ସେହି ପତିବ୍ରତା କେଉଁପରି ଦାରୁଣ ଶୋକକୁ ସହ୍ୟ କରିବେ । ସେ ଭ୍ରାତା, ପୁତ୍ର ଏବଂ ବୃଦ୍ଧ ପିତା ପାଞ୍ଚାଳ ରାଜାଙ୍କର ନିଧନ ସମ୍ବାଦ ଶୁଣି ଅଚେତନ ଓ ପତିତ ହୋଇ ଶୋକ ଦୁର୍ବଳ ଦେହରେ ପୃଥିବୀରେ ଶୟନ କରି ସର୍ବଦା ଭଗିନୀ । ଦ୍ରୌପଦୀ ପୁତ୍ରକ୍ଷୟ ଓ ଭ୍ରାତୃବଧରେ କାତର ହୋଇ ହୁତାଶନଦ୍ୱାରା

ଦର୍ଶ୍ୟମାନ ଜନସଦୃଶ ସେହି ଶୋକଜନକ ଦୃଃଖ ସହ୍ୟ କରିବାକୁ ଅସମର୍ଥା ହେବେ ? ।୨୬। କୁରୁମାନଙ୍କ ରାଜା ଆର୍ତ୍ତ ହୋଇ ଏହିପରି ବିଳାପ କରି ନକୁଳଙ୍କୁ କହିଲେ, ହେ ଭ୍ରାତ ! ତୁମ୍ଭେ ଗମନ କର, ମନ୍ଦଭାଗିନୀ ରାଜକୁମାରୀଙ୍କୁ ମାତୃପକ୍ଷ ସହିତ ଏହି ସ୍ଥାନକୁ ଆଣ । ୨୭ ।

ମାଦ୍ରୀପୁତ୍ର ନକୁଳ ଧର୍ମପ୍ରତ୍ତମ ରାଜାଙ୍କର ସେହି ବାକ୍ୟକୁ ଧର୍ମାନୁସାରେ ସ୍ୱୀକାର କରି, ରଥାରୋହଣପୂର୍ବକ ଯେଉଁ ସ୍ଥାନରେ ପାଞ୍ଚାଳ ନରପାଳଙ୍କର ପତ୍ନୀମାନେ ଥିଲେ ଦେବୀଙ୍କର ସେହି ଗୃହକୁ ଅବିଳମ୍ବରେ ଗମନ କଲେ । ୨୮ । ଶୋକପୀଡ଼ିତ ଯୁଧିଷ୍ଠିର ମାଦ୍ରୀପୁତ୍ରଙ୍କୁ ପ୍ରେରଣ କରି ସେହି ସମସ୍ତ ସୁହୃଦ୍‌ଗଣଙ୍କ ସହିତ ବାରମ୍ବାର ରୋଦନ କରି ଭୂତଗଣବ୍ୟାପ୍ତ ପରିକୀର୍ଣ୍ଣ ପୁତ୍ରମାନଙ୍କ ଯୁଦ୍ଧସ୍ଥଳକୁ ଗମନ କଲେ । ୨୯ । ସେ ସେହି ଭୟଙ୍କର ଅମଙ୍ଗଳଦାୟକ ସଂଗ୍ରାମସ୍ଥଳରେ ପ୍ରବେଶ କରି ଦେଖିଲେ ଯେ ପୁତ୍ର, ସଖା ଓ ସୁହୃଦସମୂହ ରୁଧିରାକ୍ତ କଳେବର ହୋଇ ଧରାତଳରେ ଶୟନ କରିଅଛନ୍ତି । ସେମାନଙ୍କ ଶରୀର ସମୂହ ଭିନ୍ନ ଓ ମସ୍ତକ ସମୂହ ଛିନ୍ନ ହୋଇଅଛି । ୩୦ । କୌରବାଗ୍ରଗଣ୍ୟ ଧାର୍ମିକଶ୍ରେଷ୍ଠ ଯୁଧିଷ୍ଠିର ସେହିମାନଙ୍କୁ ଅବଲୋକନ କରି ଅତ୍ୟନ୍ତ ପୀଡ଼ିତ ହୋଇ ଉଚ୍ଚୈଃସ୍ୱରରେ କ୍ରନ୍ଦନ କଲେ । ପରିଶେଷରେ ଅଚେତନ ହୋଇ ସ୍ୱଗଣ ସହିତ ପୃଥିବୀରେ ପତିତ ହେଲେ । ୩୧ ।

---

## ଅଧ୍ୟାୟ—୧୧

ବୈଶମ୍ପାୟନ କହିଲେ, ହେ ଜନମେଜୟ ! ରାଜା ଯୁଧିଷ୍ଠିର ସଂଗ୍ରାମରେ ପୁତ୍ର, ପୌତ୍ର ଓ ସଖା ସମୂହଙ୍କୁ ନିହତ ହୋଇଥିବାର ଦେଖି ମହାଦୁଃଖରେ ବ୍ୟାକୁଳଚିତ୍ତ ହେଲେ । ୧ । ତତ୍ପରେ ପୁତ୍ର, ପୌତ୍ର, ଭ୍ରାତା ଓ ସ୍ୱଜନ ସମୂହଙ୍କୁ ସ୍ମରଣ କରିବାରୁ ସେହି ମହାତ୍ମାଙ୍କର ମହାଶୋକ ପ୍ରାଦୁର୍ଭୂତ ହେଲା । ୨ । ତେତେବେଳେ ସୁହୃଦ୍‌ଗଣ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ସେହି ଅଶ୍ରୁପୂର୍ଣ୍ଣ ନୟନ କମ୍ପମାନ ଓ ଚେତନାଶୂନ୍ୟ ନରପତିଙ୍କୁ ସାନ୍ତ୍ୱନା ଦେଲେ । ୩ ।

ତତ୍ପରେ ସେହି ପ୍ରଭାତକାଳରେ ନକୁଳ ଶୋକାର୍ତ୍ତା ଦ୍ରୌପଦୀଙ୍କ ସହିତ ଆଦିତ୍ୟ ସଦୃଶ ଉଜ୍ଜ୍ୱଳ ରଥଦ୍ୱାରା ଆଗମନ କଲେ । ୪ । ସେ ଶିବିରର ନିକଟସ୍ଥିତ ଉପପ୍ଳବ୍ୟ ନାମକ ସ୍ଥାନରେ ପ୍ରବେଶ କରି ତେତେବେଳେ ପୁତ୍ରଗଣର ବିନାଶରୂପ ଅତିଶୟ ଅପ୍ରିୟ ବୃତ୍ତାନ୍ତ ଶୁଣି ଅତ୍ୟନ୍ତ ବ୍ୟଥିତା ହେଲେ । ଶୋକାର୍ତ୍ତା କୃଷ୍ଣା ବାୟୁବେଗରେ ବିଚଳିତ କମ୍ପମାନ ରମ୍ଭାତରୁପରି ରାଜାଙ୍କ ନିକଟକୁ ଯାଇ ଭୂତଳରେ ପତିତା ହେଲେ । ୬ । ସେହି ପ୍ରଫୁଲ୍ଲ ପଦ୍ମପଲାଶନୟନାଙ୍କ ବଦନ ରାହୁଗ୍ରସ୍ତ ସୂର୍ଯ୍ୟଦେବଙ୍କ ସଦୃଶ ସହସା ଶୋକଦ୍ୱାରା ବିବର୍ଣ୍ଣ ହେଲା । ୭ ।

ତତ୍ପରେ କ୍ରୋଧପରାୟଣ ସତ୍ୟବିକ୍ରମ ଭୀମ ତାହାଙ୍କୁ ଭୂତଳରେ ପତିତା ହେବାର ଦେଖି ତାଙ୍କ ନିକଟଗାମୀ ହୋଇ ବାହୁଦ୍ୱୟଦ୍ୱାରା ଧାରଣ କଲେ । ୮ । ଭାମିନୀ କୃଷ୍ଣା ରୋଦନ କରି ଭୀମଙ୍କଦ୍ୱାରା ଉତ୍ତମରୂପେ ଆଶ୍ୱାସିତା ହୋଇ, ଭ୍ରାତାମାନଙ୍କ ସହିତ ଅବସ୍ଥିତ ଜ୍ୟେଷ୍ଠ ପାଣ୍ଡବଙ୍କୁ ସମ୍ବୋଧନ କରି କହିଲେ, ମହାରାଜ ! ଶୂର ସନ୍ତାନମାନେ କ୍ଷତ୍ରିୟ ଧର୍ମଦ୍ୱାରା ନିପାତିତ ହୋଇଥିବାର ଶ୍ରବଣ କରି ସୁଦ୍ଧା ଆପଣ ଭାଗ୍ୟକ୍ରମରେ ପ୍ରାପ୍ତ ଏହି ଅଖିଳ ଭୂମଣ୍ଡଳକୁ ଭୋଗ କରିବେ । ହେ ପାର୍ଥ ! ଆପଣ ଭାଗ୍ୟକ୍ରମରେ କୁଶଳରେ ରହି ସମସ୍ତ ଭୂମଣ୍ଡଳକୁ କରଗତ କରି ମତ୍ତଗଜବିକ୍ରମ ସୁଭଦ୍ରାନନ୍ଦନଙ୍କୁ ଆଉ ସ୍ମରଣ କରିବେ ନାହିଁ । ମୋ ସହିତ ଉପପ୍ଳବ୍ୟ ନଗରରେ ବାସ କରି ନିଜର ଶୂର ସନ୍ତାନମାନେ କ୍ଷତ୍ରିୟ ଧର୍ମରେ ନିହତ ହୋଇଥିବାର ଶୁଣିଲ୍ଲଜଗ୍ରରେ ମଧ୍ୟ ସେମାନଙ୍କୁ ଓ ଆମ୍ଭଙ୍କୁ ଆଉ ସ୍ମରଣ କରିବେ ନାହିଁ । ୧୨ ।

ମହାରାଜ ! ଅଗ୍ନି ଯେଉଁପରି ଆପଣାର ଆଶ୍ରୟ ସ୍ଥାନକୁ ଦହନ କରେ, ସେହିପରି ପାପକର୍ମା ଅଶ୍ୱତ୍ଥାମା ସମସ୍ତ ସୁପ୍ତ ସନ୍ତାନଗଣଙ୍କୁ ନିହତ କରିଅଛି ବୋଲି ଶ୍ରବଣ କରିଥିବାରୁ ଏତେବେଳଯାଏ ଶୋକାନଳ ଆମ୍ଭଙ୍କୁ ସନ୍ତାପିତ କରୁଅଛି । ୧୩ । ଆପଣ ଯଦି ଅଦ୍ୟ ସଂଗ୍ରାମରେ ବିକ୍ରମପୂର୍ବକ ସେହି ସହାୟ ସମ୍ପନ୍ନ ଅନିଷ୍ଟକାରକ ଅଶ୍ୱତ୍ଥାମାଙ୍କ ପ୍ରାଣ ହରଣ ନ କରିବେ, ତେବେ ଆମ୍ଭେ ଏହି ସ୍ଥାନରେ ପ୍ରାୟୋପବେଶନ କରିବୁଁ । ହେ ପାଣ୍ଡବଗଣ ! ଆପଣମାନେ ଏହା ନିଶ୍ଚୟ

କରୁ ଜାଣିଥିବେ ଯେ ଏହିପରି ନ ହେଲେ ଦୁରାତ୍ମା ଦ୍ରୋଣପୁତ୍ର ପାପ-କର୍ମର ଫଳ ପ୍ରାପ୍ତ ହେବ ନାହିଁ । ୧୫ ।

ଯଜ୍ଞସେନ-ନନ୍ଦିନୀ ଯଶସ୍ୱିନୀ କୃଷ୍ଣା ଏହିପରି କହି ପରିଶେଷରେ ଧର୍ମରାଜ ଯୁଧିଷ୍ଠିରଙ୍କ ନିକଟରେ ଉପବେଶନ କଲେ । ୧୭ । ଧର୍ମାତ୍ମା ରାଜର୍ଷି ଯୁଧିଷ୍ଠିର ସ୍ୱରୁଦର୍ଶନା ପ୍ରିୟ ମହିଷୀ ଦ୍ରୌପଦୀଙ୍କୁ ଉପବିଷ୍ଟା ହୋଇଥିବାର ଦେଖି କହିଲେ, ହେ ଶୁଭେ ! ହେ ଧର୍ମଜ୍ଞେ ! ତୁମ୍ଭ ଭ୍ରାତା ଓ ପୁତ୍ରମାନେ ଧର୍ମାନୁସାରେ ଧର୍ମସଙ୍ଗତ ନିଧନକୁ ପ୍ରାପ୍ତ ହୋଇଅଛନ୍ତି । ଅତଏବ ସେମାନଙ୍କ ନିମିତ୍ତ ତୁମ୍ଭର ଶୋକ କରିବାର ଉଚିତ ନୁହେଁ । ହେ କଲ୍ୟାଣୀ ! ହେ ଶୋଭନେ ! ସେହି ଦ୍ରୋଣପୁତ୍ର ଏଠାରୁ ବହୁ ଦୂର ଦୁର୍ଗମ ବନକୁ ଗମନ କରିଅଛନ୍ତି । ସଂଗ୍ରାମରେ ତାହାଙ୍କ ନିପାତ ବିଷୟ ତୁମ୍ଭେ କିପରି ଜାଣିପାରିବ ? ୧୯ । ଦ୍ରୌପଦୀ କହିଲେ, ମହାରାଜ ! ମୁଁ ଶୁଣିଅଛି, ଦ୍ରୋଣପୁତ୍ରଙ୍କ ମସ୍ତକରେ ଗୋଟିଏ ଜନ୍ମଗତ ମଣି ଅଛି । ସେହି ପାପାତ୍ମାକୁ ସଂଗ୍ରାମରେ ସଂହାର କରି, ସେହି ମଣି ଆନୟନ କର, ମୁଁ ଦେଖିବି ଏବଂ ତାହାକୁ ଭବଦୀୟ ମସ୍ତକରେ ରଖି ପ୍ରାଣଧାରଣ କରିବି ବୋଲି ମନେ କରିଅଛି ।

ସ୍ୱରୁଦର୍ଶନା ଦ୍ରୌପଦୀ ରାଜାଙ୍କୁ ଏହିପରି କହି ଭୀମସେନଙ୍କ ସମ୍ମୁଖକୁ ଆଗମନପୂର୍ବକ କହିଲେ, ହେ ନାଥ ! ତୁମ୍ଭେ କ୍ଷତ୍ରିୟଧର୍ମକୁ ସ୍ମରଣ କରି ଆମ୍ଭମାନଙ୍କୁ ରକ୍ଷାକର । ଇନ୍ଦ୍ରଦେବ ଯେଉଁପରି ଶମ୍ବରାସୁରକୁ ସଂହାର କରିଥିଲେ, ଆପଣ ସେହିପରି ସେହି ଅନିଷ୍ଟକାରୀକୁ ସଂହାର କରନ୍ତୁ । ଇହଲୋକରେ ବିକ୍ରମ ବିଷୟରେ ଆପଣଙ୍କ ସମାନ କୌଣସି ପୁରୁଷ ନାହିଁ, ଏକଥା ସର୍ବଲୋକରେ ବିଖ୍ୟାତ ହୋଇଅଛି । ବାରଣାବତ ନଗରରେ ମହାବିପଦ ଉପସ୍ଥିତ ହୋଇଥିବା ସମୟରେ ଆପଣ ପୃଥାପୁତ୍ର-ମାନଙ୍କ ଦ୍ୱୀପ ଅର୍ଥାତ୍ ଆଶ୍ରୟ ହୋଇଥିଲେ । ସେହିପରି ମଧ୍ୟ ହିଡ଼ିମ୍ବ-ରାକ୍ଷସର ଦର୍ଶନ ସମୟରେ ଆପଣ ସମସ୍ତଙ୍କର ଗତି ହୋଇଥିଲେ । ଇନ୍ଦ୍ରଦେବ ଯେଉଁପରି ନହୁଷରାଜାଙ୍କ ଉତ୍ପାତରୁ ଶଚୀଦେବୀଙ୍କୁ ରକ୍ଷା କରିଥିଲେ, ସେହିପରି ବିରାଟ ନଗରରେ ମୁଁ କୀଚକଦ୍ୱାରା ଅତିଶୟ ପୀଡ଼ିତା ହେବାରୁ ଆପଣ ମତେ ସେହି କ୍ଲେଶରୁ ଉଦ୍ଧାର କରିଥିଲେ । ହେ ଶତ୍ରୁସଂହାରକ ପୃଥାପୁତ୍ର ! ଆପଣ ପୂର୍ବେ ଯେଉଁପରି ଏହି ସମସ୍ତ

ଉତ୍କୃଷ୍ଟ କର୍ମମାନ କରିଥିଲେ, ଏତେବେଳେ ସେହିପରି ଅଶ୍ୱତ୍ଥାମାଙ୍କୁ ବିନଷ୍ଟ କରି ସୁଖୀ ହେଉନ୍ତୁ ।

କୁନ୍ତୀପୁତ୍ର ମହାବଳ ଭୀମ ଦ୍ରୌପଦୀଙ୍କର ବହୁବିଧ ଦୁଃଖସଂଯୁକ୍ତ ବିଳାପବାକ୍ୟ ଶୁଣି କ୍ରୋଧର ବେଗକୁ ସହ୍ୟ କରିପାରିଲେ ନାହିଁ । ସେ ମନୋହର ଗୁଣଯୁକ୍ତ ଶର ସହିତ ବିଚିତ୍ର ଶରାସନ ଗ୍ରହଣପୂର୍ବକ ସୁବର୍ଣ୍ଣ ବିଚିତ୍ରିତ ମହାରଥରେ ଆରୋହଣ କଲେ ଏବଂ ନକୁଳଙ୍କୁ ସାରଥି କରି ଦ୍ରୋଣପୁତ୍ରଙ୍କ ବଧ ବିଷୟରେ କୃତସଂକଳ୍ପ ହେଲେ । ୨୯ । ସେ ସଶର-ଶରାସନ ବିସ୍ତାରଣପୂର୍ବକ ଶୀଘ୍ର ଅଶ୍ୱଚାଳନ କଲେ । ହେ ନରବ୍ୟାଘ୍ର ! ସେହି ବାତବେଗୀ ଶୀଘ୍ରଗାମୀ ହରିଦ୍‌ବର୍ଣ୍ଣ ଅଶ୍ୱମାନେ ପ୍ରେରିତ ହୋଇ ବେଗ ହେତୁରୁ ଭୟଯୁକ୍ତ ହୋଇ ଗମନ କଲେ । ବୀର୍ଯ୍ୟବାନ୍ ଭୀମ ସ୍ୱୀୟ ଶିବିରରୁ ଅଶ୍ୱତ୍ଥାମାଙ୍କ ରଥର ଗମନଚିହ୍ନକୁ ଗ୍ରହଣପୂର୍ବକ ଅତି ବେଗରେ ଗମନ କଲେ । ୩୧ ।

---

## ଅଧ୍ୟାୟ—୧୨

ବୈଶମ୍ପାୟନ କହିଲେ, ତପରେ ସେହି ଦୁର୍ଦ୍ଧର୍ଷ ଭୀମସେନ ଗମନ କରିବାରୁ ଯଦୁଶ୍ରେଷ୍ଠ ପୁଣ୍ଡରୀକାକ୍ଷ କୃଷ୍ଣ, କୁନ୍ତୀପୁତ୍ର ଯୁଧିଷ୍ଠିରଙ୍କୁ କହିଲେ, ହେ ପାଣ୍ଡବ ! ଆପଣଙ୍କ ଭ୍ରାତା ପୁତ୍ରଶୋକପରାୟଣ ହୋଇ ଅଶ୍ୱତ୍‌ଥାମାଙ୍କୁ ସଂହାର କରିବା ଇଚ୍ଛାରେ ଏକାକୀ ଧାବିତ ହେଉଅଛନ୍ତି । ହେ ଭରତଶ୍ରେଷ୍ଠ ! ଭୀମ ସର୍ବସହୋଦରମାନଙ୍କ ଅପେକ୍ଷା ଆପଣଙ୍କ ପ୍ରିୟ, ଅତଏବ ଆପଣ ତାଙ୍କୁ ଏହି କ୍ଳେଶସାଧ୍ୟ କର୍ମରେ ବ୍ୟାପୃତ ହେବାର ଦେଖି କେଉଁ କାରଣରୁ ସହାୟ ହେଉନାହାନ୍ତି ।

ଶତ୍ରୁପୁରଞ୍ଜୟ ଦ୍ରୋଣ ନିଜ ପୁତ୍ରକୁ କହିଥିଲେ ଯେ, ବ୍ରହ୍ମଶିର ନାମକାସ୍ତ୍ର ସମସ୍ତ ପୃଥିବୀକୁ ଦଗ୍‌ଧ କରିପାରେ । ସର୍ବଧନୁର୍ଦ୍ଧରକୁଳର କେତୁସ୍ୱରୂପ ମହାତ୍ମା ମହାଭାଗ ଆଚାର୍ଯ୍ୟ ପ୍ରସନ୍ନ ହୋଇ, ଧନଞ୍ଜୟଙ୍କୁ ସେହି ଅସ୍ତ୍ର ପ୍ରଦାନ କରୁଥିବା ସମୟରେ ତାହାଙ୍କର ଏକମାତ୍ର ପୁତ୍ର

ଅଶ୍ୱତ୍ଥାମା କ୍ରୋଧଯୁକ୍ତ ହୋଇ ତାହାଙ୍କ ନିକଟରେ ଉକ୍ତ ଅସ୍ତ୍ରକୁ ପ୍ରାର୍ଥନା କରିବାରୁ, ସେ ହୃଷ୍ଟଚିତ୍ତ ନ ହୋଇ ତାହାଙ୍କୁ ଉତ୍ତର ପ୍ରଦାନ କରିଥିଲେ । ମହାତ୍ମା ଦ୍ରୋଣ ସ୍ୱୀୟ ପୁତ୍ରଙ୍କ ଚପଳତା ବିଷୟରେ ପରିଜ୍ଞାତ ଥିଲେ; ସୁତରାଂ ସର୍ବଧର୍ମଜ୍ଞ ସେହି ଆଚାର୍ଯ୍ୟ ସ୍ୱୀୟ ପୁତ୍ରଙ୍କୁ ଏହିପରି ଶାସନ କଲେ ଯେ, ହେ ବତ୍ସ ! ତୁମ୍ଭେ ସଂଗ୍ରାମରେ ଅତିଶୟ ଆପଦ୍‌ଗ୍ରସ୍ତ ହେଲେ, ସୁଦ୍ଧା କଦାପି ମନୁଷ୍ୟମାନଙ୍କ ପ୍ରତି ଏହି ଅସ୍ତ୍ର ପ୍ରୟୋଗ କରିବ ନାହିଁ । ଦ୍ରୋଣାଚାର୍ଯ୍ୟ ପୁତ୍ରଙ୍କୁ ଏହି ବାକ୍ୟ କହି ପଶ୍ଚାତ୍ ପୁନଶ୍ଚ କହିଲେ ଯେ, ତୁମ୍ଭେ ସାଧୁଗଣଙ୍କ ପଥରେ କଦାପି ଅବସ୍ଥିତ ହୋଇପାରିବ ନାହିଁ । ୯ ।

ହେ ପୁରୁଷଶ୍ରେଷ୍ଠ ! ସେହି ଦୁଷ୍ଟାତ୍ମା ପିତାଙ୍କର ଅପ୍ରିୟ ବାକ୍ୟ ଶୁଣି ସମସ୍ତ କଲ୍ୟାଣ ବିଷୟରେ ନିରାଶ ହୋଇ ଶୋକରେ ଭୂମଣ୍ଡଳରେ ବିଚରଣ କଲେ । ୧୦ । ହେ କୁରୁଶ୍ରେଷ୍ଠ ! ତତ୍ପରେ ଯେଉଁ ସମୟରେ ଆପଣ ବନବାସୀ ହୋଇଥିଲେ, ସେତେବେଳେ ଅଶ୍ୱତ୍ଥାମା ଦ୍ୱାରକାକୁ ଆଗମନ କରି ବୃଷ୍ଣିବଂଶୀୟ ରାଜାଙ୍କ ଦ୍ୱାରା ପୂଜିତ ଓ ଆଦୃତ ହୋଇ ବାସ କଲେ । ୧୧ । ସେ ସମୁଦ୍ରତଟରେ ଦ୍ୱାରକାରେ ଏକାକୀ ବାସ କରି କୌଣସି ସମୟରେ ନିର୍ଜନରେ ଆମ୍ଭ ନିକଟକୁ ଆସି, ହସି ହସି କହିଲେ ଯେ, ହେ କୃଷ୍ଣ ! ଭରତାଚାର୍ଯ୍ୟ ସତ୍ୟପରାକ୍ରମ ଆମ୍ଭ ପିତା ଉଗ୍ର ତପସ୍ୟା କରି ଅଗସ୍ତ୍ୟଙ୍କ ନିକଟରୁ ଦେବଗନ୍ଧର୍ବପୂଜିତ ବ୍ରହ୍ମଶିର ନାମକ ଯେଉଁ ଅସ୍ତ୍ର ପ୍ରାପ୍ତ ହୋଇଥିଲେ, ସେହି ଅସ୍ତ୍ର ଆମ୍ଭ ପିତାଙ୍କର ଯେପରି ସେହିପରି ଆମ୍ଭର ମଧ୍ୟ ଅଛି । ହେ ଯଦୁବର ! ତୁମ୍ଭେ ଆମ୍ଭ ନିକଟରୁ ସେ ଦିବ୍ୟ ଅସ୍ତ୍ର ଗ୍ରହଣ କରି ସଂଗ୍ରାମରେ ଶତ୍ରୁଘାତୀ ଭବଦୀୟ ଚକ୍ର ଅସ୍ତ୍ର ଆମ୍ଭଙ୍କୁ ପ୍ରଦାନ କର । ହେ ମହାରାଜ ! ସେ କୃତାଞ୍ଜଳି ହୋଇ ଯତ୍ନସହକାରେ ଆମ୍ଭ ନିକଟରେ ଅସ୍ତ୍ର ପ୍ରାର୍ଥନା କଲାରୁ, ଆମ୍ଭେ ପ୍ରୀତ ହୋଇ କହିଲୁଁ ଯେ ସୁର, ଅସୁର, ଗନ୍ଧର୍ବ, ମାନବ, ପକ୍ଷୀ ଓ ଭୁଜଙ୍ଗ ପ୍ରଭୃତି ସମସ୍ତେ ମିଳିତ ହେଲେ ସୁଦ୍ଧା ଆମ୍ଭ ବୀର୍ଯ୍ୟର ଶତାଂଶର ସମାନ ହେବ ନାହିଁ । ଆମ୍ଭ ନିକଟରେ ଏହି ଶରାସନ, ଏହି ଶକ୍ତି, ଏହି ଚକ୍ର ଏବଂ ଏହି ଗଦା ଅଛି । ଏହିମାନଙ୍କ ମଧ୍ୟରୁ ଯେଉଁ ଅସ୍ତ୍ର ଗ୍ରହଣ କରିବାକୁ ଇଚ୍ଛା କରୁଅଛ, ଆମ୍ଭେ ତୁମ୍ଭଙ୍କୁ ତାହା ପ୍ରଦାନ କରିବୁଁ । ୧୮ । ତୁମ୍ଭେ ସଂଗ୍ରାମରେ ଯେଉଁ ଅସ୍ତ୍ର ଉଠାଇ ଓ ପ୍ରୟୋଗ କରିବାକୁ ସମର୍ଥ ହେବ, ତୁମ୍ଭେ ଆମ୍ଭଙ୍କୁ ଯେଉଁ

ଅସ୍ତ୍ରଦାନ କରିବାକୁ ଇଚ୍ଛୁକ ହୋଇଅଛ, ତାହା ନ ଦେଇ ସୁଦ୍ଧା ଆମ୍ଭର ଅସ୍ତ୍ର ଗ୍ରହଣ କର । ୧୯ ।

ସେହି ମହାଭାଗ ତେତେବେଳେ ଆମ୍ଭ ସହିତ ସ୍ପର୍ଦ୍ଧା କରି ଆମ୍ଭ ନିକଟରୁ ସୁନ୍ଦର ନାଭିଯୁକ୍ତ ସହସ୍ର ଅର ସଂଯୁକ୍ତ ବଜ୍ରନାଭ ଲୌହମୟ ଚକ୍ର ପ୍ରାର୍ଥନା କଲେ । ୨୦ । ତତ୍ପରେ ଚକ୍ର ଗ୍ରହଣ କର, ଆମ୍ଭେ ଏହି ବାକ୍ୟ କହିଲାରୁ ସେ ଉତ୍ପତିତ ହୋଇ ସବ୍ୟ ହସ୍ତରେ ଚକ୍ର ଧାରଣ କଲେ । କିନ୍ତୁ ତାହାକୁ ସହସା ସ୍ୱସ୍ଥାନରୁ ସଂଚ୍ଚଳିତ କରିବାକୁ ସମର୍ଥ ହେଲେ ନାହିଁ । ତଦନନ୍ତର ଦକ୍ଷିଣ ହସ୍ତଦ୍ୱାରା ତାହା ଧାରଣ କରିବାକୁ ଉପକ୍ରମ କଲେ, ତଥାପି ସର୍ବପ୍ରକାର ଯତ୍ନ ଓ ସମସ୍ତ ବଳଦ୍ୱାରା ଚକ୍ରଧାରଣପୂର୍ବକ ଯେତେବେଳେ ତାହାକୁ ଉଦ୍ୟତ ବା ସ୍ଖଳିତ କରିବାକୁ କଦାପି ସମର୍ଥ ନ ହେଲେ, ତେତେବେଳେ ଦ୍ରୋଣପୁତ୍ର ଅତ୍ୟନ୍ତ ଦୁର୍ମନା ହେଲେ ଏବଂ ଯତ୍ନକରି ପରିଶ୍ରାନ୍ତ ହୋଇ ନିବୃତ୍ତ ହେଲେ । ୨୪ । ଆମ୍ଭେ ଅଶ୍ୱତ୍ଥାମାଙ୍କୁ ତାଦୃଶ ଅଭିପ୍ରାୟରୁ ନିବୃତ୍ତ ଓ ଉଦ୍‌ବିଗ୍ନ ଚିତ୍ତ ହେବାର ଦେଖି ଆହ୍ୱାନ ପୂର୍ବକ କହିଲୁଁ ଯେ, ହେ ବ୍ରହ୍ମନ୍ ! ତୁମ୍ଭେ ଆମ୍ଭଙ୍କୁ ଯାହା କହିଅଛ, ଗାଣ୍ଡୀବ-ଧନୁର୍ଦ୍ଧାରୀ ଶ୍ୱେତାଶ୍ୱ କପିପ୍ରବରକେତନ ଯେ ଦେବତା ଓ ନର ମଧ୍ୟରେ ପ୍ରଧାନ, ସେ ସାକ୍ଷାତ୍ ଦେବଦେବେଶ ନୀଳକଣ୍ଠ ଉମାପତି ଶଙ୍କରଙ୍କୁ ଦ୍ୱନ୍ଦ୍ୱ-ଯୁଦ୍ଧରେ ପରିତୁଷ୍ଟ କରିଅଛନ୍ତି । ଭୂମଣ୍ଡଳରେ ଯାହାଙ୍କ ଅପେକ୍ଷା ଅନ୍ୟ କୌଣସି ପୁରୁଷ ଆମ୍ଭର ପ୍ରିୟ ନୁହେ, ସ୍ତ୍ରୀପୁତ୍ର ପର୍ଯ୍ୟନ୍ତ ଯାହାଙ୍କୁ ଅଦେୟ ନୁହେଁ, ସେହି ଅକ୍ଲିଷ୍ଟକର୍ମା ପାର୍ଥ ମଧ୍ୟ ଆମ୍ଭଙ୍କୁ ତାହା ପୂର୍ବେ କହି ନ ଥିଲେ । ୨୯ । ଦ୍ୱାଦଶ ବାର୍ଷିକ ସୁମହତ ବ୍ରହ୍ମଚର୍ଯ୍ୟ ବ୍ରତ ଆଚରଣ କରି, ହିମାଳୟର ପାର୍ଶ୍ୱଦେଶକୁ ଯାଇ ତପସ୍ୟାଦ୍ୱାରା ଯାହାଙ୍କୁ ଆମ୍ଭେ ପ୍ରାପ୍ତ ହୋଇଥିଲୁଁ, ଆମ୍ଭ ସଦୃଶ ବ୍ରତଚାରିଣୀ ରୁକ୍ମିଣୀଙ୍କଠାରେ ଯେ ଜନ୍ମଗ୍ରହଣ କରିଅଛନ୍ତି ଓ ସନତ୍‌କୁମାରଙ୍କ ସଦୃଶ ତେଜସ୍ୱୀ ମଦୀୟ ପୁତ୍ର ପ୍ରଦ୍ୟୁମ୍ନ ମଧ୍ୟ କଦାପି ଏହି ଅନୁପମ ସୁମହତ୍ ଦିବ୍ୟ ଚକ୍ରକୁ ପ୍ରାର୍ଥନା କରି ନ ଥିଲେ । ହେ ମୂଢ଼ ! ତୁମ୍ଭେ ଯାହା ପ୍ରାର୍ଥନା କଲ, ମହାବଳ-ପରାକ୍ରାନ୍ତ ବଳରାମ, ଗଦ ଓ ଶାମ୍ବ ମଧ୍ୟ କଦାପି ତାହା ପ୍ରାର୍ଥନା କରି ନ ଥିଲେ । ତୁମ୍ଭେ ଯାହା ପ୍ରାର୍ଥନା କଲ, ଦ୍ୱାରକାବାସୀ ବୃଷ୍ଣି ଓ ଅନ୍ଧକ-

ବଂଶୀୟ ଅନ୍ୟାନ୍ୟ ମହାରଥମାନେ ମଧ୍ୟ କଦାପି ତାହା ପ୍ରାର୍ଥନା କରି ନ ଥିଲେ । ତୁମ୍ଭେ ଯାହା ପ୍ରାର୍ଥନା କଲ, ତୁମ୍ଭେ ଭରତବଂଶୀୟମାନଙ୍କ ଆଗ୍ରଯଂଶପୂଜ୍ୟ ସମସ୍ତ ଯାଦବକୁଳର ମାନ୍ୟ । ହେ ରଥୀବର ! ତୁମ୍ଭେ ଏହି ଚକ୍ରଦ୍ୱାରା କାହା ସହିତ ସମର କରିବାକୁ ଉତ୍ସୁକ ହୋଇଅଛ ?

ଦ୍ରୋଣପୁତ୍ର ଆମ୍ଭର ଏହି ବାକ୍ୟ ଶୁଣି ପ୍ରତ୍ୟୁତ୍ତର ଦେଲେ, ହେ କୃଷ୍ଣ ! ଆମ୍ଭେ ଆପଣଙ୍କୁ ପୂଜା କରି ଆପଣଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛୁକ ହୋଇଥିଲୁଁ ଏବଂ ସେହି କାରଣରୁ ଦେବଦାନବମାନଙ୍କ ପୂଜିତ ଚକ୍ର ଆପଣଙ୍କଠାରୁ ଗ୍ରହଣ କରିବା ନିମିତ୍ତ ପ୍ରାର୍ଥୀ ହୋଇଥିଲୁ । ହେ ପ୍ରଭୋ ! ଆମ୍ଭେ ସତ୍ୟ କରି କହୁଅଛୁଁ, ଆମ୍ଭେ ସମସ୍ତଙ୍କର ଅଜେୟ ହେବୁଁ ବୋଲି କେବଳ ଇଚ୍ଛା ରଖିଥିଲୁଁ । ହେ କେଶବ ! ଆମ୍ଭେ ଆପଣଙ୍କଠାରୁ ଦୁର୍ଲ୍ଲଭ କାମନା ପ୍ରାପ୍ତ ନ ହୋଇ ସ୍ୱଚ୍ଛନ୍ଦରେ ପ୍ରତିଗମନ କରିବୁଁ । ହେ ଗୋବିନ୍ଦ ! ଆପଣ ଏହା ଆମ୍ଭଙ୍କୁ ପ୍ରସନ୍ନ ଚିତ୍ତରେ କହିବା ହେଉନ୍ତୁ । ୩୮ । ଭୟଙ୍କର ଅପେକ୍ଷା ଅତି ଭୟଙ୍କର ଏହି ଚକ୍ର ଯାହା ଆପଣ ଧାରଣ କରିଅଛନ୍ତି, ଭୂମଣ୍ଡଳରେ ଅନ୍ୟ କୌଣସି ବ୍ୟକ୍ତି ତାହା ଧାରଣ କରିପାରିବେ ନାହିଁ । ୩୯ ।

ଅଶ୍ୱତ୍ଥାମା ଆମ୍ଭଙ୍କୁ ଏହି କଥା ମାତ୍ର କହି ଅଶ୍ୱ, ଧନ ଓ ବିବିଧ ରତ୍ନଗ୍ରହଣପୂର୍ବକ ତେତେବେଳେ ପ୍ରସ୍ଥାନ କରିଥିଲେ । ୪୦ । କ୍ରୋଧ-ପରାୟଣ ଚପଳ ଏବଂ କ୍ରୂର ସେହି ଦୁରାତ୍ମା ବ୍ରହ୍ମଶିର ଅସ୍ତ୍ର ପ୍ରୟୋଗ କରି ଜାଣନ୍ତି; ଅତଏବ ତାହାଙ୍କଠାରୁ ଭୀମଙ୍କୁ ରକ୍ଷା କରିବା ଉଚିତ ।୪୧ ।

---

## ଅଧ୍ୟାୟ—୧୩

ବୈଶମ୍ପାୟନ କହିଲେ, ଯୋଦ୍ଧାଶ୍ରେଷ୍ଠ ସର୍ବଯାଦବନନ୍ଦକ ଅର୍ଥାତ୍ ସମସ୍ତ ଯାଦବକୁଳର ଆନନ୍ଦବର୍ଦ୍ଧନକାରୀ ବାସୁଦେବ ଯୁଧିଷ୍ଠିରଙ୍କୁ ଏହିପରି କହି ସମସ୍ତ ଉତ୍କୃଷ୍ଟ ଅସ୍ତ୍ରଯୁକ୍ତ ଉତ୍ତମ ରଥରେ ଆରୋହଣ କଲେ । ୧ । ସେହି ରଥରେ ସୁବର୍ଣ୍ଣ ମାଳାଧାରୀ କାମ୍ବୋଜ ଦେଶୀୟ ଅଶ୍ୱଗଣ ଯୋଜିତ ହୋଇଥିଲେ । ଶୈବ୍ୟ ଓ ସୁଗ୍ରୀବ ନାମକ ତୁରଙ୍ଗଦ୍ୱୟ ଆଦିତ୍ୟ ଉଦୟ ସମାନ ବର୍ଣ୍ଣବିଶିଷ୍ଟ ସେହି ରଥଶ୍ରେଷ୍ଠର ଦକ୍ଷିଣ ଓ ବାମ

ଭାଗର ଭାର ଗ୍ରହଣ କଲେ । ମେଘପୁଷ୍ପ ଓ ବଳାହକ ନାମକ ଅଶ୍ୱଦ୍ୱୟ ସେହି ରଥର ପାର୍ଶ୍ୱଭାଗର ଭାରବାହୀ ହେଲେ । ୩ । ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ, ଧାତୁ ଓ ରତ୍ନବିଭୂଷିତ ଦିବ୍ୟଧ୍ୱଜ ଯଷ୍ଟି ରଥରେ ଉତ୍ଥିତ ମାୟା ସମାନ ଦେଖାଗଲା । ୪ । ପ୍ରଭାମଣ୍ଡଳମଣ୍ଡିତ ଓ ରଶ୍ମିଯୁକ୍ତ ବିନତା-ନନ୍ଦନ ସେହି ଧ୍ୱଜଯଷ୍ଟିରେ ଅବସ୍ଥିତ ଥିଲେ, ସେହି ସତ୍ୟବାନ ଶ୍ରୀକୃଷ୍ଣଙ୍କ କେତୁ ଗରୁଡ଼ ସଦୃଶ ବିଲୋକିତ ହେଲା । ୫ । ସମସ୍ତ ଧନୁର୍ଦ୍ଧର-କୁଳର କେତୁ ହୃଷୀକେଶ, ସତ୍ୟକର୍ମା କୁରୁରାଜ ଯୁଧିଷ୍ଠିର ଏବଂ ଅର୍ଜୁନ ସେହି ରଥରେ ଆରୋହଣ କଲେ । ୬ । ଅଶ୍ୱିନୀକୁମାରଦ୍ୱୟ ଦେବରାଜ ଇନ୍ଦ୍ରଙ୍କ ଉଭୟ ପାର୍ଶ୍ୱରେ ସ୍ଥିତ ହେଲେ ଯେଉଁପରି ଶୋଭାପ୍ରାପ୍ତ ହୁଅନ୍ତି, ମହାତ୍ମା ଯୁଧିଷ୍ଠିର ଓ ଅର୍ଜୁନ ରଥସ୍ଥିତ ଶାର୍ଙ୍ଗଧନୁର୍ଦ୍ଧର ଦାଶାର୍ହଙ୍କ ଉଭୟ ପାର୍ଶ୍ୱରେ ସ୍ଥିତ ହୋଇ ସେହିପରି ଶୋଭିତ ହେଲେ । ୭ ।

କୃଷ୍ଣ ସେହି ଦୁହିଁଙ୍କୁ ସେହି ପୂଜିତ ରଥରେ ଆରୋହଣ କରାଇ ବେଗଯୁକ୍ତ ଅଶ୍ୱଗଣଙ୍କୁ ପ୍ରତୋଦ ଅର୍ଥାତ୍ କୋରଡ଼ାଦ୍ୱାରା ଚାଳିତ କଲେ । ଅଶ୍ୱଗଣ ଯଦୁବର ଓ ପାଣ୍ଡୁସୁତଦ୍ୱୟଙ୍କଦ୍ୱାରା ଅଧିରୂଢ଼ ସେହି ଉତ୍କୃଷ୍ଟ ରଥ ଗ୍ରହଣ କରି ସହସା ଉତ୍ପତିତ ହେଲେ । ୯ । ଉଡ଼୍ଡୀୟମାନ ପକ୍ଷିକୁଳ ସଦୃଶ ଶୀଘ୍ରଗାମୀ ତୁରଙ୍ଗଗଣ କୃଷ୍ଣଙ୍କୁ ବହନ କଲାରୁ ମହାନ ଶବ୍ଦ ପ୍ରାଦୁର୍ଭୂତ ହେଲା । ୧୦ । ହେ ଭରତଶ୍ରେଷ୍ଠ ! ସେହି ନରବରମାନେ ଅତି ବେଗରେ ମହାଧନୁର୍ଦ୍ଧର ବୃକୋଦରଙ୍କ ପଶ୍ଚାତ୍ ଧାବନପୂର୍ବକ ଗମନ କଲେ; କିନ୍ତୁ ସେହି ମହାରଥମାନେ ମିଳିତ ହୋଇ ସୁଦ୍ଧା ବିପକ୍ଷ ବିନାଶ ନିମିତ୍ତ ସମୁଦ୍ୟତ କ୍ରୋଧପ୍ରଦୀପ୍ତ କୁନ୍ତୀପୁତ୍ର ଭୀମସେନଙ୍କୁ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ଶ୍ରୀମାନ୍ ଦୃଢ଼ ଧନୁର୍ଦ୍ଧରମାନଙ୍କ ମଧ୍ୟରେ ସେ ଅଶ୍ୱବୃନ୍ଦଦ୍ୱାରା ଅତିଶୟ ବେଗଗାମୀ ହୋଇ ଭାଗିରଥୀ ତୀରରେ ଯେଉଁ ସ୍ଥାନରେ ମହାତ୍ମା ପାଣ୍ଡବଗଣଙ୍କ ପୁତ୍ରହନ୍ତା ଅଶ୍ୱତ୍ଥାମା ଥିବାର ଶ୍ରବଣ କରିଥିଲେ; ସେହି ସ୍ଥାନକୁ ଗଲେ । ଗମନ କରି ଦେଖିଲେ; ଜଳ ନିକଟରେ ମହାତ୍ମା ଯଶସ୍ୱୀ କୃଷ୍ଣଦ୍ୱୈପାୟନ ବ୍ୟାସଦେବ ଋଷିଗଣଙ୍କ ସହିତ ଉପବିଷ୍ଟ ହୋଇଥିଲେ ଏବଂ ତାହାଙ୍କ ସନ୍ନିଧିରେ ସେହି କ୍ରୂରକର୍ମା ଘୃତାକ୍ତ ଓ କୁଶବସ୍ତ୍ରଧାରୀ ଧୂଳିଧ୍ୱସ୍ତ ଅଶ୍ୱତ୍ଥାମା ଆସୀନ ଥିଲେ ।

କୁନ୍ତୀପୁତ୍ର ମହାବାହୁ ବୃକୋଦର ତାହାଙ୍କୁ ଅବଲୋକନ କଲା ମାତ୍ରେ ଶରଯୁକ୍ତ ଶରାସନ ଗ୍ରହଣପୂର୍ବକ ତାହାଙ୍କ ନିକଟକୁ ଧାବିତ ହେଲେ ଏବଂ ରହ ରହ ବୋଲି କହିଲେ । ଅଶ୍ୱତ୍ଥାମା ଗୃହୀତ ଶରାସନ ଭୀମଙ୍କୁ ଓ ତାହାଙ୍କ ପଶ୍ଚାତ୍ ଜନାର୍ଦ୍ଦନଙ୍କ ରଥରେ ଉପବିଷ୍ଟ ଭ୍ରାତୃଦ୍ୱୟଙ୍କୁ ଦେଖି ବ୍ୟଥିତଚିତ୍ତ ହେଲେ ଏବଂ ଏମାନଙ୍କ ଆଗମନର ଉପଯୁକ୍ତ ସମୟ ମଧ୍ୟ ଉପସ୍ଥିତ ହୋଇଅଛି ବୋଲି ବିବେଚନା କଲେ । ୧୮ । ଅଦୀନଚିତ୍ତ ଅଶ୍ୱତ୍ଥାମା ତେତେବେଳେ ସେହି ପରମ ଦିବ୍ୟ ଅସ୍ତ୍ରକୁ ଚିନ୍ତା କଲେ ଏବଂ ବାମହସ୍ତଦ୍ୱାରା ଇଷିକାସ୍ତ୍ର ଗ୍ରହଣ କଲେ । ୧୯ । ସେ ସେହି ଉପସ୍ଥିତ ଆପଦ୍‌କାଳକୁ ଦେଖି ଦିବ୍ୟାସ୍ତ୍ର ପ୍ରେରଣ କଲେ । ସେହି ସମସ୍ତ ଦିବ୍ୟ ଆୟୁଧଧାରୀ ଶୂରବୃନ୍ଦଙ୍କୁ କ୍ଷମା ନ କରି ସମସ୍ତ ପାଣ୍ଡବକୁଳ ବିନଷ୍ଟ ହୁଅନ୍ତୁ, ଏହିପରି ଦାରୁଣ ବାକ୍ୟ ପ୍ରୟୋଗ କଲେ ।

ହେ ନୃପବର ! ପ୍ରତାପଶାଳୀ ଦ୍ରୋଣପୁତ୍ର ଦାରୁଣ ବାକ୍ୟ କହି ସମସ୍ତ ଲୋକବୃନ୍ଦର ମୋହ ନିମିତ୍ତ ସେହି ଅସ୍ତ୍ର ମୋଚନ କଲେ । ତତ୍ପରେ ସେହି ଇଷିକାରେ କାଳାନ୍ତକ ଯମ ସଦୃଶ ଅଗ୍ନି ଲୋକତ୍ରୟ ଦଗ୍ଧ କଲାପରି ଜନ୍ମିଲା । ୨୨ ।

---

## ଅଧ୍ୟାୟ—୧୪

ବୈଶମ୍ପାୟନ କହିଲେ, ମହାବାହୁ କୃଷ୍ଣ ପ୍ରଥମରେ ଇଙ୍ଗିତଦ୍ୱାରା ଅଶ୍ୱତ୍ଥାମାଙ୍କ ସେହି ଅଭିପ୍ରାୟକୁ ଜାଣି ଅର୍ଜ୍ଜୁନଙ୍କୁ କହିଲେ, ହେ ଅର୍ଜ୍ଜୁନ ! ଦ୍ରୋଣଙ୍କ ଉପଦିଷ୍ଟ ଯେଉଁ ଦିବ୍ୟାସ୍ତ୍ର ତୁମ ଅନ୍ତଃକରଣରେ ଅଛି, ଏତେବେଳେ ତାହା ପ୍ରୟୋଗ କରିବା ଉଚିତ । ୨ । ହେ ଭାରତ ! ତୁମ୍ଭେ ଭ୍ରାତୃଗଣର ଓ ଆପଣାର ପରିତ୍ରାଣ ଏବଂ ସଂଗ୍ରାମରେ ବିପକ୍ଷର ଅସ୍ତ୍ର ନିବାରଣ ନିମିତ୍ତ ନିଜ ଅସ୍ତ୍ରକୁ ପରିତ୍ୟାଗ କର । ୩ । କେଶବ ପରବୀରହନ୍ତା ପାଣ୍ଡବଙ୍କୁ ଏହିପରି କହିବାରୁ ସେ ଶରଯୁକ୍ତ ଶରାସନ ଗ୍ରହଣପୂର୍ବକ ଅବିଳମ୍ବରେ ରଥରୁ ଅବତରଣ କଲେ । ଅରାତିତାପନ ଅର୍ଜ୍ଜୁନ ପ୍ରଥମେ ଆଚାର୍ଯ୍ୟପୁତ୍ରଙ୍କର ପଶ୍ଚାତ୍ ଆପଣାର ଓ ସମସ୍ତ

ଭ୍ରାତୃଗଣର ମଙ୍ଗଳ ହେଉ, ଏହି ବାକ୍ୟ କହି ଦେବତା ଓ ଗୁରୁଗଣଙ୍କୁ ସର୍ବପ୍ରକାରରେ ପ୍ରଣାମ କରି ଏହି ଅସ୍ତ୍ରଦ୍ୱାରା ବିପକ୍ଷର ଅସ୍ତ୍ର ନିବାରିତ ହେଉ, ଏହି ଅଭିପ୍ରାୟରେ ମହାଦେବଙ୍କୁ ଧ୍ୟାନ କରି ଅସ୍ତ୍ର ପରିତ୍ୟାଗ କଲେ ।

ତଦନନ୍ତର ଅର୍ଜୁନଙ୍କ ଦ୍ୱାରା ପରିତ୍ୟକ୍ତ ସେହି ଜ୍ୱାଳାଯୁକ୍ତ ଅସ୍ତ୍ର ପ୍ରଳୟକାଳୀନ ଅଗ୍ନି ସଦୃଶ ସହସା ପ୍ରଜ୍ୱଳିତ ହେଲା । ୭ । ସେହିପରି ଉଗ୍ରତେଜା ଦ୍ରୋଣପୁତ୍ରଙ୍କ ମହାଜ୍ୱାଳାଯୁକ୍ତ ଓ ତେଜମଣ୍ଡଳସଂବୃତ ସେହି ଅସ୍ତ୍ର ପ୍ରଜ୍ୱଳିତ ହେଲା, ଅନେକ ଅନେକ ନିର୍ଘାତ ଏବଂ ସହସ୍ର ସହସ୍ର ଉଲ୍କା ପତିତ ହେଲା ଓ ସମସ୍ତ ପ୍ରାଣିକୁଳର ମହାଭୟ ଜାତ ହେଲା ୯ । ଜ୍ୱାଳାମାଳାରେ ସମାକୁଳ ଆକାଶମଣ୍ଡଳ ଅତିଶୟ ଶବ୍ଦଯୁକ୍ତ ହେଲା । ବନଗିରି ବୃକ୍ଷଯୁକ୍ତ ସମସ୍ତ ଭୂମଣ୍ଡଳ ବିଚଳିତ ହେଲା । ୧୦ । ଯେତେବେଳେ ଲୋକସମୂହ ସେହି ଦୁଇ ଅସ୍ତ୍ରର ତେଜରେ ତାପିତ ହେଲା, ତେତେବେଳେ ସର୍ବଭୂତାତ୍ମା ନାରଦ ଓ ଭାରତଗଣର ପିତାମହ ବ୍ୟାସଦେବ ଏହି ମହର୍ଷିଦ୍ୱୟ ବୀର ଅଶ୍ୱତ୍ଥାମା ଓ ଅର୍ଜୁନଙ୍କୁ ଶାନ୍ତ କରିବା ନିମିତ୍ତ ଏକାବେଳେ ସେହି ତେଜୋଦ୍ୱୟ ମଧ୍ୟରେ ଦୃଷ୍ଟ ହେଲେ । ସର୍ବଧର୍ମଜ୍ଞ ସର୍ବଭୂତହିତୈଷୀ ପରମତେଜସ୍ୱୀ ସେହି ମୁନିଦ୍ୱୟ ଦୀପ୍ତ ଅସ୍ତ୍ରଦ୍ୱୟ ମଧ୍ୟରେ ଅବସ୍ଥିତ ହେଲେ । ପ୍ରାଣିକୁଳର ଅଧୃଷ୍ୟ ସୁରାସୁରପୂଜିତ ଯଶସ୍ୱୀ ଋଷିଶ୍ରେଷ୍ଠଯୁଗଳ ଲୋକବୃନ୍ଦର ହିତ ଇଚ୍ଛାରେ ଅସ୍ତ୍ରର ତେଜ ଶାନ୍ତ କରିବା ନିମିତ୍ତ ସେହି ଅସ୍ତ୍ରଦ୍ୱୟ ମଧ୍ୟରେ ଅବସ୍ଥିତ ହୋଇ ପ୍ରଜ୍ୱଳିତ ଅଗ୍ନି ସଦୃଶ ପ୍ରକାଶିତ ହେଲେ ।

ଋଷି ଦୁହେଁ କହିଲେ, ନାନା ଶସ୍ତ୍ରଜ୍ଞ ମହାରଥଗଣ ଯେଉଁମାନେ ଅତୀତ ହୋଇଅଛନ୍ତି, ସେମାନେ ପୂର୍ବେ ମନୁଷ୍ୟଲୋକରେ କଦାପି ଏହି ଦେବଦାନବପୂଜିତ ଅସ୍ତ୍ରକୁ ପ୍ରୟୋଗ କରୁ ନ ଥିଲେ । ଏହି ବୀରଦ୍ୱୟ ଏ କି ମହାଅନିଷ୍ଟକର ସାହସ ପ୍ରକାଶ କରିଅଛନ୍ତି ।

---

# ଅଧ୍ୟାୟ—୧୫

ବୈଶମ୍ପାୟନ କହିଲେ, ହେ ଭରତଶ୍ରେଷ୍ଠ ନରବର ! ଧନଞ୍ଜୟ ଅନଳ ସଦୃଶ ତେଜସ୍ୱୀ ସେହି ଋଷିଦ୍ୱୟଙ୍କୁ ଦର୍ଶନ କରିମାତ୍ରେ ତ୍ୱରାଯୁକ୍ତ ହୋଇ ସେହି ଦିବ୍ୟ ଶରକୁ ସଂହାର କଲେ ଏବଂ କୃତାଞ୍ଜଳି ହୋଇ ସେହି ଦୁହିଁଙ୍କୁ କହିଲେ—ଅସ୍ତ୍ରଦ୍ୱାରା ଅସ୍ତ୍ରର ଶାନ୍ତ ହେଉ, ଏହି ଅଭିପ୍ରାୟରେ ଆମ୍ଭେ ଅସ୍ତ୍ର ପ୍ରୟୋଗ କରିଅଛୁଁ । ସଂପ୍ରତି ଏହି ପରମ ଅସ୍ତ୍ର ସଂହୃତ ହେବାରୁ ପାପକର୍ମା ଅଶ୍ୱତ୍ଥାମା ଆମ୍ଭମାନଙ୍କୁ ଓ ଲୋକବୃନ୍ଦଙ୍କୁ ଅସ୍ତ୍ରତେଜଦ୍ୱାରା ନିଶ୍ଚୟ ଦଗ୍ଧ କରିବ । ଅତଏବ ଆମ୍ଭମାନଙ୍କର ଏବଂ ସମସ୍ତ ଲୋକର ଯହିଁରେ ସର୍ବପ୍ରକାରରେ ହିତ ହେବ, ଦେବ ସଦୃଶ ଆପଣ ଦୁହେଁ ତଦ୍ ବିଷୟରେ ସମ୍ମତି ପ୍ରଦାନ କରନ୍ତୁ । ୪ ।

ଧନଞ୍ଜୟ ଏହି ବାକ୍ୟ କହି ପୁନଶ୍ଚ ଅସ୍ତ୍ର ସଂହାର କଲେ । ସଂଗ୍ରାମରେ ସେହି ଅସ୍ତ୍ରର ସଂହାର କରିବା ବିଷୟ ଅମରଗଣର ମଧ୍ୟ ଦୁଷ୍କର ଅଟେ; ସମରରେ ପରିତ୍ୟକ୍ତ ସେହି ପରମ ଅସ୍ତ୍ରର ପୁନଶ୍ଚ ସଂଗ୍ରହ ବିଷୟ ଅନ୍ୟର କଥା କଣ କହିବା; ସାକ୍ଷାତ୍ ଇନ୍ଦ୍ରଦେବ ମଧ୍ୟ ସମର୍ଥ ହେବେ ନାହିଁ । ବ୍ରହ୍ମତେଜରୁ ସମ୍ଭୂତ ସେହି ବିସୃଷ୍ଟ ଅସ୍ତ୍ରକୁ ବ୍ରହ୍ମଚାରୀ ବ୍ୟତିରେକେ ଅଜିତେନ୍ଦ୍ରିୟ ବ୍ୟକ୍ତି ଆବର୍ତ୍ତନ କରିବାକୁ ସମର୍ଥ ହେବ ନାହିଁ । ଯେଉଁ ବ୍ୟକ୍ତି ବ୍ରହ୍ମଚର୍ଯ୍ୟ-ବ୍ରତ ଆଚରଣ କରି ନ ଥାନ୍ତି, ସେ ଏହି ଅସ୍ତ୍ର ପରିତ୍ୟାଗ କରି ପୁନଶ୍ଚ ସଂହାର କରିବାକୁ ପ୍ରବୃତ୍ତ ହେଲେ ଉକ୍ତ ଅସ୍ତ୍ର ସଂହାରକର୍ତ୍ତାର ମସ୍ତକ ଛେଦନ କରେ । ୮ । ବ୍ରହ୍ମଚର୍ଯ୍ୟ-ବ୍ରତନିଷ୍ଠ ଅର୍ଜୁନ ସେହି ଦୁଷ୍ପ୍ରାପ୍ୟ ଅସ୍ତ୍ର ଲାଭ କରି ଅତିଶୟ ବିପଦ୍‌ଗ୍ରସ୍ତ ହେଲେ ସୁଦ୍ଧା କଦାପି ତାହା ପରିତ୍ୟାଗ କରନ୍ତି ନାହିଁ । ୯ । ପାଣ୍ଡୁପୁତ୍ର ଅର୍ଜୁନ ସତ୍ୟବ୍ରତଧାରୀ ଶୂର ବ୍ରହ୍ମଚାରୀ ଏବଂ ଗୁରୁଙ୍କ ଆଜ୍ଞାନୁବର୍ତ୍ତୀ ଅଟନ୍ତି । ଅତଏବ ସେ ପୁନଶ୍ଚ ଅସ୍ତ୍ର ସଂହାର କଲେ । ୧୦ ।

ତଦନନ୍ତର ଅଶ୍ୱତ୍ଥାମା ଅଗ୍ରଭାଗରେ ଅବସ୍ଥିତ ସେହି ଋଷି ଦୁହିଁଙ୍କୁ ଦେଖି ସ୍ୱକୀୟ ତେଜୋବଳରେ ସେହି ଘୋରତର ଅସ୍ତ୍ରକୁ ପୁନଶ୍ଚ ସଂହାର କରିବାକୁ ସମର୍ଥ ହେଲେ ନାହିଁ । ୧୧ ।

ହେ ମହାରାଜ ! ଦ୍ରୋଣପୁତ୍ର ସଂଗ୍ରାମରେ ସେହି ପରମ ଅସ୍ତ୍ର ପ୍ରତି-ସଂହାର ବିଷୟରେ ଅଶକ୍ତ ହୋଇ ଦୁଃଖିତ ଚିତ୍ତରେ ଦ୍ୱୈପାୟନଙ୍କୁ କହିଲେ, ହେ ମୁନେ ! ଆମ୍ଭେ ଭୀମସେନଙ୍କ ଭୟରେ ଅତିଶୟ ବିପଦାପନ୍ନ ହୋଇ ପ୍ରାଣରକ୍ଷା କାମନାରେ ଏହି ଅସ୍ତ୍ରକୁ ପରିତ୍ୟାଗ କରିଅଛୁ ।୧୩। ହେ ବ୍ରହ୍ମନ୍ ! ହେ ଭଗବନ୍ ! ଏହି ଭୀମସେନ ସମରାଙ୍ଗଣରେ ଧୃତରାଷ୍ଟ୍ରପୁତ୍ର ଦୁର୍ଯ୍ୟୋଧନଙ୍କୁ ମିଥ୍ୟା ଆଚରଦ୍ୱାରା ହନନ କରିବାକୁ ଅଭିଳାଷୀ ହୋଇ ଅଧର୍ମ କରିଅଛନ୍ତି । ଏହି କାରଣରୁ ଆମ୍ଭେ ଅସ୍ତ୍ର ମୋଚନ କରିଅଛୁଁ । ଆମ୍ଭେ ଜିତେନ୍ଦ୍ରିୟ ନୋହୁଁ, ଅତଏବ ଏତେବେଳେ ପୁନଶ୍ଚ ଏହାର ସଂହାର କରିବାକୁ ଉତ୍ସାହିତ ହେଉନାହୁଁ ।୧୫। ହେ ମୁନେ ! ଆମ୍ଭେ ପାଣ୍ଡବମାନେ ବିନଷ୍ଟ ହୁଅନ୍ତୁ, ଏହି କାମନାରେ ଅଗ୍ନିତେଜଃସମ୍ପନ୍ନ ଦୁଃସହ ଦିବ୍ୟ ଅସ୍ତ୍ରକୁ ମନ୍ତ୍ରୋଚ୍ଚାରଣ-ପୂର୍ବକ ପରିତ୍ୟାଗ କରିଅଛୁଁ; ସୁତରାଂ ପାଣ୍ଡବକୁଳର ବିଧ୍ୱଂସ ନିମିତ୍ତ ପ୍ରେରିତ ଏହି ଅସ୍ତ୍ର ସମସ୍ତ ଜୀବିତ ପାଣ୍ଡବମାନଙ୍କୁ ଧ୍ୱଂସ କରିବ ।୧୭। ହେ ବ୍ରହ୍ମନ୍ ! ଆମ୍ଭେ ରୋଷାବିଷ୍ଟଚିତ୍ତରେ ପାଣ୍ଡବକୁଳର ବଧ କାମନା କରି ସଂଗ୍ରାମରେ ଅସ୍ତ୍ର ପରିତ୍ୟାଗପୂର୍ବକ ଏହି ପାପ ଅନୁଷ୍ଠାନ କରିଅଛୁଁ ।୧୮।

ବ୍ୟାସଦେବ କହିଲେ, ବତ୍ସ ! ବିଦ୍ୱାନ୍ ପୃଥାପୁତ୍ର ଧନଞ୍ଜୟ ଯେଉଁ ବ୍ରହ୍ମଶିର ଅସ୍ତ୍ରକୁ ପରିତ୍ୟାଗ କରିଥିଲେ, ତାହା ରୋଷାବେଶରେ ତୁମ୍ଭର ବିନାଶ ନିମିତ୍ତ ନୁହେଁ । ସଂଗ୍ରାମରେ ତୁମ୍ଭର ଅସ୍ତ୍ରକୁ ଶାନ୍ତ କରିବା ନିମିତ୍ତ କେବଳ ଅର୍ଜ୍ଜୁନ ଏହି ଅସ୍ତ୍ର ପରିତ୍ୟାଗ କରି ପୁନଶ୍ଚ ତାହାର ପ୍ରତିସଂହାର କଲେ । ମହାବାହୁ ଧନଞ୍ଜୟ ତୁମ୍ଭ ପିତାଙ୍କ ଉପଦେଶବଶରୁ ଏହି ଦୁଷ୍ପ୍ରାପ୍ୟ ବ୍ରହ୍ମାସ୍ତ୍ରକୁ ପ୍ରାପ୍ତ ହୋଇ କ୍ଷତ୍ରିୟଧର୍ମରୁ ବିଚଳିତ ହୁଅନ୍ତି ନାହିଁ ।୨୧। ଯେଉଁ ବ୍ୟକ୍ତି ଈଦୃଶ ଧୈର୍ଯ୍ୟଶାଳୀ, ସାଧୁ, ସମସ୍ତ ଅସ୍ତ୍ରବିତ୍ ଏବଂ ସତ୍ୟ-ସ୍ୱଭାବ, ତୁମ୍ଭେ କେଉଁ କାରଣରୁ ତାହାଙ୍କୁ, ତାହାଙ୍କ ଭ୍ରାତା ଓ ବନ୍ଧୁଗଣଙ୍କୁ ବିନଷ୍ଟ କରିବାକୁ ଅଭିଳାଷୀ ହୋଇଅଛ ? ଯେଉଁ ଦେଶରେ ବ୍ରହ୍ମଶୀର-ଅସ୍ତ୍ର ପରମଅସ୍ତ୍ରଦ୍ୱାରା ବାଧିତ ହୁଏ, ସେହି ରାଜ୍ୟରେ ପର୍ଜ୍ଜନ୍ୟ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ବୃଷ୍ଟି କରେ ନାହିଁ ।୨୩। ଏହି କାରଣରୁ ମହାବାହୁ ଅର୍ଜ୍ଜୁନ ସମର୍ଥ ହୋଇ ସୁଦ୍ଧା ପ୍ରଜାକୁଳର ହିତ କରିବା

ଇଚ୍ଛାରେ ତୁମ୍ଭ ଅସ୍ତ୍ରକୁ ବିନଷ୍ଟ କଲେ ନାହିଁ । ୨୪ । ପାଣ୍ଡବଗଣ, ତୁମ୍ଭେ ଓ ରାଜ୍ୟ ସର୍ବଦା ଉତ୍ତମ ପ୍ରକାରରେ ରକ୍ଷଣୀୟ । ଅତଏବ ହେ ମହାବାହୋ ! ତୁମ୍ଭେ ଏହି ଦିବ୍ୟ ଅସ୍ତ୍ରକୁ ସଂହାର କର । ୨୫ । ତୁମ୍ଭର କ୍ରୋଧ ନ ହେଉ; ପାଣ୍ଡବଗଣ ନିରାମୟ ହେଉନ୍ତୁ । ରାଜର୍ଷି ପାଣ୍ଡୁନନ୍ଦନ ଅଧର୍ମରେ ଜୟଶୀଳ ହେବାକୁ ଅଭିଳାଷ କରନ୍ତି ନାହିଁ । ୨୬ । ତୁମ୍ଭ ମସ୍ତକରେ ଯେଉଁ ମଣି ଅଛି, ତାହା ଏମାନଙ୍କୁ ଦିଅ । ପାଣ୍ଡବମାନେ ତାହା ପ୍ରାପ୍ତ ହୋଇ ତୁମ୍ଭକୁ ପ୍ରାଣଦାନ କରିବେ । ୨୭ ।

ଅଶ୍ୱତ୍ଥାମା କହିଲେ, ପାଣ୍ଡବ ଓ କୌରବଗଣ ଇହଲୋକରେ ଯେଉଁ ସମସ୍ତ ଧନରତ୍ନ ପ୍ରାପ୍ତ ହୋଇଥିଲେ, ତତ୍ସମୁଦାୟ ଅପେକ୍ଷା ଆମ୍ଭର ଏହି ମଣି ଉତ୍କୃଷ୍ଟ; ଯାହାକୁ ମସ୍ତକରେ ବନ୍ଧନ କରିଥିଲେ ଶସ୍ତ୍ର ବ୍ୟାଧି ବା କ୍ଷୁଧା ଆମ୍ଭର ଏକାବେଳକେ ତିରୋହିତ ହୁଏ ଏବଂ ଦେବଦାନବ, ପନ୍ନଗ ରାକ୍ଷସ ଓ ତସ୍କରଗଣଙ୍କଠାରୁ କୌଣସି ଭୟ ଉତ୍ପନ୍ନ ହୁଏ ନାହିଁ । ଯେଉଁ ମଣିର ଏତାଦୃଶ ମାହାତ୍ମ୍ୟ, ତାହାକୁ ଆମ୍ଭେ କଦାପି ତ୍ୟାଗ କରି ପାରିବୁ ନାହିଁ । ୩୦ । କିନ୍ତୁ ଆପଣ ଯାହା କହୁ ଅଛନ୍ତି, ଏତେବେଳେ ତାହା ଆମ୍ଭର କର୍ତ୍ତବ୍ୟ । ଏହି ମଣି ଓ ଆମ୍ଭେ ମଧ୍ୟ ଉପସ୍ଥିତ ଅଛୁଁ, ପରନ୍ତୁ ଏହି ଉଦ୍ୟତ ଅମୋଘ ଐଷୀକ ଅସ୍ତ୍ର ପାଣ୍ଡବତନୟଗଣର ମହିଳାମାନଙ୍କ ଗର୍ଭରେ ପତିତ ହେବ । ଭଗବାନ୍ ! ଆମ୍ଭେ ଏହି ଉଦ୍ୟତ ଅସ୍ତ୍ରକୁ ପୁନଶ୍ଚ ସଂହାର କରିବାକୁ ସମର୍ଥ ନୋହୁଁ; ଅତଏବ ଏହି ଅସ୍ତ୍ରକୁ ଗର୍ଭରେ ପରିତ୍ୟାଗ କରୁଅଛୁଁ । ହେ ମହାମୁନେ ! ଆପଣଙ୍କ ବାକ୍ୟକୁ ପ୍ରତିପାଳନ କରିବୁଁ, ଏମନ୍ତ ହେଉ । ୩୩ ।

ବ୍ୟାସଦେବ କହିଲେ, ହେ ଅନଘ ! ତୁମ୍ଭେ ଅନ୍ୟପ୍ରକାର ବୁଦ୍ଧି କର ନାହିଁ, ଏତେବେଳେ ପାଣ୍ଡବପୁତ୍ରକୁଳର ରମଣୀଗଣର ଗର୍ଭରେ ଏହିପରି ତ୍ୟାଗପୂର୍ବକ ଉପରତ ହୁଅ । ୩୪ ।

ବୈଶମ୍ପାୟନ କହିଲେ, ଏଥିଉତ୍ତାରେ ଅଶ୍ୱତ୍ଥାମା ଦ୍ୱୈପାୟନଙ୍କ ବାକ୍ୟ ଶ୍ରବଣ କରି ଯୁଦ୍ଧରେ ଉଦ୍ୟତ ପରମାସ୍ତ୍ରକୁ ପାଣ୍ଡବପୁତ୍ରକୁଳର ରମଣୀମାନଙ୍କ ଗର୍ଭ ଉଦ୍ଦେଶ୍ୟରେ ମୋଚନ କଲେ । ୩୫ ।

---

# ଅଧ୍ୟାୟ—୧୬

ବୈଶମ୍ପାୟନ କହିଲେ, ହୃଷୀକେଶ ପାପକର୍ମା ଅଶ୍ୱତ୍ଥାମାଙ୍କ ଦ୍ୱାରା ପାଣ୍ଡବତନୟ କାମିନୀଙ୍କ ଗର୍ଭୋଦ୍ଦେଶ୍ୟରେ ସେହି ଅସ୍ତ୍ର ପରିତ୍ୟକ୍ତ ହେଲା ଏହି କଥା ଜାଣି ହୃଷ୍ଟାନ୍ତଃକରଣରେ ତେତେବେଳେ ଅଶ୍ୱତ୍ଥାମାଙ୍କୁ କହିଲେ—ହେ ବ୍ରହ୍ମନ୍! ପୂର୍ବେ ବିରାଟ ରାଜାଙ୍କ ଦୁହିତା, ଗାଣ୍ଡୀବଧନ୍ୱାଙ୍କ ପୁତ୍ରବଧୂ ଉପପ୍ଲବ୍ୟ ନଗରକୁ ଯାଇଥିବା ସମୟରେ କୌଣସି ବ୍ରତପରାୟଣ ବ୍ରାହ୍ମଣ ତାହାଙ୍କୁ ଅବଲୋକନ କରି କହିଥିଲେ, କୁରୁବଂଶର କ୍ଷୟ ହେବାରୁ ତୁମ୍ଭର ପୁତ୍ର ଜାତ ହେବ । ଅତଏବ ଏହି ଗର୍ଭସ୍ଥ ବାଳକର ନାମ ପରୀକ୍ଷିତ ହେବ । ଏତେବେଳେ ସେହି ସାଧୂଙ୍କ ବାକ୍ୟ ସତ୍ୟ ହେବ, ପରୀକ୍ଷିତ ପାଣ୍ଡବମାନଙ୍କର ବଂଶରକ୍ଷକ ସନ୍ତାନ ହେବେ । ୪ ।

ସାତ୍ୱତପ୍ରବର ଗୋବିନ୍ଦ ଏଡ଼କାଳରେ ଏହିପରି କହିବାରୁ ଦ୍ରୋଣପୁତ୍ର ଅତିଶୟ କ୍ରୋଧାକ୍ରାନ୍ତ ହୋଇ ଏହି ଉତ୍ତର କଲେ ଯେ, ହେ କେଶବ ! ତୁମ୍ଭେ ପକ୍ଷପାତବଶରୁ ଯାହା କହୁଅଛ, ତାହା କଦାପି ସଫଳ ହେବ ନାହିଁ । ହେ ପୁଣ୍ଡରୀକାକ୍ଷ, ଆମ୍ଭ ବାକ୍ୟ ଅନ୍ୟଥା ହେବ ନାହିଁ । ତୁମ୍ଭେ ଯେଉଁ ଗର୍ଭରକ୍ଷା କରିବାକୁ ଅଭିଳାଷୀ ହୋଇଅଛ, ଆମ୍ଭ ପରିତ୍ୟକ୍ତ ଅସ୍ତ୍ର ସେହି ବିରାଟ ନୃପଙ୍କ ଦୁହିତାଗର୍ଭରେ ପତିତ ହେବ ।

ଭଗବାନ୍ କହିଲେ, ସେହି ପରମ ଅସ୍ତ୍ରର ପତନ ଅବ୍ୟର୍ଥ । ଅତଏବ ତାହା ଅବଶ୍ୟ ଘଟିବ; କିନ୍ତୁ ସେହି ଗର୍ଭସ୍ଥ ବାଳକ ମୃତ ହୋଇ ସୁଦ୍ଧା ଜନ୍ମଗ୍ରହଣ କରିବ ଏବଂ ଦୀର୍ଘାୟୁ ପ୍ରାପ୍ତ ହେବ । ୮ । ମନୀଷିଗଣ ତୁମ୍ଭଙ୍କୁ ବାରମ୍ବାର ପାପକର୍ମକାରୀ ବାଳପ୍ରାଣହାରୀ ପାପାତ୍ମା ଓ କୁତ୍ସିତ ପୁରୁଷ ବୋଲି ଜାଣିବେ । ସୁତରାଂ ତୁମ୍ଭେ ଏହି ପାପକର୍ମର ଫଳଭୋଗ କର । ତୁମ୍ଭେ କଦାପି କାହା ସହିତ କଥୋପକଥନ କରି ପାରିବ ନାହିଁ ଓ ତିନ ସହସ୍ର ବର୍ଷ ପର୍ଯ୍ୟନ୍ତ ଏହି ପୃଥିବୀରେ ବିଚରଣ କରିବ ? ସହାୟହୀନ ହୋଇ ଜନଶୂନ୍ୟ ପ୍ରଦେଶରେ ବିଚରଣ କରିବ । ହେ କ୍ଷୁଦ୍ର-ବୁଦ୍ଧେ ! ଜନସମାଜ ମଧ୍ୟରେ ତୁମ୍ଭର ବସତି ହେବ ନାହିଁ । ହେ ପାପାତ୍ମନ୍ ! ତୁମ୍ଭେ ପୂୟ ଶୋଣିତ ଗନ୍ଧ ଏବଂ ସର୍ବପ୍ରକାର ବ୍ୟାଧିଯୁକ୍ତ ହୋଇ ଦୁର୍ଗମ ଅରଣ୍ୟକୁ ଆଶ୍ରୟ କର । ୧୬ ।

ଆଭ ପରୀକ୍ଷିତ ବୟଃପ୍ରାପ୍ତ ହୋଇ ଶୁଭଣ୍ଡ ଓ ବେଦବ୍ରତ ଲାଭ କର ଶାରଦ୍ୱତ୍ କୃପାଚାର୍ଯ୍ୟଙ୍କ ନିକଟରେ ସମସ୍ତ ଅସ୍ତ୍ରଶିକ୍ଷା କରିବେ । ସେହି ଧର୍ମାତ୍ମା କ୍ଷତ୍ରିୟ ଧର୍ମ ବ୍ରତରେ ଅବସ୍ଥିତ ହୋଇ ପରମ ଅସ୍ତ୍ର ସମୂହରେ ପାଣ୍ଡିତ୍ୟ ଲାଭ କରି ଷଷ୍ଠୀ ବର୍ଷନ୍ତ ଏହି ଭୂମଣ୍ଡଳକୁ ପାଳନ କରିବେ । ହେ ଦୁର୍ମତେ ! ଅତଃପର ମହାବାହୁ କୁରୁରାଜ ପରୀକ୍ଷିତ ତୁମ୍ଭ ସାକ୍ଷାତରେ ନୃପତି ହେବେ । ହେ ନରାଧମ ! ଆମ୍ଭର ସତ୍ୟ ଓ ତପସ୍ୟାର ବଳ ଅବଲୋକନ କର । ଆମ୍ଭେ ସେହି ଶସ୍ତ୍ରାଗ୍ନିର ଉତ୍ତାପରେ ଦଗ୍‌ଧ ଗର୍ଭସ୍ଥ ବାଳକକୁ ଜୀବିତ କରିବୁଁ । ୧୭ ।

ବ୍ୟାସଦେବ କହିଲେ, ତୁମ୍ଭେ ଆମ୍ଭମାନଙ୍କୁ ଅନାଦର କରି ଯେଉଁ କାରଣରୁ ଏହି ଦାରୁଣ କର୍ମ କଲ, ବ୍ରାହ୍ମଣ ହୋଇ ଯହିଁ ଏତାଦୃଶ ଆଚରଣ କଲ ଏବଂ ଯେଉଁ କାରଣରୁ ତୁମ୍ଭେ କ୍ଷତ୍ରିୟ-ଧର୍ମକୁ ଆଶ୍ରୟ କରିଅଛ, ସେହି କାରଣରୁ ଦେବକୀନନ୍ଦନ ତୁମ୍ଭଙ୍କୁ ଯେଉଁ ଉତ୍କୃଷ୍ଟ ବାକ୍ୟ କହିଲେ, ତାହା ଘଟିବ, ଏଥିରେ ସଂଶୟ ନାହିଁ । ୧୮ ।

ଅଶ୍ୱତ୍ଥାମା କହିଲେ, ହେ ବ୍ରହ୍ମନ୍ ! ଆପଣ ଏବଂ ଏହି ପୁରୁଷୋତ୍ତମ ସତ୍ୟବାଦୀ ହେଉନ୍ତୁ । ଆମ୍ଭେ ଇହଲୋକରେ ପୁରୁଷମାନଙ୍କ ମଧ୍ୟରେ ଆପଣଙ୍କ ସହିତ ଅବସ୍ଥିତ କରିବୁଁ । ୧୯ ।

ବୈଶମ୍ପାୟନ କହିଲେ, ଦ୍ରୋଣପୁତ୍ର ମହାତ୍ମା ପାଣ୍ଡବଗଣଙ୍କୁ ସେହି ମଣି ପ୍ରଦାନପୂର୍ବକ ବିଷଣ୍ଣ ମନରେ ସମସ୍ତଙ୍କ ସାକ୍ଷାତ୍‌ରେ ଅରଣ୍ୟକୁ ପ୍ରସ୍ଥାନ କଲେ । ୨୦ । ନିଷ୍କଣ୍ଟକ ପାଣ୍ଡବମାନେ ମଧ୍ୟ ଗୋବିନ୍ଦଙ୍କୁ ଏବଂ ମହାମୁନି ଦ୍ୱୈପାୟନ ଓ ନାରଦଙ୍କୁ ପୁରଃସର କରି ଦ୍ରୋଣପୁତ୍ରଙ୍କ ସହଜ ମଣି ଗ୍ରହଣପୂର୍ବକ ସତ୍ୱର ହୋଇ ମରଣାର୍ଥେ କୃତନିଶ୍ଚୟା ମୌନାବଲମ୍ବିନୀ ଦ୍ରୁପଦକୁମାରୀଙ୍କ ନିକଟକୁ ଧାବିତ ହେଲେ । ୨୨ ।

ବୈଶମ୍ପାୟନ କହିଲେ, ତତ୍ପରେ ସେହି ନରବରମାନେ କୃଷ୍ଣଙ୍କ ସହିତ ପବନ ସଦୃଶ ବେଗଯୁକ୍ତ ଉତ୍କୃଷ୍ଟ ଅଶ୍ୱଗଣ ସଂଯୋଜିତ ରଥରେ ଆରୋହଣପୂର୍ବକ ପୁନଶ୍ଚ ଶିବିରାଭିମୁଖକୁ ଗମନ କଲେ । ୨୩ । ଶୋକ-ପୀଡ଼ିତ ମହାରଥ ପାଣ୍ଡବଗଣ କେଶବଙ୍କ ସହିତ ତ୍ୱରାଯୁକ୍ତ ହୋଇ ଉଭୟ

ରଥରୁ ଅବତରଣପୂର୍ବକ ମଳିନବର୍ଣ୍ଣା ଶୋକାର୍ତ୍ତା ଦ୍ରୌପଦୀଙ୍କୁ ଅବଲୋକନ କଲେ ଏବଂ ସେହି ଦୁଃଖଶୋକସମନ୍ୱିତା ଆନନ୍ଦଶୂନ୍ୟା କୃଷ୍ଣାଙ୍କ ନିକଟକୁ ଯାଇ ତାହାଙ୍କୁ ପରିବେଷ୍ଟନପୂର୍ବକ ଅବସ୍ଥିତ କଲେ । ୨୫ ।

ତତ୍ପରେ ରାଜାଙ୍କ ଆଜ୍ଞାନୁସାରେ ମହାବଳ ଭୀମସେନ ଦ୍ରୌପଦୀଙ୍କୁ ସେହି ଦିବ୍ୟମଣି ପ୍ରଦାନପୂର୍ବକ କହିଲେ, ଭଦ୍ରେ ! ଏ ତୁମ୍ଭର ମଣି, ତୁମ୍ଭର ପୁତ୍ରହନ୍ତା ସେହି ଅଶ୍ୱତ୍ଥାମା ପରାଜିତ ହୋଇଅଛନ୍ତି । ଗାତ୍ରୋତ୍ଥାନ କର । ଶୋକ ପରିତ୍ୟାଗପୂର୍ବକ କ୍ଷତ୍ରିୟଧର୍ମକୁ ସ୍ମରଣ କର । ୨୭ । ହେ ଅସିତଲୋଚନେ ! ହେ ଭୀରୁ ! ବାସୁଦେବ ଶାନ୍ତି ନିମିତ୍ତ ଗମନ କରୁଥିବା ସମୟରେ ତୁମ୍ଭେ ତାହାଙ୍କୁ କହିଥିଲ, ହେ ଗୋବିନ୍ଦ ! ରାଜା ଶାନ୍ତି ଇଚ୍ଛା କରୁଥିବାରୁ ଆମ୍ଭେ ଜାଣିଲୁଁ ଯେ ଆମ୍ଭର ପତିମାନେ ଏବଂ ଭ୍ରାତା ଓ ପୁତ୍ରଗଣ କେହି ନାହାନ୍ତି ଏବଂ ତୁମ୍ଭେ ମଧ୍ୟ ଆମ୍ଭର କେହି ନୁହ । ୨୯ । ତୁମ୍ଭେ ପୁରୁଷୋତ୍ତମଙ୍କୁ ଏହିସବୁ କ୍ଷତ୍ରିୟଧର୍ମର ଅନୁରୂପ ଯେଉଁ ପ୍ରରୁଷବାକ୍ୟ କହିଥିଲ, ତାହା ଏତେବେଳେ ସ୍ମରଣ କର । ୩୦ । ଆମ୍ଭମାନଙ୍କ ରାଜ୍ୟବିରୋଧୀ ପାପାତ୍ମା ଦୁର୍ଯ୍ୟୋଧନ ହତ ହୋଇଅଛି । ଦୁଃଶାସନ ଜୀବିତ ଥିବା ସମୟରେ ଆମ୍ଭେ ତାହାର ରକ୍ତ ପାନ କରିଅଛୁଁ । ଶତ୍ରୁତା ବିଷୟରେ ଅନୃଣ ହୋଇଅଛୁଁ । ଲୋକମାନଙ୍କ ନିକଟରେ ମଧ୍ୟ ନିନ୍ଦନୀୟ ହୋଇନାହୁଁ । ଦ୍ରୋଣପୁତ୍ରଙ୍କୁ ଜୟ କରି ବ୍ରାହ୍ମଣ ଓ ଗୁରୁପୁତ୍ର ଏହି ଗୌରବବଶରୁ ତାହାଙ୍କୁ ପରିତ୍ୟାଗ କରିଅଛୁଁ ୩୨ । ହେ ଦେବି ! ତାହାର ଯଶ ନଷ୍ଟ ହୋଇଅଛି; ଦେହ କେବଳ ଅବଶିଷ୍ଟ ଅଛି । ସେ ମେଲରୁ ବିଯୋଜିତ ଏବଂ ତାହାର ଆୟୁଧ ଭ୍ରଶୀତ ହୋଇ ଭୂମିରେ ପତିତ ହୋଇଅଛି । ୩୩ ।

ଦ୍ରୌପଦୀ କହିଲେ, ଗୁରୁପୁତ୍ର ଆମର ଗୁରୁ । ଅତଏବ ତାହାଙ୍କ ନିକଟରେ ଆମ୍ଭେ ଋଣଶୂନ୍ୟ ହୋଇଅଛୁଁ । ହେ ଭାରତ ! ମହାରାଜ ଏତେବେଳେ ଏହି ମଣିକି ନିଜ ମସ୍ତକରେ ବନ୍ଧନ କରନ୍ତୁ । ୩୪ । ତତ୍ପରେ ରାଜା ତେତେବେଳେ ଦ୍ରୌପଦୀଙ୍କ ବଚନାନୁସାରେ ସେହି ମଣିକି ଗ୍ରହଣ କରି ତାହା ଗୁରୁଙ୍କର ଉପଯୁକ୍ତ ବୋଲି ମସ୍ତକରେ ଧାରଣ କଲେ । ୩୫ । ରାଜା ସେହି ଦିବ୍ୟ ମଣିକି ମସ୍ତକରେ ଧାରଣ

କର ଚନ୍ଦ୍ରସଂଯୁକ୍ତ ଉଦୟଗିରି ସଦୃଶ ଶୋଭିତ ହେଲେ । ୩୬ । ତତ୍ପରେ ପୁତ୍ରଶୋକାର୍ତ୍ତା ମୌନାବଲମ୍ବିନୀ କୃଷ୍ଣା ଉଠିଥିବା ହେଲେ । ତଦନନ୍ତର ଧର୍ମରାଜ ମହାବାହୁ କୃଷ୍ଣଙ୍କୁ ପଚାରିଲେ । ୩୭ ।

---

# ଅଧ୍ୟାୟ—୧୭

ବୈଶମ୍ପାୟନ କହିଲେ, ସୌପ୍ତିକ ଅବସ୍ଥାରେ ସେହି ତିନିଜଣ ରଥି-କର୍ତ୍ତୃକ ସମସ୍ତ ସୈନ୍ୟ ହତ ହେବାରୁ ରାଜା ଯୁଧିଷ୍ଠିର ଶୋକପ୍ରକାଶ କରି ଦାଶାର୍ହଙ୍କୁ ଏହି ବାକ୍ୟ କହିଲେ । ୧ । ହେ କୃଷ୍ଣ ! ଆମ୍ଭର ମହାରଥ ପୁତ୍ରଗଣ ପାପାତ୍ମା ପାପକର୍ମୀ କ୍ଷୁଦ୍ରାଶୟ ଅଶ୍ୱତ୍ଥାମାଙ୍କଦ୍ୱାରା କେଉଁ ହେତୁରୁ ନିହତ ହେଲେ ଏବଂ କୃତାସ୍ତ୍ର ବିକ୍ରମଶାଳୀ, ଶତସହସ୍ର ବ୍ୟକ୍ତିଙ୍କ ସହିତ ସମର କରିବାକୁ ସମର୍ଥ ଦ୍ରୁପଦରାଜାଙ୍କ ପୁତ୍ରଗଣ ଦ୍ରୋଣପୁତ୍ରଙ୍କଦ୍ୱାରା କେଉଁ କାରଣରେ ପରାଜିତ ହେଲେ ? ମହାଧନୁର୍ଦ୍ଧର ଦ୍ରୋଣ ଯୁଦ୍ଧରେ ଯାହାଙ୍କୁ ପ୍ରାଧାନ୍ୟ ପ୍ରଦାନ କରି ନାହାନ୍ତି, ସେହି ଅଶ୍ୱତ୍ଥାମା ରଥିଶ୍ରେଷ୍ଠ ଧୃଷ୍ଟଦ୍ୟୁମ୍ନଙ୍କୁ କିପରି ନିହତ କଲେ ? ଗୁରୁପୁତ୍ର କେଉଁ ଉତ୍କୃଷ୍ଟ କର୍ମ କରିଥିଲେ ଯେ, ଏକାକୀ ଯାହାଦ୍ୱାରା ଅସ୍ମଦୀୟ ସମସ୍ତଙ୍କୁ ବଧ କଲେ । ୬ ।

ଭଗବାନ କହିଲେ, ଦ୍ରୋଣନନ୍ଦନ ଅବଶ୍ୟ ଦେବଦେବ ଅବ୍ୟୟ ମହାଦେବଙ୍କର ଶରଣାଗତ ହୋଇଥିଲେ । ସେହି କାରଣରୁ ସେ ଏକାକୀ ଅନେକ ବ୍ୟକ୍ତିଙ୍କୁ ବଧ କରିଅଛନ୍ତି । ଯାହାଙ୍କୁ ମହାଦେବ ପ୍ରସନ୍ନ ହୁଅନ୍ତି, ତାହାଙ୍କୁ ଅମରତା ସୁଦ୍ଧା ପ୍ରଦାନ କରିପାରନ୍ତି ଏବଂ ଗିରୀଶ ଏତାଦୃଶ ବୀର୍ଯ୍ୟ ଦେଇପାରନ୍ତି ଯେ ଯାହାଦ୍ୱାରା ଇନ୍ଦ୍ରଙ୍କୁ ମଧ୍ୟ ଅବସନ୍ନ କରାଯାଇ-ପାରେ । ହେ ଭରତଶ୍ରେଷ୍ଠ ! ଆମ୍ଭେ ମହାଦେବଙ୍କୁ ଏବଂ ତାହାଙ୍କର ଯେଉଁସବୁ ବିବିଧ ପୁରାତନ କାର୍ଯ୍ୟମାନ ଅଛି, ତାହା ମଧ୍ୟ ଯଥାର୍ଥରୂପେ ଜାଣିଅଛୁଁ । ୮ । ହେ ଭରତ ! ଏ ପ୍ରାଣିଗଣର ଆଦି, ମଧ୍ୟ ଓ ଅନ୍ତସ୍ୱରୂପ; ଏହାଙ୍କ କର୍ମଦ୍ୱାରା ଏହି ସମସ୍ତ ଜୀବିତ ହୋଇ ରହିଅଛି । ୯ । ପ୍ରଥମରେ ହିରଣ୍ମୟ ଈଶ୍ୱର ପିତାମହ ପ୍ରଜା ସର୍ଜନ କରିବାକୁ ଅଭିଳାଷୀ ହୋଇ

ଏହି ମହାଦେବଙ୍କୁ ଦର୍ଶନ କଲେ ଏବଂ କହିଲେ, ହେ ଶିବ ! ତୁମ୍ଭେ ଅବିଳମ୍ବେ ଜୀବମାନଙ୍କ ସୃଷ୍ଟି କର ।

ମହାଦେବ ତାହା କରିବା ବୋଲି କହି ପ୍ରାଣୀମାନଙ୍କର ଦୋଷ ଦର୍ଶନ କରି, ପଶ୍ଚାତ୍ ସେହି ମହାତପା ଜଳରେ ନିମଗ୍ନ ହୋଇ ଦୀର୍ଘକାଳ ତପସ୍ୟା କଲେ । ୧୧ । ପିତାମହ ବହୁକାଳ ତାହାଙ୍କୁ ପ୍ରତୀକ୍ଷା କରି ପରିଶେଷରେ ସର୍ବଭୂତର ସୃଷ୍ଟି ଶକ୍ତିସମ୍ପନ୍ନ ରଜୋଗୁଣମୟ ଅତି ଉତ୍କୃଷ୍ଟ ଚତୁର୍ମୁଖ ଦେବଙ୍କୁ ମାନସଦ୍ୱାରା ସର୍ଜନ କଲେ । ୧୨ । ସେହି ଚତୁର୍ମୁଖ ଦେବଜଳସୁପ୍ତ ଗିରୀଶଙ୍କୁ ଦେଖି ପିତାଙ୍କୁ କହିଲେ । ହେ ପିତଃ ! ଯଦି ଅନ୍ୟ କେହି ଆମ୍ଭର ଅଗ୍ରଜ ନାହାନ୍ତି, ତେବେ ଆମ୍ଭେ ପ୍ରଜା ସୃଷ୍ଟି କରିବୁଁ । ୧୩ ! ପିତାମହ ତାହାଙ୍କୁ କହିଲେ ତୁମ୍ଭ ବ୍ୟତିରେକେ ଅଗ୍ରଜନ୍ମା ଅନ୍ୟ ପୁରୁଷ କେହି ନାହାନ୍ତି । କେବଳ ଏହି ସ୍ଥାଣୁ ଜଳ ମଧ୍ୟରେ ମଗ୍ନ ହୋଇଅଛନ୍ତି । ଅତଏବ ତୁମ୍ଭେ ବିଶ୍ୱସ୍ତ ହୋଇ ସୃଷ୍ଟିର କାର୍ଯ୍ୟ କର ।୧୪। ସେହି ଚତୁର୍ମୁଖ ଦେବ ପିତାମହଙ୍କ ଆଦେଶାନୁସାରେ ଭୂତ ସମୁହର ଓ ଦକ୍ଷ ପ୍ରଭୃତି ସପ୍ତପ୍ରଜାପତିଙ୍କର ସୃଷ୍ଟି କଲେ; ଯେଉଁମାନଙ୍କଦ୍ୱାରା ଏହି ସମସ୍ତ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ ହୋଇ ପ୍ରକାଶିତ ହୋଇଅଛି । ୧୫ ।

ହେ ମହାରାଜ ! ସେହି ସମସ୍ତ ପ୍ରଜାଗଣ ସୃଷ୍ଟି ହେବାମାତ୍ରେ କ୍ଷୁଧିତ ହୋଇ ପ୍ରଜାପତିଙ୍କୁ ଭକ୍ଷଣ କରିବାକୁ ଅଭିଳାଷପୂର୍ବକ ସହସା ଧାବମାନ ହେଲେ । ୧୬ । ତେଣୁ ସେ ନିଜର ପରିତ୍ରାଣ ନିମିତ୍ତ ପିତାମହଙ୍କ ନିକଟକୁ ଗମନ କଲେ ଓ କହିଲେ, ହେ ଭଗବନ୍ ! ଆପଣ ଏହି ପ୍ରଜାଗଣଙ୍କଠାରୁ ଆମ୍ଭଙ୍କୁ ରକ୍ଷା କରିବା ନିମିତ୍ତ ଏମାନଙ୍କର ଆହାର-ରୂପ ବୃତ୍ତି ବିଧାନ କରିବା ହେଉନ୍ତୁ । ୧୭ । ତତ୍ପରେ ପିତାମହ ସେମାନଙ୍କ ଭକ୍ଷଣ ନିମିତ୍ତ ଔଷଧି ଓ ସ୍ଥାବର ଜଙ୍ଗମ ଜୀବସମୂହ ଏବଂ ବଳବାନ୍ ଜୀବ-ମାନଙ୍କ ନିମିତ୍ତ ଦୁର୍ବଳ ପ୍ରାଣୀମାନଙ୍କୁ ଅନ୍ନରୂପେ ବିଧାନ କଲେ । ୧୮ । ସୃଷ୍ଟ ପ୍ରଜାମାନଙ୍କ ନିମିତ୍ତ ଏହିପରି ଅନ୍ନ ବିହିତ ହେବାରୁ ସେମାନେ ଯଥାସ୍ଥାନକୁ ଗମନ କଲେ । ହେ ରାଜନ୍ ! ତତ୍ପରେ ସେମାନେ ନିଜ ନିଜ ଯୋନିରେ ପ୍ରୀତିଯୁକ୍ତ ହୋଇ ବୃଦ୍ଧିପ୍ରାପ୍ତ ହେଲେ । ୧୯ । ଜୀବବୃନ୍ଦ ବୃଦ୍ଧିପ୍ରାପ୍ତ ଓ ଲୋକ ଗୁରୁତୁଷ୍ଟ ହେବାରୁ ସେହି ଅଗ୍ରଜନ୍ମା ଦେବଦେବ ମହାଦେବ ଜଳରୁ ଉଠି ପ୍ରଜାଙ୍କୁ ଓ ସମସ୍ତ ପ୍ରାଣୀମାନଙ୍କୁ ଦେଖିଲେ । ୨୦ ।

ଭଗବାନ୍ ରୁଦ୍ର ବିବିଧ ରୂପ ସୃଷ୍ଟ ପ୍ରଜାମାନଙ୍କୁ ସ୍ୱୀୟ ତେଜରେ ବର୍ଦ୍ଧିତ ହେବାର ଅବଲୋକନ କରି କ୍ରୁଦ୍ଧ ହେଲେ ଏବଂ ପ୍ରସବସାମର୍ଥ୍ୟ ସ୍ୱରୂପ ନିଜ ଲିଙ୍ଗକୁ ଛେଦନପୂର୍ବକ ପୃଥିବୀରେ ପାତିତ କଲେ । ୨୧ । ଯେତେବେଳେ ଶିବଲିଙ୍ଗ ଭୂମିରେ ପତିତ ହୋଇ ପ୍ରତିଷ୍ଠିତ ହେଲେ, ସେତେବେଳେ ଅବ୍ୟୟ ବ୍ରହ୍ମା ବାକ୍ୟଦ୍ୱାରା ତାହାଙ୍କୁ ଶାନ୍ତକରି କହିଲେ, ହେ ଶର୍ବ ! ତୁମ୍ଭେ ଜଳ ମଧ୍ୟରେ ବହୁକାଳ ଅବସ୍ଥାନ କରି କେଉଁ କାର୍ଯ୍ୟ କଲ ଏବଂ କି ନିମିତ୍ତ ଏହି ଲିଙ୍ଗକୁ ଉତ୍ପାଦନ କରି ଭୂମିରେ ପାତିତ କଲ ?

ଲୋକଗୁରୁ ରୁଦ୍ରଦେବ କ୍ରୁଦ୍ଧ ହୋଇ ବ୍ରହ୍ମାଙ୍କୁ କହିଲେ, ଏହି ପ୍ରଜାବୃନ୍ଦ ଅନ୍ୟଦ୍ୱାରା ସୃଷ୍ଟ ହୋଇଅଛନ୍ତି । ଅତଏବ ଏହି ଲିଙ୍ଗଦ୍ୱାରା ଆମ୍ଭେ ଆଉ କଣ କରିବୁଁ ? ହେ ବ୍ରହ୍ମନ୍ ! ଆମ୍ଭ ତପସ୍ୟାଦ୍ୱାରା ପ୍ରଜାଗଣଙ୍କ ନିମିତ୍ତ ଅନ୍ନ ଉତ୍ପନ୍ନ ହୋଇଅଛି । ଔଷଧି ସମୂହର ପରିବର୍ତ୍ତନକ୍ରମେ ପ୍ରଜାଗଣ ପରିବର୍ଦ୍ଧିତ ହେଉଅଛନ୍ତି; ଅର୍ଥାତ୍ ଅନ୍ନରୁ ରେତ ଏବଂ ରେତରୁ ପୁରୁଷ ଉତ୍ପନ୍ନ ହୋଇ ଅବସାନରେ ଅନ୍ନରେ ପରିଣତ ହେଉଅଛି । ମହାତପା ମହାଦେବ କ୍ରୋଧ ସହିତ ଏହି ବାକ୍ୟ କହି ବିମନା ହୋଇ ତପସ୍ୟା କରିବା ନିମିତ୍ତ ମୁଞ୍ଜାବାନ ପର୍ବତର ଶିଖରକୁ ଗମନ କଲେ । ୨୭ ।

---

## ଅଧ୍ୟାୟ—୧୮

ଭଗବାନ କହିଲେ, ଈଶ୍ୱରଙ୍କ ତିରୋଧାନ ଉତ୍ତାରେ ଦେବଯୁଗ ଅତୀତ ହେବାରୁ, ସତ୍ୟଯୁଗରେ ଦେବଗଣ ବେଦ-ପ୍ରମାଣାନୁସାରେ ଯଥାବିଧି ଯଜ୍ଞ କରିବାକୁ ଅଭିଳାଷୀ ହୋଇ ତାହାର ଅନୁଷ୍ଠାନ କଲେ ।୧। ସେମାନେ ଯଜ୍ଞ ନିମିତ୍ତ ଯଜ୍ଞାଂଶଭାଗାର୍ହ ଦେବତା ସମୂହ ଯଜ୍ଞୀୟ ଦ୍ରବ୍ୟସମୂହ ଆହରଣ କଲେ ।୨। ସେହି ସମସ୍ତ ଦେବତାମାନେ ରୁଦ୍ରଙ୍କୁ ଯଥାର୍ଥରୂପେ ଜାଣି ନ ଥିଲେ । ଏହି କାରଣରୁ ସେହି ଫଳ-ଦାତାଙ୍କର ଭାଗ କଳ୍ପନା କରି ନ ଥିଲେ । ଦେବଗଣ ଯଜ୍ଞସ୍ଥଳରେ

ସ୍ଥାଣୁଙ୍କର ଯଜ୍ଞଭାଗ କଳ୍ପନା କରି ନ ଥିବାରୁ କୃତ୍ତିବାସ ଇଚ୍ଛାପୂର୍ବକ ଯଜ୍ଞନାଶକ ଶରାସନ ସୃଷ୍ଟି କଲେ । ସମସ୍ତ ଲୋକ ଆମ୍ଭଙ୍କୁ ସାଧୁ ବୋଲି ଜାଣନ୍ତୁ, ଏହି ବାସନା ସ୍ୱରୂପ ଲୋକ ଯଜ୍ଞଗର୍ଭକ ବାଜସଂସ୍ଥାର ସ୍ୱରୂପ କ୍ରିୟାଯଜ୍ଞ ପତ୍ନୀସାଧ୍ୟ ଅଗ୍ନିହୋତ୍ରାଦିରୂପ ଗୃହଯଜ୍ଞ, ଆତ୍ମତର୍ପଣ ସ୍ୱରୂପ ପଞ୍ଚଭୂତମୟ ଯଜ୍ଞ ଏବଂ ଅତିଥି ତର୍ପଣ ରୂପ ନରଯଜ୍ଞ—ଏହି ପଞ୍ଚବିଧ ସନାତନ ଯଜ୍ଞ ମଧ୍ୟରେ ଲୋକଯଜ୍ଞ ଓ ନରଯଜ୍ଞଦ୍ୱାରା କପର୍ଦ୍ଦୀ ଧନୁ ବିଧାନ କଲେ । ତାହାଙ୍କ ଧନୁ ପଞ୍ଚହସ୍ତ ପରିମାଣରେ ପ୍ରସ୍ତୁତ ହେଲା ।୭।

ହେ ଭାରତ ! ବଷଟ୍‌କାର ସେହି ଧନୁର ଜ୍ୟା ହେଲା । ଅର୍ଥତ୍ୱ, ସମର୍ଥତ୍ୱ, ଦ୍ୱନ୍ଦ୍ୱଶୂନ୍ୟତ୍ୱ ଓ ଶାସ୍ତ୍ରାନୁସାରେ ନିଷ୍ପତ୍ତି—ଏହି ଚାରି ପ୍ରକାର ଯଜ୍ଞାଙ୍ଗ ସେହି ଧନୁର ଦୃଢ଼ତା ବିଧାନ କଲା ।୮। ତତ୍ପରେ ଦେବଗଣ ଯେଉଁ ସ୍ଥାନରେ ଯଜ୍ଞ କରୁଥିଲେ, ମହାଦେବ କ୍ରୋଧଯୁକ୍ତ ହୋଇ ଉକ୍ତ ଶରାସନ ଗ୍ରହଣପୂର୍ବକ ସେଠାରେ ଉପସ୍ଥିତ ହେଲେ । ପୃଥିବୀ ଦେବୀ ସେହି ଅବ୍ୟୟ ଧନୁର୍ଦ୍ଧାରୀ ବ୍ରହ୍ମଚାରୀଙ୍କୁ ଅବଲୋକନ କରି ବ୍ୟଥିତା ହେଲେ । ପର୍ବତ ସମୂହ ମଧ୍ୟ କମ୍ପିତ ହେଲେ । ୯ । ବାୟୁ ପ୍ରବାହିତ ହେଲା ନାହିଁ । ଅଗ୍ନି ପ୍ରଜ୍ୱଳିତ ହେଲା ନାହିଁ । ନକ୍ଷତ୍ରବୃନ୍ଦ ଉଦ୍‌ବିଗ୍ନ ହୋଇ ଆକାଶ-ମଣ୍ଡଳରେ ଭ୍ରମଣ କଲେ । ସୂର୍ଯ୍ୟଦେବ ପ୍ରକାଶିତ ହେଲେ ନାହିଁ । ଚନ୍ଦ୍ରମଣ୍ଡଳ ଶ୍ରୀହୀନ ହେଲା । ଗଗନମଣ୍ଡଳ ଅନ୍ଧକାର ବ୍ୟାକୁଳିତ ଆବୃତ ହେଲା । ସେତେବେଳେ ସୁରଗଣ ଅତି ଭୟଙ୍କର କୌଣସି ବିଷୟ ଜାଣିପାରିଲେ । ସେମାନଙ୍କ ସଂକଳ୍ପିତ ଯଜ୍ଞ ପ୍ରକାଶିତ ହେଲା ନାହିଁ; ପରନ୍ତୁ ସେମାନେ ତ୍ରସ୍ତ ହେଲେ । ୧୨ ।

ତତ୍‌ପରେ ମହାଦେବ ଭୟଙ୍କର ଶରଦ୍ୱାରା ଯଜ୍ଞର ହୃଦୟକୁ ବିଦ୍ଧ କଲେ । ପରିଶେଷରେ ଅଗ୍ନିରୂପୀ ଯଜ୍ଞ ମୃଗରୂପ ଧାରଣପୂର୍ବକ ସେଠାରୁ ପଳାୟନ କଲେ । ୧୩ । ହେ ଯୁଧିଷ୍ଠିର ମହାରାଜ ! ସେ ସେହି ରୂପରେ ସ୍ୱର୍ଗରେ ଯଜମାନ ସ୍ୱରୂପ ହୋଇ କିଂଶତ୍ କାଳ ଫଳ ଭୋଗ କରି ବିରାଜିତ ହୋଇଥିଲେ । ତଥାପି ସେହି କାଳରୂପୀ ରୁଦ୍ରଙ୍କ ଦ୍ୱାରା ଅନ୍ୱୀୟମାନ ଅର୍ଥାତ୍ ସ୍ୱର୍ଗଚ୍ୟୁତ ହେଲେ । ୧୪ । ଯଜ୍ଞ ଅପହୃତ ହେବାରୁ, ସୁରଗଣର ଚୈତନ୍ୟଶୂନ୍ୟ ହେବାରୁ କୌଣସି ବିଷୟ ଜାଣି-ପାରିଲେ ନାହିଁ । ୧୫ । ତତ୍ପରେ ତ୍ରିଲୋଚନ କ୍ରୋଧଯୁକ୍ତ ହୋଇ

ଧନୁଷ୍କୋଟିଦ୍ୱାରା ସବିତାଙ୍କର ବାହୁଦ୍ୱୟ, ଭଗଙ୍କର ନୟନଯୁଗଳ ଏବଂ ପୂଷାଙ୍କର ଦନ୍ତ ସମୂହ ଆହତ କଲେ । ୧୬ । ତେତେବେଳେ ଦେବଗଣ ଓ ଯଜ୍ଞାଙ୍ଗ ସମୂହ ସର୍ବତ୍ରଗକୁ ଧାବିତ ହେଲେ । କେହି କେହି ସେହି ସ୍ଥାନରେ ପତିତ ହୋଇ ହତଜୀବନ ସଦୃଶ ହେଲେ । ୧୭ ।

ସେହି ନୀଳକଣ୍ଠ ଅବଲୀଳାକ୍ରମେ ସେହି ସମସ୍ତଙ୍କୁ ବିଦ୍ରାବିତ କରି ଧନୁଷ୍କୋଟୀକୁ ପ୍ରବୋଧ କରି ସୁରଗଣଙ୍କୁ ରୁଦ୍ଧ କଲେ । ୧୮। ତତ୍ପରେ ଅମର-ଗଣଙ୍କର ସେହି ବାକ୍ୟ ତାହାଙ୍କର ଧନୁର୍ଗୁଣକୁ ଛେଦନ କଲା । ମହାରାଜ ! ଗୁଣ ସହସା ବିଚ୍ଛିନ୍ନ ହେଲେ ସୁଦ୍ଧା ଧନୁ ଶୋଭା ପାଉଥିଲା । । ୧୯ । ତତ୍ପରେ ଅମରବର ଶରାସନଶୂନ୍ୟ ହେବାରୁ ସୁରଗଣ ଓ ଯଜ୍ଞ ତାହାଙ୍କର ଶରଣାଗତ ହେଲେ । ୨୦ । ସେମାନେ ଶରଣାପନ୍ନ ହେବାରୁ ମହାଦେବ ଦେବଗଣଙ୍କୁ ଅନୁଗ୍ରହ କଲେ । ଭଗବାନ ନିଜ କ୍ରୋଧକୁ ଜଳାଶୟରେ ସ୍ଥାପନ କଲେ ।

ହେ ପାଣ୍ଡବ ! ସେ ପାବକରୂପରେ ଜଳ ଶୋଷଣ କରୁଅଛି । ସେ ପ୍ରସନ୍ନ ହୋଇ ଭଗବାନଙ୍କର ନେତ୍ରଦ୍ୱୟ, ସବିତାଙ୍କର ବାହୁଯୁଗଳ, ପୂଷାଙ୍କର ଦନ୍ତସମୂହ ଏବଂ ସମସ୍ତ ଯଜ୍ଞଫଳ ପୁନଶ୍ଚ ପ୍ରଦାନ କଲେ । । ୨୨ । ତତ୍ପରେ ସମସ୍ତ ଜଗତ୍ ପୁନଶ୍ଚ ସୁସ୍ଥ ହେଲା; ଦେବତାମାନେ ମହାଦେବଙ୍କ ନିମିତ୍ତ ସମସ୍ତ ଯଜ୍ଞଭାଗ କଳ୍ପନା କଲେ । ମହାଦେବ ରୁଷ୍ଟ ହେବାରୁ ସମସ୍ତେ ଅସ୍ୱସ୍ଥ ହୋଇଥିଲେ । ପୁନଶ୍ଚ ସମୁଦାୟ ଜଗତ ସ୍ୱସ୍ଥ ହେଲା । ୨୪ । ସେହି ବୀର୍ଯ୍ୟବାନ୍ ମହାଦେବ ଏହି ଅଶ୍ୱତ୍ଥାମାଙ୍କଠାରେ ପ୍ରସନ୍ନ ହୋଇଥିଲେ । ଏହିହେତୁରୁ ଆପଣଙ୍କର ମହାରଥ ପୁତ୍ରଗଣ, ଅନୁଚର ସହିତ ପାଞ୍ଚାଳଗଣ ଓ ଅନ୍ୟାନ୍ୟ ଅନେକ ଅନେକ ଶୂରମାନେ ନିହତ ହୋଇଅଛନ୍ତି । ଅତଏବ ଉକ୍ତ ଘଟନାକୁ ଅଶ୍ୱତ୍ଥାମାଙ୍କ କୃତ ବୋଲି ଆପଣ ମନରେ ବିଚାର କରନ୍ତୁ ନାହିଁ; ତାହା ମହାଦେବଙ୍କ ଅନୁଗ୍ରହ । ଏତେବେଳେ ଯାହା କରିବାର ଉଚିତ୍, ତାହା କରିବା ହେଉନ୍ତୁ । ୨୬ ।

[ ସୌପ୍ତିକ ପର୍ବ ସମାପ୍ତ ]

---